# ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

## ଜୀବନୀ

## ଓ

## ଭକ୍ତ ମାନଙ୍କର ଅନୁଭୂତି

ସ୍ୱାମୀ ଅମୃତସ୍ୱରୂପାନନ୍ଦ ପୁରୀ

Mata Amritanandamayi Mission Trust
Amritapuri P.O., Kollam 690 525
Kerala, India

**MATA AMRITANANDAMAYI - A BIOGRAPHY** *(Odia)*

*Translated from English to Odia by : Smt. Sulekha Das*

*Published by :*

**Mata Amritanandamayi Mission Trust**
Amritapuri P.O., Kollam 690 525, Kerala, India
Email: mam@amritapuri.org
Website: www.amritapuri.org

| Edition | Year | Month | Number |
|---|---|---|---|
| *First Edition* | *2005* | | *1000 copies* |
| *Second Edition* | *2008* | *December* | *1500 copies* |
| *Third Edition* | *2014* | | |

*Typesetting and layout by :*
Amrita DTP, Amritapuri
*Printed at :*
Amrita Offset Printers, Amritapuri

# କୃତଜ୍ଞତା

ଏ ପୁସ୍ତକରେ ବର୍ଣିତ ଅନେକ ଘଟଣା ପ୍ରଫେସର ଏମ୍. ରାମକୃଷ୍ଣ ନାୟାରଙ୍କ ଦ୍ୱାରା ମାଲାୟଲମ୍‌ରେ ଲିଖିତ ଶ୍ରୀ ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀଙ୍କର ଜୀବନ ଚରିତରୁ ଗୃହୀତ ଏବଂ ଏଥିପାଇଁ ଆମେ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଛୁ । ମୋର ସାଧକ ଭାଇ ଓ ଭଉଣୀମାନେ ସମ୍ପାଦନା, ଟାଇପ୍ କରିବା ଓ ସଂଶୋଧନ କରିବାରେ ସାହାଯ୍ୟ କରିଥିବା ଯୋଗୁଁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

# ବିଷୟ ସୂଚୀ

## ତୃତୀୟ ଭାଗ

## ଅନୁଭୂତି



## ଚତୁର୍ଥ ଭାଗ

ଓଁ

# ଭୂମିକା

ପ୍ରଦୀପ-ଜ୍ୱାଳାଭି-ର୍ଦିବସକର-ନୀରାଜନବିଧିଃ
ସୁଧାସୂତେ-ଶ୍ଚନ୍ଦ୍ରୋପଲ–ଜଲଲବୈ-ରର୍ଘ୍ୟରଚନା ।
ସ୍ୱକୀୟୈରମ୍ଭୋଭିଃ ସଲିଳ-ନିଧି-ସୌହିତ୍ୟକରଣଂ
ତ୍ୱଦୀୟାଭିଃ-ବାଗ୍ଭିଃସ୍ତବ ଜନନି ବାଚାଂ ସ୍ତୁତିରିୟମ୍ ॥

ହେ ମାତା, ତୁମ ସ୍ତୁତି ତୁମରି ଦିଆ ବାଣୀରେ କରିବା, ରବି କିରଣରେ ହିଁ ରବିଙ୍କ ଆରତି କରିବା ଭଳି, ଚନ୍ଦ୍ର-ଶିଳାର ସ୍ରାବଜଳରେ ଚନ୍ଦ୍ରମାଙ୍କୁ ଅର୍ଘ୍ୟ ଦେବା ଭଳି ତଥା ସମୁଦ୍ରର ଜଳ ଅର୍ପଣ କରି ସମୁଦ୍ରର ସନ୍ତୋଷଭାଜନ ହେବା ଭଳି ।

**ସୌନ୍ଦର୍ଯ୍ୟ ଲହରୀ, ପଦ -୧୦୦**

ଶ୍ରୀ ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ ଏପରି ଜଣେ ମହାତ୍ମା ଯାହାଙ୍କୁ ଯେ କେହି ଦେଖା କରିପାରେ, କଥାବାର୍ତ୍ତା କରିପାରେ, ଓ ତାଙ୍କ ସାନ୍ନିଧ୍ୟରେ ଈଶ୍ୱରଙ୍କ ଉପସ୍ଥିତି ଅନୁଭବ କରିପାରେ । ସେ ଅତ୍ୟନ୍ତ ବିନୟୀ ଅଥଚ ଧରିତ୍ରୀ ପରି ଦୃଢ଼ । ସେ ଅତି ସରଳ ଓ ସାଦାସିଧା, ତଥାପି ପୂର୍ଣ୍ଣିମାର ଚନ୍ଦ୍ର ପରି ଲାବଣ୍ୟମୟୀ । ସେ ପ୍ରେମ, ସତ୍ୟ, ବୈରାଗ୍ୟ

ଓ ଆତ୍ମତ୍ୟାଗ ର ମୂର୍ତ୍ତିମତୀ ରୂପ । ସେ କେବଳ ଶିକ୍ଷା ଦିଅନ୍ତି ନାହିଁ, ନିଜେ କର୍ମ କରନ୍ତି । ସେ କିଛି ଗ୍ରହଣ ନକରି ସବୁକିଛି ସମର୍ପଣ କରନ୍ତି । ସେ ଫୁଲ ପରି କୋମଳ କିନ୍ତୁ ହୀରା ପରି କଠିନ । ସେ ଜଣେ ମହାନ ଗୁରୁ ତଥା ମହାନ ମାତୃମୂର୍ତ୍ତି । ଏହାହିଁ ମାତା ଅମୃତାନନ୍ଦମୟୀଙ୍କର ପରିଚୟ ।

ସେ ପୂର୍ଣ୍ଣ ଚେତନା ସହ ଜନ୍ମ ଗ୍ରହଣ କରିଥିଲେ । କଠିନ ସାଧନା କରି (ବା ସାଧନା କରୁଥିବା ଭଳି ଅନ୍ୟଆଖିରେ ମନେହୋଇ) ସେ ସମଗ୍ର ବିଶ୍ୱକୁ ଅବର୍ଣ୍ଣନୀୟ ଅସୀମ ସ୍ନେହ ଓ କରୁଣାରେ କୋଳେଇ ନେଇଛନ୍ତି । ପିଲାବେଳରୁ କୌଣସି ଗୁରୁଙ୍କ ମାର୍ଗଦର୍ଶନ ବିନା ସେ ପରମ ପିତା-ମାତାଙ୍କୁ ଖୋଜି ପାଇଥିଲେ । ନିଜ ବନ୍ଧୁ କୁଟୁମ୍ବଙ୍କ ଠାରୁ ଆରମ୍ଭ କରି ଅନେକ ତର୍କବାଦୀ ସମାଲୋଚକ ଓ ଅସାମାଜିକ ଲୋକଙ୍କ ବିଦ୍ୱେଷପୂର୍ଣ୍ଣ ବିରୋଧକୁ ସେ ସାହସର ସହ ମୁକାବିଲା କରିଥିଲେ । ଏ ରଣ କ୍ଷେତ୍ରରେ ସମ୍ପୂର୍ଣ୍ଣ ଏକାକିନୀ ହୋଇ ମଧ୍ୟ ସେ ଅବିଚଳ ଭାବେ ଅଦ୍ଭୁତ ସାହସ ଦେଖାଇଥିଲେ । ଏକୋଇଶ ବର୍ଷ ବୟସରେ ତାଙ୍କର ଈଶ୍ୱର ଉପଲବ୍ଧିର ବାହ୍ୟ ପ୍ରକାଶ ହୋଇଥିଲା ଓ ବାଇଶ ବର୍ଷ ବୟସରେ ସେ ପରମ ସତ୍ୟର ଅନୁସନ୍ଧାନକାରୀ ମାନଙ୍କୁ ଆଧ୍ୟାତ୍ମିକ ମାର୍ଗରେ ଦୀକ୍ଷା ଦେବାକୁ ଆରମ୍ଭ କରିଥିଲେ । ସତେଇଶ ବର୍ଷରେ ପରମାରାଧ୍ୟା ଶ୍ରୀ ଶ୍ରୀ ମାତା ନିଜ ଜନ୍ମ ସ୍ଥଳୀରେ ତାଙ୍କ ଅନ୍ତଃରାଷ୍ଟ୍ରୀୟ ଆଧ୍ୟାତ୍ମିକ ମିଶନ ସ୍ଥାପନା କରିଥିଲେ । ପାଂଚ ବର୍ଷ ପରେ ଭାରତ ଓ ଦେଶ ବିଦେଶରେ କୋଡିଏଟି ଆଶ୍ରମର ଶାଖା ସ୍ଥାପିତ ହୋଇଥିଲା । ତେତ୍ରିଶ ବର୍ଷ ବୟସରେ ଆମେରିକା ଓ ୟୁରୋପର ଭକ୍ତ ମାନଙ୍କ ନିମନ୍ତ୍ରଣରେ ସେ ପ୍ରଥମ ବିଦେଶ ଯାତ୍ରା କରିଥିଲେ ଓ ପୃଥିବୀର ବିଭିନ୍ନ ପ୍ରାନ୍ତରେ ଲୋକଙ୍କୁ ପ୍ରେରଣା ଓ ଆଧ୍ୟାତ୍ମିକ ଉନ୍ନତି ଲାଗି ଉତ୍ସାହିତ କରିଥିଲେ । ସର୍ବୋପରି ସାରା ବିଶ୍ୱର ବିଭିନ୍ନ ସ୍ତରର ଅଗଣିତ ଲୋକଙ୍କୁ ସେ ଉପଦେଶ ଦେଇ, ଲୁହ ପୋଛି, ଚିନ୍ତାମୁକ୍ତ କରିଛନ୍ତି । ପାଠକେ, ଏପରି ବ୍ୟକ୍ତିଙ୍କର ପ୍ରକୃତ ସ୍ୱରୂପ କଣ ତାହା ନିରୂପଣ କରିବାର ଭାର ଆପଣଙ୍କ ଉପରେ ଛାଡି ଦିଆଗଲା ।

**ସ୍ୱାମୀ ଅମୃତସ୍ୱରୂପାନନ୍ଦ ପୁରୀ**

# କିମ୍ବଦନ୍ତୀ

ଦକ୍ଷିଣ ଭାରତର କେରଳ ରାଜ୍ୟରେ ଅବସ୍ଥିତ କ୍ୱିଲନ୍ ଜିଲ୍ଲାର ଆଲ୍ଲାପଦ ପଂଚାୟତରେ ପରୟାକଦାଭୁ ବୋଲି ଗୋଟିଏ ଗ୍ରାମ । ଧାଡି ଧାଡି ନଡିଆ ଗଛ ଭରିଥିବା ଏହି ଉପଦ୍ୱୀପଟିକୁ ପୂର୍ବ ଦିଗରେ ପଶ୍ଚାତ୍ ଜଳ କେନାଲ କ୍ୱିଲନ ଠାରୁ ବିଚ୍ଛିନ୍ନ କରିଛି, ଏବଂ ପଶ୍ଚିମ ଦିଗ ସବୁଜ ନୀଳ ଆରବ ମହାସାଗର ଦ୍ୱାରା ସୁଶୋଭିତ ।

ଏଇ ଗ୍ରାମର ଅଧିବାସୀମାନେ ସମସ୍ତେ ସରଳ କେଉଟ ଏବଂ ସେମାନେ ମହାଋଷି ପରାଶରଙ୍କର ବଂଶଧର ବୋଲି ଗର୍ବ ଅନୁଭବ କରନ୍ତି । ଏଠାକାର ଋଷି ପରାଶର ସତ୍ୟବତୀ କେଉଟୁଣୀକୁ ବିବାହ କରିଥିଲେ ଏବଂ ସତ୍ୟବତୀ ହେଉଛନ୍ତି ବେଦବିଷାରଦ ବେଦବ୍ୟାସଙ୍କର ମାତା । ଏହି ଗ୍ରାମର ଆଭିଜାତ୍ୟ, ଧର୍ମନିଷ୍ଠା ଓ ପରମ୍ପରା ନେଇ ଅନେକ କିମ୍ବଦନ୍ତୀ ଅଛି । ଏହି ଗ୍ରାମର ଅଧିବାସୀ ମାନଙ୍କର ଦୃଢବିଶ୍ୱାସ ଯେ ଆଜିର ଏହି ସବୁ ଘଟଣା ହଜାର ହଜାର ବର୍ଷତଳେ ସେହି ଗ୍ରାମରେ ଘଟିଥିଲା ।

ଏକଦା ମହାପ୍ରଭୁ ଶିବ ଓ ପାର୍ବତୀଙ୍କର ପୁତ୍ର ସୁବ୍ରମଣ୍ୟ ଗୋଟିଏ ବିଷମ କାର୍ଯ୍ୟ କରିଥିଲେ । ମହାପ୍ରଭୁ ଶିବ ପୁତ୍ରର ଦୁଃସାହସରେ କୋପାନ୍ୱିତ ହୋଇ ତାଙ୍କୁ ପୃଥିବୀ ପୃଷ୍ଠରେ ଜନ୍ମ ନେବାପାଇଁ ଅଭିଶାପ ଦେଇଥିଲେ । ମାତା ପାର୍ବତୀ ପୁତ୍ରର ଦୁର୍ଦ୍ଦଶାରେ ଦୁଃଖିତ ହୋଇ ସୁବ୍ରମଣ୍ୟଙ୍କୁ କ୍ଷମା କରିଦେବା ପାଇଁ ସ୍ୱାମୀଙ୍କୁ ଅନୁରୋଧ କରିଥିଲେ ।

ଶିବ ସାନ୍ତ୍ୱନା ନଦେଇ ଆହୁରି କ୍ରୋଧାନ୍ୱିତ ହୋଇ ପାର୍ବତୀଙ୍କୁ କେଉଟୁଣୀ ହୋଇ ଜନ୍ମ ହେବାଲାଗି ଅଭିଶାପ ଦେଇଥିଲେ । ତେବେ ଶାନ୍ତ ହେବାପରେ ସେ ପାର୍ବତୀ ଓ

ସୁବ୍ରମଣ୍ୟଙ୍କୁ ଆଶୀର୍ବାଦ କରି କହିଲେ ଯେ ସେ ସ୍ୱୟଂ ମର୍ତ୍ୟକୁ ଆସି ସେ ଦୁହିଙ୍କୁ ଉଦ୍ଧାର କରିବେ ।

ଶିବଙ୍କର ଅଭିଶାପର ଫଳ ସ୍ୱରୂପ ଶ୍ରୀ ସୁବ୍ରମଣ୍ୟ ଭୀଷଣ ଗର୍ଜନ ସହ ସମୁଦ୍ରରେ ମତ୍ସ୍ୟରୂପରେ ଆବିର୍ଭୁତ ହୋଇ ଧୀବର ମାନଙ୍କର ବହୁତ କ୍ଷତି କରିବାରେ ଲାଗିଲେ । ଧୀବରମାନେ ଆତଙ୍କିତ ହୋଇ, ଦିନ ରାତି କେବେହେଲେ ସମୁଦ୍ରକୁ ମାଛ ଧରିବାକୁ ଯାଇପାରିଲେ ନାହିଁ । ଏହି ବଡ ମାଛଟି ସେମାନଙ୍କର ଜାଲ ଛିଣ୍ଡାଇ ଦେଉଥିଲା, ନାଆ ଓଲଟାଇ ଦେଉଥିଲା । କ୍ରମେ ଧୀବରମାନେ ଗରିବ ହୋଇ ଭୋକ ଉପାସରେ ଦିନ କାଟିବାକୁ ଲାଗିଲେ ।

ଧୀବର ରାଜାଙ୍କୁ କୌଣସି ସମାଧାନର ଉପାୟ ମିଳିଲା ନାହିଁ । ଧୀବର ରାଜା ଘୋଷଣା କଲେ ଯେ ଏଇ ବିରାଟ ମାଛକୁ ଯିଏ ଧରି ପାରିବ ରାଜା ତାକୁ ଅନେକ ମଣି ମାଣିକ୍ୟ ଦେଇ ରାଜକନ୍ୟାଙ୍କ ସହ ବିବାହ ଦେବେ । ତଥାପି କେହି ହେଲେ ସେହି ଅସୁର ମାଛ ସହ ଯୁଦ୍ଧ କରିବାକୁ ଆଗେଇଲେ ନାହିଁ । ଏଇ ସମୟରେ ଖବର ପାଇ ଉତ୍ତରରୁ ଜଣେ ବୃଦ୍ଧ ଆସି ପହଂଚିଲେ । ତାଙ୍କୁ ସେଠାରେ କେହି ଜାଣି ନଥିଲେ । ରାଜାଙ୍କୁ ପ୍ରଣାମ କରି ସେ ଘୋଷଣା କଲେ ଯେ ସିଏ ଏହି ବିରାଟ ତିମି ମାଛକୁ ଧରିବେ ଓ ସମସ୍ତଙ୍କୁ ମହାବିପଦରୁ ଉଦ୍ଧାର କରିବେ । ବୃଦ୍ଧ ଏହା କହି ରାଜା ଏବଂ ପ୍ରଜାମାନଙ୍କ ଗହଣରେ ସମୁଦ୍ର ଦିଗକୁ ଅଗ୍ରସର ହେଲେ ।

ବୃଦ୍ଧ ଲମ୍ବ ଲତାଗୁଡିଏ ନେଇ ଦଉଡି ତିଆରି କଲେ ଓ ତାହାର ଗୋଟିଏ ମୁଣ୍ଡକୁ ସମୁଦ୍ର ଭିତରକୁ ଫିଙ୍ଗିଦେଇ ଆଉ ମୁଣ୍ଡଟିକୁ ଟାଣକରି ଧରି ରଖିଲେ । ଲତା ଦଉଡିଟି ବିଶାଳ ତିମି ମାଛ ପାଖରେ ପହଂଚି ତାକୁ ଗୁଡାଇବାକୁ ଆରମ୍ଭ କଲା । କୂଳରେ ବୃଦ୍ଧଙ୍କର କହିବା ଅନୁସାରେ ଧୀବରମାନେ ଗୋଟିଏ ମନ୍ତ୍ର ଜପକରି ଦଉଡିକୁ ଭିଡିବାକୁ ଆରମ୍ଭ କଲେ । ଏହିପରି ଧୀବର ମାନଙ୍କର ଘଂଟା ଘଂଟା ଧରି ମନ୍ତ୍ର ଜପ ସହ ଅଜସ୍ର ପରିଶ୍ରମ ପରେ ତିମିଟି କୂଳକୁ ଓଟାରି ହୋଇ ଆସିଲା । ତାପରେ ହଠାତ୍ ସେହି ତିମି ସମସ୍ତଙ୍କୁ ଚମତ୍କୃତ କରିଦେଇ ଉଭେଇଗଲା ଏବଂ ତା ସ୍ଥାନରେ ସେଠାରେ ପ୍ରଭୁ ସୁବ୍ରମଣ୍ୟ ଉଭା ହେଲେ । ସେ ଶିବଙ୍କର ଅଭିଶାପରୁ ମୁକ୍ତି ପାଇଲେ । ସେହି ସ୍ଥାନରେ ସୁବ୍ରମଣ୍ୟଙ୍କର ମନ୍ଦିର ତିଆରି ହେଲା । ଆଜି ମଧ୍ୟ ସେହି ମନ୍ଦିର ଏହି କିମ୍ବଦନ୍ତୀର ପ୍ରତୀକ ରୂପେ ଠିଆ ହୋଇଛି ।

ଏଣେ ବୃଦ୍ଧ ବେଶଧାରୀ ଶିବ ରାଜାଙ୍କୁ ତାଙ୍କର କନ୍ୟାର ବିବାହ ପାଇଁ ପ୍ରତିଜ୍ଞାବଦ୍ଧ ହୋଇଥିବା କଥା ସ୍ମରଣ କରାଇ ଦେଲେ, କିନ୍ତୁ ରାଜା ନିଜର ପ୍ରଜାଙ୍କ ହିତଲାଗି ଆଗେଇ ଆସିଥିବା ଏଇ ବ୍ୟକ୍ତିଟି ହାତରେ ଝିଅକୁ ବିବାହ ଦେବାଲାଗି ବର୍ତ୍ତମାନ ପଛଘୁଂଚା ଦେଲେ । ରାଜାଙ୍କ ସହିତ ପ୍ରଜାମାନେ ମଧ୍ୟ ଏ ପରିସ୍ଥିତିରେ ବିଚଳିତ ହୋଇପଡ଼ିଲେ । ଜଣେ ପିତା ପୁଣି ଜଣେ ରାଜା କେଉଁପରି ନିଜ ଅଲିଅଳୀ ଝିଅଟିକୁ ଜଣେ ବୁଢ଼ାଲୋକ ହାତରେ ଦେଇଦେବେ । ବୃଦ୍ଧଙ୍କୁ କନ୍ୟା ବଦଳରେ ଅନ୍ୟ ଯାହାକିଛି ବର ମାଗିବା ପାଇଁ ରାଜା ଅନୁରୋଧ କଲେ । କିନ୍ତୁ ବୃଦ୍ଧ ନିଜ ଜିଦ୍‌ରେ ଅଟଳ ରହି ଶାନ୍ତ ଚିତ୍ତରେ ରାଜାଙ୍କୁ ତାଙ୍କ ପ୍ରତିଜ୍ଞା ପାଳନ କଥା ମନେ ପକାଇ ଦେଲେ । ରାଜା ଦ୍ୱନ୍ଦ୍ୱରେ ପଡ଼ି ବିଚଳିତ ହେଲେ କାରଣ ସତ୍ୟରକ୍ଷା ପରମ ଧର୍ମ ବୋଲି ଧୀବର ମାନଙ୍କ ଦୃଢ଼ ବିଶ୍ୱାସ । ସେମାନେ ଭାବୁଥିଲେ ଯେ ସତ୍ୟରକ୍ଷା ନ କରିବାର ପରିଣାମ ହେଉଛି ମୃତ୍ୟୁର ଦ୍ୱାରରେ ନିଜକୁ ଉତ୍ସର୍ଗ କରିବା । ଏହି ସମୟରେ ରାଜାଙ୍କୁ ଚକିତ କରି ତାଙ୍କ କନ୍ୟା ସ୍ୱୟଂ ପାର୍ବତୀ ପିତାଙ୍କୁ କହିଲେ, "ହେ ପିତା ମହାରାଜ ! ସତ୍ୟରକ୍ଷା ଓ ଧର୍ମ ପାଳନ ହେଉଛି ସମସ୍ତଙ୍କର କର୍ତ୍ତବ୍ୟ । ଏହାର ଅନ୍ୟଥା ହେବା ଅନୁଚିତ" । ଦୁଃଖରେ ବିମର୍ଷ ରାଜା ବାଧ୍ୟ ହୋଇ ପାର୍ବତୀଙ୍କୁ ବୃଦ୍ଧଙ୍କ ସହ ଯିବାକୁ ଅନୁମତି ପ୍ରଦାନ କଲେ । ଏହିପରି ଶିବ ଓ ପାର୍ବତୀଙ୍କ ପୁନର୍ମିଳନ ହୋଇଥିଲା । ଦୁଃଖର ସହ ଧୀବରମାନେ ହରପାର୍ବତୀଙ୍କୁ ଅନୁସରଣ କଲେ ଏବଂ ପଚାରିଲେ "ଆପଣମାନେ କୁଆଡେ ଯାଉଛନ୍ତି ? ଆମ୍ଭେମାନେ ଆପଣମାନଙ୍କର ଅନୁଗାମୀ ହେବାକୁ ଚାହୁଁ ।" "ଆମମାନଙ୍କର ସେପରି କୌଣସି ନିଶ୍ଚିତ ରହିବାର ସ୍ଥାନ ନାହିଁ । ଆମେ ଯେଉଁଠାରେ ପହଂଚିବୁ ତାହାହିଁ ଆମର ରହିବାର ସ୍ଥାନ ବୋଲି ଭାବିବୁ ।" ଏପରି କହି ଶିବ ପାର୍ବତୀ ଆଗକୁ ଚାଲିଲେ ଓ ତାଙ୍କ ପଛେ ପଛେ ଧୀବର ମାନେ ଅନୁସରଣ କଲେ । ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ପହଂଚିବା ପରେ ଶିବ ପୂର୍ବକୁ ଓ ପାର୍ବତୀ ପଶ୍ଚିମକୁ ମୁହଁ କରି ଠିଆ ହେଲେ । ତାପରେ ଦୁହେଁ ପଥରର ମୂର୍ତ୍ତି ପାଲଟି ଗଲେ । ସେହି ସ୍ଥାନ ଚେଙ୍ଗାନୁର ନାମରେ ବର୍ତ୍ତମାନ ପରିଚିତ ।

ତାପରେ ସେଠାରେ ଗୋଟିଏ ମନ୍ଦିର ସ୍ଥାପନ ହେଲା । ସେଠାରେ ତଥାପି ଅଦ୍ଭୁତ ଘଟଣା ମାନ ଘଟିବାକୁ ଲାଗିଲା । ଯେତେବେଳେ ଠାକୁରଙ୍କ ପାଖକୁ ପୂଜା ପାଇଁ ପାଣି ଅଣାଗଲା, ପୂଜାରୀ ସବୁବେଳେ ସେ ପାଣିରେ ମାଛ ପାଇଲେ । ଏପରି

ଘଟଣା ପ୍ରତ୍ୟହ ଘଟିବାରୁ ପୂଜାକର୍ମ ହେବା ଅସମ୍ଭବ ହୋଇ ପଡିଲା । ଏହାର ସମାଧାନ ପାଇଁ ମନ୍ଦିରର ମୁଖିଆମାନେ ଜ୍ୟୋତିଷ ଗଣନା ଦ୍ୱାରା ଶିବ, ପାର୍ବତୀ ଓ ସୁବ୍ରମଣ୍ୟଙ୍କର ଅଭିଶାପ ବିଷୟରେ ଜାଣିପାରିଲେ, ଏବଂ ଏହା ମଧ୍ୟ ଜାଣିପାରିଲେ ଯେ ବୃଦ୍ଧ ଓ ରାଜଜେମାଙ୍କର ବିବାହ ବିଧିବତ୍ ସମ୍ପନ୍ନ ହୋଇନାହିଁ । ତାହାପରେ ଚେଙ୍ଗାନୁର ଓ ଆଲାପଦରେ ବିବାହର ଆୟୋଜନ କରାଗଲା । ପରମ୍ପରା ଅନୁଯାୟୀ ପାର୍ବତୀ ଧୀବର କନ୍ୟାରୂପେ ଜନ୍ମ ନେଇଥିବା ଆଲାପଦରୁ ଯାନି ଯୌତୁକ ନେଇ ଚେଙ୍ଗାନୁରକୁ ବିବାହ ଅନୁଷ୍ଠାନ ଲାଗି ଆସିବା କଥା । ତେଣୁ ସେ ଗ୍ରାମ ତରଫରୁ ସମସ୍ତ ବିବାହ ସାମଗ୍ରୀ ଓ ବରଯାତ୍ରୀଙ୍କ ସ୍ୱାଗତର ବନ୍ଦୋବସ୍ତ ହେଲା । ଆଲାପଦ ଗ୍ରାମରୁ ସମସ୍ତ ଗ୍ରାମବାସୀ ଏକାଠି ହୋଇ ବିବାହ ଉତ୍ସବ ପାଇଁ ଚେଙ୍ଗାନୁରକୁ ଆସିଲେ । ଏହି ପ୍ରଥା ଅନେକ ଦିନରୁ ଆଜି ପର୍ଯ୍ୟନ୍ତ ରହିଯାଇଛି । ମାତ୍ର ୨୦ ବର୍ଷ ତଳେ ଗୋଟିଏ ଘଟଣା ଘଟିଥିଲା । ଥରେ ଆଲାପଦ ଗ୍ରାମବାସୀମାନେ ଠିକ୍ କଲେ ଯେ ଏପରି ବାହାଘର ଦ୍ୱାରା ବହୁତ ପଇସା ଖର୍ଚ୍ଚ ହେଉଛି, ତେଣୁ ସେମାନେ ଚେଙ୍ଗାନୁର ଯିବା ବନ୍ଦ କରିଦେଲେ । ଏହାପରେ ଅଦ୍ଭୁତ ଘଟଣାମାନ ଘଟିବାକୁ ଲାଗିଲା । ଯେଉଁ ସୁସଜ୍ଜିତ ହାତୀଟି ଶିବଙ୍କର ମୂର୍ତ୍ତି ସହ ଶୋଭାଯାତ୍ରାରେ ଯାଏ ତାର ପାଦ ଆଉ ଚଳିଲା ନାହିଁ । ହାତୀଟିକୁ ଆଗକୁ ଚଲାଇବାର ସମସ୍ତ ଚେଷ୍ଟା ବିଫଳ ହେଲା । ସାଙ୍ଗେ ସାଙ୍ଗେ ଆଲାପଦକୁ ଖବର ଦିଆଗଲା । କିନ୍ତୁ ବିଳମ୍ବ ହୋଇଯାଇଥିଲା । ଏପରି ଅଶୁଭ ଘଟଣା ଯୋଗୁ ସେଠାରେ ଏତେବେଳକୁ ଚାରିଆଡେ ବସନ୍ତ ରୋଗ ମାଡି ଯାଇଥିଲା । ନିଜର ଭୁଲ୍ ବୁଝିପାରି ଗ୍ରାମବାସୀମାନେ ଚେଙ୍ଗାନୁରକୁ ଯାତ୍ରାକରି ପୁଣିଥରେ ବିବାହର ଆୟୋଜନ କରିଥିଲେ । ଏହି ଗ୍ରାମଟି ଆଜି ଜୀବନ୍ତ କିମ୍ବଦନ୍ତୀ ପାଲଟି ଯାଇଛି । ପ୍ରତିବର୍ଷ ଏହା ପର୍ବ ରୂପେ ପାଳିତ ହୋଇଥାଏ । ଏପରି ଏକ ପବିତ୍ର ସ୍ଥାନ ଏକ ଦୈବୀଲୀଳାର ପୃଷ୍ଠଭୂମି ପାଲଟି ଯିବା ଆଶ୍ଚର୍ଯ୍ୟ କଣ !

# ପ୍ରଥମ ଅଧ୍ୟାୟ

## ଆଜନ୍ମରୁ

ଆଜନ୍ମରୁ ମୋର ଭଗବତ୍ ନାମ ନେବା ପ୍ରତି ପ୍ରବଳ ଆଗ୍ରହ ଥିଲା । ମୁଁ ଭଗବାନଙ୍କର ନାମ ପ୍ରତ୍ୟେକ ନିଶ୍ୱାସରେ ଅନବରତ ନେଉଥିଲି ଏବଂ ଯେକୌଣସି ଜାଗାରେ ଥାଏ ନା କାହିଁକି ଭଗବତ୍ ଚିନ୍ତାଧାରା ଅବିରତ ମୋ ମନରେ ସ୍ରୋତପରି ବହି ଚାଲୁଥିଲା । ଅହରହ ଭଗବତ ନାମ ଜପ ପ୍ରେମ ଓ ଭକ୍ତି ସହ କରିପାରିଲେ ଯେ କୌଣସି ସାଧକର ଭଗବତ୍ ପ୍ରାପ୍ତି ହୋଇପାରିବ ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ତୀର୍ଥୀ କୁର୍ବନ୍ତି ତୀର୍ଥାଣି
ସୁକର୍ମୀ କୁର୍ବନ୍ତି କର୍ମାଣି
ସଚ୍ଛାସ୍ତ୍ରୀ କୁର୍ବନ୍ତି ଶାସ୍ତ୍ରାଣି ।

ମୋଦନ୍ତେ ପିତରୋ ନୃତ୍ୟନ୍ତି ଦେବତାଃ
ସନାଥା ଚେୟଂ ଭୂର୍ଭବତି ।

ମହାନ୍ ସନ୍ଥ ମାନେ ତୀର୍ଥସ୍ଥାନର ପବିତ୍ରତା ବଢାନ୍ତି, କର୍ମକୁ ନୈତିକ ଓ ଉତ୍ତମ କରନ୍ତି, ଏବଂ ଶାସ୍ତ୍ରକୁ ଆଧ୍ୟାତ୍ମିକ ଶକ୍ତି ପ୍ରଦାନ କରିଥାନ୍ତି । ଏପରି ଏକ ସନ୍ଥ ଯେବେ ଜନ୍ମ ନିଅନ୍ତି, ସେତେବେଳେ ପିତୃପୁରୁଷ ପ୍ରସନ୍ନ ହୁଅନ୍ତି, ଦେବତା ମାନେ ଆନନ୍ଦରେ ନୃତ୍ୟ କରନ୍ତି ଏବଂ ପୃଥିବୀ ଜଣେ ପରିତ୍ରାଣକାରୀ ପାଇଥାଏ ।

**ନାରଦ ଭକ୍ତିସୂତ୍ର, ଶ୍ଳୋକ ୬୯ - ୭୧**

## ବଂଶ ପରମ୍ପରା

ଇଦାମାନ୍ନେଲ ଗୋଟିଏ ପୁରାତନ ପରିବାର । ପରେ ପରୟାକଦାଭୁ ଗ୍ରାମଜମିର କିଛି ଅଂଶ ଆଲାପଦ ପଂଚାୟତର ଅନ୍ତର୍ଗତ ଥିଲା । ବଂଶବୃତ୍ତିରେ ଧୀବର ହୋଇଥିଲେ ମଧ୍ୟ ସେମାନେ ଅନ୍ୟାନ୍ୟ କାର୍ଯ୍ୟ ଭଲଭାବରେ କରିପାରୁଥିଲେ । ସେମାନଙ୍କର ଦୈନନ୍ଦିନ ଜୀବନ ଧାର୍ମିକ କାର୍ଯ୍ୟ ଓ ନାନାଦି ବ୍ରତ ଉପବାସରେ କଟୁଥିଲା । ଧୀବର

ମାନଙ୍କର ଧର୍ମନିଷ୍ଠା ବିଷୟରେ ସମସ୍ତେ ଜାଣିଥିଲେ । ସେମାନେ ସମୁଦ୍ରରୁ ମାଛ ନେଇ ଫେରିଲାବେଳେ କୂଳରେ ଅପେକ୍ଷା କରିଥିବା ଗ୍ରାମବାସୀ ମାନଙ୍କୁ ବିନା ପଇସାରେ ଆଗ ମାଛ ବାଂଟୁଥିଲେ । ତାପରେ ମାଛ ବିକ୍ରି ସରିଲା ପରେ ମୁଠାଏ ରେଜା ପଇସା ପିଲାଙ୍କୁ ବାଂଟି ଦେଉଥିଲେ ।

ଇଡାମାନ୍ନେଲ ପରିବାରରେ ଅନେକ ଧାର୍ମିକ ଲୋକ ଜନ୍ମ ଲାଭ କରିଥିଲେ । ସେହି ପରିବାରରେ ଜନ୍ମ ଶ୍ରୀ ବେଲାୟୁଧନ । ସେ ଦୟାଳୁ, ସତ୍ୟବାନ ଓ ଦାନୀ ଥିଲେ, ଏବଂ ଅହିଂସାରେ ପରମ ବିଶ୍ୱାସ କରୁଥିଲେ । ଏପରିକି ଛୋଟ ମୂଷାଟିଏ ମଧ୍ୟ ମାରିବାକୁ ଅଦେଶ ଦେଉନଥିଲେ । ବେଲାୟୁଧନ ଶ୍ରୀମତୀ ମାଧବୀଙ୍କୁ ବିବାହ କରିଥିଲେ । ଶ୍ରୀମତୀ ମାଧବୀ ଜଣେ ସାଧ୍ୱୀ ଓ ଦୟାଳୁ ମହିଳା ଥିଲେ ଓ ପ୍ରତ୍ୟହ ସୂର୍ଯ୍ୟୋଦୟର ଅନେକ ଆଗରୁ ଉଠି ସେ ସବୁ ମନ୍ଦିରର ଠାକୁର ମାନଙ୍କ ପାଇଁ ଫୁଲମାଳ ତିଆରି କରନ୍ତି । କାମ କରୁକରୁ ସେ ସବୁବେଳେ ଭଗବାନଙ୍କର ନାମ ଜପ କରନ୍ତି । ଏବେ ମଧ୍ୟ ତାଙ୍କ ଅଶି ବର୍ଷ ବୟସରେ ତାଙ୍କଠାରୁ ଠାକୁରଙ୍କର ନାମ ଜପି ମାଳ ଗୁନ୍ଥିବା ଦେଖାଯାଏ ।

ସୁଗୁଣାନନ୍ଦ ତାଙ୍କର ପାଂଚ ଜଣ ସନ୍ତାନ ଭିତରେ ସବୁଠାରୁ ବଡ । ଭକ୍ତିଭାବର ପରମ୍ପରା ମଧ୍ୟରେ ବଢି ସେ ମଧ୍ୟ କୃଷ୍ଣ ଭକ୍ତ ଥିଲେ । ନଅ ବର୍ଷ ବୟସରେ ସେ କେରଳର ଶାସ୍ତ୍ରୀୟ ନୃତ୍ୟ "କଥାକଳୀ" ଶିଖିଥିଲେ ଓ ଅଭିନୟ ମାଧ୍ୟମରେ ଦେବାଦେବୀ ମାନଙ୍କର ଲୀଳା ପରିବେଷଣ କରୁଥିଲେ । ଏହି କଳାକାର ମାନେ ମୁଦ୍ରା ମାଧ୍ୟମରେ ଗଳ୍ପ କହନ୍ତି ଏବଂ ଗାୟକମାନେ ସଂଗୀତ ସହ ଗଳ୍ପଟିକୁ ଶୁଣାନ୍ତି । ସୁଗୁଣାନନ୍ଦ ଥରେ କଥାକଳୀ ନୃତ୍ୟ ପରିବେଷଣ ସମୟରେ ଅତ୍ୟନ୍ତ ଭାବାବେଗରେ ଚେତାଶୂନ୍ୟ ହୋଇପଡିଥିଲେ । ତାଙ୍କ ଘରର ପରିବେଶ ଭାରି ସୁନ୍ଦର ଓ ଶାନ୍ତିମୟ ଥିଲା । ଜମିର ତିନିଭାଗରେ ପାଣି, ନଡିଆଗଛ ଓ ବୁଦାଗଛ ଭରି ରହିଥିଲା । ଆଖପାଖରେ ବେଶି ଘରଦ୍ୱାର ନଥିଲା । ସୁଗୁଣାନନ୍ଦ ଜଣେ ସଂପର୍କୀୟ ଭାଇ ସହ ସ୍କୁଲରୁ ଫେରି କାଜୁଗଛରେ ଚଢି, କାଜୁଫଳ ଖାଇବାକୁ ସବୁଠାରୁ ଭଲ ପାଆନ୍ତି । ଥରେ କାଜୁ ଫଳ ତୋଳୁତୋଳୁ ସେ ଜଣେ ଲମ୍ୱାଦାଢୀ ଓ ବାଳ ଥିବା ସନ୍ୟାସୀ ତାଙ୍କର ଗ୍ରାମକୁ ଆସୁଥିବାରୁ ଦେଖିଲେ । ସେମାନେ ତାଙ୍କୁ ଆଗରୁ କେବେ ଦେଖି ନଥିଲେ । କିଛି ସମୟ ବୁଲିଲାପରେ ହଠାତ୍ ସେ ଜୋର୍‌ରେ ଶିହରୀ ଉଠିଲେ ଏବଂ

ବଡପାଟିରେ କହିଲେ "ମୁଁ ଏଠି ଅନେକ ବଡ ବଡ ଯୋଗୀ ତପସ୍ୟା କରୁଥିବାର ଦେଖି ପାରୁଛି । ଅନେକ ଦିନ ପରେ ଏହି ମାଟିରେ ଅନେକ ମୁନିରଷିଙ୍କର ମୁକ୍ତି ହେବ" । ଏପରି କହି ସେ ଜୋରରେ ହରି ହରି ଜପି ନିଜବାଟରେ ଚାଲିଗଲେ । ସୁଗୁଣାନନ୍ଦ ଓ ତାଙ୍କ ଧର୍ମ ଭାଇ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ ।

କିଛି ବର୍ଷ ପରେ ସୁଗୁଣାନନ୍ଦ ମାଛ ବିକ୍ରି ଧନ୍ଦାରେ ଲାଗିପଡିଲେ । ତାଙ୍କ ୨୧ ବର୍ଷ ବୟସରେ ପାଖ ଭଣ୍ଡାରାତୁରୁତୁ ଗ୍ରାମର ୨୦ ବର୍ଷ ବୟସୀ ଦମୟନ୍ତୀଙ୍କ ସହ ବିବାହ ହୋଇଥିଲା । ଦମୟନ୍ତୀ ମଧ୍ୟ ଗୋଟିଏ ଧାର୍ମିକ ସୁସଂସ୍କୃତ ପରିବାରରୁ ଆସିଥିଲେ । ସେ ପ୍ରତ୍ୟହ ତାଙ୍କର ପୂଜାକର୍ମ ମନଦେଇ କରନ୍ତି । ଦମୟନ୍ତୀ ପିତା ଗୃହରେ ମଧ୍ୟ ଧାର୍ମିକ ବ୍ରତମାନ ପାଳନ କରୁଥିଲେ । ତାଙ୍କର ପିତା ପୁନୟନ ଓ ମାତା ବାଗୁଟାକୁନୀ ଅତ୍ୟନ୍ତ ଭଗବତ୍‌ପ୍ରେମୀ ଥିଲେ । ଧର୍ମପରାୟଣତା ଯୋଗୁଁ ତାଙ୍କୁ ଗ୍ରାମବାସୀମାନେ 'ପଜ୍ଞ ୍ ଆମା' ବା ବ୍ରାହ୍ମଣୀ ବୋଲି କହୁଥଲେ । ଭଗବାନଙ୍କ ପ୍ରତି ତାଙ୍କର ଐକାନ୍ତିକ ଭ‌୍ତିରେ ସେ ତିଥି ଅନୁଯାୟୀ ସବୁ ବ୍ରତ, ଓଷା ପାଳନ କରୁଥିଲେ । ସେ ଅନେକ ଉପବ‌ା କରୁଥିଲେ ଓ ଉପବାସ ଶେଷ ହେଲା ପରେ ପଇଡ ପାଣି ପିଉଥିଲେ । ସେତେବେଳେ ନଡିଆ ଗଛରୁ ଆପେ ଆପେ ପଇଡ ଖସି ପଡୁଥିଲା । ଦମୟନ୍ତୀ ଓ ସୁଗୁଣାନନ୍ଦଙ୍କର ତେରଟି ପିଲା ଜନ୍ମ ହୋଇଥିଲେ । ସେମାନଙ୍କ ଭିତରୁ ଚାରି ଜଣ ଜନ୍ମ ସମୟରେ, ଆଉ ଜଣେ ଜନ୍ମର ତେ୍ପନ ଦିନରେ ମରିଯାଇଥିଲେ, ବାକି ଚାରି ପୁଅ ଓ ଚାରି ଝିଅ ଥିଲେ । ସବୁଠୁ ବଡ ଝିଅ କସ୍ତୁରବାଇ, ତାଙ୍କ ତଳକୁ ସୁନୀଲକୁମାର, ସୁଧାମଣି, ସୁଗୁନାମ୍ମା, ସଜନୀ, ସୁରେଶକୁମାର, ସତୀଶକୁମାର ଓ ସୁଧୀରକୁମାର । ସବୁ ପିଲାଙ୍କ ମଧ୍ୟରୁ ସୁଧାମଣି ହିଁ ପୃଥିବୀର ମାତା ଅମୃତାନନ୍ଦମୟୀ ରୂପେ ପୃଥିବୀ ବିଖ୍ୟାତ ହେବା ବିଧି ନିର୍ଦ୍ଦେଶ ଥିଲା ।

ଦମୟନ୍ତୀଙ୍କର ଚତୁର୍ଥ ଗର୍ଭବାସ ସମୟରେ ଅନେକ ଦୈବୀ ଅନୁଭୂତି ହୋଇଥିଲା । ସମୟ ସମୟରେ ସେ ଶ୍ରୀକୃଷ୍ଣ, ଶିବ ଓ ଦୁର୍ଗାଙ୍କୁ ନେଇ ସୁନ୍ଦର ସୁନ୍ଦର ସ୍ୱପ୍ନ ଦେଖୁଥିଲେ । ଦମୟନ୍ତୀଙ୍କୁ ସ୍ୱପ୍ନ ହେଲା ଜଣେ କେହି ତାଙ୍କୁ ଏକ ସୁବର୍ଣ୍ଣ ଶ୍ରୀକୃଷ୍ଣଙ୍କୁ ସୁରକ୍ଷା ରେ ରଖିବାକୁ ଦେଇଯାଉଛନ୍ତି । ଠିକ୍ ସେହି ସମୟରେ ସୁଗୁଣାନନ୍ଦ ସ୍ୱପ୍ନରେ ଜଗଦମ୍ବାଙ୍କର ଦର୍ଶନ ପାଇଲେ ଏବଂ ସେ ଯେହେତୁ କୃଷ୍ଣ ଭକ୍ତ, ଜଗଦମ୍ବାଙ୍କୁ କାହିଁକି ସ୍ୱପ୍ନରେ ଦେଖିଲେ ବୁଝି ପାରିଲେ ନାହିଁ । ଦମୟନ୍ତୀଙ୍କ ସହ କଥା ହୋଇ ସେ ଜାଣି

ପାରିଲେ ଯେ ତାଙ୍କର ମଧ୍ୟ ଅନେକ ଦୈବୀ ଦର୍ଶନର ଅନୁଭୂତି ହୋଇଛି । ସେମାନେ ତାହାର ତାତ୍ପର୍ଯ୍ୟ କଣ ଜାଣି ପାରୁ ନଥିଲେ, ଓ ତାହା କୌଣସି ସୌଭାଗ୍ୟର ଦ୍ୟୋତକ କି ନା ତା ବି ବୁଝି ପାରୁନଥିଲେ ।

ସେତେବେଳେ ସୁଗୁଣାନନ୍ଦ ଓ ଦମୟନ୍ତୀ ସମୁଦ୍ରକୂଳରେ ମାଛଧରା ବ୍ୟବସାୟ ପାଇଁ ଗୋଟିଏ ଛୋଟିଆ କୁଡିଆରେ ରହୁଥିଲେ । ଇଦାମାନେଲ ପରିବାରର କୁଡିଆଟି ଗ୍ରାମ ଭିତରେ ଥିଲା । ପ୍ରଥମ ଗର୍ଭାବସ୍ଥାରେ ଦମୟନ୍ତୀଙ୍କର ଦେହ ପୁରା ଫୁଲି ଯାଉଥିଲା । ସେ ପ୍ରସବ ଆଗରୁ ଯତ୍ନ ପାଇଁ ବାପଘର ଗ୍ରାମ ଭଣ୍ଡାରତୁରୁତ୍ତୁକୁ ଚାଲି ଯାଉଥିଲେ । କିନ୍ତୁ ଏହି ଚତୁର୍ଥ ଗର୍ଭାବସ୍ଥାରେ ତାଙ୍କର ଦେହ ଫୁଲିଲା ନାହିଁ । ଥରେ ରାତିରେ ତାଙ୍କର ସ୍ୱ୍ନ ହେଲା ଯେ ସେ ଶ୍ରୀକୃଷ୍ଣଙ୍କୁ ଜନ୍ମ ଦେଇଛନ୍ତି । ତା ପରଦିନ ସମୁଦ୍ର କୂଳରେ କାମ କଲା ବେଳେ ତାଙ୍କର ମନେହେଲା ସେ ସେଇକ୍ଷଣି ପ୍ରସବ କରିବେ । ତେଣୁ ସେ ତରତରରେ ନଦୀ ପାରି ହେଇ ଗ୍ରାମ ଭିତରକୁ ଇଡାମାନ୍ନେଲ ପରିବାରର କୁଡିଆକୁ ଚାଲିଗଲେ । ଛୋଟିଆ କୁଡିଆରେ ପହଂଚି ସେ ପ୍ରସବ ପାଇଁ ଆୟୋଜନ କଲେ । ସେ ମଶିଣା ପକାଇ ଶୋଇବା ସାଙ୍ଗେ ସାଙ୍ଗେ ପିଲାଟି ଜନ୍ମ ହୋଇଯାଇଥିଲା । ଦମୟନ୍ତୀଙ୍କର କୌଣସି କଷ୍ଟ ହୋଇନଥିଲା । ଚାରିଆଡେ ଗୋଟିଏ ଅଦ୍ଭୁତ ଶାନ୍ତି ଉପଲବ୍ଧି ହୋଇଥିଲା । ଛୁଆଟି ଜମା କାନ୍ଦିଲା ନାହିଁ । ସନ୍ଦେହ ହେଲା ସେ କ'ଣ ବଂଚିଛି ? ଦମୟନ୍ତୀ ପିଲାଟିକୁ ପରୀକ୍ଷା କରିବାକୁ ଲାଗିଲେ । ବର୍ତ୍ତମାନ ସେ ଆହୁରି ଆଶ୍ଚର୍ଯ୍ୟ ହେଲେଯେ ଟିକିପିଲାଟି ର ମୁହଁରେ ଏକ ଦିବ୍ୟ ସ୍ମିତ ରହିଛି । ତାର ସେହି ଅନ୍ତରଭେଦୀ ଦୃଷ୍ଟି ଦମୟନ୍ତୀ କେବେ ଭୁଲିପାରିବେ ନାହିଁ ।

ଏହି ସମୟରେ ଆଉ ଜଣେ ପଡୋଶୀ ସ୍ତ୍ରୀ ଲୋକ ଆସି ପହଂଚିଗଲେ ଓ ମାଆ ଓ ଝିଅର ଦେଖାଚାହାଁ କରିବାକୁ ଲାଗିଲେ । ୧୯୫୩ ସେପ୍ଟେମ୍ବର ୨୭ ତାରିଖ ସକାଳୁ ମାତା ଅମୃତାନନ୍ଦମୟୀଙ୍କର ଆବିର୍ଭାବ ସମୁଦ୍ରକୂଳର ଏଇ ଛୋଟିଆ ନଡିଆ ବାହୁଙ୍ଗା ତିଆରି କୁଡିଆରେ ହୋଇଥିଲା ।

ବାପା ମା କୁନି ଝିଅଟିର ଗାଢନୀଳ ରଂଗ ଓ ଆଙ୍ଗୁଠିରେ ଯୋଗ ମୁଦ୍ରା ସହ (ବୁଢା ଆଙ୍ଗୁଠି ଓ ମଧ୍ୟମା ଆଙ୍ଗୁଠି ଏକାଠି ଛୁଇଁ) ପଦ୍ମାସନରେ ଥିବା ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ । ସେମାନେ ଭାବୁଥିଲେ ଯେ ଏଇ ଗାଢ ନୀଳ ରଙ୍ଗ କିଛି ଗୋଟିଏ ଅଜଣା ରୋଗର ଲକ୍ଷଣ ହୋଇପାରେ, ଓ ତାର ଶରୀରର ମୁଦ୍ରା କୌଣସି ଅସ୍ଥି ବିକୃତି

ଜନିତ ହୋଇଥାଇପାରେ । ସେଥିପାଇଁ ସେମାନେ ଅନେକ ଡାକ୍ତର ଦେଖାଇଥିଲେ । କିନ୍ତୁ ଡାକ୍ତରମାନେ ମଧ୍ୟ କୌଣସି ଶାରୀରିକ ଖୁଣ ଲକ୍ଷ୍ୟ କଲେ ନାହିଁ, ଝିଅଟି ପୁରା ସୁସ୍ଥ ବୋଲି କହିଲେ । ଚର୍ମର ନୀଳରଂଗ ବଂଶଗତ ଦୋଷ ବୋଲି କୁହାଯାଇ ପାରିବ ନାହିଁ କାରଣ ଦମୟନ୍ତୀ ଓ ସୁଗୁଣାନନ୍ଦ ଦୁହିଙ୍କର ରଙ୍ଗ ଉଜ୍ଜ୍ୱଳ ଶ୍ୟାମଳ ବର୍ଣ୍ଣ ଥିଲା । ଝିଅକୁ ଛଅମାସ ଯାଏ ଗାଧୋଇ ନ ଦିଆଯାଉ ବୋଲି ଉପଦେଶ ଦିଆଯାଇଥିଲା, କାଳେ ଏଇ ନୀଳବର୍ଣ୍ଣ ଚର୍ମ ଦୋଷଟା ଚାଲିଯିବ ।

ଛ ମାସ ଚାଲିଗଲା, ତେବେବି ଛୋଟ ଝିଅଟିକୁ ଦେଖିଲେ ଶ୍ରୀକୃଷ୍ଣ ଓ ମା କାଳୀଙ୍କର ଗାଢ ନୀଳବର୍ଣ୍ଣ ମନେ ପଡୁଥିଲା । ଆସ୍ତେ ଆସ୍ତେ ନୀଳବର୍ଣ୍ଣ ଗାଢ ଶ୍ୟାମଳ ବର୍ଣ୍ଣରେ ପରିଣତ ହେଲା । କିନ୍ତୁ ଯେତେବେଳେ ସାନ ଝିଅଟିର କୃଷ୍ଣଙ୍କୁ ଅନୁଭବ କରିବାପାଇଁ ଇଛା ହୁଏ, ସେତେବେଳେ ତା ରଙ୍ଗ ପୁଣି ନୀଳ ଦେଖାଯାଉଥିଲା । ବର୍ତ୍ତମାନ ମଧ୍ୟ ଦେବୀ ଭାବ ଓ କୃଷ୍ଣଭାବ ସମୟରେ ଅମ୍ମାଙ୍କର ମୁଖମଣ୍ଡଳରେ ନୀଳ ରଙ୍ଗ ପ୍ରଦର୍ଶିତ ହୁଏ ।

କିନ୍ତୁ ଦୁଃଖର ବିଷୟ ଯେ ଏଇ କଳା ନୀଳ ରଂଗ ଯୋଗୁଁହିଁ ଦମୟନ୍ତୀ ଓ ଅନ୍ୟାନ୍ୟ ପରିବାରର ଲୋକେ ତାଙ୍କୁ ଘୃଣା କରିବାକୁ ଆରମ୍ଭ କଲେ । ଏହି ଦୃଷ୍ଟିକଟୁ କଳା ଝିଅଟି ଘରର ବନ୍ଧୁବାନ୍ଧବଙ୍କ ପାଖରେ ଚାକର ପରି ଦଳିତ ହୋଇ ରହିଲା । ଏପରିକି ଝିଅଟିର ଜନ୍ମ ବି ଗୁରୁତ୍ୱହୀନ ଥିଲା ଓ ଅନେକ ବନ୍ଧୁବାନ୍ଧବଙ୍କୁ ଜଣା ନଥିଲା । ଦମୟନ୍ତୀର ଏ ଥିଲା ଚତୁର୍ଥ ଗର୍ଭ ଓ ତାଛଡା ଝିଅଟିର ରଙ୍ଗ ଥିଲା ଅଦ୍ଭୁତ ନୀଳ କଳା ।

କିଏବା ଭାବିଥିଲା ଆରବସାଗର କୂଳର କୁଡିଆରେ ଜନ୍ମ ଏଇ ଅଦ୍ଭୁତ ନୀଳ କଳା ରଙ୍ଗର ସଦା ହସମୁଖୀ ଝିଅଟି ଗୋଟିଏ ତେଜସ୍ୱିନୀ ପବିତ୍ର ଆତ୍ମା, ଯିଏ ପୃଥିବୀରେ ଶାନ୍ତି ଓ ଦୁଃଖୀ ଦରିଦ୍ରଙ୍କୁ ଉଦ୍ଧାର କରିବାକୁ ଧରାଧାମ କୁ ଆସିଛି । କିଏବା ଜାଣିଥିଲା ଏଇ ଛୋଟ ଝିଅଟି ଦିନେ ସାତ ସମୁଦ୍ର ପାରି ହୋଇ ଆସୁଥିବା ହଜାର ହଜାର ଲୋକଙ୍କୁ ଆଧ୍ୟାତ୍ମିକ ଜ୍ଞାନର ମାର୍ଗ ଦେଖାଇବ ।

ଜନ୍ମ ସମୟରୁ ଛୋଟ ଝିଅଟିର ପରିବାରର ଲୋକେ ଅନେକ ଅସାଧାରଣ ଲକ୍ଷଣ ସବୁ ଲକ୍ଷ୍ୟ କରୁଥିଲେ, ଯାହାକି ଅନେକ ବର୍ଷ ପରେ ବୁଝିପାରିଥିଲେ । ଛୋଟ ଝିଅଟି କୌଣସି ସାଧାରଣ ଶୈଶବର ଅବସ୍ଥା, ଯେପରିକି ପେଟେଇବା,

ଗୁରୁଣ୍ଡିବା, ଇତ୍ୟାଦି କରିନଥିଲା । ହଠାତ୍ ଛଅ ମାସ ବୟସରେ ସିଧା ଉଠି ବାରଣ୍ଡାରେ ଚାଲିବାକୁ ଆରମ୍ଭ କରିଥିଲା । ଠିକ୍ ତା ପରେ ପରେ ସେ ଦଉଡିବାକୁ ଆରମ୍ଭ କରିଥିଲା । ସମସ୍ତଙ୍କର ହୃଦୟରେ ଝିଅଟି ଅନାବିଳ ଆନନ୍ଦ ଭରିଦେଇଥିଲା ।

## ଅମୃତମୟ ମଣି

ଝିଅଟିର ନାମ ଦିଆଗଲା ସୁଧାମଣି ବା ଅମୃତମୟ ମଣି । ଛଅ ମାସ ହେଲାବେଳକୁ ସେ ଦରୋଟିରେ ମାତୃଭାଷା ମାଲାୟାଲାମ୍ ରେ କଥା ହେବା ଆରମ୍ଭ କରିଥିଲା । ଟିକିଏ ସ୍ପଷ୍ଟକରି କଥା କହି ଶିଖିବା ସଙ୍ଗେ ସଙ୍ଗେ ସେ ଭଜନ ମଧ୍ୟ ଗାଇପାରୁଥିଲା । କହିବା ବାହୁଲ୍ୟ ଯେ ପରିବାରବର୍ଗ ତାହା ଶୁଣି ଚକିତ ହୋଇଯାଉଥିଲେ । ଦୁଇବର୍ଷ ବୟସରେ ବିନା ଶିକ୍ଷାରେ ସେ ପ୍ରାର୍ଥନା ଓ ଭଜନ ଗାଇପାରୁଥିଲା । ପରବର୍ତ୍ତୀ ବର୍ଷ ରେ ସୁଧାମଣିର ସୁଲଳିତ ସ୍ୱରରେ ବଡପାଟିରେ ଭଗବାନଙ୍କ ନାମଜପ କରିବା ଅଭ୍ୟାସ ହୋଇ ଯାଇଥିଲା । ଆଜି ପର୍ଯ୍ୟନ୍ତ ସେହି ଅଖଣ୍ଡ ନାମ ଜପ ଜାରି ରହିଛି । ଚାରିବର୍ଷ ବୟସରେ ସେ ଧାଡିଏ ଦିଧାଡିର ଭଜନ ମାନ ରଚନା କରି ତାଙ୍କ ପାଖେ ଥିବା ଠାକୁରଙ୍କ ଛୋଟିଆ ଫଟୋଟି ଆଗରେ ଭକ୍ତି ଭାବରେ ଗାଉଥିଲା ।

ଆଜନ୍ମରୁ ସୁଧାମଣି ବିଜୁଳି ପରି ଅସାଧାରଣ ଶକ୍ତି ସମ୍ପନ୍ନା ଥିଲା । ତାର ମଧୁର ଆଜ୍ଞାଧୀନ ସ୍ୱଭାବ ଯୋଗୁ ଗ୍ରାମବାସୀମାନେ ତାକୁ ଭାରି ଭଲପାଉଥିଲେ । ଏପରିକି ଅଜଣା ଅଶୁଣା ଲୋକମାନେ ସୁଧାମଣି ପ୍ରତି ଅଦ୍ଭୁତ ଆକର୍ଷଣ ଅନୁଭବ କରୁଥିଲେ । ଭଗବାନଙ୍କ ପ୍ରତି ଶ୍ରଦ୍ଧା ଭକ୍ତି, ସମସ୍ତଙ୍କର ଦୁଃଖରେ ସଂଶ୍ଲିଷ୍ଟ ହେବା, ଓ ସାଧ୍ୱୀଭାବ ଅତି ବାଲ୍ୟାବସ୍ଥାରୁ ପ୍ରକଟ ହୋଇଥିଲା । ସାରାଗ୍ରାମର ଲୋକମାନେ ତାକୁ ସ୍ନେହରେ "କୁଞ୍ଜୁ" ବା କୁନିଝିଅ ବୋଲି ଡାକୁଥିଲେ । କିନ୍ତୁ ଅଦ୍ଭୁତ ଭାବରେ ପରେ ଏଇ ସବୁ ଈଶ୍ୱରୀୟ ଗୁଣ ଯୋଗୁ ହିଁ ତାଙ୍କୁ ନିଜର ପରିବାର ଓ ବନ୍ଧୁ ବାନ୍ଧବଙ୍କ ଠାରୁ ଭୀଷଣ ଅତ୍ୟାଚାର ଓ ଅପମାନ ସହନ କରିବାକୁ ପଡିଥିଲା ।

ପାଂଚବର୍ଷ ବୟସ ହେଲାବେଳକୁ ସୁଧାମଣିଠାରେ ଶ୍ରୀକୃଷ୍ଣଙ୍କ ଲାଗି ଏକ ଜନ୍ମଜାତ ଭକ୍ତି ର ସ୍ରୋତ ପରିଲକ୍ଷିତ ହୋଇଥିଲା ଓ ସେ କ୍ରମେ ହୃଦୟସ୍ପର୍ଶୀ ଭଜନ ମାନ ରଚନା କରି ଗାଇବାକୁ ଲାଗିଲା । ସାରାଗ୍ରାମର ଲୋକମାନେ ଏହି ଭକ୍ତିଭାବ ବିହ୍ୱଳ

ଭଜନ ଶୁଣି ଆନନ୍ଦ ଲାଭ କରୁଥିଲେ । ସେ କୃଷ୍ଣଙ୍କ ଫଟୋକୁ ସଦାସର୍ବଦା ନିଜର ଜାମା ପକେଟରେ ରଖିଥାନ୍ତି ଓ ସବୁବେଳେ ଫଟୋଟିକୁ ଅନେଇ ଏକ ଚିତ୍ତରେ ଜପ କରନ୍ତି କିମ୍ବା ଭଜନ ରଚନା କରି ଗାଉଥାନ୍ତି । ଗ୍ରାମର ଲୋକମାନେ ଏପରି ଭକ୍ତିଭାବ ଦେଖି ଆଶ୍ଚର୍ଯ୍ୟ ହେଉଥିଲେ ଓ ଅତି ପ୍ରାତଃ କାଳରୁ ସୁଧାମଣିଙ୍କର ନୂତନ ଭଜନର ଆବାହନ ଭଜନ ଶୁଣିବା ପାଇଁ ଉଠୁଥିଲେ ।

"ହେ କୃଷ୍ଣ ଗୋକୁଳ ରକ୍ଷକ
ଅଭିହିତ କୋମଳ ବାଳକ
ହେ କ୍ଷୀର ସମୁଦ୍ର ଶୟନ !
ନୀଳ ଶରୀର ମେଘ ବର୍ଣ୍ଣ
ପଦ୍ମ ନୟନ ଗିରିଧାରୀ
ପ୍ରଣାମ କରେ କର ଯୋଡି ॥
ପାପୀଙ୍କୁ କରି ଦିଅ ପାରି
ଦୁଃଖୀ ଙ୍କୁ ଢାଳ କୃପା ବାରି
ବଂଶୀଧାରୀ ହେ ପୀତବାସ
ମଲ୍ଲୀ ଗଜରା ପିନ୍ଧି ଆସ
ଅଧରେ ବଜାଅ ମୁରଲୀ
ଆହେ ପୁତନା ବଧକାରୀ
ଏ ପତିତକୁ ରକ୍ଷାକର......
କାଳୀୟ ଦଳନ ଗୋପାଳ !
ଗୋବର୍ଦ୍ଧନ ଗିରିଧାରୀ
ପାଦପଦ୍ମରେ ଦିଅ ତାରି
କଲୁଷ ଦୁଃଖ ଦୂର କର
ହେ କୃଷ୍ଣ ବ୍ରଜର କିଶୋର !.....

ଏହି ବିଷୟରେ ମଧ ତାଠାରେ ଅନେକ ଦୈବୀ ଗୁଣର ଆବିର୍ଭାବ ହେଉଥିଲା । ସାଙ୍ଗପିଲା ମାନଙ୍କ ସହ ଖେଳିଲା ବେଳେ ହଠାତ୍ ସେ ଅନ୍ତର୍ମୁଖୀ ହୋଇ ଯାଉଥିଲା । ଆଉ କେତେବେଳେ ପରିବାରର ଲୋକେ ଦେଖନ୍ତି ସେ ନିର୍ଜନ ଜାଗାରେ ବସି ଧ୍ୟାନ କରୁଛି । ଆଉ କେତେବେଳେ ବା ସେ ନଈର ପାଣିକୁ ବା ନୀଳ ଆକାଶକୁ ଘଂଟା ଘଂଟା ଧରି ଅନେଇ ବସିଛି । ଯେତେବେଳେ ତାକୁ ଡକା ହୁଏ ସେ ପୁରାପୁରି ଅନ୍ୟମନସ୍କ ଥାଏ ।

ବାପା ମା ଏହି ପରି ମାନସିକ ଅବସ୍ଥାକୁ ବୁଝି ନପାରି ତାକୁ ତିରସ୍କାର କରୁଥିଲେ । ଅନ୍ୟ ପିଲାଙ୍କ ପରି ଖେଳ କୁଦ କରିବାକୁ କହୁଥିଲେ । ତା ଜୀବନର ଭଗବତ୍ ପ୍ରେମକୁ ବୁଝି ନପାରିବା ଏହିଠାରୁ ହିଁ ଆରମ୍ଭ ହେଇଥିଲା । ସେମାନେ ଏହାକୁ କୌଣସି ଅସାଧାରଣ ମସ୍ତିଷ୍କ ବିକୃତିର ଲକ୍ଷଣ ବୋଲି ଭାବି ତାକୁ ହେୟଜ୍ଞାନ କରୁଥିଲେ ।

ସୁଧାମଣିଙ୍କ ପାଂଚ ବର୍ଷ ବୟସରେ ସେ ପାଖ ଗ୍ରାମର ଶ୍ରୟୀକାଦୁ ବିଦ୍ୟାଳୟରେ ଭର୍ତ୍ତି ହେଲା । ଏତେ କମ୍ ବୟସରେ ମଧ୍ୟ ସେ ତୀକ୍ଷ୍ଣ ବୁଦ୍ଧି ଓ ତେଜସ୍ୱୀତା ପ୍ରଦର୍ଶିତ କରିଥିଲା । ଥରେ ପାଠ ଶୁଣିଲେ ସେ ସବୁକିଛି ପୁରା ମନେ ରଖୁଥିଲା । ତାର ଅତି ତୀକ୍ଷ୍ଣ ସ୍ମରଣ ଶକ୍ତି ଥିଲା । ଦ୍ୱିତୀୟ ଶ୍ରେଣୀରେ ପଢିଲା ବେଳେ ଉପର ଶ୍ରେଣୀର ପାଠସବୁ କେବଳ ବଡପାଟିରେ ପଢାଯିବାର ଶୁଣି ସେ ନିର୍ଭୁଲରେ ମନେରଖି ପାରୁଥିଲା । ତାର ବଡ ଭାଇ, ଭଉଣୀ ଓ ବନ୍ଧୁମାନେ ପଦ୍ୟ ମୁଖସ୍ତ ପାଇଁ ଶିକ୍ଷକଙ୍କଠାରୁ ଶାସ୍ତି ପାଇଲାବେଳେ ସୁଧାମଣି ସବୁ ଅନର୍ଗଳ ଗାଇ ପାରୁଥଲା ଓ ଆବୃତ୍ତି କରି ପାରୁଥିଲା । ସବୁ ଶିକ୍ଷକମାନେ କୁଞ୍ଜୁର ସ୍ମରଣ ଶକ୍ତି ଦେଖି ଆଶ୍ଚର୍ଯ୍ୟ ହେଉଥିଲେ । ସବୁ ବିଷୟରେ ପୁରା ନମ୍ବର ଆଣି ସେ ଶ୍ରେଣୀରେ ପ୍ରଥମ ହେଉଥିଲା, ଯଦିଓ ଘରର କାମ ଦାମ ର ଚାପରେ ସବୁଦିନ ସେ ସ୍କୁଲକୁ ଯାଇପାରୁ ନଥିଲା ।

ସୁଧାମଣିର ଅସାଧାରଣ ସ୍ମରଣ ଶକ୍ତିର ଦୃଷ୍ଟାନ୍ତ ହେଲା, ଥରେ ସିଏ ଛଅମାସର ହୋଇଥିଲାବେଳେ ଦମୟନ୍ତୀ ତାକୁ ସୁଗଣାନନ୍ଦଙ୍କର ଦାୟିତ୍ୱରେ ରଖି ବାହାରକୁ ଯାଇଥିଲେ । ସୁଧାମଣି ଭୀଷଣ କାନ୍ଦିବାକୁ ଆରମ୍ଭ କଲା । ସୁଗୁଣାନନ୍ଦ ବ୍ୟତିବ୍ୟସ୍ତ ହୋଇ ବହୁତ ଶାନ୍ତ କରାଇବାକୁ ଚେଷ୍ଟାକଲେ । ଶେଷରେ ନପାରି ତାଙ୍କୁ ଖଟ ଉପରେ ଜୋର୍‌ରେ କଚାଡି ଦେଲେ । ଅନେକ ବର୍ଷ ପରେ ସୁଧାମଣି ସୁଗୁଣାନନ୍ଦଙ୍କୁ କହିଥିଲେ

"ମୋତେ ଆପଣ ଯେପରି ଭାବରେ ସେ ଦିନ ଖଟ ଉପରେ କଚାଡି ଦେଇଥିଲେ, ମୋତେ ମାରି ଦେଇଥାନ୍ତେ ।" ପ୍ରଥମେ ସୁଗୁଣାନନ୍ଦ ତାର ଅର୍ଥ ବୁଝି ପାରି ନଥିଲେ । ପରେ ସେଇ ପୁରୁଣା ଘଟଣାଟି ମନେପକାଇ ସୁଧାମଣିର ସ୍ମରଣ ଶକ୍ତି ଦେଖି ଆଶ୍ଚର୍ଯ୍ୟ ହୋଇଥିଲେ ।

ବିଦ୍ୟାଳୟରେ ସେ ଅତି କମ୍ ସମୟରେ ଶିକ୍ଷକମାନେ ଦେଇଥିବା ପାଠ ଶେଷ କରିଦିଏ । ତାପରେ ଘରକୁ ଆସି ସେହି ସମୟରେ ଭଜନ ଓ ଧ୍ୟାନ କରେ । ଘରକୁ ଫେରି ଛୋଟିଆ ଝିଅ ସୁଧାମଣି ମାଙ୍କୁ କାମରେ ସାହାଯ୍ୟ କରେ ଓ ତାପରେ ବାକି ସମୟ ଭଜନ ଗାଇ ନିଜକୁ ଭୁଲିଯାଏ । ପିଲା ବୟସରୁ ସୁଧାମଣି ସମୟର ସଦୁପଯୋଗ ପ୍ରତି ଖୁବ୍ ଧ୍ୟାନ ଦେଉଥିଲା । ସେ କେବେବି ଅଯଥା ସମୟ ନଷ୍ଟ କରେନାହିଁ । ଘର କାମ କରିବା ବେଳେ ସେ ଅନବରତ ଭଗବାନଙ୍କର ନାମ ଜପ କରେ ଓ ମନ ଭିତରେ କୃଷ୍ଣଙ୍କର ମୂର୍ତ୍ତିକୁ ସବୁବେଳେ ଦର୍ଶନ କରୁଥାଏ । କୁଞ୍ଜୁ ଦିବାରାତ୍ରି କୃଷ୍ଣ ନାମ ଜପ କରି ନିଜର ମନ ଓ ହୃଦୟରେ ଭଗବତ ପ୍ରେମର ଏକ ଜଗତ ସୃଷ୍ଟି କରିଥାଏ ।

ବାଲ୍ୟକାଳରେ ସୁଧାମଣିର ଘରେ ମାତ୍ର ଦୁଇଟି ଛୋଟ କୋଠରୀ ଓ ଗୋଟିଏ ରୋଷେଇ ଘର ଥିଲା । ରହିବାକୁ ଏତେ କମ ଜାଗା ଥିବାରୁ ସୁଗୁଣାନନ୍ଦ ଗୁହାଳ ପାଖରେ ଗୋଟିଏ ଛୋଟ କୋଠରୀ ତିଆରି କରିଥିଲେ । ତାହା ପିଲାମାନଙ୍କର ପଢାପଢି ପାଇଁ ବ୍ୟବହୃତ ହୁଏ । ସେଠାରେ ସୁଧାମଣି ଅନେକ ସମୟ ଭଜନରେ ମଗ୍ନ ରହୁଥିଲେ । ସେହି କୋଠରୀରେ ପୋଟିଚୀ ବୋଲି ଜଣେ ଭଣ୍ଡାରୁଣି ଓ ତାର ପୁଅ ମଧ୍ୟ ରହୁଥିଲେ । ସେମାନେ ନିରାଶ୍ରୟ ଥିଲେ, ସେଥିପାଇଁ ସୁଗୁଣାନନ୍ଦ ଦୟାକରି ସେମାନଙ୍କୁ ରହିବାକୁ ଜାଗା ଦେଇଥିଲେ । ପୋଟିଚୀ ସୁଧାମଣିକୁ ପିଲାବେଳେ କାଖେଇ କୋଳେଇ, ଦମୟନ୍ତୀଙ୍କ ଠାରୁ ମଧ୍ୟ ବେଶୀ ଆଦର ଯତ୍ନ ଦେଇଥିଲେ । ଏହି ପରି ଗୁହାଳ ପାଖରେ ରହି ସୁଧାମଣି ଭଜନ, ଧ୍ୟାନ କରେ ଓ କୃଷ୍ଣଙ୍କ ପରି ଗାଇ ମାନଙ୍କୁ ଭାରି ଭଲ ପାଏ । ଟିକିଏ ସମୟ ପାଇଲେ ସେ ଗାଈ ବାଛୁରୀଙ୍କ ପାଖରେ ବସି ଗୋପାଳ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରି କଳ୍ପନାରେ ଗୋପୀଙ୍କ ମେଳରେ ଯାଇ ପହଂଚିଯାଏ ।

ସୁଧାମଣିର ସ୍ନେହଶୀଳ ସ୍ୱଭାବ ଯୋଗୁଁ ତା ସଙ୍ଗେ ଖେଳିବା ପାଇଁ ପିଲାମାନେ ଇଡାମାନ୍ନେଲ ଗ୍ରାମକୁ ଆସୁଥିଲେ । ସେମାନେ ସମସ୍ତେ ଏକାଠି ମିଶି ଗାଈ ପାଇଁ ଘାସ

ଆଣିବାକୁ ଯାଆନ୍ତି । ଯଦିଓ ସେ ପିଲାମାନେ କଷ୍ଟ କାମ କରିବାକୁ କୁଣ୍ଠିତ ହେଉଥିଲେ, ତଥାପି ସୁଧାମଣି ସହ ସମୟ କଟାଇବା ପାଇଁ ତା ସହିତ ସାଙ୍ଗ ହେଉଥିଲେ । ସମସ୍ତେ ସୁଧାମଣିଙ୍କ ପ୍ରତି ଅଦ୍ଭୁତ ଆକର୍ଷଣ ଓ ଅନୁରାଗ ଅନୁଭବ କରନ୍ତି । ଗାଈଙ୍କ ପାଇଁ ଘାସ ସଂଗ୍ରହ ପରେ ସୁଧାମଣି ପିଲାମାନଙ୍କୁ ବିଭିନ୍ନ ଖେଳରେ ଲଗାଇ ରଖେ ଏବଂ ସେମାନଙ୍କୁ କୃଷ୍ଣଙ୍କର ଦୁଷ୍ଟାମୀ ଓ ଚତୁରପଣର ଲୀଳା ବିଷୟରେ ନାଟକ କରି ଦେଖାଏ । ତା ମନକୁ ଆସୁଥିବା ଭଜନ ମାନ ବଡ ପାଟିରେ ଗାଇବାକୁ ସେ ସମସ୍ତଙ୍କୁ ଉତ୍ସାହିତ କରେ ।

ସୁଧାମଣିର ଭଗବତ୍ ଆସକ୍ତି କେହିହେଲେ ବୁଝି ପାରୁନଥଲେ ଏବଂ ଧୀରେ ଧୀରେ ଏହି ଆସକ୍ତି ଘନୀଭୁତ ହେବାକୁ ଲାଗିଲା । ଏହି ଭଗବତ୍ ଆସକ୍ତିରେ ସେ ଆତ୍ମହରା ହୋଇ ଆଉ ଗୁହାଳରେ ରହିପାରିଲା ନାହିଁ । ବେଳେ ବେଳେ ତନ୍ମୟ ଭାବରେ ନିଜକୁ ଭୁଲି ଭଗବତ୍ ପ୍ରେମରେ ମତୁଆଲା ହୋଇ ସେ ଘୁରି ଘୁରି ନାଚିବାକୁ ଓ ଗାଇବାକୁ ଆରମ୍ଭ କଲା । ଏହି ଗୀତଟି ସୁଧାମଣି ସାତ ବର୍ଷ ବୟସରେ ଲେଖିଥିଲା ।

ଶରଣ ଦିଅ ହେ ମୋତେ ଗୁରୁବାୟୁର ଅଧିଶ୍ୱର
ହେ ବାଳ ଗୋପାଳ, ହେ ଜଗତ୍ ଈଶ୍ୱର ॥
ଲକ୍ଷ୍ମୀ ପତି ହେ ବିଶ୍ୱେଶ୍ୱର
ଏ ପତିତକୁ ରକ୍ଷାକର ।
ହେ କୃଷ୍ଣ – ରାଧା ପ୍ରିୟତମ
ହେ କୃଷ୍ଣ – ଗୋପୀଙ୍କ ମୋହନ
ହେ କୃଷ୍ଣ – ଯଶୋଦା ନନ୍ଦନ
ହେ କୃଷ୍ଣ – ଜୀବଙ୍କ ଜୀବନ ॥
ହେ କୃଷ୍ଣ ମୁରଲୀ ଅଧର
ଏ ପତିତକୁ ରକ୍ଷାକର ॥

ସୁଧାମଣିର ପରିବାର ଓ ପଡୋଶୀ ମାନେ ଏପରି ସ୍ୱର୍ଗୀୟ ଆତ୍ମହରା ଭାବର ଅର୍ଥ ବୁଝି ପାରୁ ନଥିଲେ ଓ ପିଲାଳିଆ ପାଗଳାମୀ ବୋଲି ଭାବୁଥିଲେ । କାହାର

କଳ୍ପନା ଥିଲା ଯେ ସାତବର୍ଷର ଝିଅଟିଏ କୌଣସି ଧର୍ମ ଶିକ୍ଷା ନପାଇ ଏପରି ଭଗବତ୍ ପ୍ରେମରେ ନିଜକୁ ସର୍ବଦା ହଜାଇ ରଖିବ ? ଥରେ ଦମୟନ୍ତୀ ସୁଧାମଣିକୁ ଅଗଣାରେ ନାଚିବାର ଦେଖି କହିଲେ "ଦେଖ ଆମ ଝିଅ କି ସୁନ୍ଦର ଦିଶୁଛି । ତାକୁ ଆମେ ନାଚ ଶିଖାଇବା କଥା" । ଅଜ୍ଞ ବାପା ମା ! ସେମାନେ କେବଳ ସାଂସାରିକ ନାଚ ବିଷୟରେ ଜାଣିଥିଲେ, ଭଗବତ୍ ପ୍ରେମରେ ମତୁଆଲା ହୋଇ ନାଚିବା ବିଷୟରେ ଶୁଣି ନଥିଲେ । ସେଠାରେ ମହାତ୍ମା ମାନଙ୍କର ଜୀବନୀ ଜାଣିଥିବା ଜ୍ଞାନୀ ଲୋକ ଯଦି କିଏ ରହୁଥାନ୍ତେ, ତେବେ ସେ ସୁଧାମଣିର ଭାବାବେଗକୁ ବୁଝି ପାରିଥାନ୍ତେ । ସେ ଜଣେ ଅବାଗିଆ ଓ ଅନ୍ୟମନସ୍କ ପିଲା ବୋଲି ସୁଧାମଣିର ପରିବାର ଲୋକେ ଧରି ନେଇ ଥିଲେ ।

ସୁଧାମଣିର ପରମାତ୍ମାଙ୍କ ଭିତରେ ଲୀନ ହୋଇଯିବାର ଇଚ୍ଛା ଦିନକୁ ଦିନ ଗଭୀର ହେବାକୁ ଲାଗିଲା । ସୁବିଧା ପାଇଲେ ଅନବରତ ପିନ୍ଧାଲୁଗା ଭିତରେ ଲୁଚାଇ ଥିବା କୃଷ୍ଣ ଫଟୋଟିକୁ ସେ ଅନାଇ ରହୁଥିଲା । ହୃଦୟର ବୁକୁଫଟା ଆବେଗ ନେଇ ସେ କାନ୍ଦି ଉଠି କହୁଥିଲା, "ହେ ମୋର ହୃଦୟ ବଲ୍ଲଭ କୃଷ୍ଣ, ମୁଁ ଚାରିଆଡେ ଆସି ଦୁଃଖ ଓ ଯନ୍ତ୍ରଣା ହିଁ ଦେଖୁଛି ! ହେ କୃଷ୍ଣ ! ଏହି ଛୋଟ ଝିଅଟିକୁ ଯେପରି ନ ଭୁଲି ଯାଅ । ମୁଁ ତୁମକୁ ସବୁବେଳେ ଡାକୁଛି !" ଏହି ଗୀତଟି ସୁଧାମଣି ଆଠ ବର୍ଷ ବୟସରେ ଲେଖିଥିଲା । ଏହି ପଦ୍ୟଟିରୁ ତାର ଆଧ୍ୟାତ୍ମିକ ଗଭୀରତାର ପ୍ରମାଣ ମିଳେ ।

ହେ କୃପାଳୁ ଦୟାର ସାଗର
ଶରଣ ତୁମରି ପୟର ॥
ତାତିଲା ମୋ ଲୁହ କାହାଣୀ
ପାରନା କି ହେ ତୁମେ ଜାଣି !
ହେ କୃଷ୍ଣ କାଳୀୟ ଦଳନ
ମୋହର ପୁଷ୍ପାଞ୍ଜଳି ଘେନ ॥
କୁରୁକ୍ଷେତ୍ରରେ ତୁମେ ଥିଲ
ଅର୍ଜୁନ ସାରଥୀ ସାଜିଲ ॥
ସତ୍ୟ ଧର୍ମର ରକ୍ଷା ପାଇଁ

ଆସିଲ ମର୍ତ୍ତ୍ୟକୁ ଓହ୍ଲାଇ ॥

ଆହେ ଗୀତାର ଭଗବାନ

ଗାଇବି ମୁହିଁ ତବ ଗାନ ॥

ଚରଣେ ଥାଉ ମୋର ଭକ୍ତି

ଦୀନକୁ ଦିଅ ଏହି ଶକ୍ତି ॥

ଟିକି ଝିଅଟିର ଉଦାସ ମୁହଁ ଏବଂ କରୁଣ ଜଣାଣ ଗ୍ରାମବାସୀମାନଙ୍କ ହୃଦୟକୁ ଅଭିଭୁତ କରିଦେଉଥିଲା । ତେବେ ସୁଦ୍ଧା ସୁଧାମଣିର ପ୍ରକୃତ ଜୀବନ ସମସ୍ତଙ୍କ ପାଖେ ଦୁର୍ବୋଧ ଥିଲା । ଏଡେ ସାନ ପିଲାଟିଏର ଏପରି ଭକ୍ତି ଭାବୋନ୍ମାଦ ଥିବା କଥା କିଏବା କଳ୍ପନା କରିପାରନ୍ତା ? ଏହାକୁ ସାଧୁ ସନ୍ଥ ଛଡା ସାଧାରଣ ମଣିଷ ବୁଝିବେ ବା କିପରି ?



# ଦ୍ୱିତୀୟ ଅଧ୍ୟାୟ

## ଈଶ୍ୱରଙ୍କ ଦାସୀ

ଅମ୍ମା ତୁମ ସମସ୍ତଙ୍କ ଦାସାନୁଦାସ  ସେ କୌଣସି ଗୋଟିଏ ଜାଗାରେ ରହିପାରେ ନାହିଁ । ତୁମ ହୃଦୟରେ ହିଁ ତାର ନିବାସ ।

**ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ**

କାମିନୀରିତିଃ ଯାମିନୀଷୁ ଖଲୁ କାମନୀୟକନିଧ ଭବାନ୍
ପୂର୍ଣସମ୍ମତ- ରସାର୍ଣବଂ କମପି ଯୋଗୀଗଣ୍ୟ-ମନୁଭାବୟନ୍ ।
ବ୍ରହ୍ମଶଙ୍କର- ମୁଖାନପୀହ ପଶୁପାଙ୍ଗନାସୁ ବହୁମାନୟନ୍
ଭକ୍ତଲୋକ-ଗମନୀୟରୂପ କମନୀୟ କୃଷ୍ଣ ପତିପାହି ମାମ୍ ॥

ହେ କମନୀୟତାର ନିଧୀ ! ଗଭୀର ରାତ୍ରିରେ ତୁମେ ପ୍ରେମ ବିହ୍ୱଳ ଗୋପୀଙ୍କୁ ଏପରି ଗହନ ଓ ତୀବ୍ର ରସସାଗର ର ଅବଗାହନ କରାଇଥାଅ, ଯାହା ସାଧୁ ସନ୍ଥଙ୍କୁ ହିଁ ମିଳିଥାଏ । ଏହିପରି ତୁମେ ସେହି ଗୋପୀମାନଙ୍କୁ ବ୍ରହ୍ମା ଓ ଶଙ୍କରଙ୍କର ମଧ୍ୟ ବନ୍ଦନୀୟା କରିଥାଅ । ହେ କମନୀୟ କୃଷ୍ଣ! ତୁମେ କେବଳ ଭକ୍ତଙ୍କ ଲାଗି ହିଁ ବୋଧଗମ୍ୟ । କୃପାକରି ମୋତେ ଉଦ୍ଧାର କର ।

ଶ୍ରୀମଦ୍ ନାରାୟଣୀୟମ୍

**ଅଧ୍ୟାୟ ୬୯, ଶ୍ଳୋକ -୧୧**

ନଅ ବର୍ଷ ବୟସରେ ସୁଧାମଣି ଚତୁର୍ଥ ଶ୍ରେଣୀରେ ପଢୁଥାନ୍ତି । ତାଙ୍କ ମାଙ୍କର ଦେହ ପ୍ରାୟ ଖରାପ ରହୁଥାଏ ଏବଂ ସେହି ସମୟରେ ସେ ଘରର ସବୁ ଗୃହ କର୍ମ ସମ୍ପାଦନ କରୁଥିଲେ । ସୂର୍ଯ୍ୟୋଦୟର ଅନେକ ପୂର୍ବରୁ ଉଠି ସେ ଘରର ଦୈନନ୍ଦିନ କାର୍ଯ୍ୟ ଶେଷକରି ତାପରେ ସ୍କୁଲକୁ ଯାଆନ୍ତି । ପୁଣି ଫେରି ଘରର ଯାହା ଯେତେ କାମ ସବୁ ଶେଷ କଲାପରେ ସେ ଜପ ଓ ଧ୍ୟାନରେ ବାକି ସମୟ କାଟନ୍ତି । ସବୁବେଳେ ସେଇ ଅମୁଲ୍ୟ କୃଷ୍ଣଙ୍କର ଛବିଟି ପାଖରେ ରଖି ସେ ସବୁକାମ କରନ୍ତି ଓ ତାକୁ ଅଜସ୍ର

ଚୁମ୍ବନ ଦେଇ କାନ୍ଦିକାନ୍ଦି ବୁକୁରେ ଜାବୁଡ଼ି ଧରନ୍ତି ।

ବେଳେବେଳେ ଦମୟନ୍ତୀ ସୁଧାମଣିଙ୍କୁ ଛାଡ଼ି ଦୂର ଜାଗାକୁ ପାଣି ଆଣିବାକୁ ଗଲାବେଳେ, ସୁଧାମଣି କାହାକୁ ନଜଣେଇ ଦମୟନ୍ତୀଙ୍କର କିଛି ସାହାଯ୍ୟ ଦରକାର ହୋଇପାରେ ଭାବି ତାଙ୍କ ପଛରେ ଲୁଚିଲୁଚି ଯାଆନ୍ତି, ଯଦି ଦମୟନ୍ତୀ ତାଙ୍କୁ ମନା କରନ୍ତି, ତେବେ ସୁଧାମଣି ପାଟିକରି ପ୍ରତିବାଦ କରୁଥିଲେ । ଦମୟନ୍ତୀ ଝିଅର ଜିଦ୍ ଦେଖି ବେଳେବେଳେ ଘର ଭିତରେ ତାଙ୍କୁ ତାଲାଦେଇ ଚାଲିଯାଉଥିଲେ । ଏପରିକି "ଭୂତ ଆସୁଛି, ତତେ ଡରେଇବ" କହି ଛୋଟିଆ ସୁଧାମଣିଙ୍କୁ ଡରାଇବାକୁ ଚେଷ୍ଟା କରୁଥିଲେ । କିନ୍ତୁ ସୁଧାମଣିଙ୍କୁ କିଏବା ଡରେଇ ପାରିବ ! ଗ୍ରାମବାସୀ ଛୋଟ ଝିଅଟିର ନିର୍ଭୀକତା ଦେଖି ତାକୁ ଆହୁରି ବେଶୀ ଶ୍ରଦ୍ଧା କରୁଥିଲେ ।

ଯେତେବେଳେ ପିଲାମାନେ ଅତି ଦୁଃଷ୍ଟାମୀ ଓ ଅବାଧ ହେଉଥିଲେ, ଗ୍ରାମରେ ସ୍ତ୍ରୀ ଲୋକେ ପିଲାମାନଙ୍କୁ ଡରାଉଥିଲେ । ସେତେବେଳେ ବାପା ମା ମାନେ ଜଣେ ସ୍ତ୍ରୀଲୋକଙ୍କୁ ଡାକି ପିଲାମାନଙ୍କୁ ଡରାଇବାକୁ ବାଧ କରାଉଥିଲେ । ତାଙ୍କର ନାଁ ଆପିସିଲ୍ ଅମ୍ମା, ବେଳେବେଳେ ତାଙ୍କୁ ଇଦାମାନେଲ ଗ୍ରାମକୁ ସୁଧାମଣିଙ୍କୁ ଡରାଇବା ପାଇଁ ଡକାହେଉଥିଲା । ଅପବାଦ ପାଇଥିବା ସ୍ତ୍ରୀ ଲୋକଟି ସୁଧାମଣି ବସିଥିବା ଝରକା ବାହାରେ ମୁଣ୍ଡରେ ଅଖାର ବସ୍ତା ଘୋଡାଇ ଆସି ଭୟଙ୍କର ଅଟ୍ଟହାସ୍ୟ କରେ, କିନ୍ତୁ ଝରକାବାଟେ କୁଞ୍ଜୁ ତାଙ୍କୁ ବଡ ପାଟିରେ କହେ "ଏଠୁ ଚାଲିଯା, ମୁଁ ଜାଣେ ତୁ କିଏ । ମୁଁ ଜାଣେ ତୁମେ ଆପିସିଲ୍ ଆମ୍ମା ! ମତେ ଡରେଇବାକୁ ଚେଷ୍ଟା କରନାହିଁ " ।

ନିଜକୁ ପରିତ୍ୟକ୍ତ ମନେ କରି ସୁଧାମଣି ଖାଲି ତାର ପ୍ରିୟ କୃଷ୍ଣଙ୍କୁ ଡାକନ୍ତି । କ୍ରମେ ଗ୍ରାମବାସୀ ମାନେ ଭାବିଲେ ସେ ଭୌତିକ ଦୁନିଆ ସହ ସଂପୃକ୍ତ ବୋଲି । ସେମାନେ ଏହି ଝିଅଟିର ଦୁଃଖକୁ ବୁଝି ପାରୁନଥିଲେ । "ଆହା ବିଚରା ଝିଅଟି ! ତାର କଣ ହେଲା ? ସେ କାହିଁକି ସବୁବେଳେ କାନ୍ଦୁଛି ? ତାର ଜମା ଲୁହ ଶୁଖୁନାହିଁ ! ତାକୁ କ'ଣ ତାର ପରିବାର ଅବହେଳା କରୁଛନ୍ତି ? ତାର କର୍ମରେ ଏପରି ଦୁଃଖ କାହିଁକି ଅଛି !"

ସମସ୍ତେ ସୁଧାମଣିଙ୍କୁ ଦୟା ଦେଖାଇ ସାନ୍ତ୍ୱନା ଦେବାକୁ ଆରମ୍ଭ କଲେ । କିଏ ବା ଜାଣିଥିଲା ଯେ ଗୋପୀମାନଙ୍କର ପ୍ରାଣ ବଲ୍ଲଭ କୃଷ୍ଣ ହିଁ ତାର ଭଗବତ୍ ପ୍ରାପ୍ତିର

ପ୍ରବଳ ତୃଷ୍ଣା ମେଂଟାଇ ପାରିବେ ? ସୁଧାମଣିର ସମସ୍ତଙ୍କ ପ୍ରତି ସମଦୃଷ୍ଟି, ଉଦାର ଚରିତ୍ର, ସମସ୍ତଙ୍କ ପ୍ରତି ଦୟା ଗ୍ରାମବାସୀ ମାନଙ୍କୁ ବଶ କରିଦେଇଥିଲା । ଭାଗ୍ୟବାନ ଗ୍ରାମବାସୀ ତା ପାଖରେ ନିଜର ହୃଦୟ ଖୋଲି ଦେଉଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ତାଙ୍କ ନିଜ ପରିବାରର ଲୋକମାନେ ସେପରି ଗ୍ରହଣ କରିପାରିନଥିଲେ । ସୁଧାମଣିଙ୍କ ମା ଓ ବଡ ଭାଇ ତାଙ୍କ ଏପରି ଅଲଗା ହାବଭାବ ଦେଖି ଭାରୀ ଅସନ୍ତୁଷ୍ଟ ହେଉଥିଲେ ।

ଏହା ଭିତରେ ଆଉ ପାଂଚୋଟି ଛୁଆ ଜନ୍ମ ହୋଇ ଦମୟନ୍ତୀଙ୍କର ସ୍ୱାସ୍ଥ୍ୟ ପୁରା ନଷ୍ଟ ହୋଇଯାଇଥିଲା । ତାଙ୍କର କୌଣସି ଘର କାମ କରିବାର ଶକ୍ତି ନଥିଲା । ବର୍ତ୍ତମାନ ଘରର ପୁରାପୁରି କାମ ସୁଧାମଣିଙ୍କର ଦାୟିତ୍ୱ ହୋଇଗଲା । ବଡ ଝିଅ କସ୍ତୁରୀ ପାଖ କଲେଜରେ ଓ ସୁଭଗନ୍ ବଡ ପୁଅ ସ୍କୁଲରେ ପଢୁଥିଲେ । ସୁଧାମଣିର ଯାତନା ବଢିବାକୁ ଲାଗିଲା । ସେ ଭୋର ତିନିଟାରୁ ଉଠି, ଘରଦ୍ୱାର ଓ ବାହାର ବାଡି ଅଗଣା ଝାଡୁ ପୋଛା କରିବା, ପାଣି ଆଣିବା, ଗୁହାଳ ସଫା, ଗାଈ ଦୁହାଁ, ଲୁଗା ସଫା, ରନ୍ଧାବଢା, ବାସନ ଧୁଆ ଇତ୍ୟାଦି କାର୍ଯ୍ୟ ସଂପାଦନ କରିବାରେ ଲାଗିଯାଏ ।

ସାନ ପିଲାଟିଏ ପାଇଁ ଏପରି ସାରାଦିନର ଏତେ କାମ ବଡ ଦୁଃସହ ହୋଇପଡୁଥିଲା । ଖାଲି ଗାଈ, କୁକୁଡାଙ୍କର ସବୁ କାମ ପାଇଁ ଗୋଟିଏ ଲୋକ ଦରକାର ହୁଅନ୍ତା । ତଥାପି ସୁଧାମଣି ଧୈର୍ଯ୍ୟ ସହକାରେ ଆପତ୍ତି ନକରି ସବୁ କାମ ନିଜେ କରୁଥିଲେ । ଏହି ସମୟରେ ତାଙ୍କର ପାଠପଢା ପ୍ରାୟ ବନ୍ଦ ହେବା ଉପରେ । ଘରକାମର ଚାପରେ ଛୋଟ ଝିଅଟି ଆଉ ସ୍କୁଲକୁ ଠିକ୍ ସମୟରେ ଯାଇପାରେ ନାହିଁ ।

ସମୟ ସମୟରେ ସେ ଘରକାମ କୌଣସିମତେ ଶେଷ କରି ଦଉଡି ସ୍କୁଲରେ ପହଂଚିଲାବେଳକୁ, କ୍ଲାସ ଆରମ୍ଭ ହୋଇଯାଇଥାଏ । ଶିକ୍ଷକ ଏପରି ଡେରିରେ ଆସିବା ଦେଖି ତାକୁ ବାହାରେ ଠିଆ କରି ଶାସ୍ତି ଦିଅନ୍ତି । ଯଦିଓ ସୁଧାମଣି ବାହାରେ ଠିଆ ହୋଇ ରହନ୍ତି, ଭିତରେ ପଢା ହେଉଥିବା ପାଠକୁ ସେ ମନ ଦେଇ ଶୁଣୁଥାନ୍ତି । ଏପରି ଭାବରେ ସେ କୌଣସି ମତେ ଚତୁର୍ଥ ଶ୍ରେଣୀ ଶେଷ କରିଦେଲେ ।

ପଂଚମ ଶ୍ରେଣୀରେ ସୁଧାମଣିଙ୍କୁ ଅଜସ୍ର ଘର କାମ ଯୋଗୁଁ ପାଠ ପଢା ଛାଡିବାକୁ ପଡିଲା । ଅତି ଭୋରରୁ ଅନେକ ରାତିଯାଏ ଗୋଟିଏ ପରେ ଗୋଟିଏ କାମ ଲାଗି ରହିଥାଏ । ସେଇ କାମ ମଧ୍ୟରେ ହିଁ ସେ ତାଙ୍କ ପ୍ରିୟତମ କୃଷ୍ଣ ନାମ ଭଜନ କରୁଥାନ୍ତି ।

ଏପରି କରୁ କରୁ ସେ ବାହ୍ୟ ଜଗତର ସବୁ ଜ୍ଞାନ ହରାଇ ବସନ୍ତି ।

ସୁଧାମଣିଙ୍କୁ ଅତି ଭୋରୁ ଉଠିବାକୁ ହୁଏ । କେବେକେବେ ଅତି କ୍ଳାନ୍ତ ହୋଇ ଟିକେ ଅଧିକା ଶୋଇ ପଡିଲେ, ଦମୟନ୍ତୀ ତାଙ୍କ ଉପରେ ବାଲଟିଏ ଥଣ୍ଡା ପାଣି ଅଜାଡି ଦିଅନ୍ତି । ପ୍ରଥମେ ନିଦରୁ ଉଠି ନଡିଆ କତାରୁ ଦଉଡି ତିଆରି କରିବା ପାଇଁ ପିଟି ନରମ କରିବାକୁ ହୁଏ । ତାପରେ ଘରଦ୍ୱାର, ଅଗଣା ସଫା କରିସାରି କଳରୁ ପିଇବା ପାଣି ଆଣିବାକୁ ଦୂରବାଟ ଯିବାକୁ ହୁଏ । ତାପରେ ବାସନ କୁସନ ଧୁଆ, ରନ୍ଧାବଢା, ସାନ ଭାଇଭଉଣୀଙ୍କୁ ସ୍କୁଲକୁ ଯିବାପାଇଁ ପ୍ରସ୍ତୁତ କରିବା କାମ ସୁଧାମଣିଙ୍କୁ କରିବାକୁ ହୁଏ । ସେମାନେ ସ୍କୁଲ ଗଲାପରେ ଗାଈମାନଙ୍କୁ ଗାଧୋଇ ଦେବା, ଗୁହାଳସଫା, ଗାଈଙ୍କୁ କୁଣ୍ଡା ତୋରାଣି ଦବା, ମଧ୍ୟାହ୍ନ ଭୋଜନର ବାସନ ଧୁଆ, ଘରର ସମସ୍ତଙ୍କର ଲୁଗା ସଫା କରି ଶୁଖେଇବା ଓ ଗାଈର ଘାସ କାଟି ଆଣି ଆସିଲା ବେଳକୁ ଚାରିଟା ବାଜି ଯାଉଥିଲା । ସେତେବେଳେକୁ ଭାଇଭଉଣୀ ସବୁ ସ୍କୁଲରୁ ଫେରନ୍ତି । ସୁଧାମଣି ସେମାନଙ୍କ ପାଇଁ ଚା ଜଳଖିଆ ଇତ୍ୟାଦି କରନ୍ତି । ପଡୋଶୀମାନଙ୍କ ଘରୁ ଗାଈଙ୍କ ପାଇଁ ତୋରାଣି, ପରିବା ଚୋପା ଆଣିବାକୁ ବି ଯାଆନ୍ତି । ତାଛଡା ଦମୟନ୍ତୀଙ୍କର କଡା ଆଦେଶ ଥିଲା, ପଡୋଶୀ ମାନଙ୍କ ଘରେ ଯଦି କିଛି କାମ ବାକି ଥାଏ ସେଥିରେ ସାହାଯ୍ୟ କରିବାପାଇଁ । ତାପରେ ଘରକୁ ଫେରି ଏହି ଛୋଟ ଝିଅଟି ରାତିର ଖାଇବା ତିଆରି କରେ ଓ ଖାଇବାପରେ ବିନା ସାହାଯ୍ୟରେ ସବୁ ବାସନ ସଫା କରି ରଖେ ।

ଏତେବେଳକୁ ସୁଧାମଣି ଘରର ଚାକରାଣୀର ସ୍ଥାନ ନେଇ ସାରିଥିଲେ । ଘରର ସବୁ ଦାୟିତ୍ୱ ତାଙ୍କର ବୋଲି ସମସ୍ତେ ମନେ କରୁଥିଲେ । ତା ଛଡା ଦମୟନ୍ତୀ ତାର ସବୁ କାମ ତଦାରଖ କରୁଥିଲେ । ଟିକିଏ ଭୁଲ ହେଲେ ତତ୍‌କ୍ଷଣାତ୍ ଶାସ୍ତି ଦେଉଥିଲେ ।

ସୁଧାମଣିଙ୍କ କୃଷ୍ଣ ହିଁ ପରମ ସଖାଥିଲେ । ତାଙ୍କ ନାମ ହିଁ ତାଙ୍କର ପରମ ସାନ୍ତ୍ୱନା ଥିଲା । କାମ କରୁ କରୁ କୃଷ୍ଣଙ୍କର ଭାବନାର ଏକାଗ୍ରତା ରେ ତାଙ୍କର ଆଖି ସଜଳ ହୋଇ ଉଠେ । ସେ କୃଷ୍ଣଙ୍କୁ ସ୍ମରଣ କରି ଘଂଟା ଘଂଟା ଧରି କାନ୍ଦନ୍ତି ।

ରାତି ଏଗାରଟା ବେଳକୁ ସୁଧାମଣିଙ୍କ ଦିନ ଶେଷ ହେଉଥିଲା । ଏହି ନିରୀହ ଝିଅଟିକୁ ବିଶ୍ରାମ ପାଇଁ ସମୟ ମିଳେ ନାହିଁ । ତେବେବି ଖଟରେ ପଡିରହିବାକୁ କିମ୍ବା

ଶୋଇବାକୁ ତାଙ୍କର ଇଚ୍ଛା ହେଉନଥିଲା । ଯେତେବେଳେ ସାରା ପରିବାର ନିଘୋଡ ନିଦରେ ଶୋଇ ରହନ୍ତି ତାଙ୍କର ଇଚ୍ଛା ହୁଏ ଖାଲି "କୃଷ୍ଣ କୃଷ୍ଣ" ଭାବରେ ବିହ୍ୱଳ ରହିବାକୁ । ସେ ଛୋଟ ପୂଜା ଘରଟିରେ ବସି କୃଷ୍ଣଙ୍କ ଭଜନ ଗାଇବା ଆରମ୍ଭ କରି ଦିଅନ୍ତି । ଘୋର ଅନ୍ଧାର ରାତିରେ ସୁଧାମଣି କୃଷ୍ଣ ଦର୍ଶନର ବଳବତୀ ଇଚ୍ଛାରେ କାନ୍ଦି କାନ୍ଦି ଶେଷରେ ଶୋଇ ପଡନ୍ତି ।

କୃପାବାରି ଢାଳ ଆହେ କରୁଣାସାଗର
ଭକତ ବତ୍ସ ଳ ବାନା ଉଡଇ ତୋହର ॥
ଦେହ, ମନ, ଧ୍ୟାନ ସବୁ ଅରପିଛି ତୋତେ
ବୈକୁଣ୍ଠ ବିହାରୀ ବିଷ୍ଣୁ ରକ୍ଷାକର ମୋତେ ॥

ହେ ବ୍ରଜବିହାରୀ କୃଷ୍ଣ, ପତିତପାବନ
କେଉଁ ଦୋଷେ ହେଲୁ ପ୍ରଭୁ ଏଡେ କୃପାହୀନ ॥
ସ୍ୱର୍ଣ୍ଣ ମନ୍ଦିରେ ପ୍ରଭୁ ନିଶି ଦିନ ରହି
ଦୀନଦୁଃଖୀ ଲୁହ କି ତୋ ଆଖିକୁ ନ ଦିଶଇ ॥

ଭକତ ବତ୍ସଳ ଆହେ ଦୟାର ବାରିଧି
ତୋ ଚରଣେ ରହିଥାଉ ମୋର ପ୍ରାଣନିଧି ॥

ସେତେବେଳେ ମଧ୍ୟ ସୁଧାମଣି ଏତେ ଭାବ ବିହ୍ୱଳ ଥିଲେ ଯେ କୃଷ୍ଣ ଛବି ଦେଖିଲେ କିମ୍ବା ଭଜନ ଶୁଣିଲେ ସାଙ୍ଗେ ସାଙ୍ଗେ ଗଦ୍‌ଗଦ ହୋଇଯାଉଥିଲେ । ଥରେ ବଜାରରୁ କିଛି ଜିନିଷ କିଣି ଫେରିଲା ବେଳେ ସୁଧାମଣି ଦୂରରୁ ଭଜନ ଶୁଣିବାକୁ ପାଇଲେ । ଭଜନ ପ୍ରତି ଆକୃଷ୍ଟ ହୋଇ ଫେରି ସେ ଅର୍ଦ୍ଧ ଚେତନ ଅବସ୍ଥାରେ ସେଇ ଦିଗକୁ ଯିବା ଆରମ୍ଭ କଲେ । ଦେଖିଲେ ଗୋଟିଏ ଖ୍ରୀଷ୍ଟିଆନ୍ ଘରୁ ଜୋରରେ କରୁଣ କାନ୍ଦଣା ଆସୁଛି । ସେଦିନ ସେଇଘରେ ଜଣଙ୍କର ମୃତ୍ୟୁ ହେଇଥିଲା । ବନ୍ଧୁ ବାନ୍ଧବମାନେ ମୃତ ଶରୀରର ଚାରିପାଖେ ବସି ଦୁଃଖରେ ଭଜନ ଗାଉଥିଲେ । ଛୋଟିଆ ସୁଧାମଣି କରୁଣ ଭଜନ ଶୁଣି ଗୋଟିଏ ଯାଗାରେ ପଥର ପରି ଠିଆ ହେଇ ଭଗବତ୍ ଚିନ୍ତାରେ ମଗ୍ନ ହୋଇଗଲେ । ଆଖି ବନ୍ଦ ହୋଇ ଲୁହର ଧାର ଝରଝର ହୋଇ ବହିବାକୁ ଆରମ୍ଭ କଲା । ହାତରୁ ସବୁ କିଣା ଜିନିଷ ଖସି ପଡିଲା । ସେମାନଙ୍କର

ବନ୍ଧୁ ବାନ୍ଧବମାନେ ଛୋଟ ଝିଅଟି ମୃତ୍ୟୁ ଦୁଃଖରେ କାନ୍ଦୁଛି ବୋଲି ଭାବିଲେ ।

ଅଧଘଂଟା ପରେ ସାମାନ୍ୟ ପ୍ରକୃତିସ୍ଥ ହୋଇ କିଛିଟା ଜ୍ଞାନ ଫେରି ପାଇବା ପରେ ସୁଧାମଣି ପଡିଥିବା ଜିନିଷ ଗୁଡିକ ଉଠାଇ ଘରକୁ ଫେରିବାକୁ ଲାଗିଲେ । ଏଣେ ଦମୟନ୍ତୀ ଅପେକ୍ଷା କରିକରି ବିଳମ୍ବ ଯୋଗୁଁ ରାଗି ଯାଇଥିଲେ । ସୁଧାମଣିଙ୍କୁ ଦେଖିଲାମାତ୍ରେ ନିଜକୁ ସମ୍ଭାଳି ନପାରି ଗାଳି ଦେଇ ଭୀଷଣ ମାଡ ଦେଇଥିଲେ । ସୁଧାମଣି କୃଷ୍ଣଙ୍କ ଭାବ ରାଜ୍ୟରେ ଥାଇ ଏ କଠୋର ଶାସ୍ତି ଚୁପ୍ କରି ସହ୍ୟ କରିଥିଲେ । ଭଗବତ୍ ଚିନ୍ତନ ମଗ୍ନ ମନକୁ ବାହାରର କଠୋରତା, ନିଷ୍ଠୁରତା ଛୁଇଁ ପାରିବ ବା କିପରି ?

ସୁଧାମଣିଙ୍କର ଅସାଧାରଣ ଧୀ ଶକ୍ତି, ପ୍ରସନ୍ନ ମୁଖ, ଭକ୍ତିଭାବ ଓ ହୃଦୟଛୁଆଁ ଜଣାଣ ଗାଇବା ଗୁଣ ସହିତ ଦୁଃଖୀ, ଦରିଦ୍ରଙ୍କ ପ୍ରତି ସ୍ନେହ କରୁଣା ପାଇଁ ତାଙ୍କୁ ସମସ୍ତେ ଜାଣିଥିଲେ । ଯଦିଓ ସେ ତାଙ୍କର ମାଙ୍କୁ ସନ୍ତୁଷ୍ଟ କରିବାକୁ ସଦା ସର୍ବଦା ଚେଷ୍ଟା କରୁଥିଲେ, ଦମୟନ୍ତୀ ସବୁବେଳେ ଟିକିଏ ଭୁଲ୍ କିମ୍ବା ବିନା ଭୁଲ୍ ରେ ମଧ୍ୟ ସୁଧାମଣିକୁ ଶାସ୍ତି ଦବାକୁ ପଛାଉ ନଥିଲେ । ଦମୟନ୍ତୀଙ୍କ ବିମୁଖତାର ପ୍ରଧାନ କାରଣ ଥିଲା ସୁଧାମଣିର କଳା ରଙ୍ଗ । ବେଳେ ବେଳେ ଶ୍ରୀକୃଷ୍ଣଙ୍କ ପରି ସୁଧାମଣି ଟିକିଏ ଦୁଧ, ଲହୁଣୀ ବା ଦହି ଚୋରାଇ ନେବା ବେଳେ ଦମୟନ୍ତୀ ତାଙ୍କୁ ଧରି ତିରସ୍କାର କରୁଥିଲେ । ସେ ଜାଣିନଥିଲେ ଯେ ସୁଧାମଣି ଦୁଧ, ଦହି, ଲହୁଣୀ ନେଇ ଭୋକିଲା ଲୋକଙ୍କୁ ବାଂଟୁଛନ୍ତି । କେହି ନଦେଖିଲା ବେଳେ ଦୁଧ ବା ଦହି ଟିକିଏ ନେଇ ଯାଇ ସେଥିରେ ସେ ପାଣି ମିଶାଇ ଦିଅନ୍ତି । ଥରେ ଧରାପଡି ଭୀଷଣ ମାଡ ଖାଇଥିଲେ । ଏହି ଦୟାଳୁ ସ୍ୱଭାବ ଯୋଗୁଁ ତାଙ୍କୁ ବହୁ ନିର୍ଯ୍ୟାତନାର ସମ୍ମୁଖୀନ ହେବାକୁ ପଡିଥିଲା । ତାଙ୍କର ଭାଇ ଭଉଣୀ ମାନେ ନିଜେ ଲୁଚାଇ ଭଲ ଜିନିଷ ଖାଇ ଭୟରେ ସୁଧାମଣିଙ୍କ ଉପରେ ଦୋଷ ଲଦି ଦେଉଥିଲେ । ଯଦିଓ ସେ ଜାଣିଥିଲେ କିଏ ପ୍ରକୃତରେ ଚୋର, ସେ ଥରେ ବି କାହାକୁ ଧରା ପକେଇ ଦେଉନଥିଲେ । ବରଂ ନିଜେ ଚୁପ୍‌ଚାପ୍ ସବୁ ମାଡ ଅତ୍ୟାଚାର ମାଙ୍କ ପାଖରୁ ସହି ନେଉଥିଲେ ।

ଯେତେବେଳେ ସୁଧାମଣି କୌଣସି ଭୋକିଲା ପରିବାର ବିଷୟରେ ଖବର ପାଆନ୍ତି, ନିଜ ବାକ୍ସରୁ କିଛି କାଢି ନେଇ ସେମାନଙ୍କୁ ଖାଦ୍ୟ କିଣିବାପାଇଁ ଦେଇ

ଦିଅନ୍ତି । ଯଦି ଏହା ସମ୍ଭବ ନହୁଏ ସେ ବାପାଙ୍କୁ ମାଗି ମାଗି କିଛି ପଇସା ଆଦାୟ କରି ସେମାନଙ୍କୁ ଦିଅନ୍ତି । ଏଇ ଦୁଇଟି ଯାକ ଉପାୟ ସମ୍ଭବ ନହେଲେ ସେ ଘରେ ଥିବା ଡାଲି ଚାଉଳ ଓ ଅନ୍ୟାନ୍ୟ ଖାଦ୍ୟ ଲୁଚାଇ ନେଇ ସେମାନଙ୍କୁ ଦେଇ ଦିଅନ୍ତି ।

ପିଲାବେଳର ଖେଳ ଛାଡିଦେଲେ ସୁଧାମଣିର ଦୁଷ୍ଟାମୀ ସବୁବେଳେ ସ୍ୱାର୍ଥହୀନ ଥିଲା । ଅନ୍ୟର କଷ୍ଟ ଲାଘବ କରିବା ସ୍ୱଭାବ ଯୋଗୁଁ ହିଁ ସେ ଘରୁ ଚୋରି କରିବାକୁ ବାଧ୍ୟ ହୁଅନ୍ତି । ଏପରି ବଦାନ୍ୟତାରେ ଦମୟନ୍ତୀଙ୍କୁ ଭୀଷଣ କ୍ରୋଧ ହୁଏ ଓ ସେ ସୁଧାମଣିକୁ ବାରମ୍ବାର ଭୀଷଣ ମାଡ ଦିଅନ୍ତି । ନିଜର ଏତେ କଷ୍ଟ ସତ୍ତ୍ୱେବି ସୁଧାମଣି ଏପରି କର୍ମ ପାଇଁ କିମ୍ବା ମାଡ ପାଇଁ ଟିକିଏ ହେଲେ ଅନୁତପ୍ତ ବୋଧ କରୁନଥିଲେ । ଗ୍ରାମର ଗରିବ ଦୁଃଖିଙ୍କ ସାହାଯ୍ୟ ପାଇଁ ସୁଧାମଣିର ଜୀବନ ଏହିପରି ଯାତନାମୟ ହୋଇ ଚାଲିଥିଲା ।

ମାଛ ବ୍ୟବସାୟ ପାଇଁ ସୁଗୁଣାନନ୍ଦ ଇଡାମାନ୍ନେଲ ଗ୍ରାମରୁ ପ୍ରାୟ କିଛିଦିନ ପାଇଁ ବାହାରକୁ ଯାଉଥିଲେ । ବହୁତ ରାତିରେ ଫେରିଲା ବେଳକୁ ପିଲାମାନେ ଶୋଇ ପଡିଥାନ୍ତି । ଘରକୁ ଫେରୁ ଫେରୁ ଦମୟନ୍ତୀ ଚାକରାଣୀ ଝିଅ ସୁଧାମଣି ବିରୁଦ୍ଧରେ ଅଭିଯୋଗ କରନ୍ତି । ଥରେ ଏହିପରି ସମୟରେ ସୁଧାମଣି ଶୋଇ ନଥିଲେ । ସବୁ ଶୁଣି ସେ ପାଟି କରି କହି ଉଠିଲେ "ମୁଁ ତୋର ଝିଅ ନୁହଁ । ମୁଁ ନିଶ୍ଚୟ ତୋର ବୋହୂ !" ଦମୟନ୍ତୀ ସୁଧାମଣିର ଏପରି ଅଭିଯୋଗ ଶୁଣି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସୁଧାମଣି କହିବାର ଅଭିପ୍ରାୟ ଥିଲା ଯଦି ଦମୟନ୍ତୀ ପ୍ରକୃତରେ ମା ହୋଇ ଥାନ୍ତେ ତେବେ ସେ ଧୈର୍ଯ୍ୟ ସହକାରେ ସୁଧାମଣିକୁ କ୍ଷମା କରିଥାନ୍ତେ । କେବଳ ଶାଶୁହିଁ ବୋହୂର ଭୁଲ୍‌କୁ ଟିକିନିଖି ଭାବରେ ଖୋଜେ ଆଉ ତାକୁ ବଢେଇ ଚଢେଇ କହିଥାଏ ।

କିଏବା ଜାଣିଥିଲା ସାଧ୍ୱୀ ସୁଧାମଣିର ଦୁଃଖୀ ଦରିଦ୍ରଙ୍କ ଦୁଃଖ ନିବାରଣର ଅସୀମ ଇଚ୍ଛା ହଜାର ହଜାର ଲୋକଙ୍କୁ ସେଇ ଛୋଟ ଗାଁଟିକୁ ଟାଣି ଆଣିବ, ତୃଷାତୁର ଲୋକ ମରୁଦ୍ୟାନ ଖୋଜିନେଲା ପରି ? କିଏବା ଜାଣିଥିଲା ମାତ୍ର ଦଶ ବର୍ଷର ଝିଅଟିଏ ଏପରି ପର ଦୁଃଖର କାତରତା ନେଇ ଗୋଟିଏ ଛୋଟିଆ କେଉଟ ଗ୍ରାମରେ ଅଧାତ୍ମର ଢେଉ ଖେଳାଇବ ଯାହାକି ଧୀରେ ଧୀରେ ସାରା ପୃଥିବୀକୁ ଛୁଇଁଯିବ ?

ଯଦିଓ ସେ ସବୁବେଳେ ମନପ୍ରାଣ ଦେଇ କାମ କରନ୍ତି ତଥାପି ତାଙ୍କର ମା

ସବୁବେଳେ ତାଙ୍କୁ ସାବଧାନ କରାଉଥିଲେ "ଏ ଝିଅ ! ଏପରି ଅଳସୁଆ ହେଉଚୁ କାହିଁକି ? ଯଦି ତୁ ଏପରି ଅକର୍ମଣ୍ୟ ହୋଇ ବସିବୁ ଭଗବାନ ତତେ କିଛି ଦେବେ ନାହିଁ । ଆଉ ତୁ ଭୋକ ଉପାସରେ ମରିବୁ ।" ସବୁବେଳେ ସୁଧାମଣି ପାର୍ଥନା କରୁଥାନ୍ତି, "ଭଗବାନ, ଦୟାକରି ମତେ କାମ ଦିଅ !" ସେଦିନ ମାଙ୍କ କଥା ଶୁଣି ସୁଧାମଣି ଭଗବାନଙ୍କୁ ଆଉ ଗୋଟିଏ ପାର୍ଥନା ରଚନା କରି କହିଲେ "ହେ କୃଷ୍ଣ, ଦୟାକରି ମତେ ତୁମର କାମ ଦିଅ !"

ସୁଧାମଣିଙ୍କ ଧୈର୍ଯ୍ୟ, ସହନଶୀଳତା ଓ ନିସ୍ୱାର୍ଥଭାବ ଅଦ୍ଭୁତ ଧରଣର ଥିଲା । ସଦା ସର୍ବଦା ଭଗବତ ଚିନ୍ତାରତ, ଯନ୍ତ୍ରଣା ଓ ଦଣ୍ଡକୁ ସହିବାର ଅପାର କ୍ଷମତା ଗୋଟିଏ ମହତ୍ ପ୍ରାଣର ଆବିର୍ଭାବ ଭାରତରେ ହୋଇଥିବାର ପୂର୍ବାଭାଷ ପିଲାଟିଦିନୁ ମିଳିଥିଲା । ଏତେ ଯନ୍ତ୍ରଣା, ପରୀକ୍ଷାକୁ ସେ ଭଗବାନଙ୍କର ଇଛା ବୋଲି ମାନି ନେଉଥିଲେ । ସବୁ ଦୁଃଖ ସେ ହୃଦୟରେ ରଖି କେବଳ ମୁରଲୀଧର କୃଷ୍ଣ ପାଖରେ ହିଁ ସବୁ ଜଣାଉଥିଲେ ।

ଠାକୁର ଘରେ ଅନ୍ଧାର ରାତିରେ କବାଟ କିଳି ସେ ଶ୍ରୀକୃଷ୍ଣଙ୍କୁ ଲୁହଭରା ଆଖିରେ ଡାକୁଥିଲେ "ହେ ମୋର ପ୍ରିୟତମ କୃଷ୍ଣ ! ତୁମଛଡା ମୋର ହୃଦୟ କେହି ବୁଝିପାରିବେ ନାହିଁ । ଏ ପୃଥିବୀ ଖାଲି ଦୁଃଖ, ଯନ୍ତ୍ରଣାରେ ଭରା । ସ୍ୱାର୍ଥପରତା ଚରମ ସୀମାରେ ପହଂଚିଛି । ଲୋକମାନେ ଖାଲି ନିଜ ନିଜର ସୁଖ ଓ ଆମୋଦ ପ୍ରମୋଦ ଖୋଜୁଛନ୍ତି । ହେ ମୋର ପ୍ରିୟତମ କୃଷ୍ଣ ! ମୁଁ ଆଉ କିଛି ଚାହୁଁ ନାହିଁ, କେବଳ ତୁମ ସହିତ ଏକ ହୋଇ ଯିବାକୁ ଚାହୁଁଛ । ହେ ପ୍ରଭୁ ! ତୁମର ଅପୂର୍ବ ରୂପର ଦର୍ଶନ ଦିଅ । ଏ ସବୁ ମୋର କିଛି କଷ୍ଟ ନୁହଁ । କିନ୍ତୁ ତୁମର ବିଚ୍ଛେଦ ମୋ ଲାଗି ଦାରୁଣ ଯନ୍ତ୍ରଣାମୟ" । ଏହି ଗୀତଟି ସୁଧାମଣି ଏହି ସମୟରେ ଲେଖିଥିଲେ -

ହେ ଦୟାର ଅବତାର କଳା କଳେବର
କୃପାର ଲୋଚନ ମେଲି ଦୁଃଖ ମୋର ହର ।
ତୁମେ କି ନୁହଁ ପ୍ରଭୁ ହେ ଦୁଃଖ ବିନାଶକ ?
ଦୟାବହି ଦୂରକର ମୋର ଦୁଃଖ ଶୋକ ॥

ତୁମ ବିନୁ ଏ ଜଗତେ ନାହିଁ କେହି ଆନ
ହେ ଉଜ୍ୱଳ ନବ ନୀଳ କମଳଲୋଚନ ।

ମୁଁ ତୁମର ପୂଜାରିଣୀ ପ୍ରିୟ ଶ୍ୟାମଘନ
ଲୁହର କୁସୁମ ମୋର ଦୟାବହି ଘେନ ॥

ହେ ଗୋପାଳ, ଗିରିଧାରୀ, ମଦନମୋହନ
ତୁମେ ଏକା ଅଧୀଶ୍ୱର ଚଉଦଭୂବନ ।
ଅନ୍ଧାରରେ ବାଟବଣା ଅଧମ ପଥିକ
କୃପାର ନୟନ ଖୋଲି ବାରେ ଚାହିଁଦେଖ ॥

ଏହିପରି ତିନିବର୍ଷ ଗଭୀର ପ୍ରାର୍ଥନାର ବ୍ୟାକୁଳତା ଓ ଅକଥନୀୟ ନିର୍ଯ୍ୟାତନାରେ କଟିଗଲା । ଏବେ ସୁଧାମଣିଙ୍କୁ ୧୩ ବର୍ଷ ବୟସ । ତାଙ୍କ ବୟସ ବଢିବା ସାଙ୍ଗେ ସାଙ୍ଗେ ଦାୟିତ୍ୱ ମଧ୍ୟ ବଢି ବଢି ଚାଲିଲା । କୌଣସି ଅଭିଯୋଗ ନକରି-ଏତେ ଅସୁବିଧା ସତ୍ୱେ ସେ ନିଜ କାମରେ ପ୍ରାଣପଣେ ନିଜକୁ ହଜାଇ ରଖିଲେ । ତା ସହିତ ତାଙ୍କ ଆଧାତ୍ମିକ ସାଧନା ମଧ୍ୟ ବଢି ଚାଲିଲା । ସବୁବେଳେ ଝିଅଟିର ଓଠରେ ପ୍ରଭୁଙ୍କର ନାମ ଜପ ଚାଲିଥାଏ । ମନ ଭିତରେ ଓ ବାହାରେ ସଦାସର୍ବଦା ହୃଦୟରୁ ପବିତ୍ର ନାମ ଜପର ସ୍ରୋତ ଲାଗି ରହିଥାଏ ।

**ବନ୍ଧୁବାନ୍ଧବଙ୍କ ସହ ଜୀବନ**

ଉପକୂଳ ଅଂଚଳରେ ରନ୍ଧା ଓ ଘରକାମ ପାଇଁ ଚାକର ମିଳିବା କଷ୍ଟକର ହୋଇ ପଡୁଥିଲା । କାରଣ ଜାଲବୁଣା, କତାଦଉଡି ବଳିବାରେ ବେଶୀ ପଇସା ରୋଜଗାର ହେଉଥିଲା । କେଉଟମାନେ ମାଛଧରା ଛଡା ଆଉ ଯେକୌଣସି କାମ କରିବାକୁ ଅସମ୍ମାନଜନକ ବୋଲି ମନେ କରୁଥିଲେ । ସେଥିପାଇଁ ପାଠ ନପଢି ଘରେ ବସିଥିବା ଝିଅମାନଙ୍କ ଉପରେ ବହୁତ କାମର ବୋଝ ପଡୁଥିଲା । ସେମାନେ ଦିନ ରାତି କାମ କରିବାକୁ ବାଧ୍ୟ ହେଉଥିଲେ । ସେମାନଙ୍କୁ ବନ୍ଧୁବାନ୍ଧବଙ୍କର ଘରକୁ ବି କାମରେ ସାହାଯ୍ୟ ପାଇଁ ପଠାହେଉଥିଲା । ବନ୍ଧୁବାନ୍ଧବଙ୍କର ପରସ୍ପର ଭିତରେ ଏପରି ଝିଅ ମାନଙ୍କର ସାହାଯ୍ୟ ମାଗିବାର ପ୍ରଥା ପ୍ରଚଳିତ ଥିଲା ।

ସୁଧାମଣିଙ୍କ ଅବସ୍ଥା ଏହିପରି ହୋଇଥିଲା । ବନ୍ଧୁ ବାନ୍ଧବମାନେ ତାଙ୍କ ସାହାଯ୍ୟ ପାଇଁ ବହୁତ ଚାପ ଦେଉଥିଲେ । ବାଧ୍ୟହୋଇ ସୁଧାମଣିଙ୍କର ବାପା ମା ତାଙ୍କୁ ମାମୁଁ ଘରକୁ କାମ କରିବାକୁ ପଠେଇଲେ । ଏହିପରି ଆହୁରି ଚାରିବର୍ଷ ସୁଧାମଣି ବନ୍ଧୁବାନ୍ଧବଙ୍କର ଘରର ଚାକରାଣୀ ହୋଇ କଟାଇଥିଲେ ।

ସୁଧାମଣିର ଆଇ ଛ କିଲୋମିଟର ଦୂର ପରୟାକଦାଭୁର ଦକ୍ଷିଣରେ ଭଣ୍ଡାରତୁରୁତୁ ଗ୍ରାମରେ ରହୁଥିଲେ । ସେ ଗ୍ରାମକୁ ଯିବାକୁ ହେଲେ ଡଙ୍ଗାରେ କିମ୍ୱା ଆରବ ସାଗର କୂଳେ କୂଳେ ଚାଲି ଯିବାକୁ ହୁଏ । କଳ୍ପନାରେ ଦେଖିଲେ ଜାଣି ହେବ ଦୁଇଟି ଯାକ ରାସ୍ତା ସୁଧାମଣି ପାଇଁ ଆନନ୍ଦ ଦାୟକ ଥିଲା । ନୌକାରେ ନଈବାଟରେ ଗଲେ ସିଏ ନୀଳ ଆକାଶ ଦେଖି ଘନ ନୀଳ କୃଷ୍ଣଙ୍କ କଥା ମନେ ପକାଇ କାନ୍ଦି ଉଠନ୍ତି । ମଟର ବୋଟର ଇଂଜିନ୍ ଶବ୍ଦରେ ସ୍ୱର ମିଳାଇ "ଓମ୍" ଜପ କରନ୍ତି । ପାଣିରେ ଉଠୁଥିବା ଛୋଟ ଛୋଟ ଢେଉର ନାଚ ଦେଖି କୃଷ୍ଣଙ୍କ ଦିବ୍ୟଲୀଳା ଖେଳାର କଳ୍ପନା କରନ୍ତି । ଭକ୍ତିରେ ତନ୍ମୟ ହୋଇ 'ଓମ୍' ରୁ ଭଜନ ଗାଇବା ଆରମ୍ଭ କରି ଦିଅନ୍ତି । ସାଙ୍ଗରେ ଯାଉଥିବା ଅନ୍ୟାନ୍ୟ ଯାତ୍ରୀ ମାନେ ତାଙ୍କ ଭଜନ ବହୁତ ଭଲ ପାଆନ୍ତି । ସେମାନେ ସୁଧାମଣିର ଭାବ ଦେଖି ଜମାରୁ ଆଶ୍ଚର୍ଯ୍ୟ ହୁଅନ୍ତି ନାହିଁ କାରଣ ସେମାନେ ସୁଧାମଣିଙ୍କୁ ପିଲାବେଳରୁ ଜାଣନ୍ତି ଓ ଭାବନ୍ତି ସେ ଆଉ କେଉଁ ଗୋଟିଏ ଜଗତରୁ ଆସିଛି । ଏହିପରି ସବୁବେଳେ ଭକ୍ତି ଭାବାନ୍ୱିତ ରହିବା ଫଳରେ ସୁଧାମଣି କେବେବି ଦୂରତ୍ୱ କିମ୍ୱା ଦୀର୍ଘ ସମୟ ଅତିବାହିତ କରିବାର ଅସ୍ୱସ୍ତି ଅନୁଭବ କରୁନଥିଲେ ।

ଏହି ନୌକା ଯାତ୍ରାର ଆନନ୍ଦ କ୍ଷଣସ୍ଥାୟୀ ଥିଲା । ଦିନେ ସେ ମାଙ୍କୁ ନୌକା ଖର୍ଚ୍ଚ ମାଗିଲେ । ଦମୟନ୍ତୀ ଭୀଷଣ ଗାଳି ଦେଇ କହିଲେ "ତୁ କିଏ କି ? ତୋର ଡଙ୍ଗାରେ ଯିବା କ'ଣ ଦରକାର ? ତୁ କଣ କଲେଜରେ ପାଠ ପଢୁଛୁ ? ତୁ ଚାଲିଚାଲି ଯିବୁ" । ଏଇ ସମୟରେ ବଡ ଭଉଣୀ କସ୍ତୁରୀ କଲେଜରେ ପଢିବା ଆରମ୍ଭ କରିଥିଲେ । ଏପରି ସୁବିଧା ଖୁବ୍ କମ ଝିଅକୁ ମିଳିଥାଏ । ଦମୟନ୍ତୀ ବଡ ଝିଅ ପାଇଁ ଭାରି ଗର୍ବ ଅନୁଭବ କରୁଥିଲେ । ତାକୁ ପ୍ରତ୍ୟହ ହାତ ଖର୍ଚ୍ଚ ପାଇଁ ପଇସା ଦେଉଥିଲେ । ଗରୀବ ପରିବାର ମାନଙ୍କରେ ଝିଅକୁ କଲେଜକୁ ପଠାଇବା ଗୋଟିଏ ବଡ କାରବାର ବୋଲି ଗଣା ହେଉଥିଲା । ତେଣୁ ଉଚ୍ଚ ଶିକ୍ଷା ପାଇଁ କସ୍ତୁରୀକୁ ପଠେଇ ଦମୟନ୍ତୀ ବହୁତ ଗର୍ବ ଅନୁଭବ କରୁଥିଲେ ।

ବିଚାରୀ କାଳି ସୁଧାମଣି, ଘର ଯାକର କାମ କରି ଓ ଅଯତ୍ନରେ ବଢି ନିଜ ପରିବାର ଦ୍ୱାରା ନିର୍ଯ୍ୟାତିତ ହେଉଥାନ୍ତି । ସେ ସର୍ବଦା କୃଷ୍ଣଙ୍କର ଭାବ ଦର୍ଶନରେ ରହି ତାଙ୍କ ପ୍ରତି ପକ୍ଷପାତ ବ୍ୟବହାର ଓ ଦାରିଦ୍ର୍ୟକୁ ନିର୍ବିବାଦରେ ଗ୍ରହଣ କରି ନିଅନ୍ତି । ମା ଙ୍କର ତୀବ୍ର ବାକ୍ୟବାଣରେ ଦୁଃଖିତ ନହୋଇ ସେ ଆନନ୍ଦରେ ସମୁଦ୍ର କୂଳରେ ଚାଲି ଚାଲି ଆଈଙ୍କ ଘରକୁ ଯାଉଥିଲେ । ପ୍ରଭୁଙ୍କ ଭଜନ ଗାଇ ସମୁଦ୍ରକୁ ନିଜର ମା ବୋଲି ଭାବି, ଛଅ କିଲୋମିଟର ବାଟଚଲା ତାଙ୍କୁ ଆଶୀର୍ବାଦ ବୋଲି ମନେ ହେଉଥିଲା ।

ଜଣେ ସହଜରେ ସୁଧାମଣିଙ୍କୁ ଏଇ ସମୁଦ୍ର କୂଳ ରାସ୍ତାରେ ଯିବା କଳ୍ପନାରେ ଅନୁଭବ କରିପାରିବ । ସେ ବଡ ପାଟିରେ ଗୀତ ଗାଇ ସମୁଦ୍ର ଲହରୀ ତାଳରେ ଧୀରେ ଧୀରେ ଚାଲି ଦୁନିଆକୁ ଭୁଲି ଯାଆନ୍ତି । ଘନ ନୀଳ ସମୁଦ୍ରର ବୁକୁ ଓ ମେଘ ନୀଳ ଆକାଶ ତାଙ୍କୁ କୃଷ୍ଣ ଭାବରେ ଉନ୍ମାଦ କରି ଦିଏ । ସମୁଦ୍ର ଲହରୀ ଶବ୍ଦ 'ଓଁ' ପରି ଶୁଭି ତାଙ୍କୁ ଆହୁରି ମତୁଆଲା କରି ଦିଏ । ଲହରୀରେ କୃଷ୍ଣଙ୍କୁ ଦେଖି ସେ ଲହରୀକୁ ଆଲିଙ୍ଗନ କରିବାକୁ ଦଉଡନ୍ତି । ସମୁଦ୍ରର କୋମଳ ପବନ ଛୁଆଁ ତା ପାଇଁ ଶ୍ରୀକୃଷ୍ଣ ଙ୍କର ଆଲିଙ୍ଗନ ମନେହୋଇ ବେଳେ ବେଳେ ସେ କାନ୍ଦି ଉଠନ୍ତି, କୃଷ୍ଣ କୃଷ୍ଣ ! ଗଭୀର ଭକ୍ତି ଭାବରେ ନିମଗ୍ନ ହୋଇଯାଇ ବେତାଳିଆ ଭାବେ ପାଦ ପକେଇ ସେ କୂଳେ କୂଳେ ଚାଲିଥାନ୍ତି । ଶେଷରେ ଚେତନା ହରାଇ ବାଲିରେ ପଡିରହନ୍ତି ।

କିଛି ସମୟପରେ ପ୍ରକୃତିସ୍ଥ ହୋଇ କାନ୍ଦି ଉଠନ୍ତି ଓ କହନ୍ତି, "ହେ କାହ୍ନୁ, ମୋ ପ୍ରିୟ କୃଷ୍ଣ ! ଆ ମୋ ପାଖକୁ ଦୌଡି ଚାଲିଆ । ମୋତେ ଛାଡି ତୁ କୁଆଡେ ଯାଇଛୁ ? ମୁଁ ଏଇନେ କୋଉଠି ? ହେ କୃଷ୍ଣ ବଂଶୀଧାରୀ ! ଏଇ ପାର୍ଥିବ ଭବ ସଂସାରର ଲହରୀରେ ବୁଡିଯିବା ଆଗରୁ ମୋତେ ଉଦ୍ଧାର କର । ଦୈହିକ ଆନନ୍ଦର ବେଳା ବାଲିରୁ ମତେ ଉଠେଇ ନିଅ । ତୁ କଣ ତୋର ଭକ୍ତ ମାନଙ୍କୁ ଉଦ୍ଧାର କରିବୁ ନାହିଁ ? ତୁ ନିଶ୍ଚୟ ଜାଣୁଥିବ ମୋ ହୃଦୟର ଯନ୍ତ୍ରଣା ? ମୋର କି ଦୋଷରୁ ମତେ ତୁମେ ଏପରି ଶାସ୍ତି ଦେଉଛ ?"

"ମତେ କଣ ତୁମେ ଶାସ୍ତି ଦେବାକୁ ଚାହୁଁଛ ? ହେ ଜଗଦୀଶ୍ୱର – ଏ ଦାସୀ ପ୍ରତି କଣ ତମର ଟିକେ କରୁଣା ହେଉ ନାହିଁ ? ମୁଁ ସବୁଦିନ ତମର କୁହୁକ ବଂଶୀ ନାଦକୁ ଶୁଣିବାକୁ ଅପେକ୍ଷା କରି ବସିଛି । ହେ କୃଷ୍ଣ – ଦୟାକରି ଆସ, ଦୟାକରି ଆସ.........."

କିଛି ସମୟ ପରେ ପ୍ରକୃତିସ୍ଥ ହୋଇ ସେ ସମୁଦ୍ର କୂଳେ କୂଳେ ପୁଣି ଚାଲିଯିବାକୁ ଆରମ୍ଭ କରନ୍ତି ଓ ବିହ୍ୱଳ ହୋଇ ପଡି ଉଠି ଚାଲିଥାଆନ୍ତି । ତାଙ୍କ ଚାରିପାଖେ କଣ ହେଉଚି ସେ ସମ୍ବନ୍ଧରେ ତାଙ୍କର ବାହ୍ୟଜ୍ଞାନ ନଥାଏ ।

ହେ କୃଷ୍ଣ କରୁଣା ସାଗର
ଦୁଃଖ ମୋ ବଢେ ନିରନ୍ତର
ଶାନ୍ତି ନାହିଁ ମୋ ମନେ ତିଳେ
ଗହନ ସଂସାର ଜଞ୍ଜାଳେ ॥
ଦଶ ଦୋଷ ମୋ କ୍ଷମାକର
ମଥାରୁ ପୋଛିଦିଅ ଝାଳ
ତୋ ପଦ୍ମପାଦ ବିନା ଆହା
କହ କେ ଅଛି ମୋର ସାହା ॥
ହେ କୃଷ୍ଣ କଣ୍ଠ ଯାଏ ଶୁଖି
ଆଖି ମୋ ପାରେନାହିଁ ଦେଖି
ଥକା ମୋ ପାଦ ନାହିଁ ଚଳେ
ପଡେ ମୁଁ ନିରାଶେ ଭୂତଳେ...॥
ହେ କୃଷ୍ଣ...

ଏହି ପରମ ପ୍ରେମ ଓ ଭକ୍ତିର ଅମୃତ ପାନ କରି ସୁଧାମଣି କୌଣସି ମତେ ଆଇ ଘରେ ପହଂଚି ଦେଖନ୍ତି ତାଙ୍କ ପାଇଁ ସେଠି ରହିଚି ଅଜସ୍ର କଠୋର ଶ୍ରମର ଭାର । ତେବେବି ସେ ସନ୍ତୋଷ ଭାବରେ କୃଷ୍ଣ ନାମ ଜପ କରିକରି ତାର କାମ କରିଚାଲିଥାନ୍ତି । ତାଙ୍କ ପାଇଁ ଜୀବନର ପ୍ରତ୍ୟେକ ମୁହୂର୍ତ୍ତର ସଦୁପଯୋଗ ପାଇଁ ମହାପ୍ରଭୁ ସଦାସର୍ବଦା ସୁଯୋଗ ଜୁଟାଉଛନ୍ତି, ଯେପରିକି ଏକଥା ମନେ କରି ଆମେ ପ୍ରଭୁଙ୍କୁ ସ୍ମରଣ ଓ ସେବା କରିପାରିବୁ ।

ବେଳେ ବେଳେ ସୁଧାମଣିଙ୍କୁ ଦୂରରେ ଥିବା ଧାନ କଳକୁ ଧାନ କୁଟାଇ ଆଣିବା ପାଇଁ ପଠା ଯାଉଥିଲା । ସେ ପ୍ରଫୁଲ୍ଲ ମନରେ ଠାକୁରଙ୍କ ଭଜନ ଗାଇ ଚାଲି ଚାଲି

ଯାଉଥାନ୍ତି । ଗୋଟିଏ ନିହାତି ଗରୀବ ଗ୍ରାମ ଭିତର ଦେଇ ଧାନ କଳକୁ ଯିବାକୁ ହୁଏ । ସେଠାରେ ଗୁଡିଏ ଗରୀବ ପରିବାର ଅତି ଦୟନୀୟ ଅବସ୍ଥାରେ ଚଳୁଥିଲେ । ସୁଧାମଣି ସେମାନଙ୍କର ଅବସ୍ଥା ଦେଖି ଦୁଃଖରେ ମ୍ରିୟମାଣ ହୋଇ ପଡୁଥିଲେ ଓ ଚାଉଳ ନେଇ ଫେରିବା ବାଟରେ ସେମାନଙ୍କୁ କିଛି କିଛି ବାଂଟିଦେଇ ଆସୁଥିଲେ । ବେଳେ ବେଳେ ଆଇମା ଚାଉଳର ପରିମାଣ କମ୍ ଦେଖି ସୁଧାମଣି ଚାଉଳ ବିକି ଜଳଖିଆ ଖାଇଛି ବୋଲି ଧରିନେଇ ତାଙ୍କୁ ଗାଳି ଓ ମାଡ ବି ଦିଅନ୍ତି । ସୁଧାମଣିଙ୍କୁ ଯେତେ ମାଡଗାଳି ହେଲେ ବି ସେ କେବେହେଲେ ସାହାଯ୍ୟ ଦେଇଥିବା ପରିବାର ମାନଙ୍କର ନାମ କହନ୍ତି ନାହିଁ । ସେ ଜାଣିଥିଲେ ଯେ ଆଇମା ସେମାନଙ୍କ ନାଁ ଜାଣି ପାରିଲେ ସେଠିକି ଯାଇ ନିଶ୍ଚୟ ଭୀଷଣ କଜିଆ କରିବେ ।

ଭଣ୍ଡାରତୁରୁତୁରେ ରହିଲାବେଳେ ସୁଧାମଣିଙ୍କୁ କାଉ, କୁକୁଡା ଇତ୍ୟାଦିଙ୍କ ଉପଦ୍ରବରୁ ଧାନକ୍ଷେତ ଜଗିବାକୁ ପଠାହେଉଥିଲା । କ୍ଷେତ ସବୁ ଘର ଠାରୁ ଦୂରରେ । ତେଣୁ ସୁଧାମଣିଙ୍କୁ ନିର୍ଜନରେ ପ୍ରଭୁଙ୍କ ନାମ ନେବା ପାଇଁ ସୁଯୋଗ ମିଳୁଥିଲା । ସେ ପ୍ରତ୍ୟେକଟି ନିଃଶ୍ୱାସରେ କୃଷ୍ଣଙ୍କର ନାମ ନିଅନ୍ତି । ପ୍ରତ୍ୟେକଟି ପାଦ ତାଙ୍କର ସ୍ମରଣରେ ହିଁ ପକାନ୍ତି । ତାଙ୍କ ପ୍ରେମ ଓ ଭକ୍ତିର ଭାବ ଏତେ ପ୍ରଗାଢ ଥିଲା ଯେ, ଜପ କରୁ କରୁ ସେ ଅନେକ ସମୟରେ କାନ୍ଦି କାନ୍ଦି ଚୈତନ୍ୟ ହରାଇ କ୍ଷେତରେ ପଡିରହୁଥିଲେ ।

ସୁଧାମଣିର ଗୋଟିଏ ବଡ ସାନ୍ତ୍ୱନା ଥିଲା ଯେ ତାର ଆଇମା ଭାରି କୃଷ୍ଣ ଭକ୍ତ ଥିଲେ । କୃଷ୍ଣଙ୍କର ଛବି ତାଙ୍କର କାନ୍ଥରେ ଝୁଲୁଥିଲା । ସୁଧାମଣି ସେହି ଫଟୋ ସାମନାରେ ଠିଆ ହୋଇ ଭଜନ ଗାଆନ୍ତି । ଏହି ସମୟରେ ତାଙ୍କ ମାମୁଁ ରତ୍ନଦାସନ୍ ଯିଏକି ସୁଧାମଣିଙ୍କୁ ବହୁତ ଭଲପାଉଥିଲେ, ଗୋଟିଏ ଷ୍ଟୁଲ ଆଣି ଏତେ ସମୟ ଠିଆ ନହୋଇ ତାଙ୍କୁ ବସିବାକୁ କହନ୍ତି । ସୁଧାମଣି ନାହିଁ କରି କହନ୍ତି, ଯେତେବେଳେ କୃଷ୍ଣ ଠିଆ ହେଇଛନ୍ତି ମୁଁ କିପରି ବସିଯିବ । କୃଷ୍ଣଙ୍କର ସାଧାରଣ କାଗଜରେ ଅଙ୍କା ହୋଇଥିବା ଛବି ତାଙ୍କ ପାଇଁ ଜୀବନ୍ତ ଥିଲା, ସତେ ଯେପରି ମହାପ୍ରଭୁ ଶ୍ରୀକୃଷ୍ଣ ରକ୍ତ ମାଂସର ଦେହ ଧରି ଠିଆ ହୋଇଛନ୍ତି । ପ୍ରକୃତ ଭକ୍ତ ପାଇଁ କୌଣସି ବସ୍ତୁ ନିଷ୍ପ୍ରାଣ ନୁହଁ । ପ୍ରତ୍ୟେକଟି ଜିନିଷରେ ଭଗବାନଙ୍କର ମହିମା ପ୍ରଦର୍ଶିତ ।

କ୍ରମେ ଶରତ, ଶୀତ, ବସନ୍ତ ଓ ଗ୍ରୀଷ୍ମ ଋତୁ କଟିଗଲା । ସୁଧାମଣିଙ୍କୁ ଯେତେବେଳେ ୧୪ ବର୍ଷ ବୟସ, ତାଙ୍କୁ ଦମୟନ୍ତୀଙ୍କ ବଡ ଭଉଣୀ (ମାଉସୀ)

ଘରକୁ ପଠାଗଲା । ସେଠାରେ ସେପରି ତାଙ୍କୁ ଅତି କଠିନ କାର୍ଯ୍ୟର ଭାର ନେବାକୁ ପଡୁଥିଲା । ପ୍ରଥମେ ତାଙ୍କୁ ଧାନ ଉଷେଇଁ, ଖରାରେ ଶୁଖେଇବାକୁ ପଡୁଥିଲା । ରୋଷେଇ, ଝାଡୁ ପୋଛା, ଲୁଗାଧୁଆ ଇତ୍ୟାଦି ଯାବତୀୟ ଘର କାମ ମଧ୍ୟ ତାଙ୍କୁ କରିବାକୁ ହେଉଥିଲା । ଘରର ସବୁ ପିଲାମାନେ କଲେଜରେ ପଢୁଥିଲେ । ତେଣୁ ଘର କାମ କରିବା ଲଜ୍ୟାଜନକ ବୋଲି ସେମାନଙ୍କର ମନେହେଉଥିଲା । ସେମାନଙ୍କର ଭଗବତ୍ ବିଶ୍ୱାସ ନଥିଲା, ସେମାନେ ସୁଧାମଣିଙ୍କୁ ତାଙ୍କ ଭକ୍ତିଭାବ ପାଇଁ ନିର୍ଦ୍ଦୟ ଭାବରେ ଚିଡାଉଥିଲେ । ତାର ଭଜନ ଗାଇବା ବନ୍ଦକରିବାକୁ ଚେଷ୍ଟା କରୁଥିଲେ । ଏତେ ସ୍ନେହୀ ଝିଅଟିଏ, ନିର୍ବୋଧ ନିଷ୍ଠୁର ଲୋକଙ୍କ ମଝିରେ ରହି କଣ ବା କରିପାରନ୍ତା ? ସେମାନେ ତାଙ୍କ ଭଜନ ଗାଇବା ବନ୍ଦ କଲାବେଳେ ସେ ଦୁଇ ହାତରେ ମୁହଁ ଲୁଚାଇ କାନ୍ଦି ପକାନ୍ତି । ଯଦିଓ ସେମାନେ ତାକୁ ବଡପାଟିରେ ଗାଇବା ବନ୍ଦ କରିବାରେ ସଫଳ ହୋଇଥିଲେ, ତାର ଅନ୍ତର ଭିତରେ ଅବିରତ ବହୁଥିବା ଭକ୍ତି ଧାରା କୁ ବନ୍ଦ କରିବାର କାହାରି ଶକ୍ତି ନଥିଲା ।

ଘରଟି ସମୁଦ୍ର ପାଖରେ ଥିଲା, ତେଣୁ ଘର ପାଖରେ ସବୁ କଳ ପାଣି ଲୁଣିଆ ଲାଗୁଥିଲା । ପିଇବା ପାଇଁ ପାଣି ଆଣିବାକୁ ସୁଧାମଣିଙ୍କୁ ଛୋଟ ନୌକା ନେଇ କାୟଲ ପାରି ହୋଇ ଗୋଟିଏ ଦୂର ଜାଗାକୁ ଯିବାକୁ ପଡୁଥିଲା । ବେଳେ ବେଳେ ସେ ନାଉରୀ ପରି ବନ୍ଧୁବାନ୍ଧବଙ୍କର ପିଲାମାନଙ୍କୁ ସ୍କୁଲ୍ ଯିବାକୁ ନଇ ପାରି କରିଥାଆନ୍ତି ଏବଂ ଅତି ଖୁସିରେ ଅନ୍ୟ ଲୋକଙ୍କର ପିଲାଙ୍କୁ ମଧ୍ୟ ନଇ ପାରି କରାଇ ଦିଅନ୍ତି । ଫେରିଲା ବେଳେ ଚାରିଆଡର ପ୍ରାକୃତିକ ଶୋଭା ଦେଖି ସେ ଭାରୀ ଆନନ୍ଦିତ ହୁଅନ୍ତି । ଖୋଲାମନରେ ପ୍ରଭୁଙ୍କୁ ଡାକି କୃଷ୍ଣ ଦର୍ଶନ ପାଇଁ ବ୍ୟାକୁଳ ହୋଇ ଯାଆନ୍ତି । ପାଣିରେ ଉଠୁଥିବା ଛୋଟ ଛୋଟ ତରଙ୍ଗକୁ ସେ ଭାବବିହ୍ୱଳ ହୋଇ ପଚାରନ୍ତି "ହେ ଛୋଟ ତରଙ୍ଗମାଳ ! ମୋର ଘନନୀଳ କୃଷ୍ଣଙ୍କୁ ତୁମେମାନେ ଦେଖିଛ ? ତୁମେ କେବେ ତାର ବଂଶୀର ସୁମଧୁର ଧ୍ୱନି ଶୁଣିଛ ?" ପୁଣି ଲହରୀ ମାନଙ୍କୁ ଗୋଟିଏ ପରେ ଗୋଟିଏ ଭାସି ଯାଉଥିବା ଦେଖି ସୁଧାମଣି ଭାବନ୍ତି ସେମାନେ ଯେପରି ତାଙ୍କୁ ଦେଖି ନାହାଁନ୍ତି ବୋଲି କହୁଛନ୍ତି । କାନ୍ଦି କାନ୍ଦି ସୁଧାମଣି ଭାବନ୍ତି "ଆହା – ଏହି ଛୋଟ ତରଙ୍ଗମାଳ ମଧ୍ୟ ମୋ ପାଇଁ କୃଷ୍ଣଙ୍କ ଦର୍ଶନ ବିନା ଦୁଃଖ ସହୁଛନ୍ତି" । ସେ ଚାରିଆଡ ପ୍ରକୃତି କୃଷ୍ଣଙ୍କ ବିରହ ଦୁଃଖରେ ବୁଡିରହିଛି ବୋଲି ମନେ କରୁଥିଲେ । କାକୁତି ମିନତି କରି

ସେ କାନ୍ଦି ଉଠି କହନ୍ତି "ହେ ଅନନ୍ତ ଆକାଶର ନୀଳ ମେଘମାନେ ! କେଉଁଠି ଲୁଚେଇଛ ମୋ ପ୍ରିୟତମ କୃଷ୍ଣଙ୍କୁ ? ଧଳା ବଗ ପକ୍ଷୀମାନେ ! ତମେ କ'ଣ ବୃନ୍ଦାବନକୁ ଉଡିଯାଉଚ ? ଯଦି ତୁମର ଶ୍ରୀକୃଷ୍ଣଙ୍କ ସାଙ୍ଗରେ ଦେଖାହୁଏ, ତାଙ୍କୁ କହିଦେବ ଏଇ ହୀନିମାନି ଝିଅ ତାଙ୍କ କଥା ଭାବି ସବୁବେଳେ କାନ୍ଦୁଛି !" ସାଙ୍ଗେ ସାଙ୍ଗେ ସୁଧାମଣି ବାହ୍ୟଜ୍ଞାନ ଶୂନ୍ୟ ହୋଇ ପଥରର ମୂର୍ତ୍ତିବତ୍ ବସି ରହନ୍ତି । ବାହ୍ୟଜ୍ଞାନ ଫେରି ଆସିଲା ବେଳକୁ ଡଙ୍ଗା ସ୍ରୋତର ବେଗରେ ଆଉ କୁଆଡେ ଭାସି ଯାଉଥାଏ । ଏହିପରି ଆଧ୍ୟାତ୍ମିକ ମନୋଭାବ ବେଳେ ବେଳେ ଆସିଯାଉଥିବା ଯୋଗୁଁ ସୁଧାମଣିଙ୍କୁ ଅନେକଥର ଜୀବନ ବିପନ୍ନ ହେବାଭଳି ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡୁଥିଲା ।

ଥରେ ସୁଧାମଣି ଧାନ କୁଟେଇ ସାରି ତାଙ୍କ ଛୋଟ ଡଙ୍ଗାଟିକୁ କାତମାରି ଘରକୁ ଆଣୁଥିଲେ । କାତ ମାରୁ ମାରୁ ସେ ଆକାଶରେ ମେଘ ଭାସୁଥିବାର ଦେଖିଲେ । ଏହି ଦୃଶ୍ୟଟି ଦେଖି ତାଙ୍କ ନିର୍ମଳ ହୃଦୟରେ ନୀଳ ମେଘ ବର୍ଣ୍ଣ ଶ୍ରୀକୃଷ୍ଣ ଭାବ ଉଦୟ ହେଲା । ସେ ସାଙ୍ଗେ ସାଙ୍ଗେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ସମାଧିସ୍ଥ ହୋଇଗଲେ । ହାତରୁ କାତଟି ଖସି ପଡିଲା । ତାଙ୍କ ଆଖି ମୁକ୍ତ ନୀଳ ଆକାଶ ଠାରେ ନିବଦ୍ଧ ଓ ଶରୀର ସଂପୂର୍ଣ୍ଣ ସ୍ଥିର ଅବିଚଳ । ମଝି ମଝିରେ କେବଳ ଡାକୁଥାନ୍ତି କୃଷ୍ଣ, କୃଷ୍ଣ ! ଆଉ ଦୁନିଆଁ ସାଙ୍ଗରେ ତାଙ୍କର କୌଣସି ସଂପର୍କ ନଥିଲା । ଡଙ୍ଗାଟି ଖର ସ୍ରୋତରେ ପଡି ଜୋରରେ ଭାସିଯିବାକୁ ଲାଗିଲା । ହଠାତ୍ ଗୋଟିଏ ବଡ ନୌକାର ଇଞ୍ଜିନ୍ ଘର୍ଘର ଶବ୍ଦ କରି ସିଧା ସୁଧାମଣିଙ୍କ ଡଙ୍ଗା ଆଡେ ଆସିଲା । ବଡ ନୌକାର ଲୋକ ମାନେ ଆତଙ୍କିତ ହୋଇ ଚିତ୍କାର କରି ସୁଧାମଣିଙ୍କୁ ଉଠାଇବାକୁ ଲାଗିଲେ । କୂଳରେ ଥିବା ଲୋକେ ମଧ୍ୟ ଚିତ୍କାର କଲେ । କେତେକ ଲୋକ ତାଙ୍କ ଚୈତନ୍ୟ ଫେରାଇବା ପାଇଁ ପଥର ଫିଙ୍ଗିବାକୁ ଆରମ୍ଭ କଲେ । ଶେଷ ମୁହୂର୍ତ୍ତରେ ସେ ସାମାନ୍ୟ ପ୍ରକୃତିସ୍ଥ ହୋଇ ଡଙ୍ଗାକୁ ବଡ ନୌକା ସାମ୍ନାରୁ ଘୁଂଚାଇ ପାରିଥିଲେ ।

ତା ପର ବର୍ଷ ସୁଧାମଣିଙ୍କୁ, ଦୁଇ କିଲୋମିଟର ଦୂର କରୁଣାଗାପଲ୍ଲୀର ରହୁଥିବା ଦମୟନ୍ତୀଙ୍କର ବଡ ଭାଇ ଆନନ୍ଦଙ୍କର ଘରକୁ ପଠାଗଲା । ସୁଧାମଣି ଆଗ୍ରହ ଓ ନିଷ୍ଠାରେ ସବୁ ଦୈନନ୍ଦିନ ଘରକାମ କରନ୍ତି । ଆନନ୍ଦ ଓ ତାଙ୍କ ସ୍ତ୍ରୀ ତାଙ୍କ କାମରେ ଖୁସୀ ହୋଇ ତାଙ୍କୁ ଗୋଟିଏ ସୁନାର କାନ ଫୁଲ ମଧ୍ୟ ଦେଇଥିଲେ ।

ଦରିଦ୍ର ପ୍ରତି ଦୟା ସୁଧମଣିଙ୍କ ଗୋଟିଏ ପ୍ରଧାନ ଗୁଣ ଥିଲା । ସେ ନିଜ ଘରେ, ମାମୁଁ ଘରେ ବା ମାଉସୀ ଘରେ ଯେଉଁଠି ଥାଆନ୍ତୁ, ପରର ଉପକାର ପାଇଁ କୌଣସି ବାଧା ମାନୁ ନଥିଲେ । ଏକ ଗରିବ ମୁସଲମାନ୍ ପରିବାର ମାମୁଁଙ୍କ ଘର ପାଖା ପାଖି ରହୁଥିଲେ । ସୁଧାମଣି ଘରୁ ଜିନିଷ ଲୁଚାଇ ନେଇ ତାଙ୍କୁ ଦେଇ ଦେଉଥିଲେ । ଯଦିଓ ପ୍ରଥମେ ପ୍ରଥମେ କେହି ଜାଣିପାରୁନଥିଲେ, କ୍ରମେ ଜିନିଷ ନ ମିଳିବାର ସମସ୍ତେ ଲକ୍ଷ୍ୟ କଲେ । ଅନେକ ଥର ଧରା ପଡି ସୁଧାମଣି ମାଇଁଙ୍କ ହାତରୁ ମାଡ ଖାଇଥିଲେ । ତଥାପି ସେଥିରେ ଅପମାନିତ ବୋଧ କରୁନଥିଲେ । ସେ ଭାବୁଥିଲେ "ମୁଁ କାହିଁକି ଅପମାନିତ ବୋଧ କରିବି ? ମୁଁ ଯଦି ସେମାନଙ୍କୁ ପର ଭାବୁଥନ୍ତି ତେବେ ସିନା ଖରାପ ଲାଗନ୍ତା ! ଘରେତ ମୋର ବାପା ମା ମୋତେ ମାରନ୍ତି । ଏଠି କାହିଁକି ମୁଁ ସେପରି ବ୍ୟବହାର ପାଇବିନି ?"

ବହୁତଥର ଜୋରରେ ମାଡ ଖାଇଥିଲେ ସୁଦ୍ଧା ସୁଧାମଣି ଦୁଃଖୀ ଦରିଦ୍ରଙ୍କ ପ୍ରତି ସହାନୁଭୂତି ଦେଖାଇବାରେ କେବେ ପଛଘୁଂଚା ଦେଇ ନଥିଲେ । ତାଙ୍କର ଅନ୍ୟମାନଙ୍କୁ ସାହାଯ୍ୟ ଦେବାର ଅଭ୍ୟାସ ଦିନକୁ ଦିନ ବଢିଚାଲିଲା । ଏହିପରି ଘଟଣାରୁ ତାଙ୍କର ଚରିତ୍ରର ଅଦ୍ଭୁତ ଧୈର୍ଯ୍ୟ, ଅପାର କରୁଣା ଓ ସହନଶୀଳତାର ଆଭାସ ମିଳେ । ତାଙ୍କ ଜୀବନର ପ୍ରତ୍ୟେକ ଘଟଣା ତାଙ୍କ ପାଇଁ ନୀତି ଶିକ୍ଷା ଥିଲା । ସେ ତାଙ୍କର ଜୀବନକୁ ଉତ୍ସର୍ଗ କରିଥିଲେ ଚତୁର୍ଦ୍ଦିଗରେ ଅନାବିଳ ପ୍ରେମର ପ୍ରଚାର ପାଇଁ ।

ସୁଧାମଣି ନିଜର ତୀକ୍ଷ୍ଣ ମେଧାଶକ୍ତି ଦ୍ୱାରା ଜୀବନର ପ୍ରତ୍ୟେକଟି ଅବସ୍ଥାକୁ ବିଶ୍ଳେଷଣ କରି, ସେଥିରେ ଅନ୍ତର୍ନିହିତ ଆଧ୍ୟାତ୍ମିକ ମୂଳଧାରାକୁ ବୁଝିପାରୁଥିଲେ । ପରେ ଜୀବନର ଏହି ସବୁ ଦୁଃଖଦ ଅନୁଭୂତିକୁ ସେ ଭଗବାନଙ୍କ ଆଶୀର୍ବାଦ ଭାବେ ଗ୍ରହଣ କରିଥିଲେ । ତଦ୍ୱାରା ସେ ଏଇ କ୍ଷଣସ୍ଥାୟୀ ଦୁନିଆ ଓ ବନ୍ଧୁ ବାନ୍ଧବ ମାନଙ୍କୁ ଠିକ୍ ବୁଝିପାରିଥିଲେ । ସେ ପରେ ବୁଝାଇଥିଲେ "ଏଇସବୁ ଅନୁଭୂତିରୁ ମୁଁ ଜାଣୁଛି ଯେ ସଂସାର ଦୁଃଖମୟ । ଆମର କେହି ହେଲେ ପ୍ରକୃତ ବନ୍ଧୁ ନଥାନ୍ତି, କାରଣ ଆମର ବନ୍ଧୁବାନ୍ଧବ ମାନେ ନିଜର ସ୍ୱାର୍ଥ ପାଇଁ ହିଁ ଆମକୁ ଭଲ ପାଆନ୍ତି । ମଣିଷମାନେ ପରସ୍ପରକୁ କାମନା ଯୋଗୁଁ ହିଁ ଭଲ ପାଆନ୍ତି । କେହିହେଲେ ଆମକୁ ନିସ୍ୱାର୍ଥ ଭାବରେ ଭଲପାଏ ନାହିଁ । କେବଳ ଭଗବାନ ହିଁ ନିସ୍ୱାର୍ଥରେ ଆମକୁ ଭଲ ପାଆନ୍ତି" ।

ସୁଧାମଣି ବୁଝିପାରିଲେ ଯେ ମାମୁଁ, ମାଇଁଙ୍କ ସହ ସଂପର୍କ ତାଙ୍କୁ ଜୀବନର ଲକ୍ଷ୍ୟ ସ୍ଥଳରେ ପହଂଚିବା ପାଇଁ ବାଧା ଦେବ । ଶେଷରେ ସେ ଏପରି ପରିବେଶ ସୃଷ୍ଟି କରିଥିଲେ ଯାହାଫଳରେ ତାଙ୍କୁ ସେଠାରୁ ମୁକ୍ତି ମିଳିଥିଲା । ଦିନେ ସକାଳେ ସେ ରାଗି ପରିବାର ସହ କଜିଆକରି ଚୁକ୍ତି ଭଙ୍ଗ କରି ଘର ଛାଡିଥିଲେ । ସେଇ ହୃଦୟହୀନ ବନ୍ଧୁବାନ୍ଧବ ମାନେ ତାଙ୍କୁ ଦେଇଥିବା କାନଫୁଲ ଇତ୍ୟାଦି ଉପହାରକୁ ଫେରାଇ ନେଇ ସୁଧାମଣିଙ୍କୁ ଖାଲି ହାତରେ ଘରକୁ ଫେରାଇଥିଲେ । ଛାଡିଲାବେଳେ ସୁଧାମଣି କହିଥିଲେ "ଦିନେ ନା ଦିନେ ତୁମେମାନେ ମୋ ପାଖକୁ ଭିକ୍ଷା ମାଗିବାକୁ ଆସିବ । ସେବେ ଯାଏ ମୁଁ କେବେହେଲେ ଏଠିକି ଫେରୁ ନାହିଁ" ।

ଏଗାର ବର୍ଷ ପରେ ସେଇ ମାମୁଁଙ୍କ ଆର୍ଥିକ ଅବସ୍ଥା ବଡ ଶୋଚନୀୟ ହୋଇପଡିଲା । ସେମାନେ ଇଡାମନ୍ନେଲକୁ ସୁଧାମଣି ପାଖରୁ ସାହାଯ୍ୟ ପାଇଁ ଆସିଥିଲେ । ତାପରେ ହିଁ ସେ ମାମୁଁଘରକୁ ଯାଇଥିଲେ ଓ ତାଙ୍କ ଘରେ ପୂଜା କରି ଆଶୀର୍ବାଦ ଦେଇଥିଲେ । ସେଦିନ ସୁଧାମଣିଙ୍କର ମାଇଁ ଅନୁତପ୍ତ ହୋଇ କହିଥିଲେ "ଓଃ ! ମୁଁ କେବେ ବି ଆଶା କରିନଥିଲି ଯେ ସେଇ ଛୋଟ ଝିଅଟି ଦିନେ ଏତେ ମହାନ ହେବ ବୋଲି । ମୁଁ ତାକୁ କେତେ ନିର୍ଦ୍ଦୟ ଭାବରେ ମାଡ ଗାଳି ନ ଦେଇଛି !"

ଜଗଦୀଶ୍ୱର ଭଗବାନ କେବେହେଲେ ନିଜର ପ୍ରକୃତ ଭକ୍ତର ଅଭିଳାଷ ପୁର୍ଣ୍ଣ କରିବାକୁ ଭୁଲନ୍ତି ନାହିଁ । ଭାରତର କେତେ ମହାକାବ୍ୟରେ ଏପରି କେତେ ଉଦାହରଣ ଅଛି । ମହାପ୍ରଭୁ ପ୍ରକୃତରେ ଭକ୍ତର ଦାସ ।



# ତୃତୀୟ ଅଧ୍ୟାୟ

## କୃଷ୍ଣଙ୍କ ପାଇଁ ଲୁହ

ତୁମକୁ ଦେବାଲାଗି ମୋ ପାଖେ ଲହୁଣୀ କି କ୍ଷୀର ନାହିଁ । ମୁଁ ଖାଲି ତୁମକୁ ମୋ କଷ୍ଟରୁ ଟିକିଏ ଦେଉଛି । ହେ କାହ୍ନୁ! ତୁମ ପାଦ ତଳେ ମୁଁ ମୋର ଲୁହର ମୁକ୍ତା ଉପହାର ଦେଉଛି ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

**ଶ୍ରୀ ଭଗବନ ଉବାଚ :**

ମୟାବେଶ୍ୟ ମନୋ ୟେ ମାଂ ନିତ୍ୟଯୁକ୍ତା ଉପାସତେ ।
ଶ୍ରଦ୍ଧୟା ପରୟୋପେତାସ୍ତେ ମେ ଯୁକ୍ତତମା ମତାଃ ॥
ମୈବ ମନ ଆଧସ୍ୱ ମୟି ବୁଦ୍ଧିଂ ନିବେଶୟ ।
ନିବସିଷ୍ୟସି ମୟୈବ ଅତ ଊର୍ଦ୍ଧ୍ୱଂ ନ ସଂଶୟଃ ॥

**ଶ୍ରୀ ଭଗବାନ ଉବାଚ :**

ଯେ ମୋ ଉପରେ ମନକୁ ଏକାଗ୍ର କରି ନିତ୍ୟ ସ୍ଥିର ରହି ମୋର ଉପାସନା କରେ, ଓ ଶ୍ରଦ୍ଧାଶୀଳ ହୁଏ, ମୋ ମତରେ ସେମାନେ ହିଁ ବାସ୍ତବରେ ଯୋଗରେ ଦକ୍ଷ ଓ ଉତ୍ତମ ଯୋଗୀ ଅଟନ୍ତି । କେବଳ ମୋ ଉପରେ ମନକୁ ନିବିଷ୍ଟ କର, ନିଜର ବୁଦ୍ଧିମତା ମୋ ଉପରେ ସ୍ଥାପନ କର, ତା ପରେ ତୁମେ ଅବଶ୍ୟ ମୋ ସହିତ ଅବସ୍ଥାନ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

**ଭଗବତ୍ ଗୀତା, ଅଧ୍ୟାୟ -୧୨, ଶ୍ଳୋକ- ୨,୮**

**ଇଡାମନ୍ନେଲକୁ ପ୍ରତ୍ୟାବର୍ତନ**

ଷୋହଳ ବର୍ଷର ସୁଧାମଣି ମାମୁଁ ଘରୁ ଇଡାମନ୍ନେଲକୁ ଫେରି ନିଜର ଆଧ୍ୟାତ୍ମିକ ଶକ୍ତି ସାଧନା ଅବ୍ୟାହତ ରଖିବା ସାଙ୍ଗେ ସାଙ୍ଗେ ଘରର ସମସ୍ତ କାମର ଦାୟିତ୍ୱ ବହନ କରିଥିଲେ । ଏଇ ସାଧୁସନ୍ଥଙ୍କର ଜନ୍ମ ସ୍ଥଳୀରେ ଅନେକ ବିରୋଧର ସମ୍ମୁଖୀନ ହୋଇ

ମଧ୍ୟ ସୁଧାମଣିଙ୍କର ଅଧ୍ୟାତ୍ମ ଅଦ୍ୱିତୀୟ ଏବଂ ଅତୁଳନୀୟ ଥିଲା । ତାଙ୍କର କର୍ମମୟ ଜୀବନ ନିରନ୍ତର ଭଗବତ୍ ଉପାସନା ହିଁ ଥିଲା । ସେ ସମୟରେ ସୁଧାମଣିଙ୍କର ନିଷ୍ଠା ବାସ୍ତବରେ ଦେବତୁଲ୍ୟ । ଏତେ ଛୋଟିଆ ପିଲାଟିଏ କିପରି ଏତେ ଭାରି କାମର ବୋଝ ଉଠାଇ ପାରେ ? ଦମୟନ୍ତୀ ଆଂଠୁଗଂଠି ବାତରେ କଷ୍ଟପାଇ, ସୁଧାମଣି ନଥିଲା ବେଳେ ସବୁ କାମ ନିଜେ କରି ଆହୁରି ରାଗୀ, ଚିଡଚିଡା ଓ ନିଷ୍ଠୁର ହୋଇ ଯାଇଥିଲେ । ସୁଧାମଣିଙ୍କ ବନ୍ଧୁ ବାନ୍ଧବଙ୍କ ଘରୁ ଚୋରୀ କରିବାର ଦୁର୍ନାମ ଦମୟନ୍ତୀଙ୍କୁ ବହୁତ ଲୋକହସା ଓ ଅପମାନିତ କରିଥିଲା । ଏଥିପାଇଁ ଦମୟନ୍ତୀଙ୍କର ରାଗ ଝିଅ ଉପରେ ଆହୁରି ବଢି ଯାଇଥିଲା । ସୁଧାମଣିଙ୍କ ଘର କାମରେ କିଛି ଭୁଲ୍ ନଥିଲେ ବି ଦମୟନ୍ତୀ ତାଙ୍କୁ ଆକ୍ରୋଶ ରଖି ମାଡ ଗାଳି ଦେଉଥିଲେ ।

ସୁଧାମଣି ନିଜ ପାଖରୁ ଏପରି ଦୁର୍ବ୍ୟବହାର ପାଇ ମଧ୍ୟ କୌଣସି ଗ୍ଲାନି ବା ଆକ୍ରୋଶ ରଖୁନଥିଲେ । ପ୍ରକୃତରେ କିଛି ବର୍ଷ ପରେ ସୁଧାମଣି ଦମୟନ୍ତୀଙ୍କୁ ନିଜର ଆଧ୍ୟାତ୍ମିକ ଗୁରୁ ବୋଲି ସ୍ୱୀକାର କରିଥିଲେ । ତାଙ୍କ ନିଜ ଭାଷାରେ "ଦମୟନ୍ତୀ ଆମ୍ମା ହିଁ ମୋର ଗୁରୁ ବୋଲି ମାନିବାକୁ ହେବ । ସେ ମୋତେ ସହିଷ୍ଣୁତା, ଭକ୍ତି ଓ ଅନୁଶାସନର ଶିକ୍ଷା ଦେଇଥିଲେ । ଅଗଣା ସଫା କଲା ପରେ ଯଦି କୋଉଠି ଟିକିଏ କିଛି ପଡିଥିବ ତେବେ ସେ ମତେ ମାରୁଥିଲେ । ସବୁ ବାସନ ଧୋଇବା ପରେ ସେ ସବୁ ତନ୍ନ ତନ୍ନ କରି ଦେଖୁ ଥିଲେ । ଯଦି କେବେ ଅଣୁ ମାତ୍ର ମଇଳା ଦେଖନ୍ତି ମତେ ବହୁତ ଗାଳି ଦେଉଥିଲେ । ଯଦି ଭୁଲ୍‌ରେ ଝାଡୁର ଖଡିକାଟିଏ ବି ବାହାରି ପଡି ଯାଇଥାଏ ସେ ମୋତେ ଦଣ୍ଡ ନଦେଇ ଛାଡୁନଥିଲେ । ରନ୍ଧା ହାଣ୍ଡିରେ ଟିକିଏ ପାଉଁଶ ବା ଧୂଳି ଆକସ୍ମିକ ପଡିଥାଏ ତେବେ ନିଶ୍ଚୟ ଶାସ୍ତି ମିଳୁଥିଲା । ଦମୟନ୍ତୀ ଆମ୍ମାଙ୍କ ଆଦେଶରେ ବଡି ଭୋରରୁ ସବୁ ଝିଅ ପ୍ରାର୍ଥନା କରନ୍ତି, ତାହା ନ ଶୁଣିଲେ ସିଏ ତାଳେ ପାଣି ନେଇ ଝିଅମାନଙ୍କର ମୁହଁରେ ଅଜାଡିଦିଅନ୍ତି, ବିଶେଷତଃ ମୁଁ ପରିଶ୍ରମରେ କ୍ଳାନ୍ତ ହୋଇ ଯଦି ଟିକେ ବେଶୀବେଳ ଶୋଇପଡି ଥାଏ । ମୁଁ ଯେତେବେଳେ ଗାଈମାନଙ୍କ ପାଇଁ ଘାସ ଆଣି ଯାଏ, ସେ ଦୂରରୁ ମତେ ଲକ୍ଷ୍ୟ କରୁଥିବେ, କାଳେ ମୁଁ କାହା ସାଙ୍ଗେ ଘର କଥା ଚର୍ଚ୍ଚା କରୁଛି ବୋଲି । ମୋ ନିଜ ମାର ଏପରି ବ୍ୟବହାର ଦେଖି, ପଡୋଶୀ ମାନେ ତାଙ୍କୁ ବିନତି କରନ୍ତି "ଦୟାକରି ତାକୁ ଏପରି ଶାସ୍ତି ଦିଅ ନାହିଁ ! ତାକୁ ଦିନେ ନାଁ ଦିନେ ତ ବାହା ଦେବାକୁ ହିଁ ପଡିବ" । କିନ୍ତୁ ସବୁବେଳେ ମୁଁ ଭାବୁଥିଲି ଏପରି

ଅନୁଭୂତି ମୋ ପାଇଁ ହିଁ ସୁଶିକ୍ଷା ଥିଲା ” ।

ପାଠକମାନେ ଦମୟନ୍ତୀଙ୍କର ନିଜ ଝିଅ ପ୍ରତି ଏପରି ନିଷ୍ଠୁର ବ୍ୟବହାର ଦେଖି ଆଶ୍ଚର୍ଯ୍ୟ ଅନୁଭବ କରୁଥିବେ କାରଣ ଦମୟନ୍ତୀଙ୍କୁ ଅତି ଧର୍ମାନୁରାଗୀ ବୋଲି ସମସ୍ତେ ଭାବୁଥିଲେ । ଏହା ବୁଝିବା କିଛି କଷ୍ଟକର ନୁହେଁ । କାରଣ ତାଙ୍କର ଭଗବତ୍ ଭକ୍ତି ଥିଲେ ବି ସଦ୍‌ଜ୍ଞାନର ଅଭାବ ଥିଲା । ଅନେକ ଭକ୍ତଙ୍କର ଭଗବାନଙ୍କ ପ୍ରତି ଶ୍ରଦ୍ଧା ଥାଏ, ସେମାନେ ପୂଜା ପାଠ ବିଧି ମୁତାବକ କରିଥାନ୍ତି କିନ୍ତୁ ତାଙ୍କର ପ୍ରକୃତ ଭଗବତ୍ ଜ୍ଞାନ ଭାରି ସୀମିତ ହୋଇଥାଏ । ଭଗବାନ ଯେ ସବୁ ଘଟରେ ଅଛନ୍ତି ସେ ଧାରଣା ତାଙ୍କର ନଥାଏ । ବରଂ ସେମାନେ ଭାବନ୍ତି ଭଗବାନ କେବଳ ମନ୍ଦିରରେ ଥାଆନ୍ତି । ଏହିପରି ଭକ୍ତମାନେ ଖାଲି ନିଜର ଅଭିଳାଷ ପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ଭଗବାନଙ୍କୁ ପୂଜା କରନ୍ତି । ସେମାନଙ୍କର ଧାର୍ମିକତା ଓ ପୂଜା ଶୈଳୀରେ ଚରିତ୍ର ଗଠନ କିମ୍ବା ନିଜ ଭିତରେ ଥିବା ଅସତ୍ ଗୁଣର ନିରାକରଣ ଇତ୍ୟାଦିର ଧାରଣା ହିଁ ନଥାଏ । ଏହି ଭକ୍ତମାନଙ୍କର ଭଗବତ୍ ଅନୁଭବର କୌଣସି ଲକ୍ଷ୍ୟ ନଥାଏ । ଏମାନେ ଭାବନ୍ତି ଯେ ତାଙ୍କର ପୂର୍ବ ପୁରୁଷମାନେ ପୂଜା କରି ଆସିଛନ୍ତି, ସେମାନେ ନକଲେ କାଳେ ଅମଙ୍ଗଳ ହେବ । ଏଇ ଭୟରେ ହିଁ ସେମାନେ ପୂଜା କରନ୍ତି । କିନ୍ତୁ ପ୍ରକୃତ ଭକ୍ତି ଭାବ ଥିବା ଭକ୍ତ ମାନେ ଭାବନ୍ତି ଯେ ଈଶ୍ୱର ସବୁଠାରେ ଏବଂ ସବୁ ଦିଗରେ ବିଦ୍ୟମାନ ଏବଂ ଜୀବଙ୍କ ଆରାଧନା ହିଁ ଈଶ୍ୱରଙ୍କର ଆରାଧନା । ସେମାନେ ସବୁ ପାର୍ଥିବ ସୁଖ ଛାଡି ଭଗବାନଙ୍କ ପାଦପଦ୍ମରେ ସମସ୍ତ କିଛି ଅର୍ପଣ କରିଥାନ୍ତି । ସେମାନଙ୍କର ଚରମ ଲକ୍ଷ୍ୟ ଭଗବାନଙ୍କୁ ଉପଲବ୍ଧି କରି, ଭଗବାନଙ୍କ ସହ ଲୀନ ହୋଇଯିବା । ଦମୟନ୍ତୀଙ୍କର ଈଶ୍ୱର ବିଶ୍ୱାସ ଓ ଆଧ୍ୟାତ୍ମିକ ଜ୍ଞାନ ଅତି ସୀମିତ ଥିଲା । ତେଣୁ ସେ ନିଜର ଅନନ୍ୟା ଝିଅଟିର ମାହାତ୍ମ୍ୟ ବୁଝି ନପାରି ତାକୁ ନିର୍ଯ୍ୟାତନା ଦେଉଥିଲେ ।

ବେଳେ ବେଳେ ଦମୟନ୍ତୀ ସୁଧାମଣିଙ୍କୁ ମାରିବାକୁ ହାତ ଉଠେଇଲା ବେଳେ ସୁଧାମଣି ହାତକୁ ଧରି ପକାଉଥିଲେ । ଆକାରରେ ସାନ ଥାଇବି ସୁଧାମଣି ଖୁବ୍ ଟାଣୁଆ ଥିଲେ । ସୁଧାମଣିଙ୍କ ମୁଠାରୁ ହାତ ଛଡେଇ ନ ପାରି ଦମୟନ୍ତୀ ତାଙ୍କୁ ଗୋଇଠା ମାରୁଥିଲେ । ତାପରେ ସୁଧାମଣି ଦମୟନ୍ତୀଙ୍କୁ ଧରି ପକାଉଥିଲେ । ଦମୟନ୍ତୀ ନିରୁପାୟ ହୋଇ ଶେଷରେ ସୁଧାମଣିଙ୍କୁ କାମୁଡିବାକୁ ଚେଷ୍ଟା କରୁଥିଲେ । ଥରେ ଦମୟନ୍ତୀ ନଡିଆ ଛଡାଉଥିବା କଟୁରୀ ରେ ସୁଧାମଣିଙ୍କୁ ମାରିଥିଲେ । ଦମୟନ୍ତୀ ପ୍ରାୟ ସୁଧାମଣିଙ୍କୁ

ରୀତିମତ ଅଭଦ୍ର ଭାଷାରେ ଗାଳିଗୁଲଜ କରୁଥିଲେ ।

ସୁଧାମଣି ମଧ୍ୟ ମାଙ୍କ ଆଗରେ ନିର୍ଭୀକ ଭାବେ ଔଦ୍ଧତ୍ୟ ପ୍ରକାଶ କରିବାକୁ ଆରମ୍ଭ କରି ଦେଇଥିଲେ । ଯେତେବେଳେ ଦମୟନ୍ତୀ ଆଦେଶ ଦେଉଥିଲେ "ଚୁପ୍ ରହ", ସୁଧାମଣି ସାଙ୍ଗେ ସାଙ୍ଗେ ପ୍ରତିବାଦ କରି କହୁଥିଲେ "ନା ମୁଁ କହିବି" । ଯେତେବେଳେ ଦମୟନ୍ତୀ କହୁଥିଲେ "ଏପରି କରନାହିଁ", ସୁଧାମଣି ସାଙ୍ଗେ ସାଙ୍ଗେ ଜିଦ୍ କରୁଥିଲେ "ମୁଁ ନିଶ୍ଚୟ ତାହା କରିବି"। ସୁଧାମଣି ଯେତେ ପ୍ରତିରୋଧ କରୁଥିଲେ ତାଙ୍କର ଦଣ୍ଡ ସେହି ମାତ୍ରାରେ କଠିନ ହୋଇଚାଲିଥିଲା । ଦମୟନ୍ତୀ ରାଗରେ ଝିଅକୁ ଅଭିଶାପ ଦେଉଥଲେ, "ଏତେ ଉଦ୍ଧତ ଝିଅ ନିର୍କକୁ ଯାଉ ! ସେ ଯଦି ପର ଘରକୁ ଯିବ ଘରର ମାନ ମହତକୁ ତଳେ ପକେଇ ଦେବ । ହେ ଭଗବାନ ! ଏପରି ଝିଅକୁ ମାରି ଦେଉନ କାହିଁକି ?"

ସୁଧାମଣିଙ୍କୁ ମା'ର ନିଷ୍ଠୁରତା ଟିକିଏ ବି ବିଚଳିତ କରୁ ନଥିଲା । ସେ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖୁଥିଲେ । ଅତି ପିଲା ବୟସରୁ ସେ ବୟସ୍କ ପୁରୁଷ ମାନଙ୍କୁ "ବାପା" ଏବଂ ବୟସ୍କ ସ୍ତ୍ରୀ ଲୋକମାନଙ୍କୁ "ମାଆ" ବୋଲି ଡାକୁଥିଲେ । ସୁଧାମଣିଙ୍କର ବାହାର ଲୋକଙ୍କୁ ଏପରି ସମ୍ବୋଧନ କରିବା, ତାର ବାପା ମାଙ୍କୁ ଲଜ୍ଜାଜନକ ଓ ଅଦ୍ଭୁତ ମନେ ହେଉଥିଲା । ସେମାନେ ତାଙ୍କୁ ଗାଳି ଦେଉଥିଲେ "ତୋର ଆଜେବାଜେ ଲୋକଙ୍କୁ ବାପା, ମା ଡାକିବା କଣ ଭଲ ଦିଶୁଚି ?" ସୁଧାମଣି ଉତ୍ତର ଦେଉଥିଲେ "ମୁଁ ମୋର ନିଜ ବାପା ମାଙ୍କୁ କେବେ ବି ଦେଖିନି, ସେଥିପାଇଁ ସେମାନେ ସବୁ ମୋର ବାପା ଓ ମା" ।

ସୁଧାମଣିଙ୍କୁ ପବିତ୍ର ବିଭୂତି କପାଳରେ ଲଗାଇବାକୁ ମନା କରାହେଉଥିଲା । ଘରର ଲୋକମାନେ ତାକୁ ଛିଗୁଲେଇ କହନ୍ତି, "କିଲୋ ! ତୁ ସନ୍ନ୍ୟାସିନୀ ହୋଇଯିବୁ ନା କଣ ?" ସୁଧାମଣିଙ୍କୁ ସାଧାରଣ ଝିଅ ମାନଙ୍କ ପରି ପୋଷାକ ପିନ୍ଧିବା ପାଇଁ ବାରଣ କରା ହେଉଥିଲା । ସେ ଯଦି କପାଳରେ ନାଲି ଟୋପା ଲଗାନ୍ତି, ଚେକ୍ ବ୍ଲାଉଜ୍‌ଟିଏ କିମ୍ବା ସଫା ଜାମାଟିଏ ପିନ୍ଧନ୍ତି, ତାକୁ ସମସ୍ତେ ପରିହାସ କରୁଥିଲେ "ତୁ କଣ ଏମିତି ରଙ୍ଗୀନ ଜାମା ପୁଣି ମୁଣ୍ଡରେ ଟୋପା ପିନ୍ଧିଲୁଣି ? କାହା ଆଗରେ ଦେଖେଇ ଫୁଲେଇ ହେଉଛୁ କି ? ଝିଅମାନେ ଅତି ସାଧାରଣ ଭାବରେ ରହିବା ଦରକାର" ।

ପରିବାରର ଲାଞ୍ଛନା,ପରିହାସ ଠାରୁ ବେଶି ଆଶ୍ଚର୍ଯ୍ୟଜନକ ଥିଲା ସୁଧାମଣିଙ୍କ ଅଟଳ ସହନଶୀଳତା । ଯଦିଓ ବେଳେ ବେଳେ ସେ ଅତିଷ୍ଠ ହୋଇ କିଛି କହି ପକାଉଥିଲେ, ତାଙ୍କ ଭିତରେ ପରିବାର ପ୍ରତି ଟୋପାଏବି ବିଦ୍ୱେଷ ଭାବ ନଥିଲା ।

ବଡଭାଇ ସୁଭଗନ ଗୁଣ୍ଡା ସ୍ୱଭାବର ଥିଲେ । ସୁଧାମଣି ଓ ପରିବାରର ଲୋକଙ୍କୁ ଡରେଇ ରଖିବା ସହିତ ସେ ଗ୍ରାମବାସୀ ମାନଙ୍କୁ ମଧ୍ୟ ଆତଙ୍କିତ କରି ରଖିଥିଲେ । ସେ ନାସ୍ତିକ ଓ ଅହଂକାରୀ ଥିଲେ ଏବଂ ସ୍ତ୍ରୀ ଲୋକମାନେ ଚୁପ୍ ହୋଇ ଘର ଭିତରେ ରହିବା ଉଚିତ୍ ବୋଲି ମନେ କରୁଥିଲେ । ସେ ଭୟଙ୍କର କ୍ରୋଧୀ ଥିଲେ ଆଉ ସୁଧାମଣି ହିଁ ବେଶୀ ତାଙ୍କର କ୍ରୋଧର ସମ୍ମୁଖୀନ ହେଉଥିଲେ । ସେ ତାଙ୍କୁ ସମବୟସୀ ଝିଅଙ୍କ ସହ ବନ୍ଧୁତା କରିବାକୁ ବାରଣ କରୁଥିଲେ । କାରଣ ସେ ଭାବୁଥିଲେ ସଙ୍ଗ ଦୋଷରେ ସୁଧାମଣିଙ୍କ ଚରିତ୍ର ନଷ୍ଟ ହୋଇ ଯାଇପାରେ । ସୁଧାମଣି ପିଇବା ପାଣି ଆଣିବା ପାଇଁ ବହୁ ଦୂରରେ ଥିବା କଳକୁ ଏକୁଟିଆ ଯାଉଥିଲେ । ଯଦି କଦବା କେବେ ସେ ଗାଁର ଆଉ କୌଣସି ଝିଅ ସାଙ୍ଗରେ କଥାବାର୍ତ୍ତା କରନ୍ତି, ଘରକୁ ଫେରି ସୁଭଗନ ପାଖରୁ ନିଶ୍ଚୟ ବହୁତ ମାଡ ଖାଇବାକୁ ପଡୁଥିଲା । କାହାସାଙ୍ଗରେ କଥା କହିବା ଲାଗି ବାରଣ ସୁଧାମଣିଙ୍କୁ ଜମାରୁ ବିବ୍ରତ କରୁନଥିଲା । ଏହା ଫଳରେ ତାଙ୍କ ଚିନ୍ତାଧାରା ବିକ୍ଷିପ୍ତ ନ ହୋଇ ଭଗବାନଙ୍କ ପାଖରେ କେନ୍ଦ୍ରୀଭୁତ ହୋଇ ପାରୁଥିଲା ।

ସେ ସମୟରେ ପୁରା ଗାଁ ପାଇଁ ଗୋଟିଏ ମାତ୍ର ପବନ ଚାଳିତ ପାଣି କଳ ଥିଲା ଓ ତା ପାଖରେ ଲମ୍ବା ଧାଡିରେ ବହୁତ ସମୟ ଅପେକ୍ଷା କରିବାକୁ ପଡୁଥିଲା । କାରଣ ପବନ ଜୋରରେ ନ ବହିଲେ ପାଣି ଆସୁନଥିଲା । ସୁଧାମଣି ଓ ଗାଁର ଅନ୍ୟ ସ୍ତ୍ରୀ ଲୋକମାନେ ମାଟି ମାଠିଆ ଧରି ଘଂଟା ଘଂଟା ପବନ ବହିବାକୁ ଅପେକ୍ଷା କରୁଥିଲେ । ଯେଉଁଦିନ ଧାଡି ବହୁତ ଲମ୍ବା ଥାଏ, ଅପେକ୍ଷା ନକରି ସୁଧାମଣି ମାଠିଆକୁ ଧାଡିରେ ଛାଡି ଗାଈ ପାଇଁ ଘାସ କାଟିବାକୁ ଚାଲିଯାନ୍ତି । ଅନ୍ୟାନ୍ୟ ସ୍ତ୍ରୀ ଲୋକମାନେ ସୁଧାମଣିଙ୍କ ପରିଶ୍ରମ ଓ ଭକ୍ତିଭାବ ଦେଖି ଖୁସିରେ ତାଙ୍କ ପାଣି ମାଠିଆକୁ ଭରି ତାପାଇଁ ଅଲଗା ରଖି ଦେଇଥାନ୍ତି ।

ସୁଧାମଣି ପାଖ ପଡିଶା ଘରୁ ବୁଲିବୁଲି ଗାଈ ପାଇଁ ପରିବା ଚୋପା ଓ ପେଜ ତୋରାଣି ସଂଗ୍ରହ କରନ୍ତି । ଯଦି କେବେ ଦେବାରେ କାହାର ଡେରି ହୁଏ ତେବେ ସେ ପ୍ରତୀକ୍ଷା ସମୟରେ ପଡୋଶୀର ପୂଜା ଘରକୁ ଯାଇ କିଛି ଭଜନ ଗାଆନ୍ତି ।

ତାପରେ ଘରର ବୟସ୍କା ସ୍ତ୍ରୀ ଲୋକମାନଙ୍କ ସହ ଦୁଃଖ ସୁଖ ହୁଅନ୍ତି । କେତେକଙ୍କ ପିଲାମାନେ ସେମାନଙ୍କ ବାର୍ଦ୍ଧକ୍ୟ ଜନିତ ଅସମର୍ଥତା ଯୋଗୁ ସେମାନଙ୍କୁ ଅବହେଳା ଓ ହତାଦର କରୁଥିଲେ । ଏପରି ସବୁ ଅନୁଭୂତି ଦ୍ୱାରା ସୁଧାମଣି ଖୁବ୍ କମ ସମୟରେ ମଣିଷ ଜୀବନର କ୍ଷଣ ଭଙ୍ଗୁରତା ତଥା ପରସ୍ପର ପ୍ରତି ସ୍ୱାର୍ଥପରତାକୁ ଭଲଭାବରେ ବୁଝିପାରିଥିଲେ । ଯେତେବେଳେ ସୁବିଧା ମିଳୁଥିଲା ସେ ଏହି ବୃଦ୍ଧା ସ୍ତ୍ରୀ ଲୋକ ମାନଙ୍କୁ ଘରକୁ ନେଇ, ଗରମ ପାଣିରେ ଗାଧୋଇ ଦେଉଥିଲେ, ପେଟପୁରା ଖୁଆଉଥିଲେ ଓ ଘର ଲୋକଙ୍କର ସଫା ଲୁଗା ପିନ୍ଧାଇ ଦେଉଥିଲେ ।

ଯଦି ସେ ଜାଣନ୍ତି କାହାପାଖରେ ଖାଇବାକୁ ଦାନା ନାହିଁ, ସେ ଘରୁ କିଛି ରନ୍ଧା ଜିନିଷ ନେଇ ଦେଇ ଦିଅନ୍ତି । ବେଳେବେଳେ ସେ ନଖାଇ ନପିଇ ଦାଣ୍ଡ ବୁଲା ପିଲାଙ୍କୁ ଘରକୁ ନେଇ ଆସନ୍ତି । ଘରକୁ ଆଣି ସେମାନଙ୍କୁ ଯତ୍ନରେ ସଫା ସୁତୁରା କରି ପୁଣି ତାଙ୍କ ଘରକୁ ପଠାଇ ଦିଅନ୍ତି । ଥରେ ସୁଧାମଣି ଘରୁ ଗରିବମାନଙ୍କୁ ଖାଦ୍ୟ ଦେଲାବେଳେ ଧରାପଡି ଭୀଷଣ ମାଡ ଖାଇଥିଲେ । ତଥାପି ତାହା କରିବାରୁ ସେ କେବେ ନିବୃତ ହୋଇ ନଥିଲେ । ବରଂ ଯେତେବେଳେ ଯାହାର ସାହାଯ୍ୟ ଦରକାର ହେଉଥିଲା ସେଥିରେ ହେଳା କରୁନଥିଲେ । ଥରେ ସେ ଗୋଟିଏ ପରିବାରକୁ ଭୋକ ଉପବାସରେ କଷ୍ଟ ପାଉଥିବା ଦେଖି ଆଉ କିଛି ଉପାୟ ନପାଇ ନିଜ ମାଙ୍କର ସୁନା ଚୁଡି ଲୁଚାଇ ଦେଇ ଦେଇଥିଲେ, ଯଦ୍ୱାରା ତାକୁ ସେମାନେ ବିକି ପଇସା ଆଣି ଖାଦ୍ୟ ସାମଗ୍ରୀ କିଣି ପାରିବେ । ଯେତେବେଳେ ଚୋରୀ ଧରାପଡିଲା, ତାଙ୍କ ବାପା ଭୀଷଣ ରାଗିଯାଇ ନୃଶଂସ ଭାବରେ ତାଙ୍କ କୋମଳ ଦେହରୁ ରକ୍ତ ବାହାରିବା ଯାଏ ଛାଟ ମାରିଥିଲେ ।

ଏପରି ଘଟଣା ପରେ ମଧ୍ୟ ସୁଧାମଣି ସାହସୀ ଓ କ୍ଷମାଶୀଳା ଥିଲେ । ସେ ଭଗବାନଙ୍କୁ ତାଙ୍କ ପରିବାରର ଅବିଚାର ଓ ଅଜ୍ଞତାକୁ କ୍ଷମା କରି ଦେବା ପାଇଁ ପ୍ରାର୍ଥନା କରୁଥିବା ଅନେକ ଲୋକ ଶୁଣିଥିଲେ । ସେ ଯେତେବେଳେ ନିର୍ଜନ ରେ ବସନ୍ତି, ପ୍ରାର୍ଥନା କରନ୍ତି "ହେ କୃଷ୍ଣ, ଏ କିପରି ବିଚିତ୍ର ଦୁନିଆ ? ଜନ୍ମକଲା ମା ସୁଦ୍ଧା ସନ୍ତାନଙ୍କୁ ସ୍ନେହ ମମତା ଦେଖାଇ ପାରେନା । ଏପରିକି ତା ନିଜ ପରିବାର ପ୍ରତି ମଧ୍ୟ ଅନାବିଳ ସ୍ନେହ ଦେଖାଇ ପାରେ ନାହିଁ । ଏ ସଂସାରରେ କେଉଁଠି ମୋତେ ପ୍ରକୃତ ନିଃସ୍ୱାର୍ଥ ସ୍ନେହ ମିଳିପାରିବ ପ୍ରଭୁ ? ଯାହାକୁ ଏଠି ସ୍ନେହ ବୋଲି ମୁଁ ଦେଖେ, ତା କଣ ପ୍ରକୃତରେ

ସ୍ନେହ ? ସବୁ କଣ ପୁରାପୁରି ମାୟା ନୁହେଁ ?" ବେଳେବେଳେ ଠାକୁର ଘରେ ବସି ଦୁନିଆର ଏଇ ରୀତି ନୀତି ଦେଖି ସେ ଜୋରରେ କାନ୍ଦି ଉଠି କହନ୍ତି "ହେ କୃଷ୍ଣ, କୃଷ୍ଣ ! ତୁମ ଛଡା ଏ ଦୁନିଆରେ ମୋର କେହି ନାହିଁ । ମୋ ମନ ସବୁବେଳେ ତୁମରି ଲାଗି ଆକୁଳ । ତୁମ ଦର୍ଶନ ପାଇଁ ମୋ ମନ ସବୁବେଳେ ବ୍ୟାକୁଳ । ମତେ ତୁମେ ଥରେ ସାଙ୍ଗରେ ନେବନି ? ହେ କୃଷ୍ଣ, କୃପାକରି ଆଉ ଡେରି କରନା, ଚାଲି ଆସ ।"

ଏହି ସମୟରେ ଜଣେ ଦୂର ସମ୍ପର୍କୀୟ ବୟସ୍କ ଲୋକ ଇଡାମାନ୍ନେଲରେ ରହିବା ପାଇଁ ଆସିଥିଲେ । ତାଙ୍କର ଯତ୍ନ କରିବାକୁ ଦୁନିଆରେ ଆଉ କେହି ନଥିଲେ ଏବଂ ସ୍ୱାସ୍ଥ୍ୟ ଅତି ଦୁର୍ବଳ ଥିଲା । ସେ ସଂପୂର୍ଣ୍ଣ ଶଯ୍ୟାଶାୟୀ ଥିବାରୁ ବିଛଣାରେ ମଳ ମୂତ୍ର ତ୍ୟାଗ କରୁଥିଲେ । କେହି କିଛି ନ ପଚାରୁଣୁ ସୁଧାମଣି ସାଙ୍ଗେ ସାଙ୍ଗେ ତାଙ୍କର ଯତ୍ନ ନେବାକୁ ଆରମ୍ଭ କରି ତାଙ୍କର ସବୁ ଦାୟିତ୍ୱ ନେଇ ଥିଲେ । ପରିବାରବର୍ଗ ଯତ୍ନ କରିବା ତ ଦୂରର କଥା, ତାଙ୍କ ଆଡକୁ ଚାହିଁବାକୁ ବି କାହାରି ଇଚ୍ଛା ହେଉନଥିଲା । ଏହା ଫଳରେ ସୁଧାମଣି ଘରର ଯାବତୀୟ କାମ ସହ ତାଙ୍କର ସେବା ଶୁଶ୍ରୁଷାର ଦାୟିତ୍ୱ ମଧ୍ୟ ଧୈର୍ଯ୍ୟ ସହକାରେ ସଂପନ୍ନ କରୁଥିଲେ । ସେ ତାଙ୍କର ଝାଡା ପରିଶ୍ରା ସଫା, ଲୁଗାକଚା, ତାଙ୍କୁ ଗରମ ଜଳରେ ଗାଧୁଆ, ଔଷଧ ଠିକ୍ ସମୟରେ ଦେବା ଇତ୍ୟାଦି ସବୁକାମ କରି ନିଜ ମହନୀୟତାର ଉଦାହରଣ ଦେଖାଇ ଥିଲେ । ହେଲେ ତାଙ୍କ ପରିବାରର ଲୋକେ ଏକଥା ବୁଝିବା ପାଇଁ ଅସମର୍ଥ ଥିଲେ । ସବୁ ଜୀବାତ୍ମା ପ୍ରତି ତାଙ୍କର ସ୍ନେହ ଶ୍ରଦ୍ଧାର ଭାବକୁ ପରିବାର ଲୋକେ ବୁଝି ପାରୁ ନଥିଲେ । ତାଙ୍କୁ ପରୋପକାରର ମହାନୀୟତା ଯୋଗୁଁ ହିଁ ନିର୍ଯ୍ୟାତନା ମିଳୁଥିଲା ।

ନିଜକୁ କୃଷ୍ଣ, ରାଧା, ଗୋପୀ କିମ୍ବା ସେହିପରି ଅନ୍ୟ କୌଣସି ଚରିତ୍ର ଭାବି ସୁଧାମଣି ସବୁ କର୍ମ ସଂପାଦନ କରୁଥିଲେ । ରୋଷେଇ କରୁଥିବା ବେଳେ ନିଜେ କୃଷ୍ଣଙ୍କୁ କାଖରେ ଧରି ଦଧି ମନ୍ଥନ କରୁଥିବା ବାତ୍ସଲ୍ୟ ପ୍ରେମରେ ତନ୍ମୟ ଯଶୋଦା ବୋଲି ଭାବୁଥିଲେ । ଯେତେବେଳେ ସୁଧାମଣି ଛୋଟ ଭାଇ ଭଉଣୀଙ୍କୁ ସ୍କୁଲକୁ ଯିବା ପାଇଁ ପୋଷାକ ପିନ୍ଧାଇ ଦିଅନ୍ତି, ସେ କୃଷ୍ଣ, ବଳରାମଙ୍କୁ ଗାଈ ଚରାଇ ଯିବା ଆଗରୁ ସଜାଉଛନ୍ତି ବୋଲି ଭାବନ୍ତି । ଅନ୍ତର୍ମୁଖୀ ହୋଇ ଏସବୁ ଭାବି କାମ କଲାବେଳେ ତାଙ୍କ ଆଖି ଆନନ୍ଦରେ ସଜଳ ହେଉଥିଲା । ସେ ଯେତେବେଳେ ବଜାରକୁ ସଉଦା କରିବାକୁ ଯାଆନ୍ତି, ବୃନ୍ଦାବନରେ ଗୋପୀ ମାନଙ୍କୁ ହିଁ ଦୁଧ, ଲହୁଣୀ ବିକିବାର କଳ୍ପନାରେ

ଦେଖନ୍ତି । ଗୋପୀମାନେ ଭକ୍ତି ପ୍ରେମରେ ଭୋଳ ହୋଇ ଦୁଧ, ଲହୁଣୀ ନ ଡାକି ଡାକୁଥିଲେ କୃଷ୍ଣ, ମାଧବ, ଗୋବିନ୍ଦ, ଅଚ୍ୟୁତ..... ! ଏହା ଥିଲା ତାଙ୍କ ପ୍ରେମାନୁଗତ୍ୟର ଆତିଶଯ୍ୟ ।

ଗୋପୀ ମାନଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଗଭୀର ଅନାବିଳ ପ୍ରେମ ହିଁ ସୁଧାମଣିଙ୍କୁ ଅନୁପ୍ରାଣିତ କରିବାର ମୂଳ ଉତ୍ସ ଥିଲା । ରାଧାଙ୍କ କଥା ଭାବିଲାମାତ୍ରେ ତାଙ୍କର ବାହ୍ୟଜ୍ଞାନ ଚାଲିଯାଉଥିଲା । ସେ ସଂପୂର୍ଣ୍ଣ ଭାବମଗ୍ନ ହୋଇ ଆଖିରୁ ଲୁହ ଝରାଇ ନାଚିବା, ଗାଇବା ଆରମ୍ଭ କରି ଦେଉଥିଲେ ।

ଶ୍ୟାମ ସୁନ୍ଦର ହେ...
ଦରଶନ ଲାଗି ତବ ପଦ୍ମ ପୟର
ଜଳଇ ନୟନ ମୋର ତୃଷ୍ଣା-ଆତୁର ।
ବେଣୁ ବାଦନ କରି ହେ କମଳନୟନ
ଗାଈ ଗୋପାଳଙ୍କ ସଙ୍ଗେ ଆସ ବହନ ॥

ଡାକୁଛି ଦୀନ କେତେ ଦିନୁ ହେ ମୁରାରୀ
ଦୟା ହୁଏନା କିଆଁ ତୁମ ମନେ ହରି ।
କେଉଁ ପାତକ ଲାଗି ମୋତେ ଦଣ୍ଡୁଅଛ
ଭକତ ପ୍ରାଣବତ୍ସଳ ନାମ ବହିଛ ॥

କାନ୍ଦି ମୁଁ ଲୋଟେ କାହ୍ନୁ ତୁମର ପୟର
ଆସ ମୋ ପାଶେ ବେଗେ ହେ ମୁରଲୀଧର ।
ଦରଶନ ବିନା ମୁଁ ବଂଚିବି କିପରି
ଆସ ମୋର ଚିରସତ୍ୟ ପ୍ରଭୁ ଶ୍ରୀହରି ॥

ମୋର ପ୍ରଭୁ ବାଞ୍ଛାନିଧି ଜଗତ କାରଣ
ଆସ ମୋ ଘନଶ୍ୟାମ କରଇ ବରଣ ।
ବିଳମ୍ବ ନକର ହେ ଦୁଃଖ ନ ବଢ଼ାଅ
କରୁଣାନିଧି ଆସି ଆବିର୍ଭାବ ହୁଅ ॥

ସୁଧାମଣି ପାଣି ଆଣିବାକୁ ଗଲା ବେଳେ, ଗୋପୀ ମାନଙ୍କ ପରି ମୁଣ୍ଡରେ କଳସୀ ଧରି ଯମୁନାକୁ ପାଣି ଆଣିବାକୁ ଯିବା କଥା ଭାବୁଥିଲେ । ସେ ଯେତେବେଳେ ପରିବାରର ଲୁଗା କାଚୁଥିଲେ, ଭାବୁଥିଲେ ସେ କୃଷ୍ଣ ଓ ଗେପୀଙ୍କର ରେଶମୀ ବସ୍ତ୍ର ସଫା କରୁଛନ୍ତି । ତାପରେ ଲୁଗା ଗୁଡିକୁ ଦଉଡିରେ ଶୁଖାଇଲା ବେଳେ ପବନରେ ଲୁଗା ଉଡୁଥିବା ଦେଖି ଭାବୁଥିଲେ "ଦେଖ କୃଷ୍ଣଙ୍କର ହଳଦିଆ ରେଶମୀ ଲୁଗା ପବନରେ ନାଚି କିପରି ସୁନ୍ଦର ଦିଶୁଛି ?" ସେ ଯେତେବେଳେ ଗାଈଙ୍କୁ ଘାସ କାଟି ଖୁଆଉଥିଲେ, ବୃନ୍ଦାବନର ବଣ ପ୍ରାନ୍ତର ରେ ଗାଈ ଚରାଇବା କଥା ହିଁ ଭାବୁଥିଲେ । ସୁଧାମଣି କୃଷ୍ଣଙ୍କର ଗାଈଆଳ ପିଲାଙ୍କ ସହ ଲୀଳା ଖେଳା ଓ ଗୋପୀଙ୍କ କଥା ଭାବି ଆନନ୍ଦରେ ଅଧୀର ହୋଇ ଯାଉଥିଲେ ।

ସନ୍ଧ୍ୟା ସମୟ ସୁଧାମଣିଙ୍କର ଅତି ପ୍ରିୟଥିଲା । ସେତେବେଳେ ସେ ନାଳରେ ପଶି ଗାଈ, ଛେଳି, କୁକୁଡା ଓ ବତକ ମାନଙ୍କୁ ଖୋଜି ଖୋଜି ଅଡାଇ ଆଣୁଥିଲେ । ଏପରି କଲାବେଳେ ସେ କୃଷ୍ଣଙ୍କର ହଜିଥିବା ଗାଈ, ବାଛୁରୀ ଖୋଜି ଅଡାଇ ଗୋପ ପୁରକୁ ଆଣିବା କଥା ଭାବୁଥିଲେ । ସନ୍ଧ୍ୟା ସମୟରେ ଭଜନ ଶୁଣି ନିଶ୍ଚଳ ହୋଇ ବସି, ଆଉ ଗୋଟିଏ ଜଗତକୁ ଯେପରି ଚାଲିଯାଉଥିଲେ । ଏପରି ଘଟଣା ବାରମ୍ବାର ଘଟୁଥିଲା । ତାଙ୍କର ପରିବାରର ଲୋକମାନେ ବିରକ୍ତ ହୋଇ ଅନ୍ଧାରରେ ତାଙ୍କୁ ଖୋଜିବାକୁ ଯାଉଥିଲେ ।

ସୁଧାମଣି ଯଦିବା ଅନବରତ କିଛି ନା କିଛି କାମରେ ଲାଗିଥାନ୍ତି, ତାଙ୍କର ମନଟି କାମରେ ନଥାଏ । ତାଙ୍କର ମନ ସବୁବେଳେ କୃଷ୍ଣଙ୍କର ଭାବନାରେ ହିଁ ମଗ୍ନ ରହିଥାଏ । ସେହି ପବିତ୍ର ନାମ ସବୁବେଳେ ଓଠରେ ଲାଗି ରହିଥାଏ । "କୃଷ୍ଣ" ଶବ୍ଦଟି ଶୁଣିଲେ ହିଁ ତାଙ୍କ ଆଖିରେ ଲୁହ ଭର୍ତ୍ତି ହୋଇ ଯାଏ । ସେ ସବୁବେଳେ କର୍ମରତ ଥାଆନ୍ତି । ପାଣି ବୋହିବା, ସମସ୍ତଙ୍କର ଲୁଗା କଚା ଇତ୍ୟାଦି ପାଣି କାମ କରି ତାଙ୍କର ପିନ୍ଧାଲୁଗା ଦିନ ରାତି ଓଦା ରହେ । ବର୍ତ୍ତମାନ ସେ କହନ୍ତି "ମୁଁ ନିଜ ଲୁଗାପଟା ଶୁଖିଲା ରଖିବାକୁ କେତେ ଚେଷ୍ଟା କରୁଥିଲି ! ଯଦିଓ ମୋର ଗୁଡାଏ କାମ ଥାଏ, ମୁଁ ଆହୁରି କାମ ପାଇଁ ପ୍ରଭୁଙ୍କୁ ପ୍ରାର୍ଥନା କରେ । ତାହେଲେ ମୋର ପ୍ରତ୍ୟେକଟି କାର୍ଯ୍ୟ ତାଙ୍କୁ ହିଁ ଅର୍ପିତ ହୋଇ ପାରିବ । ରୋଷେଇ ପାଇଁ ପାଣି ମାଠିଆ ଓ ଗାଈ ପାଇଁ ଗରମ ଫୁଟୁଥିବା ପେଜ ମୁଣ୍ଡ ଉପରେ ସବୁବେଳେ ବୋହିବା ଫଳରେ ମୋ ମୁଣ୍ଡରୁ

ବାଳ ସବୁ ଛିଣ୍ଡି ଯାଉଥିଲା" ।

ତଥାପି ସୁଧାମଣି ଯାହାବି କାମ କରୁଥାନ୍ତି ତାଙ୍କର ଓଠ ଦୁଇଟି ସବୁବେଳେ ପ୍ରଭୁଙ୍କ ନାମ ନେଇ ଚାଲିଥାଏ । ସେ ଯେ ଅନବରତ ପ୍ରଭୁଙ୍କ ଜପ କରୁଛନ୍ତି, ସେ କଥା କେହି ବୁଝି ପାରୁନଥିଲେ । ତାର ଛୋଟ ଭାଇ ସତୀଶର ମଧ୍ୟ ପରିବାରର ଅନ୍ୟ ଲୋକ ମାନଙ୍କ ପରି ସୁଧାମଣିଙ୍କୁ କର୍କଶ କଥା କହିବାର ଅଭ୍ୟାସ ହୋଇ ସାରିଥିଲା । ଦିନେ ସେ କହିଥିଲା "ସବୁବେଳେ ଓଠ ଟୁପ୍ ଟୁପ୍ କରିବା ହେଉଚି ପାଗଳାମୀର ଲକ୍ଷଣ" । ସିଏ ସତୀଶର ମନ୍ତବ୍ୟ ଶୁଣିଥିଲେବି ଜମାରୁ ମନ ଦୁଃଖ କରିନଥିଲେ । ବରଂ ଯେତେବେଳେ ସତୀଶ ଭୀଷଣ ଶ୍ୱାସ ରୋଗରେ ଆକ୍ରାନ୍ତ ହୋଇ ପଡୁଥିଲେ, ପରିବାରର ଅନ୍ୟ ଲୋକେ ଥିବା ସତ୍ୱେ ସୁଧାମଣି ତାଙ୍କୁ କାଖେଇ ସିଧା ହସପିଟାଲକୁ ନେଇ ଯାଉଥିଲେ । ସତୀଶର ଶ୍ୱାସ ରୋଗର ଆକ୍ରମଣ ଅବସ୍ଥାକୁ କେହି ଗୁରୁତ୍ୱ ଦେଉନଥିଲେ । କିନ୍ତୁ ଏହି ନିରୀହ ଝିଅଟି ସବୁବେଳେ ସେବାର ସୁଯୋଗକୁ ଅପେକ୍ଷା କରି ରହିଥାଏ ।

ଘରେ ପଡି ରହୁଥିବା ସବୁକାମ ଶେଷ କରୁ କରୁ ଅନେକ ରାତି ହୋଇଯାଏ । ଘର ଓ ସାହି ପଡିଶାରେ ସବୁ ବତି ଲିଭି ଯାଏ, ଚାରିଆଡ ଅନ୍ଧାର ହୋଇଯାଏ । ସେତେବେଳେ ସୁଧାମଣି ପୂଜା ଘରେ ବସି ବଡ ପାଟିରେ ଭଜନ ଗାଆନ୍ତି । ଦମୟନ୍ତୀ ଓ ସୁଭଗନ ତାଙ୍କ ନିଦରେ ବ୍ୟାଘାତ ଘଟୁଥିବା ଯୋଗୁ ଭୀଷଣ ଗାଳି ଦିଅନ୍ତି । ତାଙ୍କ ବଡ ଭାଇ ସୁଭଗନ ଟିପ୍‌ପଣୀ ଦିଅନ୍ତି "ତୁ ଏପରି କାହିଁକି ଭେରେଣ୍ଡା ରଡି ଛାଡୁଚୁ ? କଣ ସତରେ ଭଗବାନ ସ୍ୱର୍ଗରେ ସବୁ ଶୁଣି ପାରୁଛନ୍ତି ? ତୋ ଠାକୁର କଣ କାଲ ?"ତଥାପି ନିର୍ଜନ ରାତିରେ ସେ ବଡ ପାଟିରେ ଭଜନ ଗାଇବା ବନ୍ଦ କରୁ ନଥିଲେ । ଥରେ ସୁଭଗନ ଠାକୁର ଘରକୁ ଆସି ରାଗି ତାଙ୍କର ଅନ୍ଧାର ରାତିରେ ଭଜନ ଗାଇବା ନେଇ ଖୁବ୍ କଟୁ କଥା କହିଥିଲେ । ସଙ୍ଗେ ସଙ୍ଗେ ସୁଧାମଣି ଅନ୍ଧାର ଭିତରୁ କହି ଉଠିଥିଲେ "ତୁମେ ଖାଲି ବାହାରକୁ ଆଲୋକ ଦେଉଥିବା ବତୀକୁ ଦେଖି ପାରୁଛ, ମୋ ହୃଦୟ ଭିତରେ ଯେ ଅଖଣ୍ଡ ଦୀପ ଜଳି ଚାଲିଛି !" କହିବା ବାହୁଲ୍ୟ, ଏହି କଥାଟିର ମର୍ମ ଅଜ୍ଞାନୀ ସୁଭଗନ ବୁଝି ପାରିନଥିଲେ ।

ସୁଧାମଣିଙ୍କର ଭୟ ହେଉଥିଲା ଯେ କାଳେ ଭଜନ ଗାଉଥିଲା ବେଳେ ମାଡ ଦେଉଥିବା ଯୋଗୁ ତାଙ୍କ ବାପା, ମା, ଭାଇଙ୍କୁ ଭଗବାନ ଶାସ୍ତି ଦେବେ । ସେମାନେ

ଯେପରି ପାପ ଅର୍ଜନ ନ କରନ୍ତି, ସେଥିଲାଗି ସେ ଅନେକ ସମୟରେ ଧୀରେ ଧୀରେ ଭଜନ ଗାଉଥିଲେ । ପରିବାରର ଏପରି ମତିଗତିରେ ବିଷଣ୍ଣ ହୋଇ ସୁଧାମଣି ପୂଜାଘରେ ବେଳେ ବେଳେ ଚୁପ୍‌ଚାପ୍ କାନ୍ଦନ୍ତ । ତାହା ଦେଖି ପରିବାର ଲୋକେ କହିଲେ ସୁଧାମଣିର ଏପରି କାନ୍ଦି କାନ୍ଦି ଭଜନ ଗାଇବା ପାପ ଓ ଏହା ପରିବାର ପାଇଁ ଭାରି ଅମଙ୍ଗଳ ଜନକ । ସୁଧାମଣି ଯାହା କଲେ ବି ସେମାନେ କିଛି ନା କିଛି ଦୋଷ ତା ଭିତରୁ ବାହାର କରନ୍ତି । ବିଚାରୀ ସୁଧାମଣି ! ସେ ନୀରବରେ ସବୁ ସହ୍ୟ କରି, କୃଷ୍ଣଙ୍କର ମଧୁର ଲୀଳା କଥା ଭାବି ସବୁ ଦୁଃଖ ଭୁଲି ଯାଆନ୍ତି । ପିଲାବେଳୁ ସୁଧାମଣି କେବେବି ତାଙ୍କ କୌଣସି ଦୁଃଖ କାହା ଆଗରେ ପ୍ରକାଶ କରୁନଥିଲେ । କେବଳ ସେହି କୃଷ୍ଣଙ୍କ ପାଖରେ ହିଁ ନିଜ ଦୁଃଖର ବୋଝକୁ ଅଜାଡି ନିଜକୁ ହାଲୁକା କରନ୍ତି । ସୁଧାମଣିଙ୍କ ଜୀବଜନ୍ତୁ ଓ ବନଲତାଙ୍କ ସହ କଥାବର୍ତ୍ତା କରିବାର ମଧ୍ୟ ଅଭ୍ୟାସ ଥିଲା । ସେ କଳ୍ପନା କରୁଥିଲେ ଯେପରି କୃଷ୍ଣ ହିଁ ତାଙ୍କ ଗୁହାରୀ ମନଦେଇ ଶୁଣୁଛନ୍ତି । ସବୁ ଜୀବକୁ ସେ କୃଷ୍ଣ ବୋଲି ଭାବି ସମସ୍ତଙ୍କ ଆଗରେ କଥା କହୁଥିଲେ । ଶୋଇଥିବା ଗାଈ ପାଖରେ ଶୋଇପଡି, ସନ୍ତୋଷର ସହ ଭାବୁଥିଲେ ଯେପରି କି ସେ କୃଷ୍ଣଙ୍କର କୋଳରେ ଶୋଇଛନ୍ତି ।

ଆକାଶର ଚନ୍ଦ୍ର, ତାରା ଓ ଫୁଲ ଗଛ ମାନଙ୍କୁ ଦେଖି ସୁଧାମଣି ପଚାରୁଥିଲେ "ହେ ସଖାମାନେ, ତୁମେ ମାନେ ମୋ କୃଷ୍ଣଙ୍କୁ ଦେଖିଛ ? ହେ ସୁନ୍ଦର ମଳୟ, ତୁମେ କେବେ ସେହି ମୁଗ୍ଧକାରୀ କୃଷ୍ଣଙ୍କୁ ଆଲିଙ୍ଗନ କରିଛ ? ହେ ଉଜ୍ଜ୍ୱଳ ତାରକା ଓ ନୀରବ ଚନ୍ଦ୍ର, ତୁମେ କୁହ ଏଠି କଣ ତାଙ୍କୁ ଖୋଜୁଛ ? ଯଦି ତୁମେ ତାଙ୍କୁ ପାଅ, ତେବେ ଯାଇ କୁହ ଏଠି ସୁଧାମଣି ତାଙ୍କୁ ଅପେକ୍ଷା କରି ବସିଛି !"

କିଏଗୋ ଦେଖିଛ ଆହା ମୋ ପ୍ରିୟ କାହ୍ନୁକୁ
ଦେଖାଦିଏ ପରା ସିଏ ତା ପ୍ରିୟ ଭକ୍ତଙ୍କୁ ।
ମୁଁ ଦେଖିପାରେନା ତାକୁ ତୁମେ ସବୁ ଦେଖ
ପୀତାମ୍ବର ବାସ, ଲଲାଟେ ଚନ୍ଦନ ତିଳକ ॥

ମୟୂର ଚନ୍ଦ୍ରିକା ତା ଶିରେ କୁଂଚିତ କେଶ
କେବେ ବି ମୁଁ ଦେଖିବି ଗୋ ସେ ମନୋହର ବେଶ ॥

ଦେହ ବା ଜୀବନେ ଆଉ କିବା ପ୍ରୟୋଜନ
ସୁଖ ଶିରୀ ସରିଛି ମୋ ତୋ ବିନା ମୋହନ ॥

କେତେଦିନ ଆଉ ମୁହିଁ ସହିବି କଷଣ
ସାହା ହୁଅ ମୋତେ ଆସି ପ୍ରଭୁ ଭଗବାନ ॥

'ମା ସମୁଦ୍ର' ମଧ୍ୟ ସୁଧାମଣିଙ୍କ ଆଉ ଗୋଟିଏ ବନ୍ଧୁ ଥିଲା ଓ ସେ ସମୁଦ୍ରକୁ ନିଜ ମା ବୋଲି ମନେ କରୁଥିଲେ । ଯେତେବେଳେ ଖାଲି ସମୟ ଟିକିଏ ମିଳୁଥିଲା, ସେ ସମୁଦ୍ର କୂଳକୁ ଯାଇ ଅସରନ୍ତି ପାଣିର ବଳୟକୁ ଅନେଇ ନିଜ ମନର ଦୁଃଖ କହି ଦେଉଥିଲେ । ସମୁଦ୍ରର ନୀଳ ରଙ୍ଗ ତାଙ୍କୁ ନିଜର ପ୍ରିୟତମ କୃଷ୍ଣ ବୋଲି ମନେ ହେଉଥିଲା ଓ ସାଙ୍ଗେ ସାଙ୍ଗେ ସେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ପଡୁଥିଲେ ।

ସୁଧାମଣିଙ୍କ ପାଖ ପଡିଶାର ଲୋକମାନେ ଦର୍ଜି କାମ କରି ପେଟ ପୋଷୁଥିଲେ । ସିଲେଇରୁ ରୋଜଗାର ପଇସାରେ ସେ ହୁଏତ ଅନ୍ୟମାନଙ୍କୁ ସାହାଯ୍ୟ କରି ପାରିବେ ବୋଲି ଭାବି ତାଙ୍କର ସିଲେଇ ଶିଖିବାକୁ ଭାରି ଇଛା ହେଲା । ଏହା ଫଳରେ ଘରୁ ଚୋରି କରି ଅନ୍ୟକୁ ସାହାଯ୍ୟ କରିବା ଯୋଗୁଁ ଅଶାନ୍ତି ସୃଷ୍ଟି ହେବ ନାହିଁ । ଆଶାନ୍ୱିତ ହୋଇ ସୁଧାମଣି ତାଙ୍କର ସିଲେଇ ଶିଖିବା ଇଛା ବାପା ମାଙ୍କୁ ଜଣାଇଥିଲେ । ଦମୟନ୍ତୀ ଏ ଇଚ୍ଛାକୁ ପ୍ରଶୟ ନଦେଇ ଉତ୍ତର ଦେଇଥିଲେ "ତତେ ସେସବୁ ଶିଖିବାକୁ ପଠାହେବ ନାହିଁ" । ସୁଧାମଣି ଜିଦ୍ ଧରି ବସିଲେ । ବାପା ମାଙ୍କୁ ରାଜି କରାଇଲେ ଯେ ଘରର ସବୁ କାମ ଶେଷ କରି ସାରି ସେ ଘଂଟାକ ପାଇଁ ସିଲେଇ ଶିଖିବେ, ସେହି ସମୟରେ ସୁଧାମଣିର ଦୈନନ୍ଦିନ କାର୍ଯ୍ୟକ୍ରମ ଆଶ୍ଚର୍ଯ୍ୟ ଜନକ ଥିଲା । ସେ ଯେକୌଣସି ମତେ ଘରର ସବୁ କାମ ଦିନ ବାର ଟା ଆଗରୁ ଶେଷ କରି ସିଲେଇ କ୍ଲାସକୁ ଦୌଡୁଥିଲେ । ବେଳେ ବେଳେ ସିଲେଇ କ୍ଲାସର ଅନ୍ୟ ଝିଅମାନେ ସୁଧାମଣିଙ୍କ ଅବସ୍ଥା ବୁଝି ଆସି ତାଙ୍କୁ ଘର କାମରେ ସାହାଯ୍ୟ କରୁଥିଲେ । ଉଦୁଉଦିଆ ଖରାରେ ସୁଧାମଣି ଦୁଇ ତିନି କିଲୋମିଟର ବାଟ ଚାଲି ସିଲେଇ କ୍ଲାସକୁ ଯାଉଥିଲେ ଓ ଘଂଟାକ ପରେ ଘରର ଲୋକଙ୍କୁ ଦିପହର ଖାଇବାକୁ ଦେବାପାଇଁ ଦୌଡି ଦୌଡି ଫେରି ଆସୁଥିଲେ ।

ତା ପରେ ସାରା ଦିନ ସେହିପରି କଷ୍ଟଦାୟକ ଜଞ୍ଜାଳରେ ଭରା । ନିର୍ଜନ ରାତିରେ ହିଁ ତାଙ୍କୁ ଧ୍ୟାନ ଓ ଯୋଗ କରିବାକୁ ସମୟ ମିଳୁଥିଲା ଯାହାକୁ ସେ ସବୁଠୁ

ଆବଶ୍ୟକ କର୍ତ୍ତବ୍ୟ ମନେ କରୁଥିଲେ କୃଷ୍ଣ ଦର୍ଶନର ଅଭିଳାଷରେ କାନ୍ଦି ଭଗବତ୍ ପ୍ରେମ ବିହ୍ୱଳହୋଇ ସେ ବାହ୍ୟଜ୍ଞାନ ଶୁନ୍ୟ ହୋଇପଡୁଥିଲେ । ଅନେକ ସମୟ ପରେ ସାମାନ୍ୟ ସଚେତ ହୋଇ ଧୀରେ ଧୀରେ ଶୋଇ ପଡୁଥିଲେ । ଏ ସମୟରେ ସୁଧାମଣିଙ୍କର ଧୈର୍ଯ୍ୟ, ସହନଶୀଳତା, ଅଫୁରନ୍ତ ଅନ୍ତର୍ନିହିତ ଶକ୍ତି ଆଶ୍ଚର୍ଯ୍ୟ ଧରଣର ଥିଲା । ଯେକୌଣସି କାର୍ଯ୍ୟର ଭାର ତାଙ୍କ ଉପରେ ଲଦି ଦିଆଗଲେ ମଧ୍ୟ ଅଭିଯୋଗ ନକରି ସେ ଖୁସିରେ ସଂପାଦନ କରୁଥିଲେ । ସୁଧାମଣି ମନେ କରୁଥିଲେ ଯେ ତାଙ୍କର ଜନ୍ମାଧିକାର ଓ ଧର୍ମ ହେଲା ସମସ୍ତଙ୍କୁ ସାହାଯ୍ୟ କରିବା । ପରେ ସେ ବୁଝାଇଥିଲେ "ମୋର ଆନନ୍ଦ ହେଉଛି ସମସ୍ତଙ୍କର ସୁଖ ଦେଖିବା । ତେଣୁ ମୋ ନିଜର ସୁଖ ବା କାମର ବୋଝ କଥା ମୁଁ କେବେବି ଭାବୁ ନଥିଲି । ମତେ ଯେତେବେଳେ ଅନ୍ୟର ସେବା କରିବାର ସୁଯୋଗ ମିଳୁଥିଲା, ମୁଁ ପ୍ରାଣ ପଣେ ସେମାନଙ୍କୁ ମୋର ସମସ୍ତ ସ୍ନେହ ଓ ନିଷ୍ଠା ସହ ସାହାଯ୍ୟ କରୁଥିଲି" ।

ପ୍ରଥମେ ସୁଧାମଣି ଅଲଗା ଅଲଗା ଦୁଇଟି ଜାଗାରେ ସିଲେଇ କାମ ଶିଖୁଥିଲେ । କିଛି ଦିନ ପରେ ସେ ଅନ୍ୟ ଗୋଟିଏ ଦୂର ସ୍ଥାନର ସିଲେଇ କର୍ମଶାଳାରେ ଯୋଗ ଦେଲେ । ଖୁବ୍ ଶିଘ୍ର ଦର୍ଜି କାମ ଶିଖିଯାଇ ସେ ପାଖ ଆଖ ଗରିବ ସ୍ତ୍ରୀ ଲୋକ ମାନଙ୍କ ପାଇଁ ଛୋଟ ଛୋଟ କାମ କରିବା ଆରମ୍ଭ କଲେ । ପ୍ରଥମେ ସେ ପଇସା ନେବାକୁ ମନା କରୁଥିଲେ । ସେବା ପାଇଁ ସେ କାହାଠୁ ପଇସା ନେବାକୁ ଆଦୌ ଇଛା କରୁନଥିଲେ । କିନ୍ତୁ ଯେତେବେଳେ ତାଙ୍କର ବାପା ମା ଆଉ ତାଙ୍କର ସିଲେଇ ଶିକ୍ଷା ପାଇଁ ପଇସା ଦେବେ ନାହିଁ ବୋଲି କହିଲେ, ସେ ନିରୁପାୟ ହୋଇ ନିଜର ଶ୍ରମର ମୂଲ୍ୟ ଗ୍ରହଣ କରିଥିଲେ । ଏହିପରି ସେ ସିଲେଇ ଶିକ୍ଷାର ଖର୍ଚ୍ଚ ଦେଇ ବଳକା ପଇସା ଅତି ଦରିଦ୍ର ଗ୍ରାମବାସୀ ମାନଙ୍କୁ ସାହାଯ୍ୟ କରୁଥିଲେ । ଏଥିରୁ ସେ ସିଲେଇ ପାଇଁ ଦରକାରୀ ଜିନିଷ ମଧ୍ୟ କିଣି ପାରୁଥିଲେ । ସୁଧାମଣି ଖୁବ ଭଲ ସିଲେଇ କରିପାରୁଥିଲେ ଓ ଆସ୍ତେ ଆସ୍ତେ ଭଲ ପଇସା ରୋଜଗାର କରିବାକୁ ଆରମ୍ଭ କରିଥିଲେ । ନିଜ ଘରକୁ ଗୋଟିଏ ପଇସା ମଧ୍ୟ ନଦେଇ ତାଙ୍କର ସମସ୍ତ ରୋଜଗାର ଗରିବ ମାନଙ୍କର ସେବାରେ ଲଗାଉଥିଲେ ।

ଗୀର୍ଜାର କର୍ମଶାଳାରେ ସିଲେଇ କଲାବେଳେ ଭକ୍ତି ଭାବରେ ନିମଗ୍ନ ରହି ଭଜନ ଗାଉ ଗାଉ ସୁଧାମଣିଙ୍କ ଆଖିର ଲୁହ ସିଲେଇ ମେସିନ ଉପରେ ପଡିଯାଏ ।

ସେଇ ଗୀର୍ଜାର ଦୟାଳୁ ଧର୍ମ ଯାଜକ ତାଙ୍କୁ ଭାରି ଆଦର କରିବାକୁ ଲାଗିଲେ ।

ସତୀଶ ସବୁବେଳେ ଭଉଣୀ ସାଙ୍ଗରେ ଗୀର୍ଜାକୁ ଯାଉଥିଲା ଏବଂ କ୍ଲାସ ସରିବାଯାଏ ଚର୍ଚ୍ଚ ବାହାରେ ବସୁଥିଲା । ଦିନେ ପାର୍ଥନା ସମୟରେ ସୁଧାମଣି ତାକୁ ପଚାରିଲେ "ତୁ କାହିଁକି ଯାଇ ପ୍ରାର୍ଥନାରେ ଯୋଗ ଦେଉନୁ" ? ସେ ଉତ୍ତର ଦେଲା "ଆମେ ସବୁ ହିନ୍ଦୁ ପରା" ? ସୁଧାମଣି ତାକୁ ପୁଣି କହିଲେ "ତୁ ଯାଇ ଧର୍ମଯାଜକଙ୍କୁ ପ୍ରାର୍ଥନାରେ ଯୋଗ ଦେବା ପାଇଁ ଅନୁମତି ମାଗ" । ଧର୍ମଯାଜକ ଖୁବ୍ ଖୁସୀରେ ରାଜି ହେଲେ । ସେହି ଦିନଠାରୁ ସତୀଶ ସବୁବେଳେ ପ୍ରାର୍ଥନାରେ ଯୋଗ ଦେଉଥିଲା ।

ସିଲେଇ କାମ ସରିଗଲାପରେ, ସୁଧାମଣି ଚର୍ଚ୍ଚର ସମାଧି ବାଡିରେ ବସି ସିଲେଇ କାମ କରୁଥିଲେ । ସେଠାକାର ନିର୍ଜନତା ତାଙ୍କୁ ଭଲ ଲାଗୁଥିଲା । ସମାଧି ବାଡିରେ ବସି ସେ ମୃତାତ୍ମା ମାନଙ୍କୁ ପଚାରୁଥିଲେ "କେମିତି ତୁମ ମାନଙ୍କର ଜୀବନ ? ତୁମେ ମାନେ କେଉଁଠି ରହୁଚ ? ତୁମେ ମାନେ କଣ ସୁଖୀ ? ତୁମେ ମାନେ କଣ କିଛି ଅନୁଭବ କରିପାର ?" ଓ ସେମାନଙ୍କୁ ସାନ୍ତ୍ୱନା ବି ଦେଉଥିଲେ ।

ସୁଧାମଣିଙ୍କ ସାଙ୍ଗର ବଡ ଭଉଣୀ କସ୍ତୁରୀ ସେହି ସମାଧି ବାଡିରେ ପୋତା ହୋଇଥିଲା । ସୁଧାମଣି ନିଜ ପରିବାର ପାଖରୁ ଲାଞ୍ଛନା, ଗଞ୍ଜଣା ପାଇବା ବେଳେ, ସେ ଅତ୍ୟନ୍ତ ସ୍ନେହାଦର କରୁଥିଲେ । ସୁଧାମଣିର ସମାଧି ବାଡିକୁ ଯିବାର ଆଗ୍ରହର ଏହାବି ଗୋଟିଏ କାରଣ ହୋଇଥାଇପାରେ । ସେ ହାଲୁକା ହୋଇ ବୁଲୁଥିବା ଆତ୍ମା ମାନଙ୍କ ସହ କଥାବାର୍ତ୍ତା କରୁଥିଲେ ଓ ସେମାନଙ୍କ ଶାନ୍ତି ନିମନ୍ତେ ଦୁଃଖରେ ଗୀତ ଗାଇଥିଲେ । ବେଳେ ବେଳେ ବସି ଜପ କରୁକରୁ ସମାଧି ବାଡିର ନିର୍ଜନତା ଓ ନୀରବତା ଭିତରେ ସେ ନିଜେ ସମାଧିସ୍ଥ ହୋଇ ରହୁଥିଲେ ।

ସବୁକାମ ସରିବାପରେ ଯେବେ କିଛି ସମୟ ମିଳେ, ସୁଧାମଣି ଗୁମ୍ଫାପରି ଦିଶୁଥିବା ଚର୍ଚ୍ଚର ଭିତର ବଖରାକୁ ଯାଆନ୍ତି । କ୍ଷୀଣ ଆଲୋକରେ, କ୍ରୁସ ଉପରେ ବିଦ୍ଧ ଥିବା ଯୀଶୁଙ୍କୁ ଅବଲୋକନ କରନ୍ତି । ଯୀଶୁଙ୍କୁ ଦେଖି ତାଙ୍କର ପ୍ରିୟ କୃଷ୍ଣ କଥା ମନେପଡେ । ସେହିକ୍ଷଣି ସେ ବିହ୍ୱଳ ହୋଇ ପଡନ୍ତି । ଯେତେବେଳେ ବାହ୍ୟଜ୍ଞାନ ଫେରି ଆସେ, ଯୀଶୁ ଓ କୃଷ୍ଣଙ୍କର ସ୍ନେହ ଓ ବଳିଦାନ କଥା ଭାବି ତାଙ୍କ ଆଖିରୁ ଅଜସ୍ର ଲୁହଧାରା ଝରି ପଡେ । ସେ ଭାବନ୍ତି "ଆହା ! ଦୁହେଁ କିପରି ପୃଥିବୀ ପାଇଁ ବଳିଦାନ

କରିଛନ୍ତି । ଲୋକେ ତାଙ୍କର ବିରୋଧୀ ହେବା ସତ୍ତ୍ୱେ ସେମାନେ ଲୋକମାନଙ୍କୁ ଭଲ ପାଇଛନ୍ତି । ଯଦି ସେମାନେ ଏପରି ମହତ୍ କାମ କରିପାରିଲେ, ତେବେ ମୁଁ କାହିଁକି ନପାରିବି ? ଏଥିରେ ମୁଁ କିଛି ନୂଆ କାମ କରୁନାହିଁ" ।

ସୁଧାମଣି ଗ୍ରାମବାସୀ ମାନଙ୍କର ଅତୀବ ଦରିଦ୍ରାବସ୍ଥା ବିଷୟରେ ଜାଣିଥିଲେ । ସେମାନଙ୍କର ଦୁଃଖ ଓ ଯାତନା କଥା ଭାବି ଘଂଟା ଘଂଟା ଧରି ସେହି ବଖରାରେ ବସି କାନ୍ଦୁଥିଲେ । ସେ ପ୍ରାର୍ଥନା କରନ୍ତି "ହେ ଭଗବାନ, ଏ କି ଧରଣର ଜୀବନ ? ଲୋକମାନେ ଦିନ ରାତି ହାଡଭଙ୍ଗା ଖଟୁଛନ୍ତି ଖାଲି ଟିକିଏ ପେଟର ଭୋକ ମେଂଟେଇବାକୁ । ହେ କୃଷ୍ଣ! ତୁମେ କାହିଁକି ସେମାନଙ୍କୁ ଭୋକରେ ରହିବାକୁ ଦେଉଚ ? ସେମାନେ କାହିଁକି ରୋଗ ଭୋଗୁଛନ୍ତି ? ମୁଁ ଯେଉଁଆଡେ ଦେଖୁଛି ଖାଲି ସ୍ୱାର୍ଥପରତା ଯୋଗୁଁ ହିଁ ଅନେକ ଲୋକ କଷ୍ଟ ଭୋଗୁଛନ୍ତି । ପିଲାମାନେ ନିଜର ଦୀର୍ଘ ଆୟୁଷ ଓ ବୁଢ଼ା ବାପା ମାଙ୍କର ଶିଘ୍ର ମୃତ୍ୟୁ କାମନା କରି ପାର୍ଥନା କରୁଛନ୍ତି । କେହିହେଲେ ବୁଢାଲୋକଙ୍କର ଯତ୍ନ କରିବାକୁ ରାଜି ନୁହେଁ । ହେ ପ୍ରଭୁ ! ଏ କିପରି ଦୁନିଆ ? ଏପରି ସୃଷ୍ଟିର ମାନେ କଣ ?" ଏହିପରି ସରଳ ଝିଅଟି ପାର୍ଥନା ଓ ଜିଜ୍ଞାସା କରି ଚାଲିଥାଏ ।

ତିନିବର୍ଷ ପରେ ସୁଧାମଣି ଆଧାତ୍ମିକ ସାଧନାରେ ବେଶି ଜୋର ଦେବାକୁ ସ୍ଥିର କରି, ସିଲେଇ କାମ ଦ୍ୱାରା ସାଧନା ବ୍ୟାହତ ହେଉଛି ଜାଣି ସିଲେଇ ଶିକ୍ଷା ଛାଡିଦେଲେ । ସେହି ସମୟରେ ସେହି ଧର୍ମଯାଜକ ମଧ ଅନ୍ୟ ଗୋଟିଏ ଚର୍ଚ୍ଚକୁ ବଦଳି ହୋଇ ଯାଇଥିଲେ ।

ସେ ଯିବା ଆଗରୁ ସୁଧାମଣିଙ୍କୁ ବିଦାୟକାଳୀନ ଶୁଭକାମନା ଜଣାଇବା ପାଇଁ କିଛି ଝିଅଙ୍କ ହାତରେ ଇଡ଼ାମାନ୍ନେଲକୁ ଖବର ପଠାଇଥିଲେ । ସତୀଶ ସହ ସୁଧାମଣି ତାଙ୍କୁ ଶେଷଥର ଦେଖାକରିବା ପାଇଁ ଆସିଥିଲେ । ଝିଅଟିକୁ ଅନାଇ ଧର୍ମଯାଜକ ଜୋରରେ କାନ୍ଦି ଉଠିଥିଲେ । ସୁଧାମଣି ନୀରବରେ ଠିଆ ହୋଇଥିଲେ । ଧର୍ମଯାଜକ କହିଲେ "ଝିଅ ! ମୁଁ ଏଇ କାମ ଏଥର ଛାଡି ଦେଉଛି । ମୁଁ ଏଣିକି ସନ୍ୟାସୀ ଜୀବନ ଯାପନ କରିବାକୁ ସ୍ଥିର କରିଛି ।" "ଯେତେବେଳେ ସୁଧାମଣି ଓ ସତୀଶ ଫେରି ଆସୁଥିଲେ, ସେ ସତୀଶଙ୍କୁ କହିଲେ "ତୁମେ ଦେଖିବ, ସୁଧାମଣୀ ଭବିଷ୍ୟତରେ ଖୁବ୍

ମହାନ ହେବ" । ବୋଧହୁଏ ଏହି ଧର୍ମଯାଜକ ଛୋଟିଆ ସୁଧାମଣିର ଅନ୍ତର୍ନିହିତ ସ୍ୱଭାବକୁ ଉପଲବ୍ଧି କରି ପାରିଥିଲେ ।

ବର୍ତ୍ତମାନ ସିଲେଇ କାର୍ଯ୍ୟରେ ନିପୁଣା ସୁଧାମଣି ନିଜର ଗୋଟିଏ ସିଲେଇ ମେସିନ ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ଦମୟନ୍ତୀ ସେଥିପାଇଁ ତାଙ୍କୁ ତିରସ୍କାର କରିଥିଲେ । କିନ୍ତୁ ସୁଗୁଣାନନ୍ଦ ଅନେକଥର ମେସିନ ଆଣି ଦେବାର ପ୍ରତିଶ୍ରୁତି ଦେଇଥିଲେ । ସେ ଯାହାହେଉ ଶେଷପର୍ଯ୍ୟନ୍ତ ସିଲେଇ ମେସିନ ଆସିପାରିନଥିଲା । ସୁଧାମଣି ମନେ ମନେ ଠିକ୍ କଲେ "ମୁଁ ଆଉ ମେସିନ୍ ମାଗିବି ନାହିଁ, ଯଦି ଭଗବାନ ଗୋଟିଏ ଦେବେ ତାହାହେଲେ ବ୍ୟବହାର କରିବି । କିଛି ବର୍ଷ ପରେ ଯେତେବେଳେ ଭକ୍ତମାନେ ଧିରେ ଧିରେ ଇଡାମାନ୍ନେଲକୁ ଆସିବାକୁ ଆରମ୍ଭ କଲେ, ପିଟର ନାମକ ଜଣେ ଡଚ୍ ଭକ୍ତ ତାଙ୍କ ପାଇଁ ଗୋଟିଏ ସିଲେଇ ମେସିନ କିଣି ଦେଇଥିଲେ । ସେତେବେଳେ ତାଙ୍କର ନିଜର ପ୍ରତିଜ୍ଞା ମନେ ପଡିଥିଲା । ଭଗବାନ ପ୍ରକୃତ ଭକ୍ତର ମନଜାଣି ସବୁ ଆବଶ୍ୟକ ଜିନିଷ ଯୋଗାଇ ଦିଅନ୍ତି ।

କେବଳ ସୁଧାମଣିଙ୍କୁ ଛାଡିଦେଲେ ଘରର ଅନ୍ୟସବୁ ପିଲାମାନେ ହାଇସ୍କୁଲ କିମ୍ବା କଲେଜରେ ପଢୁଥିଲେ । ସେମାନେ ସମସ୍ତେ ଦେଖିବାକୁ ଗୋରା ଓ ସୁନ୍ଦର । ସୁଧାମଣିର ନୀଳ କଳା ରଙ୍ଗ ଓ ସେ ଘରର ଯାବତୀୟ କାମ ତୁଲାଉଥିବା ଯୋଗୁଁ ସେମାନେ ତାଙ୍କୁ ଗୋଟିଏ ଚାକରାଣୀ ବୋଲି ଧରିନେଇଥିଲେ । ଏପରିକି ତାଙ୍କୁ ଲୁଗାପଟା ପର୍ଯ୍ୟନ୍ତ ଦେଉନଥିଲେ । ସୁଧାମଣିର ଏପରି କଷ୍ଟ ଦେଖି ଗାଁ ଲୋକେ କହୁଥିଲେ "ସୁଧାମଣିଙ୍କୁ କୁଣ୍ଡା ଦେଇ କ୍ୱିଲନ୍‌ରେ କିଣା ହୋଇଥିଲା" । ତାଙ୍କ ବାପ ମା ସୁଧାମଣିଙ୍କୁ ହେୟଜ୍ଞାନ କରି ଘରେ ଛାଡି ଅନ୍ୟ ପିଲାମାନଙ୍କୁ ନେଇ ମନ୍ଦିର ଓ ଯାନିଯାତ୍ରା ଦେଖିବାକୁ ଯାଉଥିଲେ ।

ଥରେ ସୁଧାମଣି ଗୋଟିଏ ଚିତ୍ର ବିଚିତ୍ର ଛକି କନାର ବ୍ଲାଉଜ ପାଇ ଖୁସିରେ ପିନ୍ଧି ପକାଇଥିଲେ । ତାଙ୍କ ବଡ ଭାଇ ସେହିକ୍ଷଣି ତାକୁ ବାହାର କରିବାକୁ ଆଦେଶ ଦେଇଥିଲେ । ତାଙ୍କ ହାତରୁ ବ୍ଲାଉଜକୁ ଭିଡି ନେଇ ସେ ତାକୁ ନିଆଁରେ ଜଳାଇଦେଇ ଗର୍ଜନ କରିଥିଲେ "ଖାଲି ସମସ୍ତଙ୍କର ଦୃଷ୍ଟିରେ ପଡିବା ପାଇଁ ତୁ ଏପରି ଚିତ୍ର ବିଚିତ୍ର ପୋଷାକ ପିନ୍ଧୁଛୁ, ନୁହେଁ ?" ଆଉଥରେ ସୁଧାମଣି ତାଙ୍କ ଭଉଣୀର ହଳଦିଆ ରେଶମୀ

ଜ୍ୟାକେଟ୍ ପିନ୍ଧିବା ଯୋଗୁଁ ଦମୟନ୍ତୀ ତାଙ୍କ ଉପରେ ବିରକ୍ତ ହୋଇଥିଲେ । ସେହିଦିନ ଠାରୁ ସୁଧାମଣି ସିଦ୍ଧାନ୍ତ କରିଥିଲେ ଯେ ଭଗବାନ ଯାହା ଦେବେ ତାକୁ ହିଁ ପିନ୍ଧିବେ । ସୁଧାମଣି ପୁରୁଣା ଲୁଗା କାଟି ବ୍ଲାଉଜ, ସ୍କର୍ଟ ତିଆରି କରୁଥିଲେ । ସେ ପୁରୁଣା ଧଡିରୁ ସୂତା ବାହାର କରି ଲୁଗା ସିଲାଇ କରି ପିନ୍ଧୁଥିଲେ ଏବଂ ଅନ୍ୟ ଉପରେ ସେଥିପାଇଁ ବୋଝ ହେଉ ନାହାନ୍ତି ବୋଲି ଭାବି ଶାନ୍ତି ଅନୁଭବ କରୁଥିଲେ । ପରେ ଏହି ଦିନ ଗୁଡିକ ବିଷୟରେ କଥା ପଡିଲେ ସେ କହନ୍ତି "ବିନା ସୂତା, କଇଁଚି, କତୁରୀ ବା ସିଲେଇ ମେସିନରେ ମୁଁ କୌଣସିମତେ ନିଜ ଲୁଗା ସିଲେଇ କରିପାରୁଥିଲି" ।



# ଚତୁର୍ଥ ଅଧ୍ୟାୟ

## ପ୍ରକୃତ ବଂଶୀ

ହୃଦୟ ଭିତରେ ହିଁ ଅଛି ପ୍ରକୃତ ବଂଶୀ - ତାକୁ ବଜାଇବାକୁ ଚେଷ୍ଟା କର । ଥରେ ସେହି ଶବ୍ଦ ଶୁଣି ପାରିଲେ ଜନ୍ମ ଓ ମୃତ୍ୟୁର ଚକ୍ରରୁ ଉଦ୍ଧାର ପାଇପାରିବ ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ବାଗ୍‌ଗଦ୍‌ଗଦା ଦ୍ରବତେ ଯସ୍ୟ ଚିତମ୍
ରୁଦତ୍ୟଭିକ୍ଷ୍ୟମ୍ ହସତି କ୍ୱଚିଚ୍ଚ
ବିଲଜ୍ଜା ଉଦ୍‌ଗାୟତି ନୃତ୍ୟୟତି ଚ
ମଭକ୍ତି ଯୁକ୍ତୋ ଭୁବନମ୍ ପୁନାତି ॥

ଯେଉଁ ଭକ୍ତର କଣ୍ଠ ଭାବାବେଗରେ ରୁଦ୍ଧ ହୁଏ, ହୃଦୟ ପ୍ରେମାପ୍ଳୁତ ହୁଏ, ଯେ ବାରମ୍ବାର କାନ୍ଦିଉଠେ, ବେଳେ ବେଳେ ହସି ଉଠେ ମଧ୍ୟ, ଯିଏ ସଙ୍କୋଚ ତ୍ୟାଗ କରି ଗୀତ ଗାଇଉଠେ ଓ ନୃତ୍ୟ କରେ, ତାହାର ଉପସ୍ଥିତି ବିଶ୍ୱକୁ ପବିତ୍ର କରିଥାଏ ।

**ଶ୍ରୀମଦ୍ ଭାଗବତମ୍, ସ୍କନ୍ଧ- ୧୦,**

**ଅଧ୍ୟାୟ -ଶ୍ଳୋକ-୨୪**

ଭଗବତ୍ ପ୍ରେମ ଅନୁଭବ କରିଥିବା ବ୍ୟକ୍ତିର ସଚ୍ଚିଦାନନ୍ଦ ଭାବ ଓ ଅସାଧାରଣ ଚାଲିଚଳନ ସାଧାରଣ ମନୁଷ୍ୟ ପକ୍ଷରେ ବୁଝିପାରିବା ଅତୀବ କଠିନ ବ୍ୟାପାର । କେତେକେ ଭାବନ୍ତି ଏଇ ଭଗବତ୍ ପ୍ରେମର ତୃଷ୍ଣା ଗୋଟିଏ ଧରଣର ପାଗଳାମୀ, ଆଉ କିଛି ଲୋକ ଭାବନ୍ତି ଏହା ଗୋଟିଏ ମାନସିକ ଉଦାସୀନତା, ଆଉ କେତେକ ଏପରି ଭାବର ଉଦ୍ଦୀପନାକୁ ମାନିବାକୁ ନାରାଜ । ମହାତ୍ମା ମାନେ ଏସବୁ ମତବାଦରେ ବିଚଳିତ ହୁଅନ୍ତି ନାହିଁ । ସେମାନେ ସୀମିତ ଜ୍ଞାନ ଥିବା ସମାଲୋଚକ ମାନଙ୍କର ଏହି ଚୈତନ୍ୟ ଦର୍ଶନର ଅଜ୍ଞତାକୁ ବୁଝି ପାରନ୍ତି । ସାଧାରଣ ଲୋକର ଅଣୁ ପରମାଣୁର ଅସ୍ତିତ୍ୱ ବୁଝି ପାରିବାର ଶକ୍ତି ଅଛି କି ନାହିଁ, ସେକଥାକୁ କଣ ପ୍ରକୃତ ପଦାର୍ଥ ବିଦ୍ୟାର ବୈଜ୍ଞାନିକ ଗୁରୁତ୍ୱ ଦିଏ ? ସେମାନଙ୍କର ମୂଲ୍ୟହୀନ ଯୁକ୍ତି ଓ ସମାଲୋଚନାକୁ ଘୃଣା କରେ ?

କୌଣସି ପ୍ରକାର ଅବଜ୍ଞାସୂଚକ ଉପହାସ ବା ଘୃଣା ସୁଧାମଣି ଉପରେ କୌଣସି ପ୍ରଭାବ ପକାଇ ନଥିଲା । କୋଡିଏ ବର୍ଷ ପାଖା ପାଖି ବୟସର ହେଲା ବେଳକୁ ସେ ଭଗବତ୍ ପ୍ରେମର ଭାବାବେଗରେ ବୁଡି ରହୁଥିଲେ । ଶ୍ରୀକୃଷ୍ଣଙ୍କ ପ୍ରେମାନୁଗତି ଫଳରେ ଦିବ୍ୟ ଚୈତନ୍ୟ ଜାଗରଣ ହୋଇ ସେ ସହଜରେ ଗୋଟିଏ ଭାବାତ୍ମକ ସ୍ତରରୁ ଆଉ ଗୋଟିଏ ସ୍ତର କୁ ଯାଇ ପାରୁଥିଲେ ।

ଯାବତୀୟ ଶାରୀରିକ କଷ୍ଟ ଓ ଦିନକୁ ଦିନ ବଢୁଥିବା ପରିହାସ କୁ ନ ମାନି, ସେ ଅନବରତ ପରମ ପ୍ରିୟତମ ଭଗବାନଙ୍କୁ ଖୋଜୁଥିଲେ ଓ ସକାଳୁ ରାତି ଯାଏ ଦୁଃଖ ଭରା ପ୍ରେମ ଗୀତ ଗାଇ ଗାଇ ବୁଲୁଥିଲେ -

ରଂଗହୀନ ଇନ୍ଦ୍ରଧନୁ, ବାସ୍ନାହୀନ ଫୁଲ ପରି
ଯେବେ ଏ ମୋର ହୃଦୟ
ତେବେ କାନ୍ଦୁ କିଆଁ ତାର ଦୟା ଟିକେ ପାଇଁ

ପାଲଟିଛି ଏ ଜୀବନ ଶୀତଳ ମରୁରେ
ନାହିଁ ଏଠି କାଣିଚାଏ ସ୍ନେହର ଉଷ୍ଣତା
ଯେପରିକି ସ୍ୱରହୀନ ବୀଣା
ଖାଲି ଦୁଃଖ ଭରା ନିର୍ଜନତା.......

ଛୋଟ ନଈଟିରେ ଫୁଟିଥିବା ବନସ୍ତର ପଦ୍ମ
କେବେ ବଂଚିପାରେ ସୂର୍ଯ୍ୟ ରଶ୍ମି ବିନା ?
ଆକାଶ ରେ ମେଘ ଦେଖି, ମୟୂର ମେଲାଏ ପକ୍ଷୀ
ହେଲେ ବରଷା ହୁଏନା
ଟୋପେ ଜଳ ପାଇଁ
ପିଆସୀ ଚାତକ ଆହା ରହିଥାଏ ଚାହିଁ....

ସୁଧାମଣିର ଏଇ ଭକ୍ତିଭାବ ଓ ଉଲ୍ଲସିତ ମାନସିକ ଅବସ୍ଥାକୁ ତାଙ୍କ ବାପା, ମା ଓ ବଡଭାଇ ବୁଝି ନପାରି ନିର୍ଦ୍ଦୟ ଭାବରେ ତାଙ୍କୁ ଗାଳି ଓ ଯନ୍ତ୍ରଣା ଦେଉଥିଲେ । ସେମାନେ ସ୍ଥିର କରି ନେଇଥିଲେ ଯେ ଏପରି ଠାକୁର ପୂଜାରେ ମାତି ରହିବା ଗୋଟିଏ ମାନସିକ ଦୁର୍ବଳତା ଓ ବିଷର୍ଣ୍ଣତା ର ଲକ୍ଷଣ ।

ଏଣିକି ସୁଧାମଣି ଦିନରାତି ଧ୍ୟାନ, ଭଜନ ଓ ଅନବରତ ନାମ ଜପରେ ସମୟ କଟାଇବାକୁ ଲାଗିଥିଲେ । ବେଶୀ ଭାଗ ସେ ନିଜକୁ ପୂଜାଘରେ ବନ୍ଦ କରି ଆତ୍ମହରା ହୋଇ ନାଚୁଥିଲେ । ଏହା ତାଙ୍କର ବଡଭାଇଙ୍କୁ ଭାରି ବିରକ୍ତ ଲାଗୁଥିଲା । ସମୟ ସମୟରେ ସେ ବିରହର କଷ୍ଟରେ କାନ୍ଦି କାନ୍ଦି ବାଲିରେ ଅଚେତ ହୋଇ ପଡି ରହୁଥିଲେ । ତାଙ୍କର ଏପରି ଅସୀମ କୃଷ୍ଣ ପ୍ରେମ ଯେ କେତେ ଦୂର ବଢିପାରେ ବା ଗଭୀର ହୋଇପାରେ, ଏହା ବୁଝିବା ଅନ୍ୟମାନଙ୍କ ବୋଧଶକ୍ତିର ବାହାରେ ଥିଲା । ହୃଦୟ ଦ୍ୱାର ଉନ୍ମୁକ୍ତ ରଖି ସୁଧାମଣି ଆଗ୍ରହରେ ପ୍ରଭୁଙ୍କର ଆଗମନକୁ ଅପେକ୍ଷା କରି ରହିଥିଲେ । ଏପରି ଭଗବତ ପ୍ରେମର ଗଭୀର ବ୍ୟାକୁଳତା ଓ ସମର୍ପଣ ଭାବ ବର୍ଣ୍ଣନା କରି ପାରିବାର ଶକ୍ତି କାହାର ଅଛି ?

ସୁଧାମଣିଙ୍କର କୃଷ୍ଣଙ୍କ କାହାଣୀ ଶୁଣିବାର ତୃଷ୍ଣା କେବେ ହେଲେ ମେଂଟୁ ନଥିଲା । ସେ ଯେବେ କାହାକୁ କୃଷ୍ଣ ଲୀଳା ବିଷୟରେ ହେବା ଶୁଣନ୍ତି, ତାଙ୍କର ସମସ୍ତ ଏକାଗ୍ରତା କୃଷ୍ଣଙ୍କ ପାଖକୁ ହିଁ ଚାଲିଯାଏ ଓ ସେ ସମାଧିସ୍ଥ ହୋଇଯାଆନ୍ତି । କୃଷ୍ଣ ଲୀଳା କଥା ସରିବାର ଅନେକ ସମୟ ପରେ ମଧ୍ୟ ସୁଧାମଣି ସେଠି ସ୍ପନ୍ଦନହୀନ ହୋଇ ବସି ରହନ୍ତି । ଏଣିକି ଗ୍ରାମବାସୀ ମାନେ ଆଉ ତାଙ୍କର ଏପରି ଅବସ୍ଥା ଦେଖି ଆଶ୍ଚର୍ଯ୍ୟ ହେଉନଥିଲେ ବା ଅଦ୍ଭୁତ ବ୍ୟବହାର ବୋଲି ଭାବୁନଥିଲେ । ବେଳେବେଳେ ସୁଧାମଣି ଛୋଟ ପିଲାମାନଙ୍କୁ ଡାକି କୃଷ୍ଣ ଲୀଳାର ବିଭିନ୍ନ କାହଣୀକୁ ଅଭିନୟ କରିବାକୁ କହୁଥିଲେ । ସେମାନଙ୍କର କୃଷ୍ଣଲୀଳାର ନାଟକ କୁ ଲୁହଭରା ଆଖିରେ ଦେଖୁଥିଲେ ଆଉ କଳ୍ପନା କରୁଥିଲେ କୃଷ୍ଣ ହିଁ ତାଙ୍କ ପାଖରେ ବସି ସବୁ ଲୀଳା ଖେଳା କରୁଛନ୍ତି । ସୁଧାମଣି ଆତ୍ମହରା ହୋଇ ପିଲାମାନଙ୍କୁ କୃଷ୍ଣ ଭାବି ଆଲିଙ୍ଗନ କରୁଥିଲେ । ଏପରି ଆଲିଙ୍ଗନରେ ଅନଭ୍ୟସ୍ତ ପିଲାମାନେ ତାଙ୍କର ଏପରି ଅଦ୍ଭୁତ ଭାବ ଦେଖି ଅନେକ ସମୟରେ ଭୟଭୀତ ହୋଇ ଯାଉଥିଲେ । ନୀରିହ ପିଲାମାନଙ୍କୁ ପ୍ରକୃତ କୃଷ୍ଣ ଭାବି ପୂଜା କରିବା ସୁଧାମଣିଙ୍କ ଅଭ୍ୟାସ ହୋଇ ଯାଇଥିଲା ।

ନିର୍ଜନ ଗଭୀର ରାତିରେ ଚେଇଁଥିବା ଲୋକେ ତାଙ୍କର କରୁଣ ଆବେଗଭରା ଭଜନ ମାନ ଶୁଣି ପାରୁଥିଲେ ।

"କୃଷ୍ଣ, କୃଷ୍ଣ ! ମୋ ଜୀବନର ପରମ ଲକ୍ଷ୍ୟ ! ମୁଁ କେବେ ଦେଖିବି ତୁମର ସ୍ୱରୂପ ? ମୋର ଏ ଜୀବନ ଓ ତୁମ ଦର୍ଶନର ଇଚ୍ଛା କଣ ସବୁ ବୃଥା ହୋଇଯିବ ?

ତୁମ ସାଙ୍ଗରେ ଲୀନ ହେବାର ବ୍ୟାକୁଳ ପ୍ରାର୍ଥନା କଣ ତମେ ଶୁଣୁନ ! ହେ କୃଷ୍ଣ । ସମସ୍ତେ କହନ୍ତି ତମେ କୁଆଡେ ଭକ୍ତ ବତ୍ସଳ, ଦୟାର ଅପାର ସାଗର । ମୁଁ କଣ ତୁମ କୋମଳ ହୃଦୟକୁ ଦୁଃଖ ଦେଇଛି ? ମୁଁ କଣ ତୁମର ଦାସନୁଦାସ ହେବା ପାଇଁ ଅଯୋଗ୍ୟ ? ଆଉ କେତେଦିନ ଯାଏ ନିରୁତ୍ତର ରହିଥିବ ? ଏ ଦୀନ ହୀନ ଅରକ୍ଷିତ ସନ୍ତାନ ପାଇଁ ତୁମର ଟିକିଏ ହେଲେ କରୁଣା ନାହିଁ ? ହେ କୃଷ୍ଣ, ତୁମେ କଣ ମୋତେ ସତରେ ଛାଡି ଦେଲ ? ତୁମେ କାହଁ ? ତୁମେ କେଉଁଠି ଅଛ ?....."

ଶେଷରେ ଅବସନ୍ନ ହୋଇ ଭୂଇଁରେ ଲୋଟି ସେ ଅନିଦ୍ରା ହୋଇ ପଡିରହନ୍ତି । ଶ୍ରୀକୃଷ୍ଣଙ୍କର ଆଗମନର ଅପେକ୍ଷାରେ ସାରାରାତି ତାଙ୍କ ପଲକ ପଡେନାହିଁ ।

ବେଳେ ବେଳେ ସୁଧାମଣି ମାଟିରେ କୃଷ୍ଣଙ୍କର ମୂର୍ତ୍ତି ତିଆରି କରି ପୂଜା କରୁଥିଲେ । ସେ ମନର କଥା ଗୋପନରେ ପ୍ରିୟତମଙ୍କୁ କହନ୍ତି "ଦେଖ, ମୋତେ କିଏ ଶିଖେଇ ନାହାନ୍ତି କିପରି ତୁମର ପୂଜା ଓ ସେବା କରିବାକୁ ହୁଏ । କୃପାକରି ମୋର ଦୋଷ କ୍ଷମା କର" । ଫୁଲ ବଦଳରେ ସେ ମୂର୍ତ୍ତିର ପାଦ ତଳେ ବାଲି ଅର୍ପଣ କରୁଥିଲେ । ପୂଜା ସରିଲା ପରେ ତାଙ୍କର ମନେ ହେଉଥିଲା ଯେପରି କୃଷ୍ଣ ଆସି ତାଙ୍କ ଆଗରେ ଠିଆ ହୋଇଛନ୍ତି । ଲୁହଭରା ଆଖିରେ ସୁଧାମଣି ଭକ୍ତି ଭାବରେ ଅଭିଭୂତ ହୋଇ ସେହି ମାଟିର ପ୍ରତିମା ସାମ୍ନାରେ ବାରମ୍ବାର ପ୍ରଣାମ କରନ୍ତି । ପର ମୁହୂର୍ତ୍ତରେ ତାଙ୍କର ମନେ ହୁଏ ଯେ କୃଷ୍ଣ ଦଉଡି ଚାଲିଯିବାକୁ ବସିଛନ୍ତି, ତରତର ହୋଇ ସୁଧାମଣି ଆଗକୁ ଡେଇଁପଡି ତାଙ୍କୁ ଧରି ରଖିବାକୁ ଚେଷ୍ଟା କରନ୍ତି । ତାପରେ ସେ ବୁଝିପାରନ୍ତି ନାହିଁ ଯେ ସମସ୍ତ କିଛି ପୂର୍ବ ଭଳି ରହିଛି । ଲୁହ ଓ କୋହର ଉଚ୍ଛାସରେ ହତୋତ୍ସାହ ହୋଇ ସେ କହନ୍ତି " କୃଷ୍ଣ ! କୃଷ୍ଣ ! ଦୟାକରି ଆସ । ତୁମରେ ଦର୍ଶନାଭିଳାଷରେ ତିଳ ତିଳ ହୋଇ ଦହନ ହେଉଥିବା ଝିଅଟିକୁ ଆଶୀର୍ବାଦ କର ! ତମେ କଣ ମୋର ପ୍ରେମାନୁରାଗକୁ ପରୀକ୍ଷା କରୁଛ ? ତମେ କାହିଁକି ପଛଉଛ ? ହେ କୃଷ୍ଣ, ତମ ହୃଦୟରେ କଣ କରୁଣା ନାହିଁ ? ତୁମ ହୃଦୟରେ ଆଉ କଣ ଟିକିଏ ବୋଲି ଦୟା ନାହିଁ ?"

ସୁଧାମଣି ତଥାପି ହତୋତ୍ସାହ ହେଉନଥିଲେ । ପ୍ରତୀକ୍ଷାରେ ବିନୀତ ଝିଅଟି ତାର ପ୍ରଭୁଙ୍କର ଆଗମନକୁ ପୂର୍ଣ୍ଣ ବିଶ୍ୱାସରେ ଅପେକ୍ଷାକରି ରହିଥାଏ । କେତେବେଳେ ସେ ନିଜକୁ କୃଷ୍ଣଙ୍କର ପ୍ରିୟତମା ବୋଲି ମନେ କରନ୍ତି ତ ଆଉ କେତେବେଳେ

ନିଜକୁ ତାଙ୍କର ସେବିକା ବୋଲି । ଚତୁର୍ଥ ଶ୍ରେଣୀ ମଧ୍ୟ ପାସ କରିନଥିବା ଏହି ଅପାଠୁଆ ଝିଅଟି, ଯିଏ କି କେବେ ହେଲେ ବେଦ କିମ୍ବା ଉପନିଷଦ ପଢିନାହିଁ, ସେ ସଂପୂର୍ଣ୍ଣ କୃଷ୍ଣ ଗତ ପ୍ରାଣ ହୋଇ ପଡିଥାଏ । ଚୁଡାନ୍ତ ଭକ୍ତିର ବିଭିନ୍ନ ଭାବ କୋମଳ ସୁଧାମଣିଙ୍କର ଭିତରେ ପ୍ରଦର୍ଶିତ ହେଉ ଥାଏ ।

ଏହି ସମୟରେ ପାରିବାରିକ ଆର୍ଥିକ ଅବସ୍ଥା ଖରାପ ଆଡକୁ ଗତିକଲା । ସୁଗୁଣାନନ୍ଦଙ୍କର ମାଛ ବ୍ୟବସାୟରେ କ୍ଷତି ହୋଇ ଯାଇଥିଲା । ଦମୟନ୍ତୀ ଓ ପରିବାର ବହୁତ ହତାଶ ହୋଇ ପଡିଲେ । ଦିନେ ଦମୟନ୍ତୀ ସୁଧାମଣିଙ୍କୁ କହିଲେ "ଭଗବାନ କାହିଁକି ଆମକୁ ଦୁଃଖ ଦେଉଛନ୍ତି ? ଝିଅ ! ତୋ ବାପାଙ୍କ ପାଇଁ ଠାକୁରଙ୍କୁ ଟିକେ ଡାକ । ତାଙ୍କର ସବୁ ବ୍ୟବସାୟ ଏପରି ବୁଡି ଯାଉଛି ।" ସୁଧାମଣି ଭାବିଲେ "ହେ କୃଷ୍ଣ, ଦୁଃଖ କିପରି ଆରମ୍ଭ ହୁଏ ? ଏହାର ମୂଳ କାରଣ କଣ ? ମୋର ମା ନିରାଶ ହୋଇ ପଡିଛନ୍ତି କାରଣ ସେ ତାଙ୍କର ସ୍ୱାମୀ ପାଖରୁ ସୁଖ ଆଶା କରୁଛନ୍ତି ଓ ସୁଖ ରେ ରହିବାକୁ ଚାହୁଁଛନ୍ତି । ଇଚ୍ଛା ହିଁ କଣ ସବୁ ଦୁଃଖ ଆଣିଦିଏ ନାହିଁ ? ହେ ପ୍ରିୟତମ କୃଷ୍ଣ, ମତେ ସେ ଫାଶରେ ବାନ୍ଧ ନାହିଁ ! ମୁଁ ଯଦି ଅଜ୍ଞାନୀ ଓ କାମନାରେ ବୁଡି ରହିଥିବା ମନୁଷ୍ୟ ମାନଙ୍କ ଉପରେ ନିର୍ଭର କରିବି, ତେବେ ମୁଁ ମଧ ଦୁଃଖୀ ହୋଇଯିବି । ହେ କୃଷ୍ଣ ! ମୋର ମନ ଯେପରି ସବୁବେଳେ ତୁମ ପାଦ ପଦ୍ମରେ ସଂଲଗ୍ନ ହୋଇରହୁ ।"

ଏହି ସମୟରେ, ଆର୍ଥିକ ଅବସ୍ଥା ଖରାପ ଥିବା ସତ୍ୱେ ସୁଧାମଣିଙ୍କ ବାପା ମା ତାଙ୍କୁ ବିବାହ ଦେବାକୁ ସ୍ଥିର କଲେ । ଦମୟନ୍ତୀ ନିଜର ଚାରି ଝିଅଙ୍କୁ କଡା ଶାସନରେ ବଢାଇଥିଲେ, ଏଥିପାଇଁ ତାଙ୍କର ଗର୍ବ ଗ୍ରାମବାସୀଙ୍କୁ ଜଣାଥିଲା । ସେ ଚାହୁଁଥିଲେ ଯେପରି ତାଙ୍କ ଝିଅମାନଙ୍କୁ ସମସ୍ତେ ଗୁଣବତୀ ଓ ସଚ୍ଚରିତ୍ରା ଭାବେ ସମ୍ମାନ ଦିଅନ୍ତୁ । ଯଦି ସେମାନଙ୍କର ଚରିତ୍ର ନଷ୍ଟ ହେଲା ତେବେ ସବୁ ନଷ୍ଟ ହୋଇଗଲା ବୋଲି ଦମୟନ୍ତୀ କହୁଥିଲେ । ସେଥିପାଇଁ ସେ ସବୁ ଝିଅଙ୍କୁ ଅତି କଠିନ ଶୃଙ୍ଖଳାରେ ବଢାଇ ଥିଲେ । ସେମାନେ କୌଣସି ପୁରୁଷ, ବିଶେଷକରି ଯୁବକ ମାନଙ୍କ ସହ କଥା ବାର୍ତ୍ତା ପାଇଁ ଅନୁମତି ପାଉ ନଥିଲେ ।

ସେ ସମୟରେ ଇଡାମାନ୍ନେଲ ଗ୍ରାମର ଚାରିପାଖେ ପାଣିରେ ଘେରି ରହିଥିବା ସତ୍ୱେ ଦମୟନ୍ତୀ କାହାରି ଅନଧିକାର ପ୍ରବେଶ ଭୟରେ ଘର ଚାରିପଟେ ସୁରକ୍ଷା ପାଇଁ ପାଚେରୀ ତୋଳାଇଥିଲେ । ତଥାପି ସେଥିରେ ସନ୍ତୁଷ୍ଟ ନହୋଇ ଗୋଟିଏ ଜଗୁଆଳି

କୁକୁର ବି ରଖିଥିଲେ । ଯେତେବେଳେ ସେ କୁକୁର ଭୁକେ ସେ ଶୁଭଗନଙ୍କୁ ବାହାରକୁ ଯାଇ ଦେଖିବାପାଇଁ କହନ୍ତି । ଯଦି କିଏ ଅଜଣା ଲୋକ କିମ୍ବା ଯୁବକ ଆସନ୍ତି, ସେ କବାଟ ଖୋଲିବାକୁ ମନା କରିଦିଅନ୍ତି । ଦମୟନ୍ତୀ ସବୁବେଳେ ତାଙ୍କ ବଢିଲା ଝିଅ ମାନଙ୍କ ପାଇଁ ଚିନ୍ତିତ ଥିଲେ । ସେଥିପାଇଁ ସେ ସୁଧାମଣି ପରି ବଢିଲା ଝିଅର ବୋଝକୁ ମୁଣ୍ଡରୁ ଉଠାଇବାକୁ ଚାହୁଁଥିଲେ ।

ସୁଗୁଣାନନ୍ଦ ଏବଂ ସୁଭଗନ ଖୋଜି ଖୋଜି ସୁଧାମଣି ପାଇଁ ଗୋଟିଏ ଭଲ ବରପାତ୍ର ଯୋଗାଡ କରିଥିଲେଏବଂ ପରସ୍ପର ଦେଖାଦେଖି ପାଇଁ ଗୋଟିଏ ଦିନ ନିର୍ଦ୍ଦିଷ୍ଟ ହୋଇଥିଲା । ଏହା ଫଳରେ ବିବାହ ଆଗରୁ ପରସ୍ପର ପସନ୍ଦ ହୋଇଛି ଭାବି ବାପା ମା ନିଶ୍ଚିନ୍ତ ହୋଇ ପାରିବେ । ସୁଧାମଣିଙ୍କ ବିନା ମତରେ ଓ ତାଙ୍କ ଅଜାଣତରେ ଏପରି ବନ୍ଦୋବସ୍ତ କରାଯାଇଥିଲା । ଇଡ଼ାମାନ୍ନେଲ ଠାରୁ ବେଶ୍ ଦୂରରେ ଆଉଜଣଙ୍କ ଘରେ ଦେଖାଦେଖି ର ଦିନ ଠିକ କରାଯାଇଥିଲା । ସେହିଦିନ ଜଣେ ସ୍ତ୍ରୀ ଲୋକ ବାହାନା କରି ସୁଧାମଣିଙ୍କୁ ସିଲେଇ କାମରେ ଚାକିରୀ ଦେବେ ବୋଲି କହି ତାଙ୍କ ଘରକୁ ନେଇ ଆସିଥିଲେ । ତାଙ୍କ ଝିଅର ସାର୍ଟ୍ ଓ ବ୍ଲାଉଜର ମାପ ନେବାପାଇଁ ସେ ସୁଧାମଣିଙ୍କୁ ନିଜ ଘରକୁ ଡାକିନେଇ ଥିଲେ ।

ସୁଧାମଣି ତାଙ୍କ ଘରେ ପହଂଚିବା ପରେ ସେମାନଙ୍କର ଅଭିପ୍ରାୟ ବୁଝି ପାରିଥିଲେ । ସେ ସ୍ତ୍ରୀ ଲୋକ ସୁଧାମଣିଙ୍କୁ ଚାହା ଗ୍ଲାସ ଦେଇ କହିଲେ "ଦେଖ ସୁଧାମଣି, ଆର ଘରେ ଜଣେ ଲୋକ ବସିଛନ୍ତି, ତାଙ୍କୁ ଚାହା ଦେଇଦିଅ ।" ଏହିପରି ବର ସହ କନ୍ୟାର ପରିଚୟ କରାଇବାର ପ୍ରଥା ସୁଧାମଣି ପରିଷ୍କାର ଭାବରେ ଜାଣନ୍ତି । ସେ ସେମାନଙ୍କର ମତିଗତି ବୁଝିପାରି ଗମ୍ଭୀର ସ୍ୱରରେ କହିଲେ "ମୁଁ ଦେବି ନାହିଁ, ମୁଁ ଏଠାକୁ ମାପ ନେବାକୁ ଆସିଥିଲି, ଚାହା ଦେବାକୁ ନୁହଁ" । ସେ ଘରୁ ବାହାରି ଯାଇ ନିଜ ଘରକୁ ଫେରିଆସି ଦମୟନ୍ତୀଙ୍କୁ ପୁରା ଘଟଣା କହିଲେ । ଏହି ସମୟରେ ସେ ବୁଝି ପାରିଥିଲେ ଯେ ଏହି କଥାଟି ତାଙ୍କ ବାପା, ମା ଓ ଭାଇ ମିଶି ହିଁ ଠିକ୍ କରିଛନ୍ତି ।

ସୁଧାମଣି ପାଇଁ ଆଉ ଗୋଟିଏ ବାହାଘର ପ୍ରସ୍ତାବ ମଧ୍ୟ ଆସିଥିଲା । ଏଥର ବରପାତ୍ର ଏବଂ ତାର ପରିବାରଙ୍କର ଇଡାମାନ୍ନେଲ କୁ ଆସିବା କଥା ଥିଲା । ଯେତେବେଳେ ବରପାତ୍ର ଆସି ପହଂଚିଲେ, ଦମୟନ୍ତୀ ସୁଧାମଣିଙ୍କୁ ମିଠାସ୍ୱରରେ ତାଙ୍କ ପାଇଁ କଦଳୀ ନେଇ ଦେବାକୁ କହିଥିଲେ । ଅତିଥିମାନଙ୍କ ସାମନାରେ ସୁଧାମଣି

କହିଥିଲେ “ ମୁଁ ଦେଇପାରିବିନି ! ତୁମେ ଯଦି ଚାହଁ, ତୁମେ ଯାଇ ତାଙ୍କପାଇଁ କଦଳୀ କିଣିଆଣ” । ସେଇ ପ୍ରସ୍ତାବଟି ସେଇଟି ବନ୍ଦ ହୋଇ ଯାଇଥିଲା ।

ତଥାପି ବାପା ମା ବିବାହର ଚିନ୍ତା ଛାଡିପାରିଲେ ନାହିଁ । ପୁଣି ସୁଧାମଣିର ଆଉ ଗୋଟିଏ ବିବାହର ପ୍ରସ୍ତାବ ଆସିଲା ଏବଂ ପୁଣି ବରପାତ୍ରଟିର ଇଡ଼ାମାନ୍ନେଲକୁ ଆସିବାର ବନ୍ଦୋବସ୍ତ କରାଗଲା । ତା ଆଗରୁ ଦମୟନ୍ତୀ ସୁଧାମଣିକୁ ବହୁତ ବୁଝାଇ କାନ୍ଦି କାନ୍ଦି କହିଥିଲେ “ଝିଅ, ଦୟାକରି ଏ ଘରକୁ ବଦନାମ କରିବୁ ନାହିଁ । ଦୟାକରି ତୋର ବରପାତ୍ର ସ୍ୱାମୀ ଆଗରେ ନମ୍ର ବ୍ୟବହାର କରିବୁ” । ଯେତେବେଳେ ବରପାତ୍ର ସୁଧାମଣିକୁ ଦେଖିବାକୁ ଆସି ଦାଣ୍ଡଘରେ ଚୁପ୍ ହୋଇ ବସିଥିଲେ, ସୁଧାମଣି ରୋଷେଇ ଘରେ କାଠର ହେମଦସ୍ତାରେ ବସି ନାଲି ଲଙ୍କା କୁଟୁଥିଲେ । ସେ ଏ ପରିସ୍ଥିତିକୁ ପୂର୍ବାପେକ୍ଷା ଆହୁରି ରୁକ୍ଷ, ରୋକ୍‌ଠୋକ୍ ଭାବରେ ସମ୍ମୁଖୀନ ହେବାପାଇଁ ଠିକ୍ କରି ନେଇଥିଲେ । ଆକ୍ରମଣ ଲାଗି ଉଦ୍ୟତ ସୈନିକ ପରି ଦୁଇହାତରେ କାଠର ପୁଆକୁ ଧରି ସୁଧାମଣି ରଣଚଣ୍ଡୀ ରୂପଧରି ଚିତ୍କାର କରିବାକୁ ଲାଗିଲେ । ଦମୟନ୍ତୀଙ୍କର ଲଜ୍ଜାରେ ଚେତାଶୂନ୍ୟ ହେବାର ଅବସ୍ଥା । କିନ୍ତୁ ସୁଧାମଣି ଏତେ ସହଜରେ ଛାଡିବେନି ବୋଲି ସ୍ଥିର କରିନେଇଥିଲେ । ବରପାତ୍ର ଓ ତାଙ୍କର ପରିବାର ତାଙ୍କୁ ପାଗଳୀ ଭାବି ସେଠୁ ଚାଲିନଯିବା ଯାଏ ସୁଧାମଣି ଏ ନାଟକ ଚାଲୁ ରଖିଥିଲେ । ତାପରେ ଅବଶ୍ୟ ସୁଧାମଣିଙ୍କୁ ଧକ୍କା, ଗୋଇଠା ମାଡର ଶାସ୍ତି ମିଳିଥିଲା ।

ଏହି ଘଟଣା ପରେ ସୁଧାମଣି ଠିକ କରିଥିଲେ ଯେ ଯଦି ଆଉଥରେ ତାଙ୍କର ବାପା ମା ବିଭାଘର ପ୍ରସ୍ତାବ ନେଇ ତାକୁ ବିରକ୍ତ କରନ୍ତି, ସେ ଘର ଛାଡି କୌଣସି ଗୁମ୍ଫା କିମ୍ବା ନିରୋଳା ଜାଗାକୁ ଯାଇ ଧ୍ୟାନ କରିବେ । ବାହାଘର ବିଷୟରେ ସେ ମନ ଦୃଢ କରିନେଇଥିଲେ । ଏବଂ ସିଏ ଜାଣିଥିଲେ ଯେ ତାଙ୍କର ବାପା ମା ଏଥର ଆଉ ଅନେକ ଦିନ ପାଇଁ ସେ ଦିଗରେ ଚେଷ୍ଟା କରିବେ ନାହିଁ ।

ପରିବାରର ଦୁର୍ବ୍ୟବହାର ଦିନକୁ ଦିନ ବଢିବାକୁ ଲାଗିଲା । ସୁଧାମଣି ଏ କଷ୍ଟ ଆଉ ସହିନପାରି ଘରଛାଡି ପଳାଇ ଯିବାପାଇଁ ସ୍ଥିର କରି ସାରିଥିଲେ । ସେହିଦିନ ଖଣ୍ଡିଏ ଚିରା ଖବର କାଗଜ ଉଡି ଆସି ତାଙ୍କ ସାମନାରେ ମାଟିରେ ପଡିଲା । ସେ ସେଇଟି ଉଠେଇ ସେଥିରେ ଗୋଟିଏ ଘରୁ ପଳାଇଯାଇଥିବା ଝିଅର ଘୋର ଦୁଃଖର କାହାଣୀ ପଢି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଏହା ଭଗବାନଙ୍କ ଠାରୁ ଆସିଥିବା

ସମ୍ବାଦ ଭାବି ସୁଧାମଣି ଘରୁ ପଳାଇଯିବା ଇଚ୍ଛାରୁ ନିବୃତ୍ତ ହୋଇଥିଲେ ।

ଆଉ ଥରେ ପରିବାରର ଜଣେ ବ୍ୟକ୍ତିଙ୍କ ନୃଶଂସ ବ୍ୟବହାରରେ ଆହତ ହୋଇ ସେ ସମୁଦ୍ରରେ ବୁଡି ଆତ୍ମହତ୍ୟା କରିବାକୁ ସ୍ଥିର କରିଥିଲେ । ନିଜର ଚିନ୍ତାଧାରାକୁ ବିଚାର କରି ପୁଣି ଭାବିଲେ "କିଏ ସେ ମରୁଛି ? କିଏ ସେ ବା ଜନ୍ମ ହେଉଛି ? କିଏ ପ୍ରକୃତ ଭଗବତ ପ୍ରେମୀକୁ କଷ୍ଟ ଦେଇ ପାରିବ ?" ଏହିପରି ଦୃଢ ବିଶ୍ୱାସ ତାଙ୍କ ମନରୁ ଆତ୍ମହତ୍ୟାର ଭାବନା ଦୂରେଇ ଦେଇଥିଲା । ପ୍ରଗାଢ ସାଧନା କରୁଥିବା ଦିନ ଗୁଡିକରେ ସୁଧାମଣି ଅନ୍ୟ କାହାଘରେ ଶୋଇ ପାରୁନଥିଲେ କିମ୍ବା ବିଶ୍ୱାସୀ ଲୋକଙ୍କ ହାତରେ ରନ୍ଧା ହୋଇନଥିବା ଖାଦ୍ୟ ଖାଇ ପାରୁନଥିଲେ । ସେ ଯଦି ଏପରି ଖାଦ୍ୟ କେବେ ଖାଇ ଦେଉଥିଲେ ତାହେଲେ ଅତ୍ୟନ୍ତ ଅସ୍ଥିର ହେଇପଡୁଥିଲେ କିମ୍ବା ବାନ୍ତି କରିଦେଉଥିଲେ । ଏହି କାରଣରୁ ସୁଧାମଣି ବେଶୀ ଦିନ ଉପବାସ କରୁଥିଲେ । ଯଦି କେବେ ଆଉ କାହାଘରେ ବିଶ୍ୱାସୀ ଲୋକଙ୍କର ଶୋଇବା ଜାଗାରେ ଶୋଉଥିଲେ, ସେ ମୁହୂର୍ତ୍ତିକ ପାଇଁ ହେଲେ ବିଶ୍ରାମ ପାଇ ପାରୁନଥିଲେ । ତଥାପି ସେ ଅନିଦ୍ରା ହେବାକୁ ଜମା ଗୁରୁତ୍ୱ ଦେଉନଥିଲେ କାରଣ ସେ ଜାଗ୍ରତ ରହି ତାଙ୍କର ପ୍ରିୟତମଙ୍କୁ ଧ୍ୟାନ କରିବାକୁ ବେଶୀ ଭଲ ପାଉଥିଲେ । ଏପରିକି ସେ ଶୋଇ ପଡିବାକୁ ଡରୁଥିଲେ, କାଳେ ଠିକ୍ ସେଇ ସମୟରେ କୃଷ୍ଣ ଚାଲିଆସିବେ । ବହୁଦିନ ଧରି ତାଙ୍କର ଦିବ୍ୟରୂପ ଦର୍ଶନର ସବୁ ପ୍ରତୀକ୍ଷା ବ୍ୟର୍ଥ ହୋଇଯିବ ।

ଏପରି ଅବସ୍ଥାରେ ମଧ୍ୟ ସୁଧାମଣି ଘରକାମ ସବୁ କରି ପାରୁଥିଲେ । ତାଙ୍କର ଏପରି ଅନବରତ କଠିନ ପରିଶ୍ରମ ଓ ନିଷ୍ଠା ଦେଖି ଗ୍ରାମବାସୀମାନେ ତାଙ୍କର ଡାକ ନାମ "କାବେରୀ" ରଖିଥିଲେ । କାବେରୀ ଗୋଟିଏ ସର୍ବଗୁଣ ସଂପନ୍ନା ଆଦର୍ଶ ଚରିତ୍ର । ଯେତେ ଦେହ ଖରାପ ହୋଇଥିଲେ ମଧ୍ୟ ସେ ଘର ଘର ବୁଲି ଦୁଧ ବିକ୍ରି କରୁଥିଲେ । ସୁଧାମଣିଙ୍କର ଅତ୍ୟଧିକ ପରିଶ୍ରମ ଓ ଉଦାରତା ଗୁଣ ଯୋଗୁ ଗ୍ରାମବାସୀମାନେ ତାଙ୍କୁ ସମ୍ମାନ କରୁଥିଲେ ଓ ଭଲ ପାଉଥିଲେ ।

ନିଜର ତିକ୍ତ ଅନୁଭୂତି ଓ ଅମାନୁଷିକ ପରିବେଶ ସୁଧାମଣିଙ୍କୁ ଜୀବନର କ୍ଷଣଭଙ୍ଗୁରତା ଓ ସ୍ୱାର୍ଥପରତା ବିଷୟରେ ହୃଦ୍‌ବୋଧ କରାଇ ଦେଇଥିଲା । କେବଳ ଜୀବନର ଗଭୀର ଅନୁଧ୍ୟାନ ଓ ତାହାର ଲକ୍ଷ୍ୟ କଣ – ଏହାହିଁ ତାଙ୍କର ପ୍ରଧାନ ଚିନ୍ତାର

ବିଷୟ ଥିଲା । ଜୀବନର ରହସ୍ୟ ବିଷୟରେ ପ୍ରଗାଢ଼ ଚିନ୍ତା କରି ସେ ଭାବିଲେ "ହେ ଭଗବାନ, ତୁମେ କଣ ଏତେ ଦୁଃଖ ଓ ଯାତନା ଦେଖି ପାରୁନାହଁ ? ମୁଁ କଣ ଏଇ ଦୁନିଆରେ ଏକୁଟିଆ ? ମୋର ପ୍ରକୃତ ଜ୍ଞାତି କିଏ ? ମୋର କିଏ ବାପା ଏବଂ କିଏ ମୋର ମା ? ଏସବୁ ଭିତରେ 'ସତ୍ୟ' କାହିଁ ? ମଣିଷ ଦେହ ଧରି ଜନ୍ମ ହେବା ମାନେ କଣ କଷ୍ଟ ଭୋଗିବା ନିଶ୍ଚିତ ?" କ୍ଷଣିକ ସାଂସାରିକ ଜୀବନରେ ଆନନ୍ଦ ଖୋଜୁଥିବା ସାଧାରଣ ଲୋକମାନଙ୍କ ପ୍ରତି ସୁଧାମଣିଙ୍କର ଅନୁକଂପା ଥିଲା । ସେ ସେମାନଙ୍କ ପାଇଁ ପ୍ରାର୍ଥନା କରୁଥିଲେ "ହେ ଭଗବାନ, ଭ୍ରମରେ ଏହି କ୍ଷଣସ୍ଥାୟୀ ଦୁନିଆକୁ ମହତ ବୋଲି ମନେ କରୁଥିବା ଅଜ୍ଞାନୀ ଲୋକମାନଙ୍କୁ ଦୟାକରି ରକ୍ଷାକର । କୃପାକରି ସେମାନଙ୍କୁ ସଦ୍‌ଜ୍ଞାନ ଦିଅ" ।

ଗାଈମାନେ ଦମୟନ୍ତୀଙ୍କର ପ୍ରିୟ ଥିଲେ । ପରିବାରର ଲୋକମାନେ କିଏ କଷ୍ଟ ପାଇଲେ ପାଆନ୍ତୁ, ସେ କିନ୍ତୁ ଗାଈ ମାନଙ୍କର କଷ୍ଟ ଦେଖିପାରୁ ନଥିଲେ । ତାଙ୍କ ଆଖିରେ ଗୋମାତା ଭଗବାନ ସମାନ ଥିଲେ । ଦକ୍ଷିଣ ପଶ୍ଚିମ ମୌସୁମୀ ସମୟରେ କେରଳରେ ସମୁଦ୍ରର ପଶ୍ଚାତ୍ ଜଳ କାୟଲ ସବୁରେ ବଢ଼ି ପାଣି ମାଡି ଆସି ନଈକୂଳ ଉଛୁଳାଉଥିଲା ଏବଂ ଆରବ ସାଗର ସହ ମିଶି ଏକାକାର ହୋଇ ଉପକୂଳ ଅଂଚଳ ସାରା ବନ୍ୟା ମାଡି ଯାଉଥିଲା । ଇଡ଼ାମାନ୍ନେଲରେ ପରିବାରର ଗୁହାଳରେ ପାଣି ପଶି ଯାଉଥିଲା । ସେତେବେଳେ ଦମୟନ୍ତୀ ଦାଣ୍ଡଘରେ ଆଣି ଗାଈ ମାନଙ୍କୁ ରଖୁଥିଲେ ଓ ଘରସାରା ଗୋବର ଓ ମୂତରେ ଭର୍ତ୍ତି ହୋଇଯାଉଥିଲା । ପରିବାରର ସମସ୍ତେ ବିରକ୍ତ ହୋଇ ଦମୟନ୍ତୀଙ୍କୁ ଗାଳି ଦେଉଥିଲେ, କେବଳ ସୁଧାମଣିଙ୍କ ଛଡ଼ା । ସେ ଗାଈ ମାନଙ୍କୁ ତାଙ୍କ ମା ଠାରୁ ବି ବେଶୀ ଭଲ ପାଉଥିଲେ । କାରଣ କୃଷ୍ଣଙ୍କ ଜୀବନରେ ସେମାନେ ସ୍ନେହର ସାଥୀ ଥିଲେ ।

ତାଙ୍କୁ ପ୍ରତ୍ୟେକ ଋତୁ ସମାନ ଭାବରେ ପ୍ରେରଣା ଦେଉଥିଲା ଓ ସବୁ ଦୈବୀ ଲୀଳା ବୋଲି ମନେ ହେଉଥିଲା । ସେ ଖରାଦିନର ପ୍ରଚଣ୍ଡ ଗରମ, ବର୍ଷା ଋତୁର ଅଜସ୍ର ବର୍ଷା କିମ୍ବା ଶୀତ ଦିନର ସମୁଦ୍ରର ଥଣ୍ଡା ପବନ ଦେଖି ବ୍ୟତିବ୍ୟସ୍ତ ହୋଇ ପଡୁନଥିଲେ । 'ପ୍ରକୃତି' ଭିତରେ ତାଙ୍କର ପ୍ରିୟତମ ଛଡ଼ା ଆଉ କିଛି ସେ ଦେଖିପାରୁନଥିଲେ । ଏଇ ପୃଥିବୀରୁ ତାଙ୍କର କିଛି ପାଇବାର ଆଶା ନଥିଲା । ତାଙ୍କର

ଜୀବନରେ ଏକ ମାତ୍ର ଲକ୍ଷ୍ୟ ଥିଲା ଶ୍ରୀକୃଷ୍ଣ ପାଦ ପଦ୍ମରେ ଲୀନ ହେବା । ଏପରିକି ବର୍ଷା ପଡିବାର ଶବ୍ଦ ଶୁଣିଲେ ସୁଧାମଣିଙ୍କ ହୃଦୟ ଆନନ୍ଦରେ ଭରି ଯାଉଥିଲା । ତାଙ୍କ ପାଇଁ ପ୍ରତ୍ୟେକ ଶବ୍ଦ 'ଓଁ' ପରି ଶୁଭୁଥିଲା । ବର୍ଷାର ଶବ୍ଦରେ ତାର ବେଶୀ ଆଭାସ ମିଳୁଥିଲା । ସେ ବର୍ଷାର ଶବ୍ଦ ସାଙ୍ଗରେ ଗଳା ମିଳାଇ କୃଷ୍ଣ ଛିଡା ହୋଇଛନ୍ତି କଳ୍ପନା କରି ଉଲ୍ଲସିତ ହୁଅନ୍ତି ।

ସୁଧାମଣିଙ୍କର ସାଧନା ବଢି ଚାଲିବା ସଙ୍ଗେ ସଙ୍ଗେ ତାଙ୍କର ନିର୍ଲିପ୍ତ ଭାବଧାରା ବେଶି ବେଶି ପ୍ରକଟ ହେବାକୁ ଲାଗିଲା । ବେଳେ ବେଳେ ସେ ଗାଧୁଆ ଘର ଭିତରକୁ ଗାଧୋଇବାକୁ ଯାଇ ଘଂଟା ଘଂଟା ଧରି ସେଠାରେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ବସି ରହୁଥିଲେ । ସୁଧାମଣିଙ୍କର ଏହିପରି ଅବସ୍ଥା ଦେଖି ତାଙ୍କ ପରିବାର ଲୋକେ ତାଙ୍କର ମସ୍ତିଷ୍କ ବିକୃତି ଅଛି ବୋଲି ଧରିନେଇଥିଲେ । କୋମଳ ଝିଅଟି ନିଜର ନିଭୃତ ଦୁନିଆରେ ଏକାକୀ ପଥିକ ଥିଲା । ଏପରି ନିରୀହ ଝିଅଟିର ଅସୀମ ପ୍ରେମ ଓ ଆଧ୍ୟାତ୍ମିକ ଗଭୀରତାକୁ ବୁଝିବା ସଭିଙ୍କର କଳ୍ପନାର ବାହାରେ ଥିଲା । ଭଗବାନଙ୍କର ଶକ୍ତି ହିଁ ତାଙ୍କୁ ନିଜର ଯଥାର୍ଥ ବୁଝିବା ଦିଗକୁ ଟାଣି ନେଉଥିଲା ।

ସେମାନଙ୍କ ପାଇଁ ପତ୍ର ସଂଗ୍ରହ କଲାବେଳେ ସାନ ପିଲାମାନେ ପାଖେ ପାଖେ ରହୁଥିଲେ ଏବଂ ସେ ଯୁଆଡେ ଗଲେ ତାଙ୍କୁ ଅନୁସରଣ କରୁଥିଲେ । ସେମାନେ ତାଙ୍କୁ ଖୁବ୍ ଭଲ ପାଉଥିଲେ, ସୁଧାମଣି ତାଙ୍କର ଅଧିନାୟକ ଥିଲେ । ଗଛର ଡାଳ ଉପରେ ବସି ପତ୍ର ତୋଳିଲା ବେଳେ ନିଜେ ଶ୍ରୀକୃଷ୍ଣ ବୋଲି ଏକ ସ୍ପଷ୍ଟ ଭାବନା ସୁଧାମଣିଙ୍କୁ ଆୟତ କରିନେଉଥିଲା । ପରେ ସେ ମନେ ପକାଇ କହନ୍ତି "ଗଛତଳେ ଠିଆ ହୋଇଥିବା ପୁଅ ଓ ଝିଅମାନେ ମୋତେ ଗୋପ ଓ ଗୋପୀ ପରି ମନେ ହେଉଥିଲେ" ।

ତାଙ୍କୁ ଅନେକ ଦର୍ଶନ ମିଳିଥିଲା । କୃଷ୍ଣ ଗଭୀର ରାତିରେ ଆସି ତାଙ୍କ ଆଗରେ ଦର୍ଶନ ଦିଅନ୍ତି, ବଂଶୀଧାରୀ ଭଗବାନ ତାଙ୍କର ହାତ ଧରି ନାଚନ୍ତି । ଆଉ କେବେବା, ସେ ତାଙ୍କ ସୁଧାମଣି ସହ ଖେଳି ତାକୁ ହରାଇ ଦିଅନ୍ତି । ଏହି ଅଦ୍ଭୁତ ଆନନ୍ଦମୟ ମୁହୂର୍ତ୍ତରେ ସୁଧାମଣି ତନ୍ମୟ ହୋଇ ନାଚୁଥିଲେ । ରାଧା କୃଷ୍ଣର ମୋହନ ବଂଶୀ ଧ୍ୱନି ଶୁଣୁଥିଲେ । ପ୍ରଥମେ ସେ ଭାବୁଥିଲେ କୃଷ୍ଣ ତାଙ୍କ ପାଖରେ ଠିଆ ହୋଇ ବଂଶୀ ବଜାଉଛନ୍ତି, କିନ୍ତୁ ପରେ ଆଶ୍ଚର୍ଯ୍ୟ ହୋଇ ବୁଝିପାରିଥିଲେ ଯେ ଏ ଧ୍ୱନି ତାଙ୍କ ଭିତରୁ ହିଁ ଆସୁଛି । ସାଙ୍ଗେ ସାଙ୍ଗେ ସେ କାନ୍ଦି ଶ୍ରୀକୃଷ୍ଣଙ୍କର ଫଟୋ ଆଗରେ ମୂର୍ଚ୍ଛା

ହୋଇଯାଆନ୍ତି । ଯେତେବେଳେ ଶୋଇପଡନ୍ତି, ସାଙ୍ଗେ ସାଙ୍ଗେ କୃଷ୍ଣ ଆସି ତାଙ୍କୁ ଉଠାଇ ଦିଅନ୍ତି । ପରେ ସୁଧାମଣି କହିଥିଲେ ଯେ ତାଙ୍କର ରଙ୍ଗ ଘନନୀଳ ଓ ଇଷତ୍ ନାଲିର ମିଶ୍ରଣ । ଅନେକ ସମୟରେ ସେ ଗୋଟିଏ ଖଟ ଉପରେ ବିଭିନ୍ନ ଧରଣର ବାସ୍ନା ଫୁଲ ବିଛାଡି ହୋଇ ପଡିଥିବାର ଦେଖୁଥିଲେ । ତାଙ୍କର ହାତ ଧରି କୃଷ୍ଣ ତା ଉପରେ ନାଚୁଥିଲେ । ସେ ତାଙ୍କୁ ମେଘ ଉପରକୁ ନେଇଯାଇ ବିଭିନ୍ନ ପୃଥିବୀ ଓ ସୁନ୍ଦର ନୈସର୍ଗିକ ଦୃଶ୍ୟ ଦେଖାଉଥିଲେ । କିନ୍ତୁ ସୁଧାମଣି ଭାବୁଥିଲେ "ଯଦି ସିଏ ସେଠି ନାହାନ୍ତି ଏ ସବୁ ଜିନିଷର ଆକର୍ଷଣ ବା କଣ ? ସେ ହିଁ ମୂଳ ପ୍ରକୃତି । ପୃଥିବୀର ଏହି ବାହ୍ୟ ରୂପ ସବୁବେଳେ ବଦଳି ଚାଲିଥିବ" । ଏହି ବିଶ୍ୱାସରେ ସେ ଦୃଢୀଭୂତ ଥିଲେ । ତାଙ୍କର ମନ ପକ୍ଷୀ ସବୁବେଳେ ପ୍ରିୟତମ ପାଖକୁ ହିଁ ଉଡିଯାଉଥିଲା । ସେ ଦିନକୁ ଦିନ ପ୍ରଭୁଙ୍କ ଶରଣାଗତ ହୋଇପଡିଲେ ।

ଅନେକ ସମୟରେ ସୁଧାମଣି କୃଷ୍ଣଙ୍କ ପାଖେ ପାଖେ ଚାଲୁଥିବାର ବୋଧ କରୁଥିଲେ । ଆଉ କେତେବେଳେ ବା ନିଜ ଭିତରେ କୃଷ୍ଣଙ୍କୁ ଅନୁଭବ କରି, କାନ୍ଥରୁ ସବୁ ଦେବ ଦେବୀଙ୍କର ଫଟୋ ଚିରି ଏପରିକି କୃଷ୍ଣଙ୍କର ଫଟୋ ମଧ୍ୟ ଚିରି ଦବାକୁ ଚାହୁଁଥିଲେ । "ଏ ଛବି ଗୁଡିକ ଖାଲି କାଗଜ ଓ ରଙ୍ଗ, ଏମାନେ କୃଷ୍ଣ ନୁହଁନ୍ତି ! ମୁଁ ନିଜେ ହିଁ କୃଷ୍ଣ !" ପୁଣି ପର ମୁହୂର୍ତ୍ତରେ ତାଙ୍କର ମନ ପରିବର୍ତ୍ତନ ହୁଏ "ନାଁ, ଏ ଫଟୋ ସବୁ ମୋର ଚିରିବା ଉଚିତ ନୁହଁ, କାରଣ ଏହି ଫଟୋ ହିଁ ମୋତେ କୃଷ୍ଣ ଅନୁଭବ ଲାଗି ସକ୍ଷମ କରି ପାରିଛି । ପ୍ରତ୍ୟେକଟି ଜିନିଷ ଭିତରେ କୃଷ୍ଣ ନିହିତ ହୋଇ ରହିଛନ୍ତି । ସେ ହିଁ ଚୈତନ୍ୟ, ତେଣୁ ଏଇ ଫଟୋ ମଧ୍ୟ ସିଏ" । ସବୁ କୃଷ୍ଣମୟ ଦେଖିବା ଓ ଅନୁଭବ କରିବା ମୂଳରେ ରହିଥିଲା ଅନେକ ବର୍ଷର ସାଧନା, ସ୍ୱାର୍ଥ ତ୍ୟାଗ ଓ ବ୍ୟାକୁଳତା । ଏହିପରି ସୁଧାମଣି କୃଷ୍ଣ ଭାବି ବଡ ଗଛକୁ ଆଲିଙ୍ଗନ କରନ୍ତି, ଛୋଟ ଗଛ ଓ ପିଲାମାନଙ୍କୁ ଚୁମ୍ବନ ଦିଅନ୍ତି ଏବଂ ଯେଉଁଆଡେ ଅନେଇଲେ ସେଇଠି କୃଷ୍ଣଙ୍କର ମୋହନ ମୂରତି ଦେଖିବାକୁ ପାଆନ୍ତି । ଏମିତି କୌଣସି ଅଣୁ ପରମାଣୁ ନଥାଏ ଯେଉଁଥିରେ କି କୃଷ୍ଣ ନଥାନ୍ତି ।

ପରେ ସେ ଏହି ସମୟରେ ବର୍ଣ୍ଣନା କରିଛନ୍ତି । "ମୁଁ ପ୍ରକୃତି ଓ ଚତୁର୍ଦ୍ଦିଗର ସବୁ କିଛି କୃଷ୍ଣମୟ ଦେଖୁ ଥିଲି । ମୁଁ ଫୁଲଟିଏ ମଧ୍ୟ ତୋଳି ପାରୁ ନଥିଲି, କାରଣ ଜାଣିଥିଲି ତାହା ମଧ୍ୟ କୃଷ୍ଣ । ଯେତେବେଳେ ମଳୟ ମୋ ଦେହ ଛୁଉଁଥିଲା, ମୁଁ

ଭାବୁଥିଲି କୃଷ୍ଣ ହିଁ ମତେ ଆଲିଙ୍ଗନ କରୁଛନ୍ତି । ମୁଁ ଚାଲିବାକୁ ମଧ୍ୟ ଡରୁଥିଲି କାରଣ ଭାବୁଥିଲି ଆହା ! ମୁଁ କୃଷ୍ଣଙ୍କ ଉପରେ ପାଦ ଦେଉଛି ! ମାଟିର ପ୍ରତ୍ୟେକ ରେଣୁ ମୋ ପାଇଁ କୃଷ୍ଣ ଥିଲେ । ବର୍ତ୍ତମାନ ଓ ସେତେବେଳେ ମୁଁ ନିଜକୁ କୃଷ୍ଣ ବୋଲି ଦୃଢଭାବରେ ଭାବିବାକୁ ଆରମ୍ଭ କଲି । ଆସ୍ତେ ଆସ୍ତେ ଏହା ସ୍ୱଭାବିକ ରୂପ ନେବା ଆରମ୍ଭ କଲା । ବୃନ୍ଦାବନ ବାସୀ କୃଷ୍ଣ ଓ ମୋ ଭିତରେ ମୁଁ ତଫାତ୍ ଦେଖିବାକୁ ପାଇଲି ନାହିଁ ।" ଏହିପରି ସୁଧାମଣି ଅଖଣ୍ଡ ସଚ୍ଚିଦାନନ୍ଦ ଭାବରେ ନିମଗ୍ନ ରହି ପୂର୍ଣ୍ଣ ଶାନ୍ତି ଅନୁଭବ କଲେ । କିନ୍ତୁ ତାଙ୍କର ଏହି ଭଗବତ୍ ପ୍ରାପ୍ତିର ଜ୍ଞାନ ବିଷୟରେ ପରିବାର କିମ୍ବା ଗ୍ରାମବାସୀ ମାନଙ୍କୁ ଜଣା ନଥିଲା । ଯଦିଓ ବାହାରୁ ସେ ସାଧାରଣ ଗ୍ରାମ୍ୟ ବାଳିକା ପରି ଦିଶୁଥଲେ, ସେ ମହାପ୍ରଭୁ ଭଗବାନ ଶ୍ରୀକୃଷ୍ଣଙ୍କ ସହ ଅଦ୍ୱୈତ ଭାବରେ ଏକୀଭୂତ ହୋଇ ଯାଇଥିଲେ ।



# ପଂଚମ ଅଧ୍ୟାୟ

## ପୃଥିବୀର ହିତପାଇଁ

ହିନ୍ଦୁ ଧର୍ମର [illegible] ଦେବା ଦେବୀ ଅନନ୍ତ ପରମେଶ୍ୱରଙ୍କ ବିଭିନ୍ନ ଭାବର ସତ୍ତାର ପ୍ରତିନିଧିତ୍ୱ କରନ୍ତି । [illegible] ସତ୍ତା ଆମ ଭିତରେ ମଧ୍ୟ ଅଛି । ସେହି ଐଶ୍ୱରିକ ସତ୍ତାଙ୍କର ଇଚ୍ଛା ହେଲେ ସେ ଜଗତର କଲ୍ୟାଣ ପାଇଁ ମନୁଷ୍ୟ ରୂପରେ ଆବିର୍ଭାବ ହେବେ । କୃଷ୍ଣଙ୍କର ସ୍ୱର୍ଗୀୟ ଭାବ ହିଁ ପୁରୁଷ ବା ନିତ୍ୟ ସଚ୍ଚିଦାନନ୍ଦ ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ବଂଶୀ ବିଭୂଷିତ କରାତ୍ ନୟନୀରଦାଭାତ୍
ପୀତାମ୍ବରାତ୍ ଅରୁଣ ବିମ୍ବଫଳାଧରୋଷ୍ଠାତ୍ ।
ପୂର୍ଣ୍ଣେନ୍ଦୁ ସୁନ୍ଦର ମୁଖାତ୍ ଅରବିନ୍ଦ ନେତ୍ରାତ୍
କୃଷ୍ଣାତ୍ ପରମଂ କିମପି ତତ୍ୱମହମ୍ ନ ଜାନେ ॥

ଯେଉଁ ଶ୍ରୀକୃଷ୍ଣଙ୍କ ହାତରେ ବଂଶୀ, ଯିଏ ନୀଳ ମେଘପରି ସୁନ୍ଦର ଶ୍ୟାମବର୍ଣ୍ଣ, ଯିଏ ପୀତାମ୍ବର ପରିହିତ, ଯାହାଙ୍କ ଓଠ ବିମ୍ବଫଳ ପରି ଅରୁଣାଭ, ମୁଖଶ୍ରୀ ପୂର୍ଣ୍ଣଚନ୍ଦ୍ରପରି ସୁନ୍ଦର, ଓ ନେତ୍ରଦ୍ୱୟ ପଦ୍ମପାଖୁଡା ପରି, ସେହି କୃଷ୍ଣଙ୍କ ବ୍ୟତୀତ ଆଉ ମୁଁ କିଛି ଜାଣେନା ।

ମଧୁସୁଦନ ସରସ୍ୱତୀ

କିଶୋରୀ ସୁଧାମଣି ପରଂବ୍ରହ୍ମ ହୃଦୟଙ୍ଗମ କଲାପରେ ମଧ ତାଙ୍କୁ ଘରର ସବୁ କାମ ଆଗପରି କରିବାକୁ ହେଉଥିଲା । ସେ ସବୁ କାମ କରିବା ପାଇଁ ପ୍ରାଣ ପଣେ ଚେଷ୍ଟା କଲେ ମଧ୍ୟ ପ୍ରଭୁଙ୍କର ଇଚ୍ଛା ଅଲଗା ଥିଲା ।

୧୯୭୫ ମସିହା ସେପ୍ଟେମ୍ବର ମାସରେ ଗୋଟିଏ ଘଟଣା ଭାରତ ବର୍ଷର ଭଗବତ୍ ଦର୍ଶନର ଇତିହାସ ରେ ନୂଆ ଅଧ୍ୟାୟ ସୃଷ୍ଟି କରିଥିଲା । ସୁଧାମଣି ଦିନ ପାଂଚଟା ବେଳେ ସାନ ଭାଇ ସତୀଶ ସାଙ୍ଗରେ ଘରକୁ ଫେରୁଥିଲେ । ମୁଣ୍ଡରେ ବିରାଟ ଘାସ ବୋଝ ବୋହିଥିଲେ ମଧ ମନ ମହତ ଚିନ୍ତାରେ ପରିପୂର୍ଣ୍ଣ ଓ ଓଠରେ ଭଗବତ ଭଜନ ଲାଗି ରହିଥାଏ । ଯେତେବେଳେ ଦୁହେଁ ଇଡ଼ାମାନ୍ନେଲର ଉତ୍ତର ଦିଗରେ ଥିବା ଜଣେ ପଡୋଶୀର ଫାଟକ ଅତିକ୍ରମ କରି ଆସୁଥିଲେ, ସୁଧାମଣି

ଭାଗବତର ଶେଷ ଅଧ୍ୟାୟ ପଢା ହେଉଥିବା ଶୁଣି ପାରିଥିଲେ । ପଢା ସରି ଯାଉଥିଲା ଓ ଭଜନ ଆରମ୍ଭ ହେଉଥିଲା ।

ସେହି ମୁହୂର୍ତ୍ତରେ ଭାବରେ ବିଭୋର ହୋଇ ସେଇଠି ସ୍ଥିର ହୋଇ ଏକ ଧ୍ୟାନରେ ସେ ଭଜନ ଶୁଣିବାକୁ ଲାଗିଲେ । ସାଙ୍ଗେ ସାଙ୍ଗେ ତାଙ୍କର ମାନସିକ ଅବସ୍ଥା ବଦଳିଗଲା । ମୁଣ୍ଡରୁ ଘାସ ବୋଝ ଖସି ପଡିଲା, ସେ ଅଗଣା ଭିତରକୁ ଯାଇ ଭକ୍ତମାନଙ୍କ ମଝିରେ ଠିଆ ହୋଇଗଲେ । ପ୍ରବଳ ଭଗବତ ପ୍ରେମରେ ଅଭିଭୂତ ହୋଇ, ତାଙ୍କ ଭିତରେ ନିହିତ ପ୍ରଭୁଙ୍କର ଆଭାସ ଉଚ୍ଛୁଳି ତାଙ୍କର ଦେହରେ ପ୍ରକାଶିତ ହେବାକୁ ଆରମ୍ଭ କଲା । ତାଙ୍କର ଭାବଭଙ୍ଗୀ ଓ ରୂପ ସହ ଶ୍ରୀକୃଷ୍ଣଙ୍କ ସାମଞ୍ଜସ୍ୟ ପ୍ରତିଭାତ ହେଲା ।

ଆଶ୍ଚର୍ଯ୍ୟ ହୋଇ ଭକ୍ତମାନେ ମନେ କଲେ ଯେ ସତରେ ମହାପ୍ରଭୁ ଶ୍ରୀକୃଷ୍ଣ ଏଇ ବାଳିକା ମାଧ୍ୟମରେ ସେମାନଙ୍କୁ ଆଶୀର୍ବାଦ କରିବାକୁ ଆସିଛନ୍ତି । ସୁଧାମଣି ଜଣେ ଭକ୍ତଙ୍କୁ କିଛି ପାଣି ଆଣିବାକୁ କହିଥିଲେ ଓ ତାପରେ ସେ ପାଣି ସମସ୍ତଙ୍କ ଉପରେ ଛିଂଚି ଦେଇଥିଲେ । ସୁଧାମଣିଙ୍କର ଏହି ଐଶ୍ୱରିକ ଭାବ ପ୍ରଦର୍ଶନର ଖବର ଖୁବ୍ ଶୀଘ୍ର ଚାରିଆଡେ ବ୍ୟାପିଗଲା । କେତେ ଜଣ ଅବିଶ୍ୱାସୀ ଲୋକ ଏଇ ବାଳିକାଟିର ହଠାତ୍ ଏପରି ଭାବ ଦେଖି ପଚାରିଥିଲେ "ତୁମେ ଯଦି ସତରେ କୃଷ୍ଣ ତେବେ ଆମକୁ ଅଲୌକିକ ଘଟଣା ଦ୍ୱାରା ପ୍ରମାଣ ଦେଖାଅ, ନ ହେଲେ ଆମେ ବିଶ୍ୱାସ କରିବୁ କିପରି ?" ସୁଧାମଣି ସାଙ୍ଗେ ସାଙ୍ଗେ କହିଥିଲେ -

"ଯେଉଁ ବସ୍ତୁର ସତ୍ତା ନାହିଁ ତାକୁ କିପରି ପ୍ରକଟ କରାଯାଇ ପାରେ ! ପ୍ରତ୍ୟେକ ଜିନିଷ ପ୍ରକୃତରେ ମନର ପ୍ରକ୍ଷେପଣ, କଳ୍ପନା । ନିଜ ଭିତରେ ଅମୂଲ୍ୟ ରତ୍ନ ଥାଉ ଥାଉ, ନକଲି ଜିନିଷ ପାଇଁ ଆଗ୍ରହ କରିବା କାହିଁକି ? ପରଂବ୍ରହ୍ମ ତୁମ ଭିତରେ ଅଧିଷ୍ଠିତ, ଅଜ୍ଞତା ତାକୁ ଘୋଡାଇ ରଖିଛି !"

ଏହି ପୂର୍ଣ୍ଣ ବ୍ରହ୍ମରେ ପ୍ରତିଷ୍ଠିତ ବାଳିକାଟିର ମହତ ସତ୍ୟ କଥା କୁ ବୁଝିବାକୁ ଅକ୍ଷମ ହୋଇ ସେମାନେ ବାରମ୍ବାର ଅଲୌକିକତାର ପ୍ରମାଣ ଚାହିଁଲେ । ସୁଧାମଣି ବାଧ୍ୟହୋଇ ଉତ୍ତର ଦେଇଥିଲେ "ମୁଁ ଅଲୌକିକତା ଦେଖାଇ କାହା ଭିତରେ ବିଶ୍ୱାସ ସଂଚାର କରିବାକୁ ଚାହେଁ ନାହିଁ । ମୋର ଅଲୌକିକତା ଦେଖାଇବାର ଉଦ୍ଦେଶ୍ୟ ବି

ନାହିଁ । ମୋର ଲକ୍ଷ୍ୟ ଲୋକମାନଙ୍କୁ ନିଜ ଭିତରେ ଥିବା ବ୍ରହ୍ମଙ୍କୁ ବୁଝିବା ପାଇଁ ଉତ୍ସାହିତ କରିବା, ଯାହାଦ୍ୱାରା ସେମାନଙ୍କର ଜୀବାତ୍ମାରୁ ମୁକ୍ତି ପାଇବା ପାଇଁ ଆଗ୍ରହ ବଢିବ । ଅଲୌକିକତା ମାୟା ସୃଷ୍ଟିକରେ ଏବଂ ଭଗବତ୍ ତତ୍ତ୍ୱ ବୁଝିବା ପାଇଁ ତାହା ଅଦରକାରୀ । ଆଉ ମଧ୍ୟ ଥରେ ଏପରି ଅଲୌକିକତା ଦେଖାଇଲେ, ତୁମେମାନେ ଆହୁରି ବାରମ୍ବାର ଦେଖିବାକୁ ଚାହିଁବ । ମୁଁ ଏଠାକୁ ଆକାଂକ୍ଷା ବଢାଇବାକୁ ଆସି ନାହିଁ, ବରଂ ତାହାର ନିରୋଧ କରିବାକୁ ଆସିଛି ।"

ଅବିଶ୍ୱାସୀ ଲୋକମାନେ ତଥାପି ବାଧ୍ୟକଲେ "ନା ଆମକୁ ଥରେ ଅଲୌକିକତା ଦେଖାଅ, ଆମେ ଆଉ କେବେ ବି ଜିଦ୍ କରିବୁ ନାହିଁ" । ଶେଷରେ ସୁଧାମଣି ରାଜି ହେଲେ, "ତୁମ ମାନଙ୍କ ଭିତରେ ବିଶ୍ୱାସ ଆଣିବା ପାଇଁ ମୁଁ ମାତ୍ର ଥରେ ତାହା କରିବି, କିନ୍ତୁ ଆଉ ଯେପରି କେବେହେଲେ ମୋ ପାଖରେ ଏପରି ଇଚ୍ଛା ପ୍ରକାଶ କରିବ ନାହିଁ । ଯେଉଁ ମାନଙ୍କର ସନ୍ଦେହ ଅଛି, ସେମାନଙ୍କୁ ପୁଣି ଆରଥର ଶ୍ରୀମଦ୍ ଭାଗବତ ପ୍ରବଚନ ବେଳେ ଆସିବାକୁ କୁହ" ।

ତାପରେ ଶ୍ରୀମଦ୍ ଭାଗବତ ପ୍ରବଚନ ଦିନ ସେହି ଘର ଭିତରେ ଓ ବାହାରେ ବହୁତ ଲୋକଙ୍କ ଭିଡ ଜମିଥାଏ, ଅବିଶ୍ୱାସ କରୁଥିବା ଲୋକମାନେ ଗୋଟିଏ ଶଠ ପ୍ରବଂଚନାକୁ ଧରା ପକାଇବା ଆଶାରେ ଘର ଛାତ ଉପରେ ଚଢି ବସିଥାନ୍ତି । କୃଷ୍ଣ ଏବଂ ସେ ଯେ ଏକ ଓ ଅଭିନ୍ନ ଏହିପରି ଭାବର ପ୍ରଦର୍ଶନ କରି ସୁଧାମଣି ଜଣେ ଅବିଶ୍ୱାସ କରୁଥିବା ବ୍ୟକ୍ତିଙ୍କୁ ଢାଳେ ଜଳ ଆଣିବାକୁ କହିଥିଲେ ଓ ଆଗ ପରି ସମସ୍ତଙ୍କ ଉପରେ ପବିତ୍ର ଜଳ ଛିଂଚି ଥିଲେ । ତାପରେ ସେହି ବ୍ୟକ୍ତିଙ୍କୁ ଡାକି ବଳକା ପାଣିରେ ଆଙ୍ଗୁଠି ବୁଡାଇବାକୁ କହିଥିଲେ । ଆଶ୍ଚର୍ଯ୍ୟ ଜନକ ଭାବରେ ସେହି ପାଣିଟି କ୍ଷୀରରେ ପରିଣତ ହୋଇଗଲା ! ତାପରେ କ୍ଷୀର ପ୍ରସାଦ ହିସାବରେ ସମସ୍ତଙ୍କୁ ବଂଟନ କରାଗଲା । ତାପରେ ସୁଧାମଣି ଆଉଜଣେ ଅବିଶ୍ୱାସ କରୁଥିବା ବ୍ୟକ୍ତିଙ୍କୁ ଡାକି ପୁଣି ସେହି ଢାଳରେ ଆଙ୍ଗୁଠି ବୁଡାଇବାକୁ କହିଥିଲେ, ବର୍ତ୍ତମାନ କ୍ଷୀରର ପାତ୍ରଟି କ୍ଷୀର, କଦଳୀ, କିସ୍‌ମିସ୍ ଓ ମିଶ୍ରିର ପଂଚାମୃତ ହୋଇଗଲା । ଉପସ୍ଥିତ ଭକ୍ତମାନେ 'ହେ ପ୍ରଭୁ!' ବୋଲି ବ୍ୟାକୁଳତାରେ କାନ୍ଦିବାକୁ ଲାଗିଲେ ଏବଂ ସେମାନେ ପ୍ରକୃତରେ ଭଗବାନ ଶ୍ରୀକୃଷ୍ଣଙ୍କର ସମ୍ମୁଖରେ ଅଛନ୍ତି ବୋଲି ମନେ କରିଥିଲେ ।

ସେହି ପଂଚାମୃତ ପ୍ରାୟ ହଜାରେ ରୁ ବେଶୀ ଉପସ୍ଥିତ ଲୋକମାନଙ୍କୁ ବଂଟା ହୋଇଥିଲା, ତଥାପି ପାତ୍ରଟି ପୁରା ଭରପୁର ଥିଲା । ଟିକିଏ ଦୂରରେ ସମୁଦ୍ରକୂଳ ବରଗଛ ମୂଳରେ ବସିଥିବା ଲୋକମାନଙ୍କୁ ମଧ୍ୟ ପଂଚାମୃତ ବଂଟା ହୋଇଥିଲା । ତଥାପି ପାତ୍ରଟି ଭରପୁର ରହିଥିଲା । ଅଳ୍ପ କିଛି ଅବିଶ୍ୱାସୀ ଲୋକଙ୍କର ଏହି ଘଟଣାରେ ସୁଦ୍ଧା ହୃଦ୍‌ବୋଧ ହୋଇନଥିଲା ଓ ସେମାନେ ଏହାକୁ 'ଭେଲିକି' ବୋଲି ରାୟ ଦେଇଥିଲେ । କିଛିକ୍ଷଣ ମଧ୍ୟରେ ପଂଚାମୃତ ନିଶ୍ଚୟ ଉଭେଇ ଯିବ ବୋଲି କହିଥିଲେ । ପଂଚାମୃତ ନ ଉଭେଇବା ଦେଖି ସେମାନେ ବିଫଳ ମନୋରଥ ହୋଇ ଫେରିଥିଲେ । ସେ ପ୍ରସାଦ ପାଇଥିବା ବ୍ୟକ୍ତି ମାନଙ୍କର ହାତରେ ତାର ସୁଗନ୍ଧ ଅନେକ ଦିନ ଯାଏ ରହିଥିଲା । ଏହି ଘଟଣା ଗ୍ରାମବାସୀ ମାନଙ୍କର ବିଶ୍ୱାସ ବଢାଇ ଦେଇଥିଲା ଏବଂ ବର୍ତମାନ ସେମାନେ ସୁଧାମଣିଙ୍କୁ ଦୈବୀଶକ୍ତି ସଂପନ୍ନା ବୋଲି ମାନିନେଲେ ।

ପରେ କୃଷ୍ଣ ଭାବର ଆବିର୍ଭାବ ବିଷୟରେ ସୁଧାମଣି କହିଥିଲେ,"ଅନେକ ଦିନ ପୂର୍ବେ ମୁଁ ଏକୁଟିଆ କୃଷ୍ଣ ଭାବରେ ମତ୍ତ ହୋଇ ନୃତ୍ୟ କରୁଥିଲି କିନ୍ତୁ କେହି ଜାଣି ନଥିଲେ । ଦିନେ ମୋର ପ୍ରବଳ ଇଚ୍ଛା ହେଲା ପରମାତ୍ମାଙ୍କ ଭିତରେ ସଂପୂର୍ଣ୍ଣ ଭାବରେ ଲୀନ ହୋଇ ଆଉ ନ ଫେରିବା ପାଇଁ । ତାପରେ ମୋ ଭିତରୁ ଗୋଟିଏ ସ୍ୱର ଶୁଣିଲି 'ଏଇ ପୃଥିବୀରେ ହଜାର ହଜାର ଲୋକ ଦୁଃଖ, ଯାତନାରେ ବୁଡି ରହିଛନ୍ତି, ମୁଁ ତୋ ପାଇଁ ବହୁତ କାମ ରଖିଛି – ତୁ ଓ ମୁଁ ଅଭେଦ୍ୟ' ।"

ନିଜ ଭିତରୁ ଆସୁଥିବା ଏହି ଦୈବୀବାଣୀ ଶୁଣିଲା ପରେ ସୁଧାମଣି ଶ୍ରୀକୃଷ୍ଣ ତାଙ୍କ ଅନ୍ତଃ ପ୍ରତିଷ୍ଠ ବୋଲି ଗ୍ରମାବାସୀଙ୍କୁ ଦେଖାଇଥିଲେ । ସୁଧାମଣି ବ୍ୟାଖ୍ୟାନ ଦେଇଥିଲେ :

"ମୁଁ ସମସ୍ତଙ୍କର ବିଷୟରେ ସବୁ ଜାଣିପାରିବାରେ ସକ୍ଷମ ହୋଇଥିଲି । ମୁଁ ଶ୍ରୀକୃଷ୍ଣ, ଏ ଜ୍ଞାନ ଖାଲି ଯେ ଗୋଟିଏ ସମୟରେ ପ୍ରକଟ ହୋଇଥିଲା, ତା ନୁହଁ । ମୋର ସବୁ ସମୟରେ ଏଇ ଅନୁଭୂତି ହେଉଥିଲା । ମୋର କେବେ ବି ମନେ ହୋଇ ନଥିଲା "ମୁଁ ମହତ" । ମୁଁ ଯେତେବେଳେ ଲୋକମାନଙ୍କୁ ଦେଖୁଥିଲି, ସେମାନଙ୍କର ମାନସିକ ଓ ଶାରୀରିକ ଯନ୍ତ୍ରଣା ବୁଝି ପାରୁଥିଲି ଓ ସେମାନଙ୍କ ପାଇଁ ମୁଁ ଅତୀବ କରୁଣା ଅନୁଭବ କରୁଥିଲି । ମୁଁ ଭକ୍ତ ମାନଙ୍କୁ ମନେ ମନେ ଶ୍ୟାମ ଓ ମତେ ପ୍ରଭୁ ବୋଲି

ସମ୍ବୋଧନ କରିବାର ଭାବକୁ ବୁଝିପାରୁଥିଲି । ସେମାନଙ୍କ ଦୁଃଖ ନ କହିଲେ ବି ମୁଁ ଦୁଃଖ ବୁଝି ପାରୁଥିଲି ।"

ସେହି ସମୟରେ ସୁଧାମଣି ନିୟମିତ ଭାବରେ ଇଡାମାନ୍ନେଲର ପଶ୍ଚିମ ଦିଗରେ ସମୁଦ୍ର କୂଳ ରାସ୍ତାରେ ଥିବା ଗୋଟିଏ ବରଗଛ ମୂଳରେ କୃଷ୍ଣଭାବ ପ୍ରକାଶ କରିବାକୁ ଲାଗିଲେ । ସେହି ଗଛର ଚାରିପଟେ ଅନେକ ସୁନ୍ଦର ଫୁଲ ଗଛ ମଧ୍ୟ ଥିଲା । କିଛି ବର୍ଷ ଆଗରୁ ଗ୍ରାମବାସୀମାନେ ସେଠାରେ ଗୋଟିଏ ମନ୍ଦିର ତୋଳାଇବାକୁ ଯୋଜନା କରିଥିଲେ । ମନ୍ଦିରର ସ୍ଥାନ ନିରୂପଣ ଓ ଉଦଘାଟନ କରି ଗ୍ରାମର ଯୁବକ ମାନେ ଆଉ ଗୋଟିଏ ବର ଗଛ ଲଗାଇ ଶୁଭ ଦୀପ ଜାଳି ଦେଇଥିଲେ ।

ସୁଗୁଣାନନ୍ଦ ଗ୍ରାମର ଯୁବକ ମାନଙ୍କୁ ଏଇ ଶୁଭ କାମ ରେ ଯୋଗ ଦେବା ପାଇଁ ଉତ୍ସାହିତ କରିଥିଲେ । ତାଙ୍କର ବୁଢୀ ମା ମାଧବୀଙ୍କୁ ନେଇ ସୁଧାମଣି ପ୍ରତିଦିନ ସନ୍ଧ୍ୟାରେ ସେଠିକି ଆସୁଥିଲେ ଓ ଦୀପ ଜଳାଇ ଭଜନ ଗାଉଥିଲେ । ସେଇ ବରଗଛ ଆଗରେ ଗୋଟିଏ ନଡିଆ ବରଡାରେ ତିଆରି ଛୋଟିଆ କୁଡିଆ ତିଆରି ହୋଇଥିଲା ଏବଂ ତା ଭିତରେ ଶ୍ରୀକୃଷ୍ଣ ଓ କାଳୀଙ୍କର ଚିତ୍ର ଅଧିଷ୍ଠିତ କରାଯାଇଥିଲା ।

ବର୍ତ୍ତମାନ ବହୁତ ବର୍ଷ ପରେ ଏହି ଜାଗାରେ ସୁଧାମଣି ଶ୍ରୀକୃଷ୍ଣଙ୍କ ସହ ତାଙ୍କର ଅଭିନ୍ନତା ପ୍ରତିପାଦନ କରିଥିଲେ । ସେହି ସ୍ଥାନ ସର୍ବ ସାଧାରଣଙ୍କର ସଂପତି ହୋଇଥିବାରୁ ସେଠାରେ ପବିତ୍ର କୃଷ୍ଣଭାବ ପାଇଁ ସମସ୍ତେ ସମବେତ ହେବାକୁ ସୁବିଧା ହେଉଥିଲା । ସୁଧାମଣି ବରଗଛର ଗୋଟିଏ ପତଳା ଡାଳ ଉପରେ, ଅନନ୍ତ ଶୟନର ଠାଣି ରେ ଶୋଇ ରହୁଥିଲେ ଯେପରିକି ମହାପ୍ରଭୁ ସହସ୍ର ମସ୍ତକ ସର୍ପ ଅନନ୍ତ ନାଗ ଉପରେ ଭରା ଦେଇ ରହିଛନ୍ତି । ଏହି ସମୟରେ ସ୍ୱ ଇଛାରେ ତାଙ୍କର ଦେହଟି ପବନ ପରି ହାଲକା ହୋଇଯାଉଥିଲା । ଭକ୍ତ ପାଇଁ ଏ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଥିଲା ।

ଏହି ପବିତ୍ର ସ୍ଥାନଟି ବାସ୍ତବିକ ଶ୍ରୀକୃଷ୍ଣଙ୍କର ବିହାର ସ୍ଥଳୀ ବୃନ୍ଦାବନ ପରି ହୋଇଗଲା ଏବଂ ଚାରିଦିଗର ବାତାବରଣଟି ପ୍ରଭୁଙ୍କର ମହିମାର ଭଜନ କୀର୍ତ୍ତନରେ ଭରି ରହିଲା । କ୍ରମେ କ୍ରମେ ଭକ୍ତମାନେ ଶ୍ରୀକୃଷ୍ଣଙ୍କର ପବିତ୍ର ଦର୍ଶନ ଓ ନିଜର ସମସ୍ୟାର ସମାଧାନ ପାଇଁ ସେଠାରେ ଭିଡ କରିବାକୁ ଲାଗିଲେ । ସୁଧାମଣିଙ୍କୁ କୃଷ୍ଣ

ଭାବ ବେଳେ ଜଣାଇଲାପରେ ସେହି ଭକ୍ତମାନଙ୍କର ସମସ୍ୟା ଆଶ୍ଚର୍ଯ୍ୟ ଜନକ ଭାବରେ ସମାଧାନ ହୋଇ ଯାଉଥିଲା ।

ସେହି ସମୟରେ ଲୋକମାନେ ଦୁଃଖ ଗୁହାରୀ ଦୂର କରିବା ପାଇଁ କୃଷ୍ଣ ଭାବ ସମୟରେ ପ୍ରାର୍ଥନା କଲାବେଳେ, ସୁଧାମଣି ସେମାନଙ୍କୁ ଖଣ୍ଡିଏ କର୍ପୂର ଜଳାଇ ତାଙ୍କର ବଢାଇ ଥିବା ଜିଭ ଅଗରେ ରଖିବାପାଇଁ କହୁଥିଲେ ଓ ତାପରେ ସେ ସେହି ଜଳୁଥିବା କର୍ପୂରକୁ ଗିଳି ଦେଉଥିଲେ । ଭାବ ଦର୍ଶନ ସରିଲା ପରେ ତାଙ୍କର ଜିଭ ପୋଡିବାର କୌଣସି ଚିହ୍ନ ଦେଖା ଯାଉନଥିଲା । ଲୋକଙ୍କର ବିଶ୍ୱାସ ମଧ୍ୟ ଆହୁରି ବଢିଗଲା ।

କୃଷ୍ଣ ଭାବର ଖବର ଅଳ୍ପ ସମୟରେ ଚାରିଆଡେ ଖେଳିଗଲା । କେରଳ ଓ ଭାରତର ବିଭିନ୍ନ ସ୍ଥାନରୁ ଲୋକ ଆସି ଭିଡ କରିବାକୁ ଲାଗିଲେ । ସେଦିନ ଠାରୁ ଏହି ପବିତ୍ର ସ୍ଥାନକୁ ଆଜିଯାଏ ଆସୁଥିବା ଯାତ୍ରୀ ସଂଖ୍ୟା କ୍ରମଶଃ ବଢି ଚାଲିଛି । ଅନେକ ଆରୋଗ୍ୟ ଲାଭ ପାଇଁ, କେତେକ ଲୋକ ବିଷୟ ସଂପତ୍ତି ସଂପର୍କୀୟ ସମସ୍ୟାରୁ ମୁକ୍ତ ହେବା ପାଇଁ, କିଛି ଲୋକ ଖାଲି କୌତୁହଳୀ ହୋଇ, ଆଉ କିଛି ଲୋକ ଭକ୍ତି ଓ ଶ୍ରଦ୍ଧା ଭାବ ନେଇ ଏଠାକୁ ଆସିବାକୁ ଲାଗିଲେ । ସେମାନେ ଆବିଷ୍କାର କରିଥିଲେ ଯେ ସୁଧାମଣିଙ୍କୁ ଦର୍ଶନ ପରେ ସେମାନଙ୍କର ସମସ୍ୟା ସମାଧାନ ହୋଇ ଯାଉଛି ।

କିଛି ସ୍ଥାନୀୟ ଅବିଶ୍ୱାସୀ ଲୋକମାନେ ସୁଧାମଣିଙ୍କର ଐଶ୍ୱରୀକ ଭାବକୁ କୌଣସିମତେ ଭେଜାଲ ବୋଲି ପ୍ରମାଣ କରି ଧରା ପକାଇବାକୁ ଆସିବାକୁ ଲାଗିଲେ କିନ୍ତୁ ସେ ଏଥିରେ ବିଚଳିତ ହେଇନଥିଲେ । ସେ ପରେ ବ୍ୟାଖ୍ୟାନ ଦେଇଥିଲେ-

"ମୋର ଭାବ ବେଳେ ବହୁତ ଲୋକମାନେ ମତେ ଦେଖା କରିବାକୁ ଆସୁଥିଲେ, କେତେକ ଶ୍ରଦ୍ଧା ଓ ଭକ୍ତି ସହ, କେତେକ ତାଙ୍କର ସାଂସାରିକ ସମସ୍ୟା ନେଇ, ଆଉ କେତେକ ବ୍ୟାଧି ଯନ୍ତ୍ରଣାରୁ ଭଲହେବା ପାଇଁ । ମୁଁ କାହାକୁ ଦୂରେଇ ଦେଇନଥିଲି । ମୁଁ କଣ ସେମାନଙ୍କୁ ମନା କରି ପାରିବି ? ସେମାନେ କଣ ମୋଠୁ ଅଲଗା ? ଆମେ କଣ ସମସ୍ତେ ଜୀବନର ଗୋଟିଏ ସୂତାରେ ଗୁନ୍ଥା ହୋଇଥିବା ମାଳା ନୁହଁ ? ପ୍ରତ୍ୟେକେ ନିଜ ଚିନ୍ତାଧାରାର ସ୍ତର ଅନୁଯାୟୀ ମତେ ଦେଖୁ ଥିଲେ । ମତେ ଯିଏ ଭଲ ପାଆନ୍ତି ଏବଂ ମତେ ଯିଏ ଘୃଣା କରନ୍ତି ସେମାନେ ସମସ୍ତେ ମୋ ପାଇଁ ସମାନ" ।

ଆରମ୍ଭରେ ଦୁଇଟି କୃଷ୍ଣଭାବ ସମୟରେ ସୁଗୁଣାନନ୍ଦ ବ୍ୟବସାୟ କାମରେ

ବାହାରକୁ ଯାଇଥିଲେ । ସେ ଫେରି ଆସି ତାଙ୍କର ଝିଅର ଅଦ୍ଭୁତ ପରିବର୍ତନ କଥା ଶୁଣି ଗୋଟିଏ ଅଜଣା ରୋଗର ଲକ୍ଷଣ ବୋଲି ସନ୍ଦେହ କରିଥିଲେ । ଯାହା ହେଉ ସେ ନିଜେ କୃଷ୍ଣଭାବ ଦେଖିବେ ବୋଲି ଠିକ କରିଥିଲେ । ତେଣୁ ସେ ଇଡ଼ାମାନ୍ନେଲର ଭାଗବତ ପ୍ରବଚନର ଆୟୋଜନ କରିଥିଲେ, ସେଦିନ ମଧ୍ୟ ସୁଧାମଣି ତାଙ୍କର କୃଷ୍ଣ ସହ ଏକୀଭୂତ ହେବାର ଭାବ ପଦର୍ଶିତ କରିଥିଲେ । ସୁଗୁଣାନନ୍ଦ ଆଜନ୍ମରୁ ଆଶ୍ଚର୍ଯ୍ୟ ଜନକ ଘଟଣା ଘଟାଉଥିବା ଝିଅର ଐଶ୍ୱରୀକ ଚିତବୃତି ଦେଖି ଚମତ୍କୃତ ହୋଇ ଗଲେ । ସେହିଦିନ ଠାରୁ କୃଷ୍ଣ ପ୍ରେମୀ ସୁଗୁଣାନନ୍ଦ ନିୟମିତ ଭାବରେ ପବିତ୍ର ଧୀବର ଗ୍ରାମରେ ହେଉଥିବା ଭାବଦର୍ଶନ ରେ ଭାଗ ନେବା ଆରମ୍ଭ କରିଦେଲେ ।

ଏହି ସମୟରେ ତାଙ୍କର ବାପା ମା ତଥାପି ସୁଧାମଣିଙ୍କର ଐଶ୍ୱରୀକ ଚିତ୍ତବୃତ୍ତିକୁ ଓ କୃଷ୍ଣ ଭକ୍ତି ଭାବକୁ ସାମୟିକ ବୋଲି ବିଶ୍ୱାସ କରୁଥିଲେ । ସେମାନେ ସୁଧାମଣିଙ୍କୁ ବିବାହ ଦେବା ଦିନକୁ ଅପେକ୍ଷା କରି ରହିଲେ । ସେମାନଙ୍କର ଅଜ୍ଞାନତାକୁ ଦୋଷ ଦେଇ ଲାଭ ନାହିଁ, କାରଣ ସେମାନେ ମହାତ୍ମା ମାନଙ୍କ ଗତିବିଧି ବିଷୟରେ ସଂପୂର୍ଣ୍ଣ ଅଜ୍ଞ ଥିଲେ । ସେମାନେ ଭାବିଥିଲେ ଯେ ଭଗବାନ କେବଳ ପୂଜା ଘରେ ଓ ମନ୍ଦିରରେ ପ୍ରତିମା ର ଦେବଦେବୀ ହୋଇ ଅଛନ୍ତି । ତାଛଡା ଭଗବାନ ଆଉ କେଉଁଠାରେ ମିଳିବେ ନାହିଁ । ତାଙ୍କ ଅବାଗିଆ ଝିଅ କଥାତ ଦୂରରେ ଥାଉ ।

ବିଗତ ଅପ୍ରୀତିକର ଅନୁଭୂତିକୁ ଭୁଲିଯାଇ ବାପା ମା ପୁଣି ସୁଧାମଣିଙ୍କର ବିବାହର ଆୟୋଜନ ରେ ଲାଗି ପଡିଲେ । ପୁଣି ସୁଧାମଣି ବିଚରା ବରପାତ୍ର ମାନଙ୍କୁ ରାଗି ଡରାଇଥିଲେ । ଶେଷରେ ସୁଧାମଣି ତାଙ୍କ ବାପାମାଙ୍କୁ ବିରକ୍ତ ହୋଇଥିଲେ ଓ ଅସନ୍ତୁଷ୍ଟ ହୋଇ ତାଙ୍କୁ ସତର୍କ କରିଥିଲେ "ତମେ ମାନେ ଯଦି ମତେ ସତରେ ବାହା କରାଇ ଦିଅ, ମୁଁ ସେ ଲୋକକୁ ମାରି ପୁଣି ଇଡ଼ାମାନ୍ନେଲକୁ ଫେରି ଆସିବି" ।

ବାପା ମା ସୁଧାମଣିଙ୍କର ବାହାଘର ଆୟୋଜନର ବିଫଳତାରେ ତିକ୍ତ ହୋଇ ସେଠାରୁ ବହୁତ ଦୂରରେ ରହୁଥିବା ଜଣେ ଜ୍ୟୋତିଷ ପାଖକୁ ପରାମର୍ଶ ପାଇଁ ଯାଇଥିଲେ । ସେ ଇଡ଼ାମାନ୍ନେଲ ଗ୍ରାମ ବା ସୁଧାମଣି ଓ ତାଙ୍କର ଐଶ୍ୱରୀକ ଭାବ ବିଷୟରେ କିଛି ଜାଣିନଥିଲେ । ବାପା ମାଙ୍କର ପୁରା ବିଶ୍ୱାସ ଥିଲା ଯେ ସେମାନେ ଶେଷରେ ସୁଧାମଣିଙ୍କର ଏକଜିଦିଆ ଗୁଣକୁ ଭାଙ୍ଗିବେ । ସୁଧାମଣିଙ୍କର ଜାତକକୁ ପଢି, ଜ୍ୟୋତିଷ ସୁଗୁଣାନନ୍ଦଙ୍କ ଆଡେ ଚାହିଁ ଅତି ନମ୍ର ସ୍ୱରରେ କହିଲେ "ଏ ଝିଅଟି

ଗୋଟିଏ ମହାତ୍ମା ! ଯଦି ତାଙ୍କର ବାହାଘର କେଉଁଠାରେ ଠିକ ନ ହୋଇଛି ତେବେ ଆଉ ଚେଷ୍ଟା କରନାହିଁ । ଯଦି ବର୍ତ୍ତମାନ ବିବାହିତା, ତେବେ ତାକୁ ସାଙ୍ଗେ ସାଙ୍ଗେ ଘରକୁ ଡକାଇ ଆଣ, ନହେଲେ ତୁମକୁ ଦୁର୍ଭାଗ୍ୟର ସମ୍ମୁଖୀନ ହେବାକୁ ପଡିବ, ତୁମର ଦୁଃଖର ସୀମା ରହିବ ନାହିଁ !" ହୃଦୟ ଭରା ଦୁଃଖରେ ବିଫଳ ମନୋରଥ ହୋଇ ତାଙ୍କର ବାପା ଫେରି ଆସିଥିଲେ ଏବଂ ସୁଧାମଣିଙ୍କର ବିବାହ ପ୍ରସଙ୍ଗ ସବୁଦିନ ପାଇଁ ବନ୍ଦ ହୋଇଗଲା ।

ସୁଧାମଣିଙ୍କର କୃଷ୍ଣଭାବ ଯେତେବେଳେ ଲୋକମାନେ ଅନୁଭବ କଲେ ବେଶୀ ବେଶୀ ଲୋକ ଆସିବାକୁ ଆରମ୍ଭ କରିଲେ । ଆଉ ମଧ କିଛି ଲୋକ ନିଜର ସ୍ୱାର୍ଥ ଓ ଧନ ବୃଦ୍ଧିର ଲାଳସାରେ ସୁଧାମଣିଙ୍କର ଦୈବୀ ଶକ୍ତି ଓ ଉଦାରତାର ଲାଭ ପାଇବାକୁ ଆସିଥିଲେ । ଗୋଟିଏ ରାତିରେ କିଛିଲୋକ ସୁଧାମଣି ପଇସାର ଲୋଭରେ ପଡୁଛନ୍ତି କି ନାହିଁ ପରୀକ୍ଷା କରିବାକୁ ଗଲେ ଓ ସେମାନେ ତାଙ୍କୁ ଅଲୌକିକତା ଟିକେ ଦେଖାଇବା ପାଇଁ ବହୁତ ପଇସା ଯାଚିଥିଲେ । ସୁଧାମଣି ଜୋରରେ ହସି ହସି ସେମାନଙ୍କୁ ସ୍ନେହ ସହ କହିଥିଲେ "ମୋର ଅଲୌକିକତା ଦେଖାଇବାରେ ଲାଭ କଣ ? ଏହା ଦେଖାଇ ପ୍ରସିଦ୍ଧ ହେବା କିମ୍ବା ବିଷୟ ସଂପତ୍ତି ଲାଭ କରିବା ମୋର ଲକ୍ଷ୍ୟ ନୁହଁ । ଆମ ମାନଙ୍କ ମଧ୍ୟରେ ଅସରନ୍ତି ବ୍ରହ୍ମଜ୍ଞାନ ଅଛି । ତାକୁ ସବୁ ଛାଡି ଜଣେ କାହିଁକି ମିଛରେ ଏହି ସାଧାରଣ କ୍ଷଣସ୍ଥାୟୀ, ଧନ ପଛରେ ଦଉଡିବ ? ମୋ ଜୀବନର ଲକ୍ଷ୍ୟ ହେଲା ପ୍ରଭୁଙ୍କର ଓ କଷ୍ଟ ଭୋଗୁଥିବା ଲୋକମାନଙ୍କର ସେବା କରିବା । ମୁଁ ଏଠାକୁ ରୋଜଗାର କରିବାକୁ ଆସିନାହିଁ ବରଂ ସମସ୍ତଙ୍କର ଖୁସୀ ପାଇଁ ସବୁ ତ୍ୟାଗ କରିବାକୁ ଆସିଛି ।"

ପ୍ରତ୍ୟେକ ଦିନ ଭକ୍ତ ସଂଖ୍ୟା ବଢିବାକୁ ଲାଗିଲା । ଭକ୍ତମାନଙ୍କର କୃଷ୍ଣଭାବ ସମୟର ଅନୁଭୂତି ଆହୁରି ଅନେକଙ୍କୁ ତାଙ୍କର ଶରଣାଗତ ହେବା ପାଇଁ ଉତ୍ସାହିତ କଲା । ସମୁଦ୍ରର ବେଳାଭୂମିର ବରଗଛ ଗ୍ରାମବାସୀମାନେ ନିଜ ନିଜର ଅମେଳ ଭୁଲି, ତାଙ୍କର ଆଶୀର୍ବାଦ ପାଇଁ ଏକାଠି ହେବାକୁ ଲାଗିଲେ ।

ଦିନେ ପବିତ୍ର ବରଗଛ ମୂଳ ପୀଠଟି କୃଷ୍ଣ ଭାବ ପାଇଁ ଅନେକ ଲୋକ ଗହଳିରେ ପୁରି ଉଠିଥିଲା । ହଠାତ୍ ଭୟଙ୍କର କଳା ମେଘ ଆକାଶରେ ମାଡି ଆସି ଜୋରରେ ବର୍ଷା ହେବାକୁ ଲାଗିଲା । ବର୍ଷାରୁ ନିସ୍ତାର ପାଇବା ପାଇଁ ପାଖରେ କୌଣସି ଛାତ

ନଥିଲା, ତେଣୁ ଭକ୍ତ ମାନେ ଉପାୟହୀନ ହୋଇ ବର୍ଷାରେ ଓଦା ହେବେ ବୋଲି ଧରି ନେଇଥିଲେ, କିନ୍ତୁ ଆଶ୍ଚର୍ଯ୍ୟଜନକ ଭାବରେ ଭକ୍ତ ମାନଙ୍କର ଠିଆ ହୋଇଥିବା ଜାଗାରେ ବର୍ଷା ନହୋଇ ଠିକ୍ ତା ବାହାରେ ସେମାନଙ୍କର ଚାରିପଟରେ ଜୋରରେ ପଡିଥିଲା ।

ଏହି ସମୟରେ ମଧ୍ୟ ଗୋଟିଏ ଭୀଷଣ ବିଷାକ୍ତ ନାଗ ସାପ ରାତିରେ ଗ୍ରାମବାସୀ ମାନଙ୍କୁ ଭୟଭୀତ କରୁଥିଲା । ଲୋକେ ଏଇ ସାପକୁ ଚାରିଆଡେ ସବୁବେଳେ ଦେଖୁଥିଲେ, ତେଣୁ ସେମାନେ ସମୁଦ୍ର କୂଳରେ ରାତିରେ ଚାଲିବାକୁ ଭୟ କଲେ । କିଛି ଗ୍ରାମବାସୀ ସୁଧାମଣିଙ୍କୁ କୃଷ୍ଣଭାବ ରାତିରେ ଏ ସମସ୍ୟାର ସମାଧନ କରିବାକୁ ଅନୁରୋଧ କରିଥିଲେ । ତାପରେ ଦିନେ ସନ୍ଧ୍ୟା ବେଳେ ଏଇ ଭୟଙ୍କର ସାପଟି ଭାବ ଦର୍ଶନ ସମୟରେ ଆସି ପହଂଚିଲା । ଭିଡ ଜମିଥିବା ସ୍ଥାନରେ ଲୋକେ ଏପଟ ସେପଟ ଦୌଡିବାକୁ ଲାଗିଲେ ଓ ଯାଇ ଦୂରରେ ଠିଆ ହେଲେ । ସୁଧାମଣି ନିର୍ଭୟରେ ନାଗ ସାପଟିକୁ ଧରି ପକେଇଲେ ଏବଂ ତାର ଲହ ଲହ ଜିଭରେ ହାତ ଲଗାଇଲେ । ତାପରେ ସେ ସାପଟିକୁ ଛାଡି ଦେଲେ । ଏହି ଘଟଣା ପରେ ଗ୍ରାମବାସୀମାନଙ୍କୁ ଆଉ ସାପ ଭୟ ଦେଖାଦେଇ ନଥିଲା ଓ ପୁଣି ସମସ୍ତେ ଆଗ ପରି ଖୁସିରେ ସମୁଦ୍ରକୂଳରେ ଚଲାବୁଲା କରି ପାରିଲେ ।

ଥରେ 'ସମୁଦ୍ରର ସନ୍ତାନ' ବୋଲାଉଥିବା କେଉଟମାନେ ଅନେକଦିନ ଧରି ମାଛ ଧରି ନପାରି ଭୋକ ଉପାସରେ ରହିଲେ । ସେମାନେ ସୁଧାମଣିଙ୍କୁ କୃଷ୍ଣଭାବ ସମୟରେ ନିଜର ଦୁଃଖ କାହାଣୀ ଗୋପନରେ ଜଣାଇଲେ । ସେମାନଙ୍କୁ ସେ ଗୋଟିଏ ତୁଳସୀ ପତ୍ର ଦେଇ, ଗୋଟିଏ ଛୋଟ ପିଲା ହାତରେ ଏଇ ପତ୍ରଟି ସମୁଦ୍ରର ଗୋଟିଏ ନିର୍ଦ୍ଦିଷ୍ଟ ଯାଗାରେ ପକାଇ ଦେବା ପାଇଁ କହିଥିଲେ ଓ ତାପରେ ସେଇ ଜାଗାଟିରେ ମାଛ ଧରିବାକୁ କହିଲେ । ତାଙ୍କୁ ପରୀକ୍ଷା କରିବା ପାଇଁ କେଉଟମାନେ ତାଙ୍କର ଉପଦେଶ ନମାନି, ତା ପରଦିନ ଦର୍ଶନ ସମୟରେ ପୁଣି ସୁଧାମଣିଙ୍କ ପାଖକୁ ଯାଇ ଅନୁରୋଧ କରିଥିଲେ । ସେମାନେ କିଛି କହିବା ଆଗରୁ ହିଁ ସୁଧାମଣି ସେମାନଙ୍କୁ ତାଙ୍କର ପୂର୍ବ ଉପଦେଶ ନ ମାନିବା କଥା କହି, ଆଉଥରେ ଗୋଟିଏ ତୁଳସୀ ପତ୍ର ଦେଇଥିଲେ । ଆଶ୍ଚର୍ଯ୍ୟାନ୍ୱିତ ଓ ଅନୁତପ୍ତ ହୋଇ ସେମାନେ ତୁଳସୀ ପତ୍ରଟି ଦେଇ ସମୁଦ୍ର ଆଡକୁ ଗଲେ କିନ୍ତୁ ପୂର୍ବ ନିର୍ଦ୍ଦିଷ୍ଟ ଜାଗାରେ ପକାଇବାରେ ସଫଳ ହୋଇ

ପାରିଲେନାହିଁ । ସେମାନଙ୍କ ପ୍ରତି ଦୟାକରି ପରବର୍ତ୍ତୀ ଦର୍ଶନ ଦିନ ସୁଧାମଣି ଆନନ୍ଦରେ ମତ୍ତ ହୋଇ ସମୁଦ୍ର କୂଳରେ ନାଚୁଥିବା ବେଳେ ସେମାନଙ୍କୁ ଆଶୀର୍ବାଦ କଲେ । ତା ପରଦିନ ବହୁତ ମାଛ ସମୁଦ୍ର କୂଳରୁ ଭାସି ଆସିବାର ଦେଖି କେଉଟମାନେ ଆନନ୍ଦିତ ଓ ନିଶ୍ଚିନ୍ତ ହେଲେ । ଆଗରୁ ଗ୍ରାମର ଇତିହାସରେ କେବେ ହେଲେ ଏତେ ମାଛ ଧରାପଡି ନଥିଲେ । ସୁଧାମଣି କେଉଟ ମାନଙ୍କର ଆନ୍ତରିକ ପ୍ରାର୍ଥନା ଶୁଣି ଏହିପରି ଘଟଣା ଆଉ ଦୁଇଥର ଘଟାଇଥିଲେ । ପରେ ସୁଧାମଣି ଗ୍ରାମବାସୀଙ୍କର ଏପରି ସ୍ୱାର୍ଥପର ଓ ଅଭିଳାଷ ପୂରଣ ପାଇଁ ପାର୍ଥନାକୁ ଉତ୍ସାହିତ କରିନଥିଲେ ।

ଯଦିଓ କୃଷ୍ଣଭାବ ସମୟରେ ସୁଧାମଣିଙ୍କର ଅପରିସୀମ ଐଶ୍ୱରିକ କ୍ଷମତା ପ୍ରକାଶିତ ହେଉଥିଲା, ତାଙ୍କ ବାପା ମା ଓ ଗ୍ରାମବାସୀ ମାନେ ଭାବୁଥିଲେ ଯେ ସେ ଖାଲି ସେହି ସମୟ ଟିକକ ପାଇଁ ସେ ଶ୍ରୀକୃଷ୍ଣଙ୍କର ମାଧ୍ୟମ ହେଉଛନ୍ତି । ତାଙ୍କର ବଡଭାଇ ଓ ବାପା ମା ଭାବୁଥିଲେ ଯେ ସେ କୌଣସି ମସ୍ତିଷ୍କ ବିକୃତି କିମ୍ୱା ମାନସିକ ରୋଗ ଭୋଗୁଛନ୍ତି । ଏହି ସମୟରେ ଭାବ ଦର୍ଶନ ଫଳରେ ଲୋକମାନଙ୍କର କିଛିଟା ସାଂସାରିକ ଦୁଃଖ ଭୋଗ ଦୂର ହେବା ଓ ଭଗବତ ବିଶ୍ୱାସ ପ୍ରତି ଆଦର ବଢିବାର ଦେଖି ସୁଧାମଣି ସନ୍ତୋଷ ଲାଭ କରିଥିଲେ । ଏହିପରି ଭଗବତ ଲୀଳା ଲୋକହିତ ଲାଗି ଲୋକ ପ୍ରୟୋଜନ ଅନୁସାରେ ଧୀରେ ଧୀରେ କ୍ରମବିକାଶ କରିବାକୁ ଲାଗିଲା ।

ସମୁଦ୍ର କୂଳକୁ ଭାବ ଦର୍ଶନ ପାଇଁ ଅନେକ ଭକ୍ତ ମାନେ ଖୁସିରେ ଆସି ଏକାଠି ହେଉଥିଲେ ମଧ୍ୟ ଗୋଟିଏ ସମସ୍ୟା ଉପୁଜିଥିଲା । ଅନେକ ଲୋକ ସୁଧାମଣିଙ୍କୁ ଶ୍ରଦ୍ଧା ଓ ଭକ୍ତି ଯୋଗୁ ଦର୍ଶନ କରିବାକୁ ଆସୁଥିଲେ, କିନ୍ତୁ ଆଉ ଦଳେ ଲୋକ ନିଶ୍ଚିତ ଭାବରେ ପ୍ରତ୍ୟେକ ଥର ଆସି ତାଙ୍କୁ ଗାଳି ଗୁଲଜ କରି ହଇରାଣ କରୁଥିଲେ । ହଠାତ୍ ଭକ୍ତମାନଙ୍କର ସଂଖ୍ୟା ବହୁତ ବଢିଯିବା ଫଳରେ ବରଗଛ ମୂଳରେ ଅନେକ ସମସ୍ୟା ବଢିଗଲା । କିଛି ମତଲବି ଗ୍ରାମବାସୀ ଗୋଟିଏ ପ୍ରଶାସନ ସମିତି ଗଢି ନିଜର ରୋଜଗାର ପାଇଁ ହୁଣ୍ଡି ବାକ୍ସ ରଖିବାକୁ ଠିକ୍ କଲେ । ଏହିସବୁ ଘଟଣାରୁ ଭବିଷ୍ୟତରେ ଗଣ୍ଡଗୋଳର ସୂଚନା ମିଳିଥିଲା ।

ଏହିପରି ଘଟଣା ସୁଗୁଣାନନ୍ଦଙ୍କୁ ଭାରି ଦୁଃଖିତ କରିଥିଲା । ଦିନେ ରାତିରେ କୃଷ୍ଣଭାବ ସମୟରେ ସେ ସୁଧାମଣିଙ୍କୁ ଏ ବିଷୟର ତାଙ୍କର ଉଦ୍‌ବେଗ ବିଷୟରେ

ଜଣାଇଥିଲେ,"ତୋତେ ଏପରି ରାସ୍ତା କଡରେ ଭାବଦର୍ଶନ ଦେବାକୁ ପଡୁଛି ଦେଖିଲେ ମୋତେ ଭାରି କଷ୍ଟ ଲାଗୁଛି । ଅବିଶ୍ୱାସୀ ଲୋକ ମାନଙ୍କର ତୋ ପ୍ରତି ଥଟ୍ଟା ପରିହାସ ଅସହ୍ୟ ଲାଗୁଛି । ତାଛଡା ତୁ ମୋର ଝିଅ, ଏପରି ବିଭିନ୍ନ ମତିଗତିର ଲୋକ ସର୍ବସାଧାରଣଙ୍କ ଜାଗାରେ ତୋତେ ଘେରି ରହିଛନ୍ତି ଦେଖିଲେ ମୋର ଛାତି ଫାଟି ଯାଉଚି ।" ଏହା କହି ସେ କାନ୍ଦିବାକୁ ଲାଗିଲେ ।

ସୁଧାମଣି କହିଲେ "ତାହେଲେ ମତେ ମୋର ଭକ୍ତ ମାନଙ୍କୁ ଭେଟିବା ପାଇଁ ଆଉ ଗୋଟିଏ ସ୍ଥାନ ଦିଅନ୍ତୁ । ଯଦି ଆଉ କିଛି ସ୍ଥାନ ନାହିଁ ତେବେ ଗୁହାଳରେ ହେଲେ ବି ଚଳିବ" । ସୁଗୁଣାନନ୍ଦ ସାଙ୍ଗେ ସାଙ୍ଗେ ରାଜି ହେଲେ, ଗାଈ ଗୁହାଳରେ ମରାମତି କାମ ଆରମ୍ଭ ହୋଇଗଲା । ମଝିରେ ଅଧା କାନ୍ଥ ଉଠାଇ ଚାରିଆଡେ ସିମେଂଟର ପଲସ୍ତରା କରାଗଲା । ଗୋଟିଏପଟ ଗୁହାଳ ହୋଇ ରହିଲା, ଆର ପାଖଟି ଭାବଦର୍ଶନ ପାଇଁ ପ୍ରସ୍ତୁତ କରାଗଲା । ଗୁହାଳର ଚାରିପଟ ନଡିଆ ବାହୁଙ୍ଗା ଦେଇ ବନ୍ଦ କରାଯାଇଥିଲା ।

ଏହାପରେ ଭାବଦର୍ଶନ ଇଡାମାନ୍ନେଲ ସମୁଦ୍ରକୂଳ ବରଗଛ ଛାଡି ଆଜିର ଦର୍ଶନ ଜାଗାକୁ ଉଠି ଆସିଲା । ଏଥର ସୁଧାମଣି ନୂଆ ତିଆରି ଗୁହାଳ ଘରେ ଠିଆ ହୋଇ କୃଷ୍ଣ ଭାବଦର୍ଶନ ଦେବା ଆରମ୍ଭ କଲେ । ବେଳେ ବେଳେ ସେ ନଇଁ ପଡି ଅଧା ପାଚେରୀ ଆର ପଟରେ ଥିବା ଗୁହାଳ ଗାଈ ମାନଙ୍କୁ ଆଉଁସି ଦିଅନ୍ତି ।

ଥରେ କୃଷ୍ଣଭାବ ରାତିରେ ସୁଧାମଣି ତାଙ୍କ ବାପାଙ୍କୁ ଡାକି କହିଲେ "ମୋର ଭକ୍ତମାନେ ବହୁ ଦୂର ଦୂରାନ୍ତରୁ ଆସିବେ । ଅନେକେ ମଧ୍ୟ ସବୁଦିନପାଇଁ ଏଠି ସ୍ଥାୟୀ ଭାବରେ ରହିବେ । ତୁମକୁ ବହୁତ ବାଧା ବିଘ୍ନର ସମ୍ମୁଖୀନ ହେବାକୁ ପଡିବ, କିନ୍ତୁ ତୁମେ ଭୟ କରନାହିଁ । ସବୁ ସହିଯାଅ । କାହାର ବିରୁଦ୍ଧରେ ପ୍ରତିଶୋଧ ନିଅ ନାହିଁ । କାହାକୁ ଈର୍ଷା କର ନାହିଁ । କାହା ପାଖରୁ କିଛି ଆଶା କର ନାହିଁ । ତୁମେ ଯାହା ଚାହୁଁଚ ନ ମାଗିଲେ ବି ତାହା ଆସି ପହଂଚିଯିବ । ସବୁବେଳେ ନିଜ ରୋଜଗାରରୁ କିଛିନା କିଛି ପଇସା ଦୁଃଖୀ ଦରିଦ୍ରଙ୍କୁ ଦାନ ପାଇଁ ରଖ, ସମୟ ଆସିଲେ ଏହି ଜାଗା ଗୋଟିଏ ପ୍ରସିଦ୍ଧ ଆଧ୍ୟାତ୍ମିକ ପୀଠ ହେବ । ତମର ଛୋଟ ଝିଅ ବହୁତ ଥର ପୃଥିବୀ ପରିକ୍ରମା କରିବ । ତୁମର ଭବିଷ୍ୟତରେ ଯଦିଓ ବହୁତ ଅସୁବିଧା ଭୋଗିବାର ଅଛି,

ଭଗବାନ ତମକୁ ସବୁବେଳେ ଆଶୀର୍ବାଦ କରି ତମର ସବୁ ଇଚ୍ଛା ପୂରଣ କରିବେ । ତୁମର ବନ୍ଧୁ ବାନ୍ଧବ ଓ ଗ୍ରାମବାସୀ ମାନେ ତୁମ ପ୍ରତି ଘୃଣା ଓ ଦୁର୍ବ୍ୟବହାର ଦେଖାଇବେ, କିନ୍ତୁ କିଛି ଦିନ ପରେ ପୁଣି ତୁମର ବନ୍ଧୁତ୍ୱ ଖୋଜିବେ । ମୋର ହଜାର ହଜାର ଭକ୍ତ ତୁମର ନିଜ ପିଲା ପରି ହେବେ । ଆଜିଠାରୁ ଏହି ଛୋଟ ଝିଅଟି ହେଉଛି ନିର୍ଗୁଣ ପରଂବ୍ରହ୍ମ ।"

ପୁଣି ଥରେ ସୁଗୁଣାନନ୍ଦ ସବୁ ଶୁଣି ଆଚମ୍ଭିତ ହୋଇ ଯାଇଥିଲେ । ତାଙ୍କର ପାଖରୁ ଅଜସ୍ର ମାଡ ଖାଇଥିବା ଏଇ ଘନନୀଳ ବର୍ଣ୍ଣର ଝିଅ ପୁଣି ସାରା ପୃଥିବୀ ଭ୍ରମଣ କରିବ ? ସେ ତ କନ୍ୟାକୁମାରୀ ଯାଏ ବି ଯାଇ ନାହିଁ ! ହଜାର ହଜାର ଲୋକ ଇଦାମାନେଲକୁ ଆସିବେ ? ତାଙ୍କର ଏଇ ଛୋଟ ଘରକୁ ? ସେମାନେ ରହିବେ କେଉଁଠି ? ସେ ନିଜକୁ "ନିର୍ଗୁଣ ପରଂବ୍ରହ୍ମ" କହିବାର ମାନେ କଣ ? ଯଦିଓ ମନ ଭିତର ଏହି ଭବିଷ୍ୟତ ବାଣୀ ଗୁଡିକ ଗଭୀର ରେଖାପାତ କରିଗଲା, ଉପରେ ସେ ଏହାକୁ ପୁରା ପାଗଳାମୀ କହି ନାକଚ କରିଦେଲେ । ମାତ୍ର ଗୋଟିଏ ବର୍ଷ ପରେ ସେ ତାଙ୍କ ଝିଅର କଥା ଗୁଡିକୁ ମର୍ମେ ମର୍ମେ ଅନୁଭବ କରି ପାରିଥିଲେ ।

ଏଣିକି ସୁଧାମଣିଙ୍କ ଘରର ଗୁହାଳକୁ କୃଷ୍ଣଭାବ ଦର୍ଶନ ଉଠିଯିବା ଫଳରେ କେତେ ଜଣ ସ୍ଥାନୀୟ ଗ୍ରାମବାସୀଙ୍କର ରୋଜଗାର ପନ୍ଥାରେ ବାଧା ଆସିଲା । ସେମାନେ କହିଲେ "ବାପ କଥା ଶୁଣୁଥିବା ଭଗବାନ ଆମର ଦରକାର ନାହିଁ" । ବରଗଛ ମୂଳରେ ଜମା ହେଉଥିବା ଭକ୍ତ ଦଳ ବର୍ତ୍ତମାନ ଦୁଇଟି ଦଳରେ ବିଭକ୍ତ ହୋଇଗଲେ । ଗୋଟିଏ ଦଳ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଲେ ଓ ଆଉ ଗୋଟିଏ ଦଳ ଇଡାମାନ୍ନେଲକୁ ଭାବଦର୍ଶନ ସମୟରେ ଭଜନ ଗାଇବାକୁ ଆସିଲେ । ଅନେକ ଭକ୍ତଙ୍କ ଏପରି ପ୍ରଗାଢ ଭକ୍ତି ଦେଖି, କିଛି ଗ୍ରାମବାସୀ କଳି କଜିଆ ଓ ଗଣ୍ଡଗୋଳ କରିବାକୁ ଆରମ୍ଭ କଲେ । ଭାବ ଦର୍ଶନ ସମୟରେ ଭଜନ ଗାଉଥିବା ଭକ୍ତ ମାନଙ୍କୁ ଗାଳି ଗୁଲଜ କରାଗଲା । ଏହି ପୁରୁଷ, ସ୍ତ୍ରୀ ମାନଙ୍କ ଗଠିତ ବିରୋଧୀ ଦଳର ଗଣ୍ଡଗୋଳ ଅନେକ ଦିନ ଧରି ଚାଲୁ ରହିଲା ପରେ ସୁଗୁଣାନନ୍ଦ ଦିନେ ଆଉ ସହି ପାରିଲେ ନାହିଁ । ସେ ଏବଂ ଆଉ କେତେ ଜଣ ଭକ୍ତ ମିଶି ସେମାନଙ୍କୁ ଇଡ଼ାମାନ୍ନେଲରୁ ଘଉଡାଇ ଦେଲେ, କିନ୍ତୁ ତାହା ପରଠାରୁ ଆହୁରି ଗଣ୍ଡଗୋଳ ଆରମ୍ଭ ହେଲା ।

ଏହି ଦଳରେ କିଛି ଧନୀ ଜମିଦାର ମାନଙ୍କର ବଦମିଜାଜୀ ଉଦ୍ଧତ ପୁଅ ମାନେ ଯୋଗ ଦେଇଥିଲେ । ସେମାନେ "ଅନ୍ଧ ବିଶ୍ୱାସ ଦୂରକର" ବୋଲି ଗୋଟିଏ ମଣ୍ଡଳୀ ଗଢିଲେ । ଆଖ ପାଖର ତେରଟି ଗ୍ରାମରୁ ସେମାନେ ହଜାରେ ଯୁବକଙ୍କୁ ଏକଜୁଟ କରାଇ ସୁଧାମଣିଙ୍କର ଭାବଦର୍ଶନ ବନ୍ଦ କରାଇବାକୁ ଚେଷ୍ଟା ଚଳାଇଲେ ।

ବାଲ୍ୟକାଳରୁ ପ୍ରତି ପ୍ରଭାତରେ ସୁଲଳିତ କଣ୍ଠରେ କୃଷ୍ଣ ଭଜନ ଗାଇ ସମସ୍ତଙ୍କୁ ଅଭିନନ୍ଦନ କରୁଥିବା ସ୍ୱାଧ୍ୱୀ, ମହତ ଭାବ ସଂପନ୍ନା ସୁଧାମଣିଙ୍କୁ ଗ୍ରାମବାସୀମାନେ ଅତି ସ୍ନେହ କରୁଥିଲେ । ତାଙ୍କର ଭାବଦର୍ଶନ ପ୍ରତି ସେମାନଙ୍କର ଦୃଢ ବିଶ୍ୱାସ ଓ ଭକ୍ତି ଥିଲା, କିନ୍ତୁ ସୁଗୁଣାନନ୍ଦଙ୍କର ଜିଦ୍‌ଖୋର ପ୍ରକୃତି ଯୋଗୁଁ କିଛି ଗ୍ରାମବାସୀ ମାନଙ୍କର ନିଭୃତ ମନରେ ଥିବା ହିଂସା ଓ ଶତ୍ରୁତା ପ୍ରଦର୍ଶିତ ହେଉଥିଲା । ଥରେ କୃଷ୍ଣ ଭାବ ଦିନ ସୁଧାମଣି ତାଙ୍କର ବାପାଙ୍କୁ ଦର୍ଶନ ବେଳେ ବିରୋଧ କରୁଥିବା ଲୋକଙ୍କ ସହ କଳି ତକରାଳ ନକରିବାକୁ ସାବଧାନ କରାଇ ଦେଇଥିଲେ । ସୁଧାମଣିଙ୍କର ଉପଦେଶ ନଶୁଣି ସୁଗୁଣାନନ୍ଦ ସେହି ମଣ୍ଡଳି ବିରୁଦ୍ଧରେ କିଛି ପଦକ୍ଷେପ ନେଇଥିଲେ, ଯାହାଫଳରେ ସମାଲୋଚକ ମାନଙ୍କର ଶତ୍ରୁତା ଆହୁରି ଘନୀଭୂତ ହୋଇଥିଲା ।

ପ୍ରଥମେ ସେମାନେ ସୁଧାମଣିଙ୍କ ନାମରେ ଉପହାସ ମୂଳକ ପ୍ରଚାର ଧ୍ୱନି ଓ ଢଗ ରଚନା କଲେ । ତାପରେ ସେମାନେ ତାଙ୍କ ବିରୁଦ୍ଧରେ ଭିତ୍ତିହୀନ ଓ ବିଚାର ବୁଦ୍ଧିହୀନ ବ୍ୟଙ୍ଗାତ୍ମକ ବିଜ୍ଞାପନ ଛପାଇଲେ । ସେମାନଙ୍କର ପ୍ରତିଶୋଧ ନେବାରଆନ୍ଦୋଳନ ସେତିକିରେ ବନ୍ଦ ହୋଇନଥିଲା, ସୁଧାମଣିଙ୍କୁ ବଦନାମ କରି କୃଷ୍ଣଭାବକୁ ବନ୍ଦ କରିବାର ଚେଷ୍ଟା ମାତ୍ର ଆରମ୍ଭ ହୋଇଯାଇଥିଲା କହିଲେ ଚଳେ ତାପରେ ସେମାନେ ପୋଲିସ ପାଖରେ ମିଛ ଦରଖାସ୍ତ ଦାଖଲ କରାଇଥିଲେ ଯେ ସୁଧାମଣି ଭକ୍ତି ନାମରେ ଲୋକଙ୍କୁ ଠକାଉଛନ୍ତି । ଏହି ଦରଖାସ୍ତ ଦାଖଲ ଫଳରେ କିଛି ପୋଲିସ ଅଫିସର ଇଡାମାନ୍ନେଲକୁ ତାଙ୍କୁ ଜେରା କରିବାକୁ ଆସିଗଲେ । ଏଥିରେ ବିଚଳିତ ନହୋଇ ସୁଧାମଣି ଅଫିସର ମାନଙ୍କୁ କହିଥିଲେ "ଯଦି ଚାହୁଁଛନ୍ତି, ଦୟାକରି ମୋତେ ଗିରଫ କରନ୍ତୁ, ଏଠାରେ ମୋ ପରିବାର ଓ ଗ୍ରାମବାସୀମାନେ ମୋତେ ତପ ସାଧନା କରିବାକୁ ଦେଉନାହାନ୍ତି । ଯାହା ହେଉ ଜେଲଖାନାରେ ମତେ ଭଗବାନଙ୍କୁ ଡାକିବାକୁ ନିର୍ଜନତା ମିଳିବ । ଏହା ଯଦି ପ୍ରଭୁଙ୍କର ଇଚ୍ଛା, ତେବେ ତାହା ପୂରଣ

ହେଉ” । ଏପରି କହି ସେ ହାତକଡି ପାଇଁ ହାତ ଦୁଇଟି ବଢାଇ ଦେଲେ । ତାଙ୍କର ନିର୍ଦ୍ଦୋଷ ସରଳତା ଓ ନିର୍ଭୀକ ଭାବରେ ଆଳାପ କରିବା ପୋଲିସଙ୍କର ଉଚ୍ଚ ପଦସ୍ଥ କର୍ମଚାରୀମାନଙ୍କର ହୃଦୟସ୍ପର୍ଶ କରିଥିଲା । କେତେକେ ଭାବିଥିଲେ ଯେ ସେ ପୁରା ପାଗଳ, ଆଉ କେତେଜଣ ବିମୋହିତ ହୋଇ ଏପରି ମହାତ୍ମାଙ୍କର ଲୋକାପବାଦ ଓ ଉତ୍ପୀଡନ ଦେଖି ଦୁଃଖ ଅନୁଭବ କରିଥିଲେ । ଏହି ଉଚ୍ଚପଦସ୍ଥ କର୍ମଚାରୀ ମାନେ ପ୍ରଣାମ କରି ଇଡ଼ାମାନ୍ନେଲରୁ ବିଦାୟ ନେଲେ । ସେହି ମିଥ୍ୟା ଦରଖାସ୍ତ ଓ ପୋଲିସଙ୍କ ଅନୁସନ୍ଧାନ ସମୟରେ ସୁଧାମଣି ଏହି ଭଜନଟି ରଚନା କରିଥିଲେ -

ଭକ୍ତ ବତ୍ସଳ ଭଗବାନ
ହେ ଦେବ ଅନନ୍ତ ଚୈତନ୍ୟ
ପାପକୁ ନିବାରଣ କରି
ଭକ୍ତକୁ ଥାଅ ପରା ତାରି !

କିପାଇଁ କୁହ ପ୍ରଭୁ ତେବେ
ପାପୀଏ ଭରିଛନ୍ତି ଭବେ ?
କୁହ ହେ ଜଗତର ନାଥ
ଶିଖାଇବ କେ ସତ୍ୟପଥ ?

ପରମ ସତ୍ୟ ବେଦବାଣୀ
ଜନେ କି ନପାରିବେ ଜାଣି
ରହିବ ଗ୍ରନ୍ଥେ ପୂଜା ପାଇ
ଧରାରେ ପ୍ରକଟିବ ନାହିଁ ?

ସାରା ସଂସାରେ ନରହରି
କପଟ କିଆଁ ଅଛି ପୁରି
ଆଡମ୍ବରରେ ଲିପ୍ତ ହୋଇ

ମନୁଷ୍ୟ ସତ୍‌ପଥ ନ ପାଇ !

ପରମ ଦୟାଳୁ ଈଶ୍ୱର
ସତ୍ୟ ଧର୍ମକୁ ରକ୍ଷାକର ॥

ଦିନେ ସନ୍ଧ୍ୟା ଭଜନ ସମୟରେ ପ୍ରଥମ ଅନୁସନ୍ଧାନରେ ସନ୍ତୁଷ୍ଟ ନ ହୋଇଥିବା ଜଣେ ପୋଲିସ କର୍ମଚାରୀ ଇଡ଼ାମାନ୍ନେଲକୁ ଗୋଟିଏ ନୂଆ ଅଭିଯୋଗ ନେଇ ପହଂଚିଲେ । କିନ୍ତୁ ଚାରିଆଡର ଶାନ୍ତ ମଧୁର ବାତାବରଣରେ କିଛି ଅଭିଯୋଗ ମୂଳକ ଦୃଷ୍ଟାନ୍ତ ନ ଦେଖି, ଚୁପ୍ କରି ଫେରି ଗଲେ । ତଥାପି ଏହି ଗଣ୍ଡଗୋଳକାରୀ ଯୁବକମାନେ ସୁଧାମଣିଙ୍କର ଭାବଦର୍ଶନରେ ବାଧା ଆଣି ବନ୍ଦ କରିବାକୁ ଚେଷ୍ଟା ଚଳାଇଥିଲେ ଓ ବର୍ତ୍ତ[illegible] ସେମାନେ ମୁହାଁମୁହିଁ ବିବାଦ କରିବାକୁ ଆରମ୍ଭ କଲେ । ଭାବଦର୍ଶନ ସମୟରେ ସେମାନେ ଇଡ଼ାମାନ୍ନେଲକୁ ଯାଇ ସୁଧାମଣିଙ୍କୁ ଭିଡିଆଣି ଭାବ ଦର୍ଶନ ଖାଲି ଗୋଟିଏ ପ୍ରହସନ ବୋଲି ଦେଖାଇଦେବାର ମନ୍ତ୍ରଣା କଲେ । ତାପରେ ସୁଧାମଣିଙ୍କୁ ଧର୍ଷଣ [illegible]ିବାକୁ ସ୍ଥିର କଲେ । ନିଜକୁ ବଳୀୟାନ ମନେ କରୁଥିବା ଗୁଣ୍ଡାମାନେ ତାଙ୍କ ସିଧା ସଳଖ ଯୋଜନା ସୁରୁଖୁରୁରେ କାର୍ଯ୍ୟକାରୀ ହୋଇଯିବ ବୋଲି ଭାବି ନେଇଥିଲେ । କୌଣସି ଗୋଟିଏ ଅଜଣା କାରଣରୁ ସେମାନଙ୍କ ମଧ୍ୟରୁ କାହାର ହେଲେ ଭାବ ଦର୍ଶନ ସମୟରେ ସୁଧାମଣିଙ୍କ ପାଖକୁ ଯିବାର ସାହସ ହୋଇନଥିଲା ଏବଂ ରାତି ପାହିବା ଆଗରୁ ସେମାନେ ଲଜ୍ଜାରେ ଇଡ଼ାମାନ୍ନେଲ ଛାଡି ପଳାଇଥିଲେ ।

ତାପରେ ସୁଦ୍ଧା ବିମୁଖ ନହୋଇ ଏଥର ସେମାନେ ଏକ ତାନ୍ତ୍ରିକକୁ ଯୋଗାଡ କଲେ । ସେ ଇଡ଼ାମାନ୍ନେଲକୁ ଆସି ଛଳନାରେ ସୁଧାମଣିଙ୍କୁ କିଛି ମନ୍ତ୍ର ତନ୍ତ୍ର କରାଯାଇଥିବା ଭସ୍ମ ଦେଲେ । ଏହି ତୀବ୍ର ଭସ୍ମ ନାଗସାପର ପୋଡା ପାଉଁଶରୁ ତିଆରି ଅତ୍ୟନ୍ତ ମାରାତ୍ମକ ହୋଇଥାଏ, ଏପରିକି ପାଇବା ଲୋକର ମୃତ୍ୟୁ ସୁନିଶ୍ଚିତ । ଏପରି ଭୟଙ୍କର ଭସ୍ମକୁ ହାତରେ ଧରିଲେ ହିଁ ଦୁର୍ଭାଗ୍ୟ ମାଡି ଆସେ । ଏ ଷଡଯନ୍ତ୍ର ଜାଣି ମଧ୍ୟ ସୁଧାମଣି ସେହି ଭସ୍ମ ନେଇ ସେହି ତାନ୍ତ୍ରିକ ଆଗରେ ନିଜ ଦେହ ସାରା ବୋଳି ଦେଲେ । ସେ ମନେ ମନେ ଭାବିଲେ "ଏ ଦେହ ଯଦି ଏହାଦ୍ୱାରା ନଷ୍ଟ ହେବାର ଥାଏ ତେବେ ନଷ୍ଟ ହେଉ । ଏହା ଯଦି ପ୍ରଭୁଙ୍କର ଇଚ୍ଛା, ତେବେ କିଏ ବା ରକ୍ଷା କରି

ପାରିବ" । ଏହି ମନ୍ଦ ବୁଦ୍ଧି ଲୋକମାନେ ସୁଧାମଣିଙ୍କର ଦେହରେ ତନ୍ତ୍ରର ତୀବ୍ର କଷ୍ଟ ଦାୟକ ପ୍ରଭାବ ଦେଖିବାକୁ ବହୁତ ସମୟ ଧରି ଅପେକ୍ଷା କରି ରହିଲେ । କିନ୍ତୁ କିଛି କାଟୁ କଲା ନାହିଁ । ଶେଷରେ ଅନେକ ସମୟ ପରେ ସେମାନେ ପରାଜୟ ମାନି ଫେରିଗଲେ ।

ପୁଣି ସୁଧାମଣିଙ୍କ ସହ ଭାବ ଦର୍ଶନ ସବୁଦିନ ପାଇଁ ବନ୍ଦ କରିଦେବା ପାଇଁ ଗୁଣ୍ଡାମାନେ ସବୁଠାରୁ ଜଘନ୍ୟ ଷଡଯନ୍ତ୍ର ଠିକ୍ କରିଥିଲେ । କୃଷ୍ଣଭାବ ସମୟରେ ସେମାନେ ମନ୍ଦିରରେ ପଶି ସୁଧାମଣିଙ୍କୁ ଗୋଟିଏ ମାରାତ୍ମକ ବିଷଭରା ଦୁଧ ଗିଲାସ ପିଇବାକୁ ଯାଚିଥିଲେ । ସୁଧାମଣି ସବୁ ଜାଣି ପାରି ନ ଜାଣିଲା ପରି ହୋଇ ପ୍ରସନ୍ନ ଭାବରେ ପୁରା ଗିଲା ! ଦୁଧକୁ ନିର୍ଲିପ୍ତ ଭାବେ ପିଇଦେଲେ । ମୃତ୍ୟୁ ଦଣ୍ଡ ଦେବା ପାଇଁ ଆସିଥିବା ଶତ୍ରୁମାନେ ଉଦ୍‌ବିଗ୍ନ ଭାବରେ ମନ୍ଦିର ବାହାରେ ସୁଧାମଣିଙ୍କର ଭୂମିରେ ମୂର୍ଚ୍ଛା ହୋଇ ମରିଯିବାର ଦୃଶ୍ୟ ଦେଖିବାକୁ ଅପେକ୍ଷା କରି ରହିଥିଲେ । କିଛି ସମୟରେ ପରେ ସେମାନଙ୍କ ଉତ୍କଣ୍ଠାକୁ ତିକ୍ତ ବିଫଳାତରେ ପରିଣତ କରି ସୁଧାମଣି ସେମାନଙ୍କ ଆଡକୁ ମୁହଁ କରି ସେହି ବିଷାକ୍ତ ଦୁଧକୁ ବାନ୍ତି କରିଥିଲେ ଏବଂ କିଛି ନ ଘଟିଥିଲା ପରି ଭକ୍ତମାନଙ୍କୁ ଦର୍ଶନ ଦେବାରେ ଲାଗିଲେ । ସମାଲୋଚକ ମାନେ ଦଉଡି ପଳାଇ ଯାଇଥିଲେ ଓ କିଛିଦିନ ପାଇଁ ସେମାନଙ୍କର ସୁଧାମଣିଙ୍କ ବିରୁଦ୍ଧରେ ଆନ୍ଦୋଳନ ବନ୍ଦ ରଖିଥିଲେ ।

ନିଜ ପରିବାର ବର୍ଗଙ୍କର ମନୋବୃତ୍ତି ସୁଧାମଣିଙ୍କ ପାଇଁ ବିରାଟ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ସୁଧାମଣିଙ୍କୁ ବାରମ୍ବାର ନିଜ ପରିବାରବର୍ଗଙ୍କର ଉଦାସୀନ ମନୋବୃତିର ସମ୍ମୁଖୀନ ହେବାକୁ ପଡିଥିଲା । ସଦାସର୍ବଦା ଉପହାସର ପାତ୍ର ହେଲାପରେ ମଧ୍ୟ ଶତ୍ରୁ ହେଉ ବା ମିତ୍ର, ବନ୍ଧୁ ବାନ୍ଧବ ହେଉ ବା ଅଜଣା ବିଦେଶୀ ଲୋକ, ସମସ୍ତଙ୍କର ଦୁଃଖ ଯନ୍ତ୍ରଣା ଦୂର କରିବା, ସମସ୍ତଙ୍କୁ ସମଚକ୍ଷୁରେ ଦେଖିବା ଓ ଦୟା କରିବାର ପ୍ରତିଜ୍ଞାରେ ସେ ଅଟଳ ରହିଥିଲେ । ନିରୀହ ସୁଧାମଣିଙ୍କୁ ଆଘାତ କରିବା ପାଇଁ ଗୁଣ୍ଡା ମାନଙ୍କର ବିରୋଧୀ ଦଳ ଗଠନର ଷଡଯନ୍ତ୍ର ସୁଗୁଣାନନ୍ଦଙ୍କୁ ଗଭୀର ମାନସିକ ଅଶାନ୍ତି ଦେଉଥିଲା । ଏହି ସମୟରେ ସୁଧାମଣିଙ୍କର ସାରାରାତି ତାରା ଭର୍ତ୍ତି ଖୋଲା ଆକାଶ ତଳେ ବସି ତପସ୍ୟା କରିବାର ଅଭ୍ୟାସ ଥିଲା । ପିଲାଦିନରୁ ରାତିର ନିର୍ଜନତାକୁ ସେ ପବିତ୍ର

ମନେ କରୁଥିଲେ । କାରଣ ଏଇ ସମୟରେ ହିଁ ସେ ଐଶ୍ୱରିକ ଶକ୍ତି ସହ ସେ ଯୋଗାଯୋଗ କରିପାରୁଥିଲେ ଏବଂ ପରମାନନ୍ଦରେ ଭଗବତ ଭାବ ବିହ୍ୱଳ ହୋଇ ବିନା ବାଧାରେ ନୃତ୍ୟ କରି ପାରୁଥିଲେ ।

ସୁଧାମଣିଙ୍କୁ ଗଭୀର ରାତିରେ ଏକୁଟିଆ ଧ୍ୟାନରେ ବସିଥିଲା ବେଳେ ଶତ୍ରୁମାନେ ଆସି କାଳେ ଆଘାତ କରିପାରନ୍ତି, ଏପରି ଦୁଃଶ୍ଚିନ୍ତା ବଢ଼ି ସୁଗୁଣାନନ୍ଦଙ୍କୁ ଦିନକୁ ଦିନ ଭୟ ଲାଗିଥିଲା । ସେଥିପାଇଁ, ଦିନେ ସେ ଆଦେଶ କଲେ "ଝିଅ ! ଏଣିକି ଘର ଭିତରେ ଶୋଇବୁ !" ସୁଧାମଣି ଦୃଢ଼ଭାବରେ ଉତ୍ତର ଦେଇଥିଲେ "ମୋର କୌଣସି ନିଜର ଘର ନାହିଁ । ମୁଁ ବାହାରେ ଶୋଇବାକୁ ପସନ୍ଦ କରେ । ଭଗବାନ ସବୁଠାରେ ଅଛନ୍ତି, ସେ ଘର ଭିତରେ ବି ଅଛନ୍ତି ବାହାରେ ମଧ୍ୟ ଅଛନ୍ତି । ତେଣୁ ମୁଁ କାହିଁକି ଚିନ୍ତା କରିବି ? ଯଦି ମୋର କିଏ ଅନିଷ୍ଟ କରିବାକୁ ଆସିବ ମୋତେ ଭଗବାନ ହିଁ ରକ୍ଷା କରିବେ" ।

ଦମୟନ୍ତୀଙ୍କର କୃଷ୍ଣଭାବ ସମୟରେ କୃଷ୍ଣଙ୍କ ପ୍ରତି ଅଗାଧ ଭକ୍ତିଥିଲା, କିନ୍ତୁ କୃଷ୍ଣଭାବ ସରିଗଲାପରେ ତାଙ୍କର ସୁଧାମଣି ପ୍ରତି ପୂର୍ବପରି ଦୁର୍ବ୍ୟବହାର ଚାଲୁ ରହିଥିଲା । ସେ ମନେ କରୁଥିଲେ ଯେ କେବଳ କୃଷ୍ଣଭାବ ସମୟରେ ହିଁ କୃଷ୍ଣ ସୁଧାମଣିଙ୍କୁ ଆଚ୍ଛାଦିତ କରି ରଖୁଥିଲେ । ବାକି ଅନ୍ୟ ସମୟରେ ସେ ସାଧାରଣ ଚାକରାଣୀ ଏବଂ ଅଦ୍ଭୁତ ପ୍ରକୃତିର ଝିଅ । କୃଷ୍ଣଭାବ ଆରମ୍ଭ ହେବା ଦିନ ଠାରୁ ଦମୟନ୍ତୀ ନିରୂପାୟ ହୋଇ ସୁଧାମଣିଙ୍କୁ ସମସ୍ତ ଘର କାର୍ଯ୍ୟରୁ ଅବ୍ୟାହତି ଦେଇଥିଲେ, କାରଣ ସେ ଯେ କୌଣସି ମୁହୂର୍ତ୍ତରେ ବାହ୍ୟଜ୍ଞାନ ଶୂନ୍ୟ ହୋଇ ସମାଧିସ୍ଥ ହୋଇ ପଡୁଥିଲେ । ଏପରି ଅବସ୍ଥା ଯଦି ରାନ୍ଧିବା କିମ୍ବା ନଈ ପାଣି ଭିତରେ ଥିବା ବେଳେ ହୁଏ ତେବେ ବିପଦର ଆଶଙ୍କା ଥିଲା ।

ପୂର୍ବରୁ କୁହାଯାଇଛି, ଯେ ଦମୟନ୍ତୀ ତାଙ୍କ ଝିଅର ବ୍ୟବହାର ସମ୍ବନ୍ଧରେ ଭାରି ରକ୍ଷଣଶୀଳା ଥିଲେ । ସେ ସୁଧାମଣିଙ୍କୁ କୌଣସି ଭକ୍ତଙ୍କ ସହ ଭାବ ଦର୍ଶନ ପରେ କଥା ହେବାକୁ ନାହିଁ କରୁଥିଲେ । ଯଦି ସେ କଥା କହୁଥିଲେ ଦମୟନ୍ତୀ ସୁଧାମଣିଙ୍କୁ କଠୋର ଲାଞ୍ଛନା ଓ ମାଡ ଦେବାକୁ ପଛାଉ ନଥିଲେ । ଏତେ କଥା ପରେ ମଧ୍ୟ ସେ ଭାବୁଥିଲେ ତାଙ୍କ ଝିଅର ଅଦ୍ଭୁତ ବ୍ୟବହାର ପରିବାରର ସମ୍ମାନକୁ ତଳେ ପକାଇଦବ । ସୁଧାମଣିଙ୍କର

କୌଣସି ଜିନିଷ ପ୍ରତି କାମନା ବା ବିମୁଖତା ନଥିଲା, କିନ୍ତୁ ବାପା ମା ତାଙ୍କୁ କୃଷ୍ଣଭାବ ସମୟ ଛଡା ଅନ୍ୟ ସମୟରେ ସବୁ ରକମର ଦୁର୍ବଳତା, ଆକର୍ଷଣ, ଦୈହିକ ପ୍ରେମ ଇତ୍ୟାଦି ଗୁଣ ଥିବା ସାଧାରଣ ଯୁବତୀ ବୋଲି ଭାବି ନେଉଥିଲେ । ତାଙ୍କର ଏତେ ପାଖରେ ଥାଇ ମଧ୍ୟ ଲୋକମାନେ ତାଙ୍କର ସଦାସର୍ବଦା ଭଗବତ୍ ଭାବର ଚୈତନ୍ୟକୁ ବୁଝି ପାରିନଥିଲେ ।

ଏସବୁ ବିଷୟରେ ସୁଧାମଣିଙ୍କର ବଡ ଭାଇ ସୁଭଗନ ସବୁଠାର ସଂକୀର୍ଣ୍ଣ ମନା ଓ ବୋଧ ଶକ୍ତିହୀନ ଥିଲେ । ଭଉଣୀର ଭକ୍ତମାନଙ୍କୁ ଗ୍ରହଣ କରିବାର ଶୈଳୀ, ଆତ୍ମହରା ଭଗବତ୍ ପ୍ରେମର ଭଜନ ଓ ମତ୍ତ ମାତଙ୍ଗ ପରି ନୃତ୍ୟକୁ ତିଳେ ମାତ୍ର ସହ୍ୟ କରି ପାରୁନଥିଲେ । ସୁଧାମଣି ମନରେ ଦ୍ୱୈତ ଭାବ ନରଖି ସ୍ତ୍ରୀ ପୁରୁଷ, ଆବାଳବୃଦ୍ଧ ସମସ୍ତଙ୍କୁ ସମାନ ଭାବରେ ଦର୍ଶନ ଦେଉଥିଲେ । ଏହା ସୁଭଗନଙ୍କୁ ଭୀଷଣ କ୍ରୋଧାନ୍ୱିତ କରୁଥିଲା । ସେ ଘୋର ନାସ୍ତିକ ଥିଲେ ଏବଂ ସ୍ତ୍ରୀ ମାନେ ପୁରୁଷ ମାନଙ୍କ ଠାରୁ ନିମ୍ନସ୍ତରର ଓ ସେମାନେ ଘର ଭିତରେ ହିଁ ସର୍ବଦା ରହିବା ଉଚିତ ବୋଲି ମନେ କରୁଥିଲେ । ସେ ଭାବୁଥିଲେ ତାଙ୍କ ଭଉଣୀ ଗୋଟିଏ ବଦ୍ଧ ପାଗଳ, ତେଣୁ ତାଙ୍କ ପାଇଁ ଯେତେ ବାଧା ବିଘ୍ନ ସୃଷ୍ଟି ହୋଇପାରେ ସେ ସେଥିପାଇଁ ପ୍ରାଣ ପଣେ ଚେଷ୍ଟା ଚଳାଇଥିଲେ ।

ଦିନେ କୃଷ୍ଣଭାବ ଦର୍ଶନ ସମୟରେ ଭକ୍ତମାନେ ଜାଳିଥିବା ଦୀପଟିକୁ ସେ ଜାଣି ଶୁଣି ଭାଙ୍ଗି ଦେଲେ । ସନ୍ଧ୍ୟାରେ ପହଂଚି ଭକ୍ତମାନେ ଭାବ ଦର୍ଶନର ଭଙ୍ଗାଦୀପକୁ ଦେଖି ମନ ଦୁଃଖ କଲେ ଓ ତା ବଦଳରେ ଆଉ ଗୋଟିଏ ଦୀପ ବି କେଉଁଠି ମିଳିଲା ନାହିଁ । ସେମାନଙ୍କର ବିରସ ମୁହଁ ଦେଖି ସୁଧାମଣି ଭକ୍ତମାନଙ୍କୁ କିଛି ଶାମୁକା ଖୋଜି ଆଣିବାକୁ କହିଲେ ଓ ଶାମୁକା ଆଣିଲା ପରେ ସେ ସେଥିରେ ବଳିତା ଦେଇ, ବିନା ତେଲରେ ଜଳାଇବାକୁ କହିଲେ । ଏକ ଅସମ୍ଭବ ଘଟଣା ଘଟିଲା । ସାରାରାତି ଦୀପ ଗୁଡିକ ବିନା ତେଲରେ କୃଷ୍ଣଭାବ ଶେଷ ହେବା ଯାଏଁ ଜଳିଲା । ତାଙ୍କୁ ଯେତେବେଳେ ଭକ୍ତମାନେ ଏହାର ଯଥାର୍ଥ ପଚାରିଲେ ସେ ଉତ୍ତର ଦେଲେ "ଭକ୍ତ ମାନଙ୍କର ସଂକଳ୍ପ ଯୋଗୁଁ ହିଁ ଦୀପ ଗୁଡିକ ସାରା ରାତି ଜଳିଲା" । ତାପରେ ଭାବ ଦର୍ଶନ ଦିନ ଏଇ ଦୀପ ଘଟଣା ନଜାଣିଥିବା ଜଣେ ଭକ୍ତ ଭକ୍ତ ମାନଙ୍କ ପାଇଁ ଗୋଟିଏ ଦୀପ ମାନସିକ

କରି ଆଣିଲେ । ଭକ୍ତମାନେ ତାର କାରଣ ପଚାରିବାରୁ ସେ କହିଲେ ଯେ ତାଙ୍କୁ ସ୍ୱପ୍ନରେ ଦୀପ ଆଣିବାର ଆଦେଶ ଦିଆଯାଇଥିଲା । ସୁଧାମଣିଙ୍କୁ ପରିହାସ କରିଥିବା କିଛି ଗ୍ରାମବାସୀଙ୍କୁ ଅନେକ ଦୈବୀ ଦୁର୍ବିପାକର ସମ୍ମୁଖୀନ ହେବାକୁ ପଡିଥିଲା । ଦିନକର ଘଟଣାର ବର୍ଣ୍ଣନା କରାଯାଉଛି ।

ଦିନେ ସୁଧାମଣି ଜଣେ ପଡୋଶୀଙ୍କର ଘର ବୁଲି ଫେରିଲା ବେଳେ ଦଳେ ଗ୍ରାମବାସୀ ରାସ୍ତା କଡରେ ଠିଆ ହୋଇ ଗପ କରୁଥିଲେ । ସେମାନଙ୍କର ପାଖ ଦେଇ ଆସିଲାବେଳେ ସେମାନେ ସୁଧାମଣିଙ୍କୁ ଥଟ୍ଟା ଟିପ୍ପଣୀ କରିବାର ଶୁଣାଗଲା, ଜଣେ ଧନୀ ଗ୍ରାମବାସୀ ଆଉ ଜଣଙ୍କୁ କହୁଛନ୍ତି "ଦେଖ ଦେଖ ସେ ଝିଅକୁ , ତାର ମୁଣ୍ଡ ଖରାପ । ସବୁବେଳେ ନିଜକୁ କୃଷ୍ଣ ବୋଲି ଭାବି ନାଚୁଛି, ଗାଉଛି । ଖାଲି ବାଜେକଥା । ଏସବୁ ମସ୍ତିଷ୍କ ବିକୃତିର ଲକ୍ଷଣ । ଯଦି ତା ବାପା ତାକୁ ବାହାଘର କରାଇ ଦିଅନ୍ତା ଏ ବେମାରୀ ଛାଡି ଯାଆନ୍ତା ।" ତାପରେ ସେ କହିବାକୁ ଲାଗିଲେ, "ତା ବାପା ଯଦି ଚାହିଁବ ଝିଅ ବାହାଘର ପାଇଁ ମୁଁ ତାକୁ ଦୁଇ ହଜାର ଟଙ୍କା ଦେବାକୁ ରାଜି ଅଛି । ମୁଁ ଆଜି ତା ବାପାଙ୍କୁ କହୁଛି ।" ସୁଧାମଣି ନିରୁତ୍ତର ରହିଲେ । ଘରେ ପହଂଚି ପୂଜା ଘରକୁ ଦଉଡି ଯାଇ ଭିତରୁ ବନ୍ଦ କରି ବସି ରହିଲେ । ସେଠାରେ ବସି ନିଜର ହୃଦୟ ଖୋଲି କୃଷ୍ଣଙ୍କୁ କହିଲେ "ହେ କୃଷ୍ଣ ! ତୁମେ କଣ ଶୁଣୁନ ସେମାନେ ମୋ ନାଁରେ କଣ କହୁଛନ୍ତି ? ସେମାନେ କହୁଛନ୍ତି ମୁଁ ପାଗଳ । ସେମାନେ ତୁମର ସ୍ୱରୂପ, ସୌନ୍ଦର୍ଯ୍ୟ ବିଷୟରେ କିଛି ଜାଣି ନାହାନ୍ତି, ଅଥଚ ମୋତେ ସେମାନଙ୍କର ସ୍ୱାର୍ଥପର ଦୁନିଆରେ ବାନ୍ଧି ରଖିବାକୁ ଚାହୁଁଛନ୍ତି । ହେ ଶ୍ରୀକୃଷ୍ଣ ! ଶରଣା ଗତ ଭକ୍ତ ମାନଙ୍କର ରକ୍ଷକ ! ତମେ ବି କଣ ମତେ ତ୍ୟାଗ କଲ ? ତାହା ଯଦି ସତ, ତେବେ ମୋ ଅବସ୍ଥା ଦେଖି ତମକୁ ଭକ୍ତ ବତ୍ସଳ ବୋଲି କିଏ ଆଉ ପୂଜା କରିବ ? ଖାଲି ତମ କଥା ଦିବାନିଶି ଭାବି ଭାବି ଲୁହ ଗଡେଇବାର ଇଏ କଣ ପୁରସ୍କାର ? ମୋର ପ୍ରେମ, ଭକ୍ତି କଣ ଖାଲି ଗୋଟିଏ ପାଗଳ ଝିଅର ପ୍ରଳାପ ? ସାରା ଜୀବନ ଧରି ତୁମେ ହିଁ ମୋର ଅଶା ଭରସା । ନୀଳ ଆକାଶରେ ମୁଁ ତୁମର ହସ ହସ ମୁହଁ ଦେଖେ, ଢେଉ ମାଳରେ ତମର ନୃତ୍ୟ ଦେଖେ । ସକାଳର ଚଢେଇର ଗୀତ ତମ ସ୍ୱର୍ଗୀୟ ବଂଶୀ ଧ୍ୱନୀ । ହେ କୃଷ୍ଣ...... ହେ କୃଷ୍ଣ......" ଏହି ପରି ପ୍ରାର୍ଥନା କରି ସେ କାନ୍ଦି କାନ୍ଦି ଭୂମିରେ

ସଂଜ୍ଞାହୀନ ହୋଇ ପଡିଗଲେ ।

ଏହି ସମୟରେ ସୁଧାମଣିଙ୍କୁ ପରିହାସ କରିଥିବା ଧନୀ ଲୋକଟି ମାଛ ଧରିବାକୁ ଯିବା ପାଇଁ ଡଙ୍ଗା ଓ ଜାଲ ସବୁ ସଜାଡୁଥିଲା । ମଜୁରିଆ ମାଛ ଧରାଳୀ ମାନଙ୍କୁ ଏକାଠି କରି ସେମାନେ ସମୁଦ୍ରକୁ ମାଛ ଧରିବା ପାଇଁ ଗଲେ । ସେଦିନ ସେମାନେ ପ୍ରଚୁର ମାଛ ଧରି ଅତି ଆନନ୍ଦରେ ଡଙ୍ଗା ବାହି କୂଳକୁ ଫେରିଲେ ।

ଫେରିଲା ବାଟରେ ସୁଧାମଣିଙ୍କ କେତେ ମଜୁରିଆ ମାଛ ଧରାଳୀ ଭକ୍ତ ସେହି ଧନୀ ଲୋକଙ୍କୁ କହିଲେ "ଆଜ୍ଞା, ଆପଣଙ୍କର ଆଜି ନିର୍ଦ୍ଦୋଷ ଝିଅଟିକୁ ଏପରି ପରିହାସ କରିବା ଠିକ୍ ହୋଇ ନାହିଁ" । ସାଙ୍ଗେ ସାଙ୍ଗେ ଧନୀ ଲୋକ ଅବଜ୍ଞା ସୂଚକ ଉତ୍ତର ଦେଲେ "ମୁଁ ଆଉ କଣ ଭୁଲ୍ କଲି ! ଦେଖ ତାକୁ ଥଟ୍ଟା କଲାରୁ କେମିତି ଫଳ ମିଳିଲା ? ଆମକୁ ସବୁଦିନ ଠାରୁ ବେଶୀ ମାଛ ମିଳିଲା" !

ଉକ୍ତ ମାଛ ଧରାଳୀ ମାନଙ୍କ ପାଖରେ ଏହାର ଉତ୍ତର ନଥିଲା, ଦୁଃଖରେ ସେମାନେ ମୁହଁ ତଳକୁ କରି ବସିଥିଲେ । ନୌକା ପ୍ରାୟ କୂଳ ପାଖାପାଖି ହୋଇ ଆସିଥିଲା, ସେତେବେଳେ ହଠାତ୍ ଧନୀ ଲୋକ ଜଣକ କହି ଉଠିଲେ "ଆଜି ନିନ୍ଦାକାରାକୁ ଗଲେ କେମିତି ହୁଅନ୍ତା ? ସେଠି ଆମର ମାଛ ପାଇଁ ବେଶୀ ଭଲ ପଇସା ମିଳିବ । ଏ ପରାୟାକାଦାଭୁରେ ଏତେ ଭଲ ଲାଭ ମିଳିବନି" । ରାଜି ହୋଇ ସମସ୍ତେ ନିନ୍ଦାକାରାରେ ପହଂଚିବା ଆଗରୁ ସମୁଦ୍ରରେ ଜୋରରେ ଢେଉ ଉଠିବାକୁ ଆରମ୍ଭ ହେଲା । ଚାହୁଁ ଚାହୁଁ ବିରାଟ ଢେଉ ଉଠି ନୌକାର ଦୁଇପାଖରେ ବାଡେଇ ହେଲା । ବଡ ଢେଉ ପିଟି ହୋଇ ଡଙ୍ଗା ଭର୍ତ୍ତି ମାଛ, ଜାଲ ଓ କେଉଟ ମାନେ ଭୟଙ୍କର ଭାବରେ ଏପଟ ସେପଟ ଗଡିବାକୁ ଲାଗିଲେ । କେଉଟ ମାନଙ୍କର ଡଙ୍ଗାକୁ ଆୟତରେ ରଖିବାର ସବୁ ଚେଷ୍ଟା ବ୍ୟର୍ଥ ହେଲା । ପର ମୁହୂର୍ତ୍ତରେ ଗୋଟିଏ ବିରାଟ ଢେଉ ଆସି ଡଙ୍ଗାକୁ ନେଇ ଗୋଟିଏ ପଥର ଉପରେ ଖଣ୍ଡ ଖଣ୍ଡ କରି ପିଟି ଦେଲା । ସେଦିନର ଝଡରେ ଧନୀ ଲୋକଟିର ସବୁଠୁ ଭଲ ନୌକାଟି, ସମସ୍ତ ମାଛ ଓ ଜାଲ ସବୁ ପଥରରେ ପିଟିହୋଇ ନଷ୍ଟ ହୋଇଗଲା । କେବଳ ସମସ୍ତଙ୍କର ଜୀବନ ବଂଚିଗଲା । ବହୁତ କଷ୍ଟରେ କେଉଟ ମାନେ ପହଁରି କୂଳରେ ପହଂଚିଲେ ।

ଅହଂକାରୀ ଧନୀ ଡଙ୍ଗାର ମାଲିକ ଅଚାନକ ଦୁର୍ଭାଗ୍ୟର ସମ୍ମୁଖୀନ ହେଲେ । ବର୍ତ୍ତମାନ ସେ ସମୁଦ୍ର କୂଳେ କୂଳେ ମନ ଦୁଃଖରେ ନତ ମସ୍ତକରେ ଚାଲି ଫେରୁଥିଲେ । ଏତେ ବଡ କ୍ଷତି ନ ସହିପାରି ଦୁଃଖରେ ଅଭିଭୂତ ଧନୀ ଲୋକଟି ମୂର୍ଚ୍ଛା ହୋଇ ପଡିଗଲେ । ସୁଧାମଣିଙ୍କର ଭକ୍ତ ମଜୁରିଆ ମାନେ ନିଜ ଭିତରେ କଥା ବାର୍ତ୍ତା ହେଲେ, "ଦେଖ ଭଗବାନଙ୍କର କୋପର ଫଳ ? ଠିକ୍ ତା ଆଗରୁ ସେ ସୁଧାମଣିଙ୍କୁ ପରିହାସର ଫଳରେ ହିଁ କିପରି ବେଶୀ ମାଛ ଧରିଛି କହି ବଡେଇ କରି କହୁଥିଲେ । ବର୍ତ୍ତମାନ ଦେଖ କଣ ହେଲା !" ଆଉ ଜଣେ ସୁଧାମଣିଙ୍କ ଭକ୍ତ କହି ଉଠିଲେ "ସେ କୂଳ ଛାଡୁ ଛାଡୁ କହିଲେ ଯେ ସୁଧାମଣିର ମସ୍ତିଷ୍କ ବିକୃତି ରୋଗ ଅଛି, ଏବଂ ତାକୁ ସେ ବାହା ହବାକୁ ଦୁଇ ହଜାର ଟଙ୍କା ଦେବେ । ବର୍ତ୍ତମାନ ସେ କୋଉଠୁ ସେ ଟଙ୍କା ଧାର କରିବେ ?" ସେଇ ଗୋଟିଏ ଦିନର ଘଟଣାରେ ସେ ପଚସ୍ତରୀ ହଜାର ଟଙ୍କା ହରାଇଥିଲେ । ମଜୁରିଆ ମାନେ ଭଡା ଗାଡିରେ ଘରକୁ ଫେରିଲେ । ଏ ଘଟଣାର ଖବର ଚାରିଆଡେ ବ୍ୟାପିଗଲା । କୃଷ୍ଣଭାବ ଦର୍ଶନ କରିବାକୁ ଆସୁଥିବା ଭକ୍ତ ମାନଙ୍କ ସାଙ୍ଗରେ ସୁଧାମଣି ତିନି ବର୍ଷର ପିଲା ପରି ପିଲାଳିଆ ଦୁଷ୍ଟାମୀ ଖେଳ ଖେଳିବା ଆରମ୍ଭ କରି ଦେଇଥିଲେ । ଦର୍ଶନ ସରିଗଲା ପରେ ସେ ଧୀରେ ଧୀରେ ଯାଇ ଶୋଇଥିବା ଭକ୍ତ ପାଖରେ ପହଂଚୁ ଥିଲେ କିମ୍ବା ବେଳେ ବେଳେ କୌଣସି ସ୍ତ୍ରୀ ଲୋକର ଶାଢୀ କାନିରେ ଆଉ କାହାର ବେଣୀକୁ ବାନ୍ଧି ଦଉଥିଲେ । ଆଉ କେବେ କେବେ ପାଟିଖୋଲା କରି ଶୋଇଥିବା ଲୋକଙ୍କର ପାଟିରେ ବାଲି ପୁରାଇ ଦେଉଥିଲେ । ସୁଧାମଣିଙ୍କ ସଂପର୍କୀୟ ଭାଇ ହର୍ଷନ ସୁଧାମଣିଙ୍କୁ ଅତି ସ୍ନେହ ଓ ଶ୍ରଦ୍ଧା କରୁଥିଲେ । ସେ ଦର୍ଶନ ପରେ ଯେଉଁଠି ଶୋଇଥିଲେ ବି ସୁଧାମଣୀ ତାଙ୍କୁ ଖୋଜି ବାହାର କରୁଥିଲେ । ହସିହସି ସୁଧାମଣୀ ଶୋଇଥିବା ଅବସ୍ଥାରେ ତାଙ୍କର ଗୋଡ ଭିଡି ବାହାରକୁ ଟାଣି ଆଣୁଥିଲେ । ତାଙ୍କ ପାଇଁ ଏହା ମଧ୍ୟ ଗୋଟିଏ ମଜା ଖେଳ ଏବଂ ସବୁ ଭକ୍ତ ମାନେ ସୁଧାମଣିଙ୍କର ପିଲାଳିଆ ଖେଳ ଦେଖି ହସିହସି ଉପଭୋଗ କରୁଥିଲେ । ସୁଭଗନଙ୍କୁ ଭଉଣୀର ଏପରି ଅଦ୍ଭୁତ ଖେଳ ଜମା ଭଲ ଲାଗୁ ନଥିଲା । ସେ ସୁଧାମଣିଙ୍କୁ ଏଥିପାଇଁ ଭାରି ତିରସ୍କାର କରୁଥିଲେ । ଭଗବତ ପ୍ରେମ ବିଷୟରେ ସଂପୂର୍ଣ୍ଣ ଅଜ୍ଞାନୀ କିପରି ବା ସୁଧାମଣିଙ୍କର ଏପରି ଉଚ୍ଚ ସ୍ତରର ଭକ୍ତି ଭାବକୁ ବୁଝି ପାରିବ ?

ଏପରି ଅଦ୍ଭୁତ ବ୍ୟବହାର ବିଷୟରେ ସୁଧାମଣି ପରେ ମନ୍ତବ୍ୟ ଦେଇଥିଲେ "ମୋର ମନ ସବୁବେଳେ ପରମାତ୍ମାଙ୍କ ସଙ୍ଗରେ ମିଶିଯିବା ପାଇଁ ଉର୍ଦ୍ଧ୍ୱଗାମୀ ହେଉଛି । ମୁଁ ସବୁବେଳେ ପରମାତ୍ମାଙ୍କୁ ଏଇ ଧରା ଧାମକୁ ଟାଣି ଆଣିବାକୁ ଚେଷ୍ଟା କରୁଛି । ତାଙ୍କ କୃପାରୁ ମୁଁ ଦୁଃଖୀ ରଙ୍କି ସେବା କରି ଭକ୍ତ ମାନଙ୍କର ସାଙ୍ଗରେ ମିଶି ପାରିବି । ବିନା ଆସକ୍ତିରେ ଭକ୍ତ ମାନଙ୍କ ସାଙ୍ଗରେ ମିଶି ରହିବାକୁ ହିଁ ମୁଁ ଏପରି ଖେଳ ଖେଳିବାକୁ ଚାହୁଁଛି" ।



## ଷଷ୍ଠ ଅଧ୍ୟାୟ

## ଦେବୀ ମାତାଙ୍କର ସନ୍ତାନ ରୂପେ

ସତ୍ କର୍ମ ସାଧନର ଗଭୀର ଇଚ୍ଛା ମୋ ମନରେ ଦୃଢୀଭୂତ ହେବାକୁ ଲାଗିଲା । ଦିବ୍ୟ ଆଲୋକମୟୀ ଜଗଦମ୍ବା ତାଙ୍କର କୋମଳ ହାତରେ ମୋର ମୁଣ୍ଡ ଆଉଁସି ଦେଲେ । ନତ ମସ୍ତକ ହୋଇ ମୁଁ ମାଙ୍କୁ କହିଲି ଯେ ମୋ ଜୀବନ ତାଙ୍କ ପାଖରେ ହିଁ ଉତ୍ସର୍ଗୀକୃତ ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ଶିବସ୍ତ୍ୱମ୍ ଗୁରୁସ୍ତ୍ୱଂଚ ଶକ୍ତିସ୍ତ୍ୱମେବ
ତ୍ୱମେବସି ମାତା ପିତା ଚ ତ୍ୱମେବ ।
ତ୍ୱମେବସି ବିଦ୍ୟା ତ୍ୱମେବସି ବନ୍ଧୁ-
ଗତିର୍ମେ ମତିର୍ଦ୍ଦେବି ସର୍ବ୍ୱମ୍ ତ୍ୱମେବ ॥

ହେ ଦେବୀ, ତୁମେ ହିଁ ଶିବ, ତୁମେ ହିଁ ଗୁରୁ, ତୁମେ ହିଁ ପରଂ ବ୍ରହ୍ମମୟୀ, ତୁମେ ହିଁ ମାତା, ତୁମେ ହିଁ ପିତା । ମୋ ପାଇଁ ତୁମେ ଜ୍ଞାନ, ବନ୍ଧୁ, ପରିବାର ଓ ବୁଦ୍ଧି, ତୁମେ ହିଁ ମୋର ସର୍ବସ୍ୱ ।

**ଦେବୀ ଭୁଜଗମ**

## ଭକ୍ତି

ଭକ୍ତିର ଅନନ୍ୟ ଆନନ୍ଦ ଓ ସୌନ୍ଦର୍ଯ୍ୟ ବର୍ଣ୍ଣନାତୀତ । ପ୍ରକୃତ ଭକ୍ତର ଅନ୍ତିମ ଇଚ୍ଛା ସବୁବେଳେ ଭକ୍ତ ହୋଇ ରହିବାପାଇଁ । ତା ପାଇଁ ଭକ୍ତି ହିଁ ଜୀବନ ଏବଂ ପ୍ରଭୁ ହିଁ ସର୍ବସ୍ୱ । ଭକ୍ତ ପ୍ରଭୁଙ୍କର ମହିମା ଗାଇ ସର୍ବଶ୍ରେଷ୍ଠ ଆନନ୍ଦ ଅନୁଭବ କରେ । ସେଥିପାଇଁ ଭକ୍ତି ଶାସ୍ତ୍ରରେ କୁହାଯାଇଛି -

ଭକ୍ତି ହିଁ ଭକ୍ତିର ଫଳ
ସ୍ୱର୍ଗୀୟ ପ୍ରେମର ଅନ୍ତର୍ନିହିତ ଗୁଣ ହିଁ
ଅମୃତା ନନ୍ଦ ।

ଏପରିକି ମହର୍ଷି ଶୁକଦେବ ପରମ ଚୈତନ୍ୟରେ ଅଧିଷ୍ଠିତ ହେଲାପରେ ମଧ୍ୟ

ଭଗବତ ମହିମା ଭଜନରେ ଅନିର୍ବଚନୀୟ ଉଲ୍ଲାସ ଅନୁଭବ କରୁଥିଲେ । ନିର୍ମଳ ଭଗବତ ପ୍ରେମରୁ ହିଁ ଏପରି ପରମାନନ୍ଦ ଲାଭ ହୁଏ । ସୁଧାମଣି ଶ୍ରୀକୃଷ୍ଣଙ୍କର ଚୈତନ୍ୟରେ ସଂପୂର୍ଣ୍ଣ ଲୀନ ହୋଇ ମଧ୍ୟ ଭକ୍ତିର ସୁଧା ଟିକକ ପାଇଁ ସଦା ସର୍ବଦା ତୃଷ୍ଣା ଅନୁଭବ କରୁଥିଲେ । କୃଷ୍ଣଙ୍କର ରୂପକୁ ଧ୍ୟାନ କରିବା ଏବଂ ତାଙ୍କ ଚିନ୍ତାରେ ଅବିରତ ବୁଡି ରହିବା ଏଣିକି ଅସମ୍ଭବ ହୋଇ ପଡିଲା । ଏହିପରି ତାଙ୍କର କୃଷ୍ଣଙ୍କୁ ଅର୍ପିତ ପ୍ରାର୍ଥନାର ସ୍ରୋତ ବନ୍ଦ ହୋଇଗଲା, ସୁଧାମଣିଙ୍କର କୃଷ୍ଣ ସାଧନାର ସମାପ୍ତି ହେଲା । ସୁଧାମଣିଙ୍କର ଦୈବୀ ଭାବ ଦର୍ଶନ ଦେବାର ଅନୁଭୂତି ତାଙ୍କର ଭଗବାନ ଭାବ ପ୍ରଦର୍ଶନ ଓ ତାଙ୍କର ଜଗତ ଜନ ସେବାର ପରିବର୍ତ୍ତନ ଆଣିଥିଲା ।

ଏହି ଅଚାନକ ଦେବୀ ଦର୍ଶନ ଫଳରେ ସୁଧାମଣି ଦେବୀ ସାଧନା ଓ ଭାବାବେଗ ଭିତରେ ଜଗଦମ୍ବାଙ୍କୁ ହୃଦୟ କମଳରେ ସ୍ଥାପିତ କରିଥିଲେ । ସେ ଦିନେ ଘରେ ଏକୁଟିଆ ଗଭୀର ଅନ୍ତର୍ମୁଖୀ ଭାବରେ ବସିଥିବା ବେଳେ ସୂର୍ଯ୍ୟାସ୍ତ ରଙ୍ଗ ନେଇ ଲାଲ ଚନ୍ଦ୍ର ପରି ଶୀତଳ ଗୋଟିଏ ଉଜ୍ଜ୍ୱଳ ଆଲୋକର ପିଣ୍ଡୁଳା ଆବିର୍ଭାବ ହେଲା । ସେ ଆଲୋକ ପୃଥିବୀରେ ଲାଗି ନଥିଲା କିମ୍ବା ଆକାଶରୁ ଝୁଲି ନଥିଲା - ଏବଂ ଚକ୍ରବତ୍ ଘୁରୁଥିଲା । ଏହି ଉଜ୍ଜ୍ୱଳ ଏବଂ ଶାନ୍ତି ପ୍ରଦାୟିନୀ ଆଲୋକ ଆଗରେ ସୁନ୍ଦର ମୁକୁଟ ପିନ୍ଧି ଜଗତ ଜନନୀ ଦେବୀ ରୂପରେ ଆବିର୍ଭୂତ ହେଲେ । ଦେବୀଙ୍କର ଏପରି ହୃଦୟ ସ୍ପର୍ଶୀ ଆବିର୍ଭାବରେ ଚକିତ ହୋଇ ସୁଧାମଣି କାନ୍ଦି ଉଠିଲେ "ହେ କୃଷ୍ଣ, ମା ଆସିଛନ୍ତି ! ମୋତେ ତାଙ୍କ ପାଖକୁ ନେଇ ଯାଅ, ମୁଁ ତାଙ୍କ ଦେହକୁ ଟିକିଏ ଜଡେଇ ଧରେ" । ସାଙ୍ଗେ ସାଙ୍ଗେ ସୁଧାମଣି ଅନୁଭବ କଲେ କୃଷ୍ଣ ଯେପରି ତାଙ୍କୁ ଉଠାଉଛନ୍ତି, ସେ ତାଙ୍କୁ ନେଇ ମେଘ ଉପରେ ଉଠାଇ ସୁନ୍ଦର ପାହାଡ, ଘନ ଜଙ୍ଗଲ, ନୀଳ ସାପ, ଭୟଙ୍କର ଗୁମ୍ଫା ଇତ୍ୟାଦିର ଅଦ୍ଭୁତ ଦୃଶ୍ୟ ଦେଖାଉଛନ୍ତି । ସୁଧାମଣି କେଉଁଠି ଦେବୀଙ୍କୁ ଆଉ ଦେଖି ପାରିଲେନି । ଛୋଟ ପିଲା ପରି ସେ ଅଳି କଲେ "ମୁଁ ମୋ ମାକୁ ଦେଖିବାକୁ ଚାହୁଁଚି । ମା ମା କାହିଁ ?" ଏପରି କହି କାନ୍ଦିବାକୁ ଆରମ୍ଭ କଲେ । ଦେବୀଙ୍କର ଅପୂର୍ବ ରୂପ ଦର୍ଶନ ତାଙ୍କ ଆଖି ଆଗରୁ ଉଭେଇ ଗଲା କିନ୍ତୁ ସୁଧାମଣିଙ୍କର ହୃଦୟରେ ସେ ଛବି ସବୁଦିନ ପାଇଁ ଖୋଦିତ ହୋଇ ରହିଗଲା । ସେହି ମୁହୂର୍ତ୍ତରୁ ସେ ଦେବୀ ମାତାଙ୍କର କରୁଣାମୟୀ ମୁଖମଣ୍ଡଳ ଓ ସ୍ମିତ ହାସ୍ୟ ଆଉଥରେ ଦେଖିବା ପାଇଁ ବ୍ୟାକୁଳ ହୋଇ ପଡିଲେ । ଶ୍ରୀକୃଷ୍ଣଙ୍କର ପବିତ୍ର ମୂର୍ତ୍ତିକୁ ଅନେକ ଥର ଦର୍ଶନ କରିଥିବା ସୁଧାମଣି

ବର୍ତ୍ତମାନ ଦେବୀଙ୍କର ବର୍ଣ୍ଣନାତୀତ ଉଜ୍ଜ୍ୱଳତାରେ ପ୍ରଭାବିତ ହେବାକୁ ଲାଗିଲେ । ତାଙ୍କର ହୃଦୟ ଦେବୀଙ୍କ ପଛରେ ଧାଇଁବାକୁ ଲାଗିଲା । ଦେବୀଙ୍କୁ ଆଲିଙ୍ଗନ କରି, ତାଙ୍କ କୋଳରେ ବସି ତାଙ୍କ ଗାଲରେ ଚୁମ୍ବନ ଦେବା ହିଁ ତାଙ୍କର ଏକମାତ୍ର କାମନା ଥିଲା ।

ଏହିପରି ସୁଧାମଣି ଯିଏକି କୃଷ୍ଣ ବିନା ଆଉ କାହାକୁ ତପସ୍ୟା କରି ନଥିଲେ କିମ୍ବା ଭାବିନଥିଲେ ଯେ ଶ୍ରୀକୃଷ୍ଣଙ୍କ ବିନା ଅନ୍ୟ କୌଣସି ଠାକୁର ଥାଇ ପାରନ୍ତି ବର୍ତମାନ ଆଦି ପରାଶକ୍ତି ଜଗତ୍ ମାତାଙ୍କ ଧ୍ୟାନରେ ପ୍ରାଣ ଉତ୍ସର୍ଗ କରିଦେଲେ । କେବଳ କୃଷ୍ଣଭାବ ସମୟକୁ ଛାଡିଦେଲେ, ଅନ୍ୟ ସମୟରେ ସେ ଦୀପ୍ତିମୟୀ ଈଶ୍ୱରୀ ଜଗତମାତାଙ୍କ ଧ୍ୟାନରେ ନିମଜ୍ଜିତ ରହୁଥିଲେ । ତାଙ୍କର ସ୍ୱରୂପ ଦର୍ଶନାଭିଳାଷର ବହ୍ନି ସୁଧାମଣିଙ୍କ ହୃଦୟରେ ଅନବରତ ଜଳିବାକୁ ଲାଗିଲା । ଆଗରୁ ଘର କରଣା ଦାୟିତ୍ୱର ଜଂଜାଳ ସୁଧାମଣିଙ୍କୁ ସାଂସାରିକ ଜଗତରେ ବ୍ୟସ୍ତ ରଖଉଥିଲା କିନ୍ତୁ ବର୍ତ୍ତମାନ ଏହି ବେଡି ଭାଙ୍ଗିଯିବା ଫଳରେ ସୁଧାମଣିଙ୍କ ବାହ୍ୟ ଜଗତ ସଙ୍ଗେ ସଂପର୍କୀୟ ସଂପୂର୍ଣ୍ଣ ଭାବରେ ଚାଲିଗଲା । ନିଜ ଦେହର ଯେତିକି ସାଧାରଣ ଯତ୍ନ ନିହାତି ଦରକାର, ତାହାବି କରିବା ତାଙ୍କ ପାଇଁ କଷ୍ଟକର ହୋଇ ପଡିଲା । ସେ ମାସ ମାସ ଧରି ଖାଲି ତୁଳସୀ ପତ୍ର ଓ ପାଣି ପିଇ ବଂଚି ରହିଲେ ।

ବେଳେ ବେଳେ ଗଭୀର ତପସ୍ୟାରୁ ଉଠି ସେ ଜୋରରେ କାନ୍ଦି ଉଠନ୍ତି "ଅମ୍ମା ! ଅମ୍ମା ! ତୁମେ କୁଆଡେ ଯାଇଛ ? ସେଦିନ ଖାଲି ଥରେ ଦେଖା ଦେଇ କଣ ମତେ ପରିତ୍ୟାଗ କରିବାକୁ ଆସିଥିଲ ? ଦୟାକରି ଏ ସନ୍ତାନ ପ୍ରତି ପ୍ରସନ୍ନ ହୁଅ ଓ ଆଉଥରେ ତୁମର କରୁଣାମୟୀ ରୂପର ଦର୍ଶନ ଦିଅ । ହେ ମା ! ମୁଁ ଯଦି ପ୍ରକୃତରେ ଉପଯୁକ୍ତା ତେବେ ମତେ ତୁମ ସଙ୍ଗରେ ଏକାତ୍ମ କରିଦିଅ । ମୁଁ ଏ ବିଚ୍ଛେଦ ଆଉ ସହ୍ୟ କରିପାରୁ ନାହିଁ । ହେ ବିଶ୍ୱ ଜନନୀ, ତୁମେ କାହିଁକି ଏ ସନ୍ତାନର ହୃଦୟ ଫଟା ଡାକ ଶୁଣି ମଧ୍ୟ ନିର୍ଲିପ୍ତ ରହିଛ ? ଦୟାକରି ମୋତେ ଆଲିଙ୍ଗନ କରି ତୁମ କୋଳକୁ ନିଅ ।

ଧୋଇବି ମୁଁ ତୋ ପୟର ମୋ ଆଖି ଲୁହରେ
କାତ୍ୟାୟନୀ ଦିଅନା ଗୋ ଠେଲି ମୋତେ ଦୂରେ

ଜନନୀ ଗୋ କେତେଦିନ କରିବି ପ୍ରତୀକ୍ଷା
ଦେଖିବାକୁ ରୂପ ତୋର ମାଗଇ ମୁଁ ଭିକ୍ଷା ॥

କରୁଛୁ ବିଳମ୍ବ ମା ଗୋ ମୋ ଆଶା ପୂରଣେ
ଭଣ୍ଡିଛୁ ମାୟାରେ ମୋତେ ଭଲକରି ଜାଣେ ।
ଅନୁମତି ଦେବୁ ଥରେ ଏ ଛାର ଜୀବନେ
ନାଲି ଜବା ଅରପିବି ତବ ଶ୍ରୀଚରଣେ ॥

ବିଜନେ କାନ୍ତାରେ ଖୋଜେ ତୋତେ ଶିବପ୍ରିୟା
ପାଷାଣ ହୃଦୟେ ତୋର ନ ଆସେ କି ଦୟା ॥

ସୁଧାମଣି କୃଷ୍ଣ ସାଧନା ଶେଷରେ ସମସ୍ତ ଜୀବ ଜଗତକୁ କୃଷ୍ଣମୟ ଦେଖୁଥିଲେ । ଠିକ୍ ସେହିପରି ସେ ବର୍ତ୍ତମାନ ସମସ୍ତ ସୃଷ୍ଟିରେ ପବିତ୍ର ଦେବୀଙ୍କର ଆବିର୍ଭାବ ଉପଲବ୍ଧି କଲେ । ଏପରିକି ପବନ ହିଁ ଦେବୀଙ୍କର ନିଶ୍ୱାସ ପ୍ରଶ୍ୱାସ ମନେହେଲା । ନିରୀହ କିଶୋରୀ ବୁଲି ବୁଲି ଗଛ, ପଶୁ ପକ୍ଷୀ ସମସ୍ତଙ୍କ ସହ କଥା ହେବା ଆରମ୍ଭ କରିଦେଲେ । ସେ ଧରିତ୍ରୀକୁ ମା ବୋଲି ଅନୁଭବ କରି ବାଲିରେ ଗଡି ଡାକିଲେ "ଅମ୍ମା ! ଅମ୍ମା ! ତୁମେ କେଉଁଠି ?"

ଦିନେ ସୁଧାମଣି ଧ୍ୟାନ ଶେଷ କରି ଛୋଟିଆ ପୂଜା ଘରୁ ବାହାରି ଆସିଲେ । ସେ ଗୋଟିଏ ଛୋଟ ଶିଶୁ ଓ ପ୍ରକୃତି ହେଉଛି ତାଙ୍କର ଐଶ୍ୱରିକ ମାତା ଏପରି ଏକ ଭାବନା ତାଙ୍କ ମନରେ ତୀବ୍ର ହୋଇ ଉଠିଲା । ଏହି ପରି ଅବସ୍ଥାରେ ସେ ସାନ ଶିଶୁ ପରି ଗୁରୁଣ୍ଡି ଗୋଟିଏ ନଡିଆ ଗଛ ମୂଳକୁ ଯାଇଥିଲେ । ସେଠାରେ ବସି ଲୁହ ଝରାଇ ବିକଳରେ ଡାକିଲେ "ମା... ମୋ ମା... ତୁ କାହିଁକି ମୋ ସାମ୍ନାରୁ ଲୁଚି ଯାଉଛୁ ? ମୁଁ ଜାଣେ ତୁ ଏଇ ଗଛରେ ଲୁଚିଛୁ । ତୁ ଏହି ଛୋଟ ଗଛରେ ଅଛୁ । ତୁ ଏହି ପଶୁ ଓ ପକ୍ଷୀଙ୍କ ଭିତରେ ଅଛୁ । ଏହି ପୃଥିବୀଟାରେ ତୋ ଛଡା ଆଉ କିଛି ନାହିଁ । ହେ ମା ! ତୁ କିପରି ନିଜକୁ ସମୁଦ୍ର ଲହରୀ ଓ ଶୀତଳ ମଳୟରେ ଲୁଚାଇ ରଖୁଛୁ ? ହେ ମା, ମୋର ଭ୍ରାନ୍ତି ରୂପିଣୀ ମା...." ପରମୁହୂର୍ତ୍ତରେ ସେ ନଡିଆ ଗଛକୁ ମା ବୋଲି ଭାବି କୁଣ୍ଢେଇ ପକେଇଥିଲେ ।

ସମୟ ସମୟରେ ସୁଧାମଣି କେବଳ ପଡି ରହୁଥିଲେ । ନିଜ ଦେହର ବିଶ୍ରାମ ପ୍ରତି ତାଙ୍କର କେବେବି ଆସକ୍ତି ନଥିଲା । ସେ ଖାଲି ପଡି ରହି ଅନନ୍ତ ଆକାଶର ରୂପେଲି ମେଘ ମାଳା, ଉଜ୍ଜ୍ୱଳ ସୂର୍ଯ୍ୟ, ଚକ୍ ଚକ୍ କରୁଥିବା ତାରା ଓ ସ୍ନିଗ୍ଧ ଶୀତଳ ଚନ୍ଦ୍ର ଆଡେ ଅନେକ ସମୟ ଧରି ଚାହିଁ ରହୁଥିଲେ । ଯେତେବେଳେ କଳା ମେଘର ଝଡ ଆକାଶରେ ପୁଞ୍ଜିଭୂତ ହେଉଥିଲା, ସୁଧାମଣି ଆଉ ତା ଭିତରେ ଘନ ମେଘବର୍ଣ୍ଣ ଶ୍ରୀକୃଷ୍ଣଙ୍କୁ ନ ଦେଖି ଜଗତ୍ ଜନନୀଙ୍କର କୁଂଚିତ କେଶ ମାଳା ବୋଲି କଳ୍ପନା କରୁଥିଲେ । ଅସୀମ ଆକାଶର ଦେଖାଯାଉଥିବା ଯେ କୌଣସି ଜିନିଷ ତାଙ୍କୁ ଦେବୀଙ୍କର ଉପସ୍ଥିତି ପରି ମନେ ହେଉଥିଲା । ସେ ଖୋଲା ଆକାଶ ତଳେ ଅନିଦ୍ରା ହୋଇ ଲୁହ ଭରା ଆଖିରେ ଜଗତ ମାତାଙ୍କର ଅନୁନୟକାରି ହୋଇ ପଡି ରହିଲେ ।

ସେହି ଦିନ ଗୁଡିକ ବିଷୟରେ ଅମ୍ମା କହନ୍ତି "ମୁଁ ଚାଲିଲାବେଳେ ଜଗତ୍ ମାତାଙ୍କର ନାମ ପ୍ରତି ପଦକ୍ଷେପରେ ନେଉଥିଲି । ମନ୍ତ୍ର ଜପ କଲା ପରେ ହିଁ ପ୍ରତି ପଦକ୍ଷେପ ନେଉଥିଲି । ଯଦି କେବେ ଭୁଲରେ ପଦକ୍ଷେପ ସହ ମନ୍ତ୍ର ଜପିବାକୁ ଭୁଲି ଚାଲି ଯାଉଥିଲି, ତେବେ ମୁଁ ସାଙ୍ଗେ ସାଙ୍ଗେ ପୁଣି ଘରକୁ ଫେରିଆସୁଥିଲି । ତାପରେ ପୁଣି ଠିକ୍ ଭାବରେ ପ୍ରତି ପଦକ୍ଷେପ ସହ ମନ୍ତ୍ର ଜପି ଚାଲିବା ଆରମ୍ଭ କରୁଥିଲି । ଯଦି କେବେ କୌଣସି କାମରେ ବ୍ୟସ୍ତ ରହେ ତେବେ ମୁଁ ସେ କାମ ଆରମ୍ଭ କରିବା ଆଗରୁ ଶେଷ ଯାଏ କେତେଥର ମନ୍ତ୍ର ଜପ କରିବି ମନସ୍ଥ କରିସାରି ତାପରେ କାମ ଆରମ୍ଭ କରେ । ନଦୀରେ ଗାଧୋଇଲାବେଳେ, ପାଣିକୁ ଯିବା ଆଗରୁ ମୁଁ ପାଣି ଭିତରେ ବୁଡି ରହି କେତେଥର ମନ୍ତ୍ର ଜପ କରିସାରିଲା ପରେ ଉପରକୁ ଆସିବି ଠିକ୍ କରି ନେଉଥିଲି । ମୋର କୌଣସି ଗୁରୁ ନଥିଲେ କିମ୍ବା ମତେ କିଏ କେବେ କୌଣସି ମନ୍ତ୍ର- ଦୀକ୍ଷା ଦେଇନଥିଲେ । ମୁଁ ଖାଲି "ଅମ୍ମା ଅମ୍ମା" ମନ୍ତ୍ର ହିଁ ଜପ କରୁଥିଲି ।

ଶାସ୍ତ୍ରରେ କୁହାଯାଇଛି ଭକ୍ତିର ଉଚ୍ଚତମ ସ୍ତରକୁ ଗଲେ ଅନ୍ୟାନ୍ୟ କର୍ମ ସବୁ କମିଯାଏ । ସେ ଦାନ୍ତ ଘଷା ଆରମ୍ଭ କରନ୍ତି । ଠିକ୍ ତାର ପର ମୁହୂର୍ତ୍ତରେ ଜଗତ ଜନନୀଙ୍କର ଗଭୀର ଚିନ୍ତାରେ ନିମଜ୍ଜିତ ହୋଇ ମନ ହଜିଯାଏ । ଏହିପରି କ୍ରମଶଃ ଗଭୀର କେନ୍ଦ୍ରୀଭୂତ ଚିନ୍ତାର ଅବସ୍ଥାରେ ସେ ଘଂଟା ଘଂଟା ଧରି ରହିବାକୁ ଆରମ୍ଭ କଲେ । ସ୍ନାନ ମଧ୍ୟ କରିବା ଅସମ୍ଭବ ହୋଇ ଉଠିଲା । ଗାଧୁଆ ଘରେ ପହଂଚି ସେ ଦେଖନ୍ତି ସାବୁନ ଆଣି ନାହାନ୍ତି । ନିରାଶ ହୋଇ ସେ କାନ୍ଦି ଉଠନ୍ତି " ହେ ମା ! ଖାଲି

ଗାଧୋଇବା ପାଇଁ କେତେ ସମୟ ନଷ୍ଟ ହେଇ ଯାଇଚି ! ବରଂ ମୋ ମନ ଲୟ 'ତୁମ' ପାଖରେ ହିଁ ରହୁ । ତୁମକୁ ଭୁଲି ମୁହୂର୍ତ୍ତେ ମାତ୍ର ରହିଲେ ମନ ଭିତରେ ଦୁଃସହ ଯନ୍ତ୍ରଣା ସୃଷ୍ଟି ହେଉଛି" ..... ଗାଧୋଇବା ଚେଷ୍ଟା ଛାଡି ସେ ଗାଧୁଆ ଘରେ ବସି ସମାଧୀସ୍ଥ ହୋଇ ଯାଉଥିଲେ । ଘଂଟାଘଂଟା ବିତିଗଲା ପରେ ତାଙ୍କୁ କିଏ ଜଣେ ଗାଧୁଆ ଘରେ ଯୋଗରେ ବସିଥିବାର ଆବିଷ୍କାର କରନ୍ତି ଏବଂ ତାଙ୍କ ଉପରେ ବାଲ୍‌ଟିଏ ପାଣି ଢାଳି ଦିଅନ୍ତି । ଏହା ହୁଏ ତାଙ୍କର ସ୍ନାନ ! ଯଦି ତାପରେ ବି ତାଙ୍କର କୌଣସି ପ୍ରତିକ୍ରିୟା ନହୁଏ, ତାଙ୍କୁ ଜୋରରେ ହଲାଇ ଉଠାଇ ଦିଆଯାଏ କିମ୍ବା ଘର ଭିତରକୁ ଉଠାଇ ନିଆଯାଏ ।

ଏହି ଉପକୂଳ ଅଂଳରେ ପାଇଖାନାର କୌଣସି ବନ୍ଦୋବସ୍ତ ନଥିଲା । ପ୍ରତ୍ୟେକ ପରିବାର ଘର ପଛରେ ସମୁଦ୍ର ଆଡୁ ମାଡି ଆସୁଥିବା କାୟଲ ପାଣି ଉପରେ ଛୋଟ ମଂଚା ତିଆରି କରି ଚାରିପଟ ନଡିଆ ପତ୍ରର ତାଟି ଘେରି ଦେଉଥିଲେ । ସେଥିରେ କୌଣସି ଚଟାଣ ନଥାଏ । କାଠ ପଟା ଉପରେ ବସି ସମସ୍ତେ ଝାଡା ଯାଆନ୍ତି । ବହୁତ ସମୟରେ ସୁଧାମଣି ଏପରି ପାଇଖାନକୁ ଯାଇ ବାହ୍ୟ ଜ୍ଞାନ ଶୂନ୍ୟ ହୋଇ ପାଣି ଭିତରକୁ ଗଡି ପଡୁଥିଲେ ।

ଦେବୀଙ୍କର ଧ୍ୟାନରେ ସଂପୂର୍ଣ୍ଣ ଭାବରେ ନିମଗ୍ନ ହୋଇ ସୁଧାମଣି ଘଂଟାଘଂଟା ଧରି ବସୁଥିଲେ । ବସିବା ଆଗରୁ ସେ ସବୁବେଳେ ମନ ଭିତରେ ପ୍ରତିଜ୍ଞା କରୁଥିଲେ "ମୁଁ ନିଶ୍ଚୟ ଏତିକି ସମୟ ବସିବି" ତାପରେ ସେ ନିଜର ଶରୀରକୁ ଆଦେଶ ଦିଅନ୍ତି "ଶରୀର, ତୁ ଏଇଠି ବସ" । ସେ ଦେବୀଙ୍କୁ କହନ୍ତି ଦେବୀ ମୋର ସାଙ୍ଗେ କୌଣସି ଚାଲାକି ଖେଳ ନାହିଁ । ଚାଲାକି ସବୁ ନିଜ ପାଖରେ ରଖ, ତମେ ଯଦି ମତେ ବସି ଧ୍ୟାନ ପାଇଁ ଅନୁମତି ନ ଦଉଛ, ମୁଁ ମଧ୍ୟ ତମକୁ ଛାଡିବି ନାହିଁ" । ଯଦି ବାହାରୁ କୌଣସି ଗଣ୍ଡଗୋଳରେ ତାଙ୍କର ଧ୍ୟାନ ଭଙ୍ଗ ହୋଇଯାଏ । ସେ ଦେବୀଙ୍କୁ କାମୁଡୁଥିଲେ ଓ ଦେଖୁଥିଲେ ଯେ ସେ ନିଜର ଦେହକୁ କାମୁଡିଛନ୍ତି ଓ ନିଜର ବାଳ ଉପାଡି ପକାଇଛନ୍ତି ।

ଥରେ ସୁଧାମଣି ନିଜର ସଂକଳ୍ପ ରଖିଥିବା ସମୟ ପର୍ଯ୍ୟନ୍ତ ବସି ପାରିଲେ ନାହିଁ, ସେ ଅନୁଭବ କଲେ ଯେପରିକି କିଏ ତାଙ୍କର ଦେହକୁ ଜୋରରେ ହଲାଉଛି । ଏହା

ତାଙ୍କୁ ଖୁବ୍ ଅସ୍ୱସ୍ତିକର ଲାଗିଲା । ସେ ମନ ଭିତରେ ଭାବିଲେ "ଏ ପୁଣି ମାଙ୍କର ଚାଲାକି ! ମତେ ସେ କାହିଁକି ସ୍ଥିର ଭାବରେ ବସିବାକୁ ଦେଉନାହାନ୍ତି ?" ସେ ହଠାତ୍ ଆଖିଖୋଲି ପୂଜା ଘରୁ ବାହାରକୁ ଦଉଡି ଯାଇ ଦେବୀଙ୍କୁ ଧମକ ଦେବା ପାଇଁ ବେଲଣା କାଠି ନେଇ ଆସିଲେ । ବେଲଣା କାଠି ଉଠାଇ ସେ ଚିତ୍କାର କଲେ "ଆଜି... ଆଜି ମୁଁ ..." ପୁଣି ପର ମୁହୂର୍ତ୍ତରେ ସେ ନିଜର ନିର୍ବୋଧତା ବୁଝି ପାରିଲେ "କଣ ! ଦେବୀଙ୍କୁ ମାରିବି ? ଏହା କଣ ଉଚିତ୍ ? ଏହା କଣ ସମ୍ଭବ ?" ସେ ବେଲଣା କାଠି ଫୋପାଡି ପୁଣି ତପସ୍ୟାରେ ବସିଲେ । ସୁଧାମଣି ଗୋଟିଏ ମୁହୂର୍ତ୍ତ ମଧ୍ୟ ବିନା ଦେବୀ ନାମ ସ୍ମରଣରେ ନଷ୍ଟ କରୁନଥିଲେ । ଯଦି ତାଙ୍କ ସହ କିଏ କଥା ହେଲା ସେ ତାଙ୍କୁ ଦେବୀ ବୋଲି ହିଁ କଳ୍ପନା କରୁଥିଲେ । ସେହି ଲୋକଟି କଥା କହିଚାଲିଥିବାର ଅନେକ ସମୟ ପରେ ହୃଦୟଙ୍ଗମ କରେ ଯେ ସୁଧାମଣିଙ୍କର ମନ ଆଉ ଗୋଟିଏ ଜଗତକୁ ଚାଲି ଯାଇଛି । ଯଦି ସେ ଅନୁଭବ କରନ୍ତି ଗୋଟିଏ ମୁହୂର୍ତ୍ତ ବିନା ଦେବୀ ସ୍ମରଣ ରେ ଚାଲିଯାଉଛି ସୁଧାମଣି ଅତି ବିଚଳିତ ହୋଇ ପଡନ୍ତି ଓ କହନ୍ତି "ହେ ମା ! ଏତେ ସମୟ ନଷ୍ଟ ହୋଇଗଲା !" । ସମୟ ନଷ୍ଟକୁ ଠିକ୍ କରିବା ପାଇଁ ସେ ସେଦିନ ନିଜର ନିର୍ଦ୍ଦିଷ୍ଟ ତପସ୍ୟା ସମୟକୁ ଆହୁରି ବଢାଇ ଦେଉଥିଲେ । ଯଦି ସେ କୌଣସି ଦିନ ତପସ୍ୟା କରି ପାରୁନଥିଲେ ସେ ସାରା ରାତି ମନ୍ତ୍ର କହି ପଦଚାରଣା କରୁଥିଲେ ଏବଂ ନିଷ୍ଠା ସହ ପ୍ରାର୍ଥନା କରି କହୁଥିଲେ "ହେ ମା ! ମୁଁ ଯଦି ତୁମର ଧ୍ୟାନ ନକରି ପାରୁଛି ତେବେ ଏ ଜୀବନର ମୂଲ୍ୟ କଣ ? ତମ ବିନା ଖାଲି ମାୟା ହିଁ ମତେ ଗିଳିବାକୁ ବସିଛି । ହେ ମା ମତେ ଶକ୍ତି ଦିଅ ! ମତେ ତୁମର ଦିବ୍ୟ ଦୃଷ୍ଟି ଦିଅ ! ମତେ ତୁମ ସଂଗରେ ଏକୀଭୂତ କରିନିଅ !"

ସୁଧାମଣି ସବୁଠାରୁ ନିର୍ଜନ ରାତିରେ ସମୁଦ୍ର କୂଳ ରେ ବସି ତପସ୍ୟା କରିବାକୁ ଭଲ ପାଉଥିଲେ । ତାଙ୍କୁ ଲହଡି ଭଙ୍ଗାର ଶବ୍ଦ ଓଁ ପରି ଶୁଭୁଥିଲା । ଅନନ୍ତ ଘନ ନୀଳ ମହାକାଶ, ଝିଲ୍‌ମିଲ୍ କରୁଥିବା ଅଗଣିତ ତାରା ଥିଲା ଦେବୀଙ୍କର ଅସୀମ ଦୈବୀ ଶକ୍ତିର ମହିମା । ସେହି ପରିବେଶରେ ମୁହୂର୍ତ୍ତକ ମଧ୍ୟରେ ସେ ଅନାୟାସରେ ସ୍ୱୟଂ ବ୍ରହ୍ମଙ୍କୁ ଧ୍ୟାନ କରି ଅନ୍ତର୍ମୁଖୀ ହୋଇ ଯାଉଥିଲେ ।

ସୁଗୁଣାନନ୍ଦ ସୁଧାମଣିଙ୍କୁ ରାତିରେ ଘରେ ଓ ବାରିଆଡେ ଖୋଜି ନ ପାଇଲେ

ଭାରି ବ୍ୟତିବ୍ୟସ୍ତ ହୋଇ ପଡୁଥିଲେ । ଶେଷରେ ଖୋଜି ଖୋଜି ସମୁଦ୍ର ଆଡକୁ ଯାଇ ତାଙ୍କୁ ପଥର ମୂର୍ତ୍ତି ପରି ତପସ୍ୟାରେ ମଗ୍ନ ଥିବାର ଦେଖନ୍ତି । କେତେକ ଗ୍ରାମବାସୀ ସୁଧାମଣିଙ୍କର ସମୁଦ୍ର କୂଳକୁ ନିର୍ଜନ ରାତିରେ ତପସ୍ୟା ପାଇଁ ଯିବା ବୁଝି ନପାରି ବାଜେ ଗୁଜବ ସୃଷ୍ଟି କରିବା ଆରମ୍ଭ କଲେ । ସୁଗୁଣାନନ୍ଦ ଏହା ଶୁଣିଲା ପରେ ତାଙ୍କ ଝିଅକୁ ରାତିରେ ସମୁଦ୍ର କୂଳକୁ ଏକାକୀ ନ ଯିବା ପାଇଁ କଡା ଆଦେଶ ଜାରି କରିଥିଲେ ।

ସୁଧାମଣିଙ୍କର ପ୍ରଥମ ସ୍ତରରେ ଦେବୀ ସାଧନା ସମୟରେ ଏପରି ସବୁ ଘଟଣା ତାଙ୍କର ପରିବାର ଲୋକଙ୍କ ତାଙ୍କର ପାଗଳାମୀ ବିଷୟରେ ମତାମତକୁ ଆହୁରି ଦୃଢୀଭୂତ କରାଇଥିଲା । ଏପରି ଉଚ୍ଚ କୋଟୀର ଭଗବତ୍ ପ୍ରେମକୁ ବୁଝିବା ସାଧାରଣ ଲୋକର ସାଧ୍ୟାତୀତ । ସେ ପ୍ରତ୍ୟକ୍ଷରେ ନ ଦିଶୁଥିବା ସତ୍ତାକୁ କାନ୍ଦି କାନ୍ଦି ଡାକୁଥିବେ । ଆଉ ଅନ୍ୟ ସମୟରେ ସେ ହାତ ତାଳି ମାରି, ଜୋରରେ ହସି ହସି ମାଟିରେ ଗଡିଯିବେ ବା ପାଣିରେ ଛୋଟ ଛୋଟ ଢେଉକୁ ଅମ୍ମା ଅମ୍ମା କହି ଗେଲ କରିବାକୁ ଆରମ୍ଭ କରିବେ । ଏହି କୋମଳ କିଶୋରୀଟିର ଏକୁଟିଆ ଭଗବତ ଅନ୍ୱେଷଣକୁ ପାଗଳାମୀ ବୋଲି କୁହାଯିବା ସ୍ୱାଭାବିକ ଥିଲା । ଏପରିକି କୃଷ୍ଣଭାବ ସମୟରେ ଆସୁଥିବା ଭକ୍ତ ମାନେ ମଧ୍ୟ ସୁଧାମଣିଙ୍କର ଜଗତ ମାତାଙ୍କର ଅନ୍ୱେଷଣର ଭାବକୁ ବୁଝିବାକୁ ଅକ୍ଷମ ହୋଇ ପଡିଥିଲେ ।

ପରିବାର ବର୍ଗ ତାଙ୍କୁ ପାଗଳ ବୋଲି ଭାବିଲା ପରେ ମଧ ତାର କାରଣ ବା ଚିକିତ୍ସାର ଉପଯୋଗ ପାଇଁ ଚେଷ୍ଟା ନ କରିବା ଶ୍ଲେଷାର୍ଥକ ଥିଲା । ତା ବଦଳରେ ସୁଧାମଣିଙ୍କର ବଡ ଭାଇ ସୁଭଗନ ଓ ଅନ୍ୟମାନେ ବ୍ୟଙ୍ଗ ବିଦ୍ରୁପ କରିବା ଚାଲୁ ରଖିଥିଲେ । ଶେଷରେ ସେମାନଙ୍କର ବ୍ୟବହାର ଏତେ ଅମାନୁଷିକ ହୋଇଗଲା ଯେ ସୁଧାମଣି ସମୁଦ୍ରକୁ ଡେଇଁ ଆତ୍ମହତ୍ୟା କରିବାକୁ ସ୍ଥିର କରିନେଲେ । ସେ ଜଗତ୍ ମାତାଙ୍କୁ କାନ୍ଦି ପ୍ରାର୍ଥନା କଲେ "ମୁଁ କଣ ସତରେ ଏପରି ବଦମାସ ଝିଅ ? ଘର ଲୋକମାନେ କାହିଁକି ସେମାନଙ୍କର ମୋ ପ୍ରତି ନିଷ୍ଠୁରତା ଚାଲୁ ରଖିଛନ୍ତି ? ଲୋକମାନେ ଖାଲି ମୁଗ୍ଧକାରୀ ମାନଙ୍କୁ ହିଁ ଭଲ ପାଆନ୍ତି । ମୁଁ ଏ ଦୁନିଆଁରେ ଅନାବିଳ ପ୍ରେମ କେଉଁଠି ଦେଖି ପାରୁନାହିଁ । ହେ ମୋର ମାତା, ମୋତେ ସବୁ ମାୟାପରି ହିଁ ଲାଗୁଛି । ହେ ମା ! ତମେ କଣ ଭକ୍ତ ମାନଙ୍କର ରକ୍ଷା କାରିଣୀ ନୁହଁ ? ମୁଁ କଣ ତୁମର ସନ୍ତାନ ନୁହେଁ ? ତା ହେଲେ ତମେ ମଧ କଣ ପରିତ୍ୟାଗ କରିଛ ? ଯଦି ଏହା ସତ୍ୟ ତେବେ

ମୁଁ ମିଛରେ କାହିଁକି ଏ ଦେହ ନେଇ ରହିବି ? ଏ ଦେହ ମୋ ପାଇଁ ଓ ଅନ୍ୟ ମାନଙ୍କ ପାଇଁ ମଧ୍ୟ ଗୋଟିଏ ବୋଝ ହୋଇ ପଡିଛି । ହେ ସମୁଦ୍ର ଜନନୀ ! ଏ ଝିଅକୁ ଗ୍ରହଣ କର ।" ମନସ୍ଥିର କରି ସୁଧାମଣି ସମୁଦ୍ର ଆଡେ ଦଉଡି ବାକୁ ଆରମ୍ଭ କଲେ, ଏବଂ ଠିକ୍ ଝାମ୍ପ ଦେବା ଆଗରୁ ସେ ଅନନ୍ତ ସମୁଦ୍ରକୁ ଦେବୀ ରୂପରେ ଦର୍ଶନ କଲେ । ବହିର୍ଜଗତର ଜ୍ଞାନ ଶୂନ୍ୟ ହୋଇ ସେ ତତ୍‌କ୍ଷଣାତ୍ ସମାଧୀସ୍ଥ ହୋଇ ପଡି ରହିଲେ ।

ସୁଧାମଣିଙ୍କର ସଂପର୍କୀୟ ଭାଇ ଏବଂ ଭକ୍ତ ହର୍ଷନ ସୁଧାମଣିଙ୍କର ଇଡାମାନ୍ନେଲରୁ ଦଉଡି ଯିବା ସମୟରେ ଶେଷ ପ୍ରାର୍ଥନା ଶୁଣିଥିଲେ । ସେ ତାଙ୍କର ଅଭିପ୍ରାୟ ବୁଝିପାରି ସୁଧାମଣିଙ୍କର ପଛେ ପଛେ ଯାଉଥିଲେ । ତାଙ୍କୁ ପାଣି କୂଳରେ ଅଚେତ ଅବସ୍ଥାରେ ଦେଖି, ତାଙ୍କର ଜୀବିତାବସ୍ଥା ପାଇଁ ଭଗବାନଙ୍କୁ କୃତଜ୍ଞତା ଜଣାଇ, ଭକ୍ତି ସହ ସୁଧାମଣିଙ୍କୁ ଉଠାଇ ଇଡାମାନ୍ନେଲକୁ ନେଇ ଆସିଥିଲେ । ଯଦିବା କେତେକେ ତାଙ୍କୁ ପାଗଳ ବୋଲି ସିଦ୍ଧାନ୍ତ କରିନେଇଥିଲେ, ଅନେକ ଗ୍ରାମବାସୀ ତାଙ୍କ ପ୍ରତି ସମବେଦନା ଦେଖାଇଥିଲେ । ସେମାନେ ଜଣେ ଜଣକୁ କହିଲେ "ଦେଖ ଏ ବିଚାରୀ ଝିଅର ଅବସ୍ଥା କଣ ? କେହି ଦେଖାଶୁଣା କରିବାକୁ ନାହାନ୍ତି । ଏପରିକି ତାର ନିଜ ବାପା ମା ମଧ୍ୟ ତାଙ୍କୁ ତ୍ୟାଗ କରି ଦେଇଛନ୍ତି । ଯେତେବେଳେ ତାର ଭଲ ସ୍ୱାସ୍ଥ୍ୟ ଥିଲା, ସେ ଦିନ ରାତି ସେମାନଙ୍କ ପାଇଁ ଖଟୁଥିଲା, କିନ୍ତୁ ବର୍ତ୍ତମାନ ସେମାନେ ତା ପାଇଁ କିଛି ବି କରିବା ପାଇଁ ଆଗ୍ରହ ଦେଖାଇ ନାହାନ୍ତି । ସେ କଣ ସେମାନଙ୍କର ଝିଅ ନୁହଁ ?"

କେତେଜଣ ପଡୋଶୀ ସ୍ତ୍ରୀ ଲୋକ ଦୟାକରି ସୁଧାମଣିଙ୍କୁ ସ୍ନେହ ସହ ସେବା ଶୁଶ୍ରୂଷା କରିବାକୁ ଲାଗିଲେ । ଏହି ସ୍ତ୍ରୀ ଲୋକମାନଙ୍କର ପ୍ରତି ପିଲାବେଳରୁ ସୁଧାମଣିଙ୍କ ବହୁତ ଶ୍ରଦ୍ଧା ଥିଲା । ସେମାନେ ସବୁ ବର୍ତ୍ତମାନ କୃଷ୍ଣଭାବ ସମୟରେ ଆସୁଥିବା ଭକ୍ତ ଥିଲେ ଓ ସେମାନେ ସୁଧାମଣିଙ୍କର ମାହାତ୍ମ୍ୟ ଓ ସମସ୍ତଙ୍କୁ ଭଲ ପାଇ ଗ୍ରହଣ କରିବାର ଶକ୍ତିକୁ ବୁଝି ପାରିଥିଲେ । ସେମାନେ ତାଙ୍କର ଉନ୍ନତ ଭଗବତ୍ ଭାବର ଉନ୍ମାଦତା କୁ କିଛି ଭାଗ ବୁଝିପାରୁଥିଲେ । ତେଣୁ ଯେତେବେଳେ ଦରକାର ପଡୁଥିଲା, ସେମାନେ ତାଙ୍କୁ ବିପଦରୁ ଉଦ୍ଧାର କରୁଥିଲେ ।

ଛେଲମ୍ମା ଓ ତାଙ୍କର ଝିଅ ବତ୍ସଳା ଇଡାମାନ୍ନେଲ ସାମ୍ନାରେ ଥିବା ଗୋଟିଏ ଜାଗାରେ ରହୁଥିଲେ । ବତ୍ସଳା ସୁଧାମଣିଙ୍କୁ ନିଜର ଅତି ଘନିଷ୍ଠ ବନ୍ଧୁ ରୂପେ ତାଙ୍କୁ ବହୁତ ସ୍ନେହ କରୁଥିଲେ । ସେମାନେ ଇଡାମାନ୍ନେଲର ଏତେ ପାଖରେ ରହୁଥିଲେ

ଯେ ଯେତେବେଳେ ସୁଧାମଣି ଅଚେତ ଅବସ୍ଥାରେ ପାଣିରେ ପଡିଯାଉଥିଲେ, ସେମାନେ ସାଙ୍ଗେ ସାଙ୍ଗେ ତାଙ୍କୁ ପାଣିରୁ ଓଟାରି ଆଣି, ପୋଛା ପୋଛି କରି ଶୁଖିଲା ଲୁଗା ପିନ୍ଧାଇ ଦେଉଥିଲେ । ପୁଷ୍ପବତୀ ଓ ତାଙ୍କ ସ୍ୱାମୀ ଭାସ୍କରନ ମଧ୍ୟ ସୁଧାମଣିଙ୍କର ଆଉ ଗୋଟିଏ ପରମ ଭକ୍ତ ଥିଲେ । ସେମାନେ ସୁଧାମଣିଙ୍କୁ ନିଜର ଝିଅ ପରି ଭଲ ପାଉଥିଲେ ଓ ତାଙ୍କ ପରିବାରର ତାଙ୍କ ପ୍ରତି ଦୁର୍ବ୍ୟବହାର ଦେଖି ଭାରି ମନ କଷ୍ଟ କରୁଥିଲେ । ଇଡାମାନ୍ନେଲ ପାଖରେ ରହୁଥିବା ଦୁଇ ଭଉଣୀ ରମା ଓ ରତି ସୁଧାମଣିଙ୍କୁ ପ୍ରାଣ ପ୍ରିୟ କରି ରଖିଥିଲେ । ସୁଧାମଣିଙ୍କର ମାଉସୀ ଝିଅ ଭଉଣୀ ଐଶା ସୁଧାମଣିଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ଏହି ସ୍ତ୍ରୀ ଲୋକମାନେ ସୁଧାମଣିଙ୍କର ଗଭୀର ତପସ୍ୟା ସମୟରେ ତାଙ୍କୁ ସେବା କରିବାର ସୌଭାଗ୍ୟ ପାଇଥିଲେ । ଅନେକ ସମୟରେ ସୁଧାମଣି ସଂପୂର୍ଣ୍ଣ ବାହ୍ୟ ଜ୍ଞାନ ଶୂନ୍ୟ ହୋଇ କାଦୁଅ ବା ଅପରିଷ୍କାର ଜାଗାରେ ପଡି ରହିଥିବା ବେଳେ ଏଇ ସ୍ତ୍ରୀ ଲୋକମାନେ ତାଙ୍କୁ ଖୋଜି ଆଣୁଥିଲେ । ସେମାନେ ଯଦି ତାଙ୍କୁ ପ୍ରକୃତିସ୍ଥ ଅବସ୍ଥାକୁ ଆଣି ନପାରିଲେ, ତାଙ୍କୁ ଟେକି ନିଜ ଘରକୁ ନେଇ ଯାଉଥିଲେ । ସାନ ଛୁଆପରି ତାଙ୍କ ଦାନ୍ତ ଘଷେଇ, ଗରମ ପାଣିରେ ଗାଧୋଇ ପରିଷ୍କାର କରି, ସଫା ଲୁଗା ପିନ୍ଧାଇ, ନିଜ ହାତରେ ଖୁଆଉ ଥିଲେ । ଆଗ ପରି ସୁଭଗନ ସବୁବେଳେ ସୁଧାମଣିଙ୍କର ଭାବାବସ୍ଥା ପ୍ରତି ବିଦ୍ୱେଷ ପ୍ରଦର୍ଶନ କରିଥିଲେ । କୃଷ୍ଣଭାବ ସମୟରେ ଭାବାବିଷ୍ଟତା ପରିବାର କୁ ବଦନାମ କରୁଛି ବୋଲି କହି ସୁଧାମଣିଙ୍କୁ କୃଷ୍ଣଭାବ ବନ୍ଦ କରିବା ପାଇଁ ବହୁତ ଚାପ ଦେଇଥିଲେ । ତାଙ୍କର ଦାବୀ ପୁରଣ ନହେବା ଫଳରେ ସେ ଆହୁରି କଡା ପଦକ୍ଷେପ ନେବା ପାଇଁ ସିଦ୍ଧାନ୍ତ କରିନେଲେ ।

ଦିନେ ଭାବଦର୍ଶନ ପରେ ପରେ ସୁଧାମଣି ଘର ଭିତରକୁ ପଶିଲା ବେଳକୁ ସୁଭଗନ ଭୟଙ୍କର ରୂପ ଧରି ଦୁଆର ମୁହଁରେ ଠିଆ ହୋଇଥାନ୍ତି । ସେ ଗର୍ଜନ କଲେ "ଏ ଘର ଭିତରେ ପଶ ନାହିଁ ! ଅଲାଜୁକୀ ପରି ସେ ନାଚ, ଗୀତ ସବୁ ବନ୍ଦ କର । ତା ପରେ ଯାଇ ତୋତେ ଘର ଭିତରକୁ ଆସିବାକୁ ଦିଆଯିବ !" ତାଙ୍କର ଭର୍ତ୍ସନାକୁ ଦୈବୀ ଆଦେଶ ମନେ କରି ସୁଧାମଣି କିଛି ନ କହି ଘର ସାମ୍ନାରେ ବସିଲେ । ପୁଣି ବଡ ପାଟିରେ ସୁଭଗନ ତାଙ୍କୁ ସେଠାରେ ମଧ୍ୟ ବସିବାକୁ ନିଷେଧ କଲେ । ଏହାପରେ ସୁଧାମଣି ସୁଭଗନଙ୍କୁ ମୁଠାଏ ବାଲି ଦେଇ କହିଲେ "ଏ ଜାଗା ଯଦି ତମର, ତେବେ ଦୟାକରି କେତେ ବାଲି ଅଛି ଗଣ" ।

ସେହି ଦିନ ଠାରୁ ସେ ବାହାରେ ଆନନ୍ଦରେ ରହିଲେ । ଆକାଶ ତାଙ୍କର ଛାତ, ପୃଥିବୀ ତାଙ୍କର ବିଛଣା, ଜ୍ୟୋତ୍ସ୍ନା ତାଙ୍କର ଆଲୋକ, ଆଉ ସମୁଦ୍ରର ପବନ ତାଙ୍କର ପଙ୍ଖା ହେଲା । ଏହି ବିଳାସ ବର୍ଜିତ କଠୋର ଅବସ୍ଥା ତାଙ୍କର ତ୍ୟାଗ ଓ ଦେବୀ ସାଧନାକୁ ଆହୁରି ଘନୀଭୁତ କଲା ।

ଉପରକୁ ହାତ ଉଠାଇ କାନ୍ଦି କାନ୍ଦି ଛୋଟ ଛୁଆ ମା ପାଖରେ ଅଳି କଲା ପରି ସୁଧାମଣି ଯୋରରେ କାନ୍ଦି ଉଠିବେ "ଅମ୍ମା ଅମ୍ମା ... ମତେ ଏଠି ଦର୍ଶନ ଆଶାରେ ପଡିରହି ମରିଯିବାକୁ ଛାଡି ଦେଇଛୁ ? ଦିନ ପରେ ଦିନ ବିତି ଯାଉଛି, ତଥାପି ମୋ ମନରେ ତୋର ଚିନ୍ମୟୀ ରୁପ ନଦେଖି ଟିକିଏ ଶାନ୍ତି ନାହିଁ । ମୋର ସବୁ ଆଶା ତୋ ଉପରେ । ମତେ କଣ ତ୍ୟାଗ କରିଛୁ ? ମୋର ଦୟନୀୟ ଅବସ୍ଥା କଣ ଦେଖୁନାହୁଁ ?"

ଏହି ଅବସ୍ଥାରେ ସୁଧାମଣି ଏହି ଗୀତଟି ଲେଖିଥିଲେ -

ହେ ଦେବୀ ଅମ୍ବିକା, ସୁନ୍ଦରୀ ପରମେଶ୍ୱରୀ
ଭକ୍ତବତ୍ସଳା ଗୋ, ବସ ପୀଠରେ ମୋହରି ।
ଭକତର ଦୁଃଖ ହର ସର୍ବଶକ୍ତିମୟୀ
ଜଗତର ରକ୍ଷାକର୍ତ୍ତ୍ରୀ ତୁମେ ମା ଚିନ୍ମୟୀ ॥

ମହିମା ଗାଏ ଏ ଦୀନ ଅଖଣ୍ଡ ବିଶ୍ୱାସେ
ପ୍ରତୀକ୍ଷାର ଦିନ ଯାଏ ଦରଶନ ଆଶେ
ଅହର୍ନିଶି କରେ ମୁହିଁ ତବ ଜୟଗାନ
ମୋର ପ୍ରାଣଦାତ୍ରୀ, ତୁହି ଜୀବର ଜୀବନ ।।

ଅସରନ୍ତି ଦୁଃଖ ଭୋଗେ କିବା ଅପରାଧେ
ତୋ କୋପେ ଜଳଇ,ମୋର ଭାଗ୍ୟ ଦାଉ ସାଧେ ।
ମା ଆଖିରେ ପରା ସବୁ ସନ୍ତାନ ସମାନ
ଅଜ୍ଞାନୀର ଦୁଃଖ ହରି କର ତା ପ୍ରମାଣ ॥

କରୁଣାର ବାରି ଝରୁ ଦିବ୍ୟ ତୋ ଦୃଷ୍ଟିରୁ
ଶ୍ୟାମାଶ୍ରୀମୁଖକୁ ଦେଖି ଏ ମୂଢ ଉଦ୍ଧରୁ ।

ସତେ କି ବୁଝୁନା ଲୁହ ମରମ ବେଦନା
ମୋ ନିଶ୍ୱାସେ ବହେ ତପ୍ତ ବିରହ ଯନ୍ତ୍ରଣା ॥

ଅନଳେ ଜାଳୁଛୁ କିଆଁ ଚନ୍ଦନର ବଣ
ଛାରଖାର ନ କରୁ ଏ ଦୁଃଖ ହୁତାଶନ ।
ପିଆସୀ ମୋ ମନ ଡାକେ ଦୁର୍ଗା ଦୁର୍ଗା ଖାଲି
ତୋ ଚରଣ ବିନା ଆଉ ସବୁ ପଥ ଭୁଲି ॥

ଏ ମନ ଚାହେଁନା ମା ଗୋ ସ୍ୱର୍ଗ ଅବା ମୁକ୍ତି
ତୋ ଲାଗି ମୋ ମନେ ଥାଉ ଶୁଦ୍ଧ ଶ୍ରଦ୍ଧା ଭକ୍ତି ॥

ସୁଧାମଣିଙ୍କର ତପରେ ଗଭୀରତା ଅତ୍ୟଧିକ ବଢ଼ିଯିବା ଫଳରେ ତାଙ୍କ ଶରୀର ଗରମ କୋଇଲା ପରି ସବୁବେଳେ ଉତପ୍ତ ହେବାକୁ ଲାଗିଲା । ଭୀଷଣ ଗରମରେ ତାଙ୍କର ଲୁଗା ପିନ୍ଧିବା ଅସହ୍ୟ ହୋଇ ପଡିଲା । ଦେହ ଜଳି ଯାଉଥିବା ତାପରୁ ଶାନ୍ତି ପାଇବା ପାଇଁ ସେ ପାଣି କୂଳରେ ଥିବା କାଦୁଅ ବାଲିରେ ଗଡୁଥିଲେ । ଅନେକ ସମୟରେ ପାଣି ଭିତରେ ଘଂଟା ଘଂଟା ଧରି ଠିଆ ହୋଇ ତପସ୍ୟାରତ ରହୁଥିଲେ । ସୁଧାମଣିଙ୍କର ଅନୁମତି ନେଇ ଉତ୍ସାହୀ ଭକ୍ତମାନେ ନିଜ ଘରେ ସ୍ୱତନ୍ତ୍ର ପୂଜା ପର୍ବରେ ତାଙ୍କୁ ନିମନ୍ତ୍ରଣ କରୁଥିଲେ । ସେମାନେ ଭାବୁଥିଲେ ତାଙ୍କର ଉପସ୍ଥିତି ଭକ୍ତମାନଙ୍କର ଧନଧାନ୍ୟ, ସମୃଦ୍ଧି ବଢାଇ ଦେବ । ଅନେକ ପରିବାର ଆସି ଇଡାମାନ୍ନେଲରୁ ସୁଧାମଣିଙ୍କୁ ବସ୍‌ରେ ନେଇ ଯାଉଥିଲେ । ବେଳେ ବେଳେ ସୁଧାମଣି ବସ୍ ଷ୍ଟେସନରେ ବସ ପାଇଁ ଅପେକ୍ଷା କରୁକରୁ ଭଗବତ ଭାବରେ ଉନ୍ମତ ହୋଇ ପଡୁଥିଲେ । ବାହାର ଦୁନିଆକୁ ଭୁଲି ଯାଇ ସେ ଆନନ୍ଦରେ ହସି ହସି ମାଟିରେ ଗଡୁଥିଲେ । ସାଧାରଣ ଲୋକମାନେ ତାଙ୍କର ଏପରି ଭାବାବିଷ୍ଟ ଅବସ୍ଥାକୁ ବୁଝି ନପାରି ଆଶ୍ଚର୍ଯ୍ୟ ହୋଇ ତାଙ୍କ ଚାରିପଟେ ରୁଣ୍ଡ ହୋଇ ଦେଖୁଥିଲେ । କେତେକ ତିରସ୍କାର କରୁଥିଲେ ଓ କେତେକ ପାଗଳୀ ବୋଲି କହି ଚିଡାଉଥିଲେ । ପିଲାମାନେ ତାଙ୍କର ଚାରିପଟେ ଘେରି ଥଟ୍ଟା ତାମସା କରୁଥିଲେ, କିନ୍ତୁ ସୁଧାମଣି ଏସବୁ ବୁଝିବା ଅବସ୍ଥାରେ ନଥାଇ ନିର୍ବିକାର ରହୁଥିଲେ । ଐଶ୍ୱରିକ ଜଗତରେ ତାଙ୍କର ମନ ନିମଗ୍ନ ଥିଲା ବେଳେ ସେ ସାଧାରଣ

ମନୁଷ୍ୟର ତିରସ୍କାର ଶୁଣି ପାରନ୍ତେ ବା କିପରି ? ଭଗବତ୍ ପ୍ରେମରେ ମତୁଆଲା କିଶୋରୀ ମନ ଓ ହୃଦୟକୁ ବା କୌଣସି ରକମର ନିଷ୍ଠୁର ପରିହାସ କେବେ ଛୁଇଁ ପାରିବ ?

ପରମେଶ୍ୱରୀ ମାତାଙ୍କ ବିରହର ତୀବ୍ର ଯନ୍ତ୍ରଣା ଅନୁଭବ କରି ସୁଧାମଣି ବେଳେ ବେଳେ କାନ୍ଦି ଆର୍ତ୍ତନାଦ କରି ଉଠୁଥିଲେ । ଛୋଟ ପିଲାମାନେ ତାଙ୍କର ଏପରି ଅବସ୍ଥା ଦେଖି ତାଙ୍କୁ ବିକଳ ହୋଇ ନିବେଦନ କରୁଥିଲେ "ଅପା, କାନ୍ଦ ନାହିଁ! ତୁମର କଣ ମୁଣ୍ଡ ବିନ୍ଧୁଛି ?" ପରେ ସେମାନେ ବୁଝିପାରିଥିଲେ ସେ ଦେବୀ ଦର୍ଶନ ପାଇଁ ହିଁ କାନ୍ଦୁଛନ୍ତି । ଏହିପରି ଅସମ୍ଭାଳ ଅବସ୍ଥାରେ ଥରେ ଥରେ ତାଙ୍କର ଗୋଟିଏ ସାନ ଭଉଣୀ ଶାଢୀ ପିନ୍ଧି, ମୁକ୍ତ କେଶ ଛାଡି ଦେବୀଙ୍କର ଭଙ୍ଗୀରେ ତାଙ୍କ ସାମ୍ନାରେ ଠିଆ ହୁଅନ୍ତି । ଆନନ୍ଦ ବିଭୋର ହୋଇ ସୁଧାମଣି ଦଉଡି ତାଙ୍କୁ କୁଣ୍ଢାଇ ପକାନ୍ତି । ଏପରି ଭାବାବିଷ୍ଟ ଥିବା ଅବସ୍ଥାରେ କୌଣସି ସୁନ୍ଦରୀ ଝିଅଙ୍କୁ ଦେଖିଲେ ସେ ଉତ୍‌ଫୁଲ୍ଲ ହୋଇ ତା ପାଖକୁ ଦଉଡି ଯାଆନ୍ତି । ତାଙ୍କୁ ଦେବୀ ବୋଲି ଭାବି କୁଣ୍ଢାଇ ଚୁମ୍ବନ ଦିଅନ୍ତି ।

ସୁଗୁଣାନନ୍ଦ ନିଜ ଝିଅର ନିଜ ପ୍ରତି ଏପରି ଅବହେଳା ଦେଖି ଦୟାକରି ତାଙ୍କର ଖରା ବର୍ଷାରୁ ସୁରକ୍ଷା ପାଇଁ ଅନେକ ଥର ଚାଳ ଛାତ କରିବା ପାଇଁ ଚେଷ୍ଟା କରିଥିଲେ । ସେ ଯେତେବେଳେ ତପ ମଗ୍ନ ହୋଇ ପଡି ରହୁଥିଲେ ତାଙ୍କ ବାପା ମା ଏହି ସମୟରେ ସୁଯୋଗ ନେଇ ତାଙ୍କ ଉପରେ ମଂଚ ଗଢିବାକୁ ଚେଷ୍ଟା କରୁଥିଲେ । ସୁଧାମଣି ଯେତେବେଳେ ସାଧାରଣ ଅବସ୍ଥାକୁ ଆସି ପ୍ରକୃତିସ୍ଥ ହୋଇ ଯାଉଥିଲେ ସେ ସେହି ସ୍ଥାନରୁ ଘୁଂଚିଯାଇ କହୁଥିଲେ "ଏହା ମଧ୍ୟ ଗୋଟିଏ ଦୁଃଖର କାରଣ ହୋଇଯିବ । ତୁମେ କେତେଦିନ ପାଇଁ ଏହାକୁ ଏଠାରେ ରଖିପାରିବ ? ତମେମାନେ ଯଦି ଏଠୁ ଚାଲିଯିବ ଏହାକୁ କିଏ ହେପାଜତ କରିବ ? ଏସବୁ ଦ୍ୱାରା ପ୍ରଭାବିତ ହୋଇ ମତେ ଗରମ, ଶୀତ, ବର୍ଷା, ସବୁକିଛି ସହି ତା ଉପରକୁ ଉଠିବାକୁ ସକ୍ଷମ ହେବାକୁ ପଡିବ ।"

ଦେବୀମାତାଙ୍କ ଦର୍ଶନର ତୀବ୍ର ଆକାଂକ୍ଷାରେ ଅଭିଭୂତ ହୋଇ ସୁଧାମଣି ଦୁଇ ବର୍ଷର ପିଲା ପରି ବ୍ୟବହାର କରିବାକୁ ଆରମ୍ଭ କଲେ । ନିଜକୁ ଶିଶୁ ମନେକରି ମାର

ଆଶ୍ରା ଖୋଜିବାର ଆବେଗ ଏତେ ନିବିଡ ଥିଲା ତାହା ପରବର୍ତ୍ତୀ ଘଟଣାରୁ ଦୃଷ୍ଟାନ୍ତ ମିଳେ । ଥରେ ସୁଧାମଣି ତପ ଭଙ୍ଗ ପରେ ଭୀଷଣ ଭୋକ ଓ ତୃଷ୍ଣା ଅନୁଭବ କଲେ । ସେ ଠିକ୍ ସେହି ସମୟରେ ତାଙ୍କର ପଡୋଶୀ ପୁଷ୍ପବତୀ ତାଙ୍କ ଛୁଆକୁ ସ୍ତନ ପାନ କରାଉଥିବାର ଦେଖିଲେ । ସୁଧାମଣି ସିଧା ତାଙ୍କ ପାଖକୁ ଯାଇ, ଶିଶୁଟିକୁ ସ୍ତନ ପାଖରୁ ଉଠାଇ, ନିଜେ ତାଙ୍କ କୋଳରେ ଶୋଇ ସ୍ତନରୁ କ୍ଷୀର ପାନ କରିବାକୁ ଆରମ୍ଭ କଲେ । ସୁଧାମଣିଙ୍କର ଏପରି ଅଦ୍ଭୁତ ବ୍ୟବହାର ଦେଖି ପୁଷ୍ପବତୀ ଅଡୁଆ ଅନୁଭବ ନକରି ବରଂ ସୁଧାମଣିଙ୍କ ପ୍ରତି ମାତୃତ୍ୱର ଅସରନ୍ତି ମମତା ଅନୁଭବ କଲେ । ଏପରି ଘଟଣା ଅନେକଥର ଘଟିବାକୁ ଲାଗିଲା, ପୁଷ୍ପବତୀ ଏଥର ତାଙ୍କର ଶିଶୁଟିକୁ ନିରାପଦରେ ରଖି ସୁଧାମଣିଙ୍କର ଦୃଷ୍ଟି ବାହାରେ ରଖି କ୍ଷୀର ପିଆଇବାକୁ ସ୍ଥିର କଲେ ।

ଦିନେ ସୁଧାମଣି ଅଚେତ ଅବସ୍ଥାରେ ବାଲି କାଦୁଅରେ ପାଣି ପାଖରେ ପଡିଥାନ୍ତି । କେତେଜଣ ଭକ୍ତ ତାଙ୍କୁ ଆଖି, ନାକ ପୁଡା, କାନ, ବାଳ ଚାରିଆଡେ ବାଲି କାଦୁଅ ଭର୍ତ୍ତି ଅବସ୍ଥାରେ ପଡିବା ଦେଖି ଆତଙ୍କିତ ହେଲେ । ଆଖିରୁ ଅବିରତ ଅଶ୍ରୁଧାର ବୋହି ଶ୍ୟାମଳ ଗାଲରେ ଚିହ୍ନ ରହି ଯାଇଥାଏ । ଭକ୍ତମାନେ ସୁଗୁଣାନନ୍ଦଙ୍କୁ ତାଙ୍କର ଦୟନୀୟ ଅବସ୍ଥା ବିଷୟରେ ଜଣାଇଥିଲେ କିନ୍ତୁ ସେ କିଛି ଗୁରୁତ୍ୱ ଦେଲେ ନାହିଁ । ତାଙ୍କର ଏପରି ଅନାଦର ଭାବ ଦେଖି ସେମାନେ ତାଙ୍କୁ ଘର ଭିତରକୁ ଟେକି ଆଣି ଚେତା ଆଣିବାକୁ ଚେଷ୍ଟା କଲେ । ସେମାନେ ତାଙ୍କର ଦେହରୁ କାଦୁଅ ପୋଛି ସଫା କରି କିଛି ନ ଭାବି ତାଙ୍କ ବଡ ଭାଇଙ୍କର ଖଟ ଉପରେ ବିଶ୍ରାମ କରିବା ପାଇଁ ଶୁଆଇ ଦେଇ ଚାଲିଗଲେ ।

ଘରକୁ ଫେରି ସୁଭଗନ ସୁଧାମଣିଙ୍କୁ ତାଙ୍କ ଖଟ ଉପରେ ଶୋଇଥିବାର ଦେଖି ଭୀଷଣ କ୍ରୋଧାନ୍ୱିତ ହୋଇ ଖଟକୁ ଜୋରରେ ହଲାଇବାକୁ ଲାଗିଲେ । ସେ କ୍ରୋଧରେ ଉନ୍ମତ ହୋଇ ଚିତ୍କାର କଲେ "ଏ ଚଣ୍ଡାଳୁଣୀକି କିଏ ମୋ ଖଟ ଉପରେ ଶୁଆଇଛି ?" ଖଟଟି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା, ତଥାପି ସୁଧାମଣି ସେଥିରେ ଧ୍ୟାନମଗ୍ନ ହୋଇ ପଡିରହିଥିଲେ । ପରେ ସେ ଯେତେବେଳେ ସେପରି ବାଧାବିଘ୍ନ ସମ୍ମୁଖୀନ ହେବାର କଥା ଶୁଣିଲେ, ଖାଲି କହିଥିଲେ "ଯାହା ହେଉଛି ସବୁ ହିଁ ପ୍ରଭୁଙ୍କର ଇଚ୍ଛା" । ଠିକ୍ ତା

ପରଦିନ ଦର୍ଶନ ସମୟରେ ଏସବୁ ଘଟଣା ନଜାଣିଥିବା ଜଣେ ବଢେଇ ଭକ୍ତ ସୁଧାମଣିଙ୍କୁ ଖଟ, ଟେବୁଲ ଓ ଚୌକୀ ଉପହାର ଦେଇଥିଲେ । ଏହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଭକ୍ତ ଜଣଙ୍କୁ ଯେତେବେଳେ ଏ ବିଷୟରେ ପଚରା ଗଲା ସେ କହିଲେ ଯେ ତାଙ୍କ ସ୍ୱପ୍ନରେ ଶ୍ରୀକୃଷ୍ଣ ଆବିର୍ଭାବ ହୋଇ ସୁଧାମଣିଙ୍କ ପାଇଁ ଏହି ଆସବାବ ଆଣିବା ପାଇଁ ଆଦେଶ ଦେଇଥିଲେ ।



## ସପ୍ତମ ଅଧ୍ୟାୟ

## ମନୁଷ୍ୟ ଠାରୁ ଅନେକ ଗୁଣରେ ଭଲ

କେବଳ ମନୁଷ୍ୟ ମାନଙ୍କର ଯେ କଥା କହିବାର କ୍ଷମତା ଅଛି ତାହା ନୁହଁ । ପଶୁ ପକ୍ଷୀ, ତରୁ ଲତାଙ୍କର ମଧ୍ୟ ଏ କ୍ଷମତା ଅଛି, କିନ୍ତୁ ଆମ ମାନଙ୍କର ସେମାନଙ୍କୁ ବୁଝି ପାରିବାର ଶକ୍ତି ନାହିଁ । ଯାହାର ଅନ୍ତର୍ଦୃଷ୍ଟି ଅଛି ସେ ହିଁ କେବଳ ଏସବୁ ଜାଣିପାରେ ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ଅହିଂସା ପ୍ରତିଷ୍ଠାୟାମ୍ ତତ୍
ସନ୍ନିଧ୍ୟୋ ବୈରତ୍ୟାଗଃ ॥

ସାଧୁ ମାନେ ଅହିଂସାରେ ପ୍ରତିଷ୍ଠିତ ହୋଇଥିବା ଯୋଗୁଁ କୌଣସି ପ୍ରାଣୀ ସେମାନଙ୍କ ପାଖରେ ହିଂସା ଆଚରଣ କରିପାରନ୍ତି ନାହିଁ ।

**ପାତଞ୍ଜଳି ଯୋଗ ସୂତ୍ର**
**ସାଧନା ପାଦମ୍, ପଦ୍ୟ ୩୫**

ସୁଧାମଣି ବାହାରେ ରହୁଥିବା ସମୟରେ କୁକୁର, ବିଲେଇ, ଗାଈ, ଛେଳି, ସାପ, ଗୁଣ୍ଡୁଚି ମୂଷା, ପାରା, ଶୁଆ ଶାରୀ, ଛଂଚାଣ ଇତ୍ୟାଦି ଜୀବଜନ୍ତୁମାନେ ତାଙ୍କର ଅନ୍ତରଂଗ ବନ୍ଧୁ ହୋଇ ତାଙ୍କ ପାଖରେ ରହିବାକୁ ଭଲ ପାଉଥିଲେ । ନିର୍ମଳ ପ୍ରେମକୁ କିପରି ସାମୟିକ ଆକର୍ଷଣ ବା ଘୃଣା ଛୁଇଁ ପାରେ ନାହିଁ ଏବଂ ଏହା କିପରି ଜୀବଜନ୍ତୁଙ୍କର ପରସ୍ପର ପ୍ରତି ପ୍ରାକୃତିକ ଶତ୍ରୁତା ଥିବା ସତ୍ୱେ ସମନ୍ୱୟ ସୃଷ୍ଟି କରିପାରେ ଏହି ସାଧନା ସମୟରେ ସେ ତାହା ଦେଖାଇଥିଲେ । ଯେଉଁ ସମୟରେ ତାଙ୍କର ନିଜର ଜ୍ଞାତି ପରିବାର ତାଙ୍କ ଆଧ୍ୟାତ୍ମିକ ଜୀବନକୁ ବିରୋଧ କରି ତାଙ୍କୁ ପରିତ୍ୟାଗ କରିଥିଲେ ସେତେବେଳେ ଏହି ପଶୁ ପକ୍ଷୀମାନେ ତାଙ୍କ ଅନୁଗତ ହୋଇ ସେବା କରିଥିଲେ । ସେମାନେ ଯେ ସୁଧାମଣିଙ୍କୁ ମଣିଷ ମାନଙ୍କ ଠାରୁ ବେଶୀ ଭଲ ବୁଝି ପାରିଥିଲେ ତାହା ସେମାନଙ୍କର ହାବ ଭାବରଭ ସ୍ପଷ୍ଟ ପ୍ରକାଶିତ ହୁଏ ।

ସେହି ସମୟରେ ସୁଧାମଣି ନିଜ ଘରର ବିଷୟୀ ଲୋକଙ୍କ ଦ୍ୱାରା ପ୍ରସ୍ତୁତ ଖାଦ୍ୟ କୌଣସି ମତେ ଖାଇ ପାରୁ ନଥିଲେ । କେବଳ ମନ୍ତ୍ର ଜପ ସହ ପ୍ରସ୍ତୁତ ହୋଇଥିବା ଖାଦ୍ୟ ଖାଇବାକୁ ସକ୍ଷମ ହେଉଥିଲେ । ଦିନେ ସେ ମନ୍ଦିରରୁ ତପ ସାଧନା ପରେ ବାହାରି ଆସି ଭୀଷଣ ଭୋକ ଓ ଶୋଷ ଅନୁଭବ କରିଥିଲେ । ମନ୍ଦିର ଆଗରେ ତାଙ୍କର ପରିବାର ଗାଈଙ୍କୁ ଦେଖି ଭଗବାନଙ୍କର ଦାନ ବୋଲି ମନେ କରିଥିଲେ ଓ ନିଜକୁ ଗୋଟିଏ ବାଛୁରୀ ଭାବି ସେ ସିଧା ଗାଈର ପହ୍ନାରେ ମୁହଁ ରଖି ଦୁଧ ପିଇବାକୁ ଆରମ୍ଭ କଲେ । ଗାଈଟି ଠିକ୍ ଜାଗାରେ ଗୋଡ ରଖି ସୁଧାମଣିଙ୍କୁ ଆନନ୍ଦରେ ପହ୍ନା ଦେଖାଇ, ତାଙ୍କର ଭୋକ ଶୋଷ ମେଂଟିବାରେ ସାହାଯ୍ୟ କରିଥିଲା । ସେହିଦିନ ଠାରୁ ପ୍ରତିଦିନ ଗାଈଟି ସୁଧାମଣି ତପସ୍ୟା ସାରି ମନ୍ଦିରକୁ ବାହାରିବା ଯାଏ ମନ୍ଦିର ଆଗରେ ଅପେକ୍ଷା କରି ବସି ରହୁଥିଲା । ସୁଧାମଣିଙ୍କୁ କ୍ଷୀର ପିଆଇବା ଆଗରୁ ଗାଈଟି ନିଜେ ଚରିବା କିମ୍ବା କଅଁଳା ବାଛୁରୀକୁ ମଧ ପିଆଇବାକୁ ଚାହୁଁ ନଥିଲା । ସୁଗୁଣାନନ୍ଦ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ସୁଧାମଣିଙ୍କ ପାଇଁ ଜଗି ବସୁଥିବା ଗାଈକୁ ଘଉଡାଇବା ପାଇଁ ଅନେକ ଚେଷ୍ଟା କଲେ । ସେ ଗାଈଟି କୌଣସି ମତେ ସେ ସ୍ଥାନରୁ ଘୁଂଚୁ ନଥିଲା ।

ଦିନେ କିଏ ଜଣେ ପଡୋଶୀ ଘରୁ ସୁଧାମଣିଙ୍କୁ ପିଇବା ପାଇଁ କ୍ଷୀର ଆଣିଲେ । ତାହା ଖାଂଟି ନଥିଲା । ସେଥିରେ କିଛି ପାଣି ମିଶି ଥିଲା । ସୁଧାମଣି ସେହିଦିନ ସିଦ୍ଧାନ୍ତ କଲେ ଯେ ସେ କେବଳ ଭଗବାନ ପଠାଇ ଥିବା ଦ୍ରବ୍ୟ ହିଁ ଖାଇବେ ଓ ପିଇବେ ।

ଏହି ସମୟରେ ଆଉ ଗୋଟିଏ ଆଶ୍ଚର୍ଯ୍ୟ ଜନକ ଘଟଣା ଘଟିଲା । ସୁଧାମଣିଙ୍କର ଜେଜେମା ସେଠାରୁ ଛଅ କିଲୋମିଟର ଦକ୍ଷିଣରେ ଭଣ୍ଡାରତୁରୁତୁ ଗ୍ରାମରେ ରହୁଥିଲେ । ଦିନେ ତାଙ୍କର ଦାଦା ରତ୍ନଦାସନ୍ ଗାଈ ମାନଙ୍କୁ ଗୁହାଳରୁ ଫିଟାଇ ଦାଣ୍ଡ ଦୁଆରକୁ ଆଣିଲେ । ସେଠାରେ ସେ ପ୍ରାୟ ଗାଈ ମାନଙ୍କୁ ଖୁଆନ୍ତି ଓ ଗାଧୋଇ ଦିଅନ୍ତି । ହଠାତ୍ ଗୋଟିଏ ଗାଈ ବାହାରି ସମୁଦ୍ର ଆଡକୁ ଯାଇ ପୁଣି ଉତ୍ତର ଦିଗକୁ ଜୋରରେ ଯିବାକୁ ଆରମ୍ଭ କଲା । ଗାଈଟି ଜୋରରେ ସମୁଦ୍ର କୂଳରେ ଦଉଡିଲା, ରତ୍ନଦାସନ୍ ତାକୁ ଧରିବା କଷ୍ଟକର ହୋଇ ପଡିଲା । ଶେଷରେ ଗାଈଟି ସୁଧାମଣିଙ୍କ ଗାଁ ଆଡେ ବାଟ ଭାଙ୍ଗି ସିଧା କେବେ ନ ଆସିଥିବା ଇଡ୍ଡାମାନ୍ନେଲ ଗ୍ରାମକୁ ଦଉଡିଲା । ସୁଧାମଣି ବସି ଧ୍ୟାନ କରୁଥିବା ଜାଗାକୁ ସିଧା ଦଉଡି ପୁରୁଣା ବନ୍ଧୁପରି ସ୍ନେହ ସହ ତାଙ୍କ ପାଖରେ

ମୁହଁ ଗୁଞ୍ଜି ତାଙ୍କୁ ଚାଟିବାକୁ ଲାଗିଲା । ସୁଧାମଣିର ଗଭୀର ତପସ୍ୟା ସରିବା ଯାଏ ଅନାଇ ରହିଲା ଓ ଅନେକ ସମୟ ପରେ ସୁଧାମଣି ଆଖିଖୋଲି ସାମାନ୍ୟ ଚିହ୍ନା ଲାଗୁଥିବା ଗାଈକୁ ଦେଖି ତା ପାଖକୁ ଗଲେ । ଏହି ସମୟରେ ଗାଈଟି ତାର ପଛ ଗୋଡ ଟେକି ସୁଧାମଣିଙ୍କୁ ତା ପହ୍ନାରୁ କ୍ଷୀର ପିଇବାକୁ ଆମନ୍ତ୍ରିତ କଲା । ସୁଧାମଣି ପହ୍ନାରୁ କ୍ଷୀର ପିଇଲେ ଓ ତାଙ୍କର ମାମୁଁ ଏ ଲୀଳା ଦେଖି ନିଜ ଆଖିକୁ ବିଶ୍ୱାସ ନକରି ଆଶ୍ଚର୍ଯ୍ୟରେ ମୁଣ୍ଡ ହଲାଇବାକୁ ଲାଗିଲେ ।

ଗାଈକୁ କେଉଁ ଅଦ୍ଭୁତ ଶକ୍ତି ସୁଧାମଣିଙ୍କ ପାଖକୁ ପଠାଇଲା ? ସେ ଜେଜେମାଙ୍କ ପାଖରେ ବହୁତ ସମୟ ରହିଥିବା ବେଳେ ସେ ଗାଈର ଯତ୍ନ ନେଇଥିଲେ, ତେବେ ସେଥିପାଇଁ କଣ ଏଇ ଗାଈ ଏପରି ଘଟଣା ଘଟାଇଥିଲା ? ଯେତେବେଳେ ସୁଧାମଣି ବାହାରେ ବସି ତପସ୍ୟା କରୁଥାନ୍ତି, ବେଳେ ବେଳେ ସାପ ମାନେ ଆସି ତାଙ୍କ ଦେହରେ ଗୁଡେଇ ହୋଇ ଯାଆନ୍ତି ଯେପରିକି ସେମାନେ ତାଙ୍କର ଚେତନାକୁ ଏଇ ବାହ୍ୟ ଦୁନିଆକୁ ଫେରାଇ ଆଣିବାକୁ ଚେଷ୍ଟା କରୁଛନ୍ତି । ଦିନେ ସୁଧାମଣି ପରିବାର ଲୋକଙ୍କର ଉତ୍ପୀଡନ ସହି ନପାରି ଇଡାମାନ୍ନେଲ ଛାଡି ଚାଲି ଯାଉଥିଲେ । ଜଣେ ପଡୋଶୀ ସ୍ତ୍ରୀ ଲୋକଙ୍କ ସହ ବାଟରେ ଭେଟ ହେଲା, ସେ ତାଙ୍କୁ ବୁଝାଇ ଶୁଝାଇ ପୁଣି ଶାନ୍ତିରେ ଘରକୁ ଫେରାଇ ଆଣିଲେ । ସାଙ୍ଗେ ସାଙ୍ଗେ ଘରେ ପହଂଚି ସୁଧାମଣି ପୂଜା ଘରେ ପଶି ଜଗତ ମାତାଙ୍କ ପାଖରେ ହୃଦୟର ଦୁଃଖ ବଖାଣିଲେ । ସେହି ସମୟରେ ସେ ଏହି ଜଣାଣଟି ଲେଖିଥିଲେ -

କାୟମନ ବଚନେ ମୁଁ କରେ ଧ୍ୟାନ
ଅବିରତ କରେ ରୂପ ସୁମରଣ
ଜାଣି ତେବେ କିଆଁ ଦେବୀ କର ଡେରି
ଢାଳିବାକୁ ତୁମର କରୁଣା ବାରି ।।

ବର୍ଷ ଯାଏ ବିତି ମନେ ଭରେ ଶ୍ରାନ୍ତି
ଜନନୀ ଗୋ କେବେ ମୋତେ ଦେବ ଶାନ୍ତି ।
ଝଡଝଞ୍ଜା ମଝିରେ ନାଆଟି ପରି
ମନ ମୋର ଦୋଳଇ ପାଗଳ ସରି ।।

କ୍ଳାନ୍ତ ମୁଁ ମା ଆଉ ସହି ପାରେନାହିଁ
ଏପରି ଜୀବନ ମୋର ଲୋଡା ନାହିଁ ।
ନେଇ ପାରେନା କଠୋର ତୋ ପରୀକ୍ଷା
କେତେ ଗୋ ଜନନୀ ଆଉ ଦେବ ଶିକ୍ଷା ।।

କେହି ନାହିଁ ମୁଁ ଯେ ଦୁଃସ୍ଥ ନିରାଶ୍ରୟା
ଶରଣ ଦିଅ ଗୋ କୋଳେ ମା ଅଭୟା ।
ପରଖ ନାହିଁ ଗୋ ଆଉ, ହାତ ଟାଣି
ନିଅ ମୋତେ ତବ କୋଳେ ହେ କଲ୍ୟାଣୀ ।।

ହଠାତ୍ ତାଙ୍କର ମନର ଅବସ୍ଥା ପରିବର୍ତ୍ତନ ହେଲା, ସେ ଭକ୍ତିରେ ଉନ୍ମାଦ ହେବାକୁ ଲାଗିଲେ । ଜୋରରେ କାନ୍ଦି, ମାଟିରେ ଗଡି ନିଜର ଲୁଗାପଟା ଛିଣ୍ଡାଇବାକୁ ଲାଗିଲେ । ପରମୁହୂର୍ତ୍ତରେ ନିଜକୁ ରୋକି ନପାରି ହସି ହସି ଗଡି ଗଲେ । ପରିବାର ଲୋକମାନେ କିଂକର୍ତ୍ତବ୍ୟବିମୂଢ ହୋଇ କାନ୍ଦିବାକୁ ଲାଗିଲେ । ଏହି ସମୟରେ ଗୋଟିଏ ବିରାଟ ସାପ ଦୁଆର ମୁହଁକୁ ଆସି ସୁଧାମଣିଙ୍କର ଶରୀର ପାଖକୁ ଗଲା, ପରିବାର ଲୋକମାନେ ଆତଙ୍କିତ ହୋଇ ଦେଖିଲାବେଳେ ସାପଟି ଜିଭ ବାହାର କରି ସୁଧାମଣିଙ୍କର ମୁହଁକୁ ଚାଟିବାକୁ ଆରମ୍ଭ କଲା । କିଛି ମୁହୂର୍ତ୍ତ ଏପରି କଟିଲାପରେ ସୁଧାମଣିଙ୍କୁ ଶାନ୍ତି ମିଳିଲା ପରି ମନେ ହେଲା । ତାଙ୍କର ଚେତା ଫେରି ଆସିଲା ପରେ ସାପଟି ପାଖରୁ କୁଆଡେ ଚାଲିଗଲା । ସାପଟି ସୁଧାମଣିଙ୍କର ଚେତା ଫେରାଇ ଆଣିବାପାଇଁ କି ପ୍ରକାର ଚିକିତ୍ସା ଦରକାର ତାହା ଠିକ୍ ଭାବରେ ଜାଣିଥିବା ପରି ମନେ ହେଲା ।

ଇଡ଼ାମାନ୍ନେଲର ବାହାରକୁ ଆସୁଥିବା ଭ୍ରମଣକାରୀ ଲୋକମାନେ ହଠାତ୍ ସେଠାରେ ଅନେକ ପ୍ରକାରର ଚଢେଇ ଆସି ରହିବାର ଲକ୍ଷ୍ୟ କଲେ । ଦେବୀଙ୍କ ପ୍ରିୟ ଶୁଆଶାରୀ ମାନଙ୍କୁ ସୁଧାମଣି ବେଶୀ ଭଲ ପାଉଥିଲେ । ଯେତେବେଳେ ସୁଧାମଣି ପ୍ରାର୍ଥନା କରୁଥିଲେ “ହେ ମା ! ମୋ ପାଖକୁ ଟିକେ ଆସିବୁନି” ? ସେତେବେଳେ

ଦଳେ ଶୁଆ ଶାରୀ ଉଡି ଆସି ତାଙ୍କ ପାଖରେ ଜମା ହେଉଥିଲେ । ଥରେ ଜଣେ ଭକ୍ତ ତାଙ୍କୁ ଶୁଆଟିଏ ଉପହାର ଦେଇଥିଲେ । ସେ ସୁଧାମଣିଙ୍କ ଚାରିପଟରେ ଖେଳି ବୁଲୁଥିଲା । କେବେ ହେଲେ ତାକୁ ସେ ପଞ୍ଜୁରୀରେ ରଖି ନଥିଲେ । ସୁଧାମଣି ଭାବିଲେ ଏ ପୃଥିବୀଟା ନିଷ୍ଠୁର! ଏଠାରେ ବିନ୍ଦୁ ମାତ୍ର ସତ୍ୟ ବା ଧର୍ମର ଅଧିଷ୍ଠାନ ହୋଇ ନାହିଁ । ଲୋକମାନେ ଖଳ, ଛଳନା ପ୍ରିୟ ଓ ଏ ପୃଥିବୀ ଖାଲି ପାପୀ ମାନଙ୍କୁ ନେଇ ଭରି ରହିଛି । ମନେ ହେଉଛି ଯେପରି ଏଠାରେ ସତ୍ୟରେ ଚଳିବାକୁ କେହି ନାହାନ୍ତି । ଏହିପରି ଅନେକ ସମୟ ଧରି ଅନ୍ତର୍ମୁଖ ଭାବରେ ରହିଥିବା ଅବସ୍ଥାରେ ଲୁହ ଧାରା ତାଙ୍କର ଗଣ୍ଡ ଦେଶ ଦେଇ ବହି ଯାଉଥିଲା । ଏହି ଅବସ୍ଥାରେ ସୁଧାମଣି ଲକ୍ଷ୍ୟ କଲେ ତାଙ୍କର ଶୁଆ ତାଙ୍କ ଆଗରେ ଠିଆ ହୋଇ କଷ୍ଟ ହେଲା ପରି କାନ୍ଦୁଛି । ତାଙ୍କର ତୀବ୍ର ଯନ୍ତ୍ରଣା ଛୋଟ ଚଢେଇ ଟିକୁ ମଧ୍ୟ ଉଦ୍‌ବେଳିତ କରି ଦେଇଛି । ଶୁଆଟିକୁ ଛାଡିଦେଲେ ଣ୍ଡ ଦୁଇଟି ପାରା ମଧ୍ୟ ଆସି ତାଙ୍କ ପାଖରେ ରହିଲେ । ସେ ଯେତେବେଳେ ଜଗତ୍ ମାତାଙ୍କ ଉଦ୍ଦେଶ୍ୟ କରି ଭଜନ ଗାଆନ୍ତି, ଏହି ତିନୋଟି ଚଢେଇ ତାଙ୍କ ଆଗରେ ଡେଇଁ ଡେଇଁ ଆନନ୍ଦରେ ଡେଣା ମେଲାଇ ନାଚନ୍ତି ।

ଥରେ ଇଡାମାଓନ୍ନଲର ଜମିରେ ଥିବା ବଡ ଗଛରୁ ଗୋଟିଏ ଛଂଚାଣର ବସା ତଳେ ପଡିଗଲା, ଦୁଇଟି ପକ୍ଷୀ ଶାବକ ତା ଭିତରୁ ଥରିଥରି ବାହାରିଲେ । କେତେକ ଦୁଷ୍ଟ ପିଲା ଛୋଟ ପକ୍ଷୀ ଶାବକଙ୍କ ଉପରକୁ ଟେକା ଫୋପାଡି ମାରିବାକୁ ଚେଷ୍ଟା କଲେ, କିନ୍ତୁ ସୁଧାମଣି ସେମାନଙ୍କୁ ଉଦ୍ଧାର କଲେ । ଯତ୍ନର ସହ କିଛି ସପ୍ତାହ ପର୍ଯ୍ୟନ୍ତ ସେମାନେ ଟାଣ ହେବା ଯାଏ ସେବା କରି ସୁଧାମଣି ସେମାନଙ୍କୁ ଉଡାଇ ଛାଡିଦେଲେ । ଏଇ ଗରୁଡ ଦୁଇଜଣ ସବୁବେଳେ ପ୍ରତ୍ୟେକ କୃଷ୍ଣଭାବ ଆଗରୁ ଆସି ପୂଜା ମନ୍ଦିର ଉପରେ ବହୁତ ସମୟ ଯାଏ ବସି ରହୁଥିଲେ । ଗରୁଡ ପକ୍ଷୀ ସ୍ୱୟଂ ବିଷ୍ଣୁଙ୍କ ବାହନ ବୋଲି ଜାଣିଥିବାରୁ, ଏଇ ଚଢେଇ ଦୁଇଟିଙ୍କୁ ଦେଖିବା ପାଇଁ ଭକ୍ତ ମାନେ ବେଶୀ ଆକୃଷ୍ଟ ହୋଇ ଆସୁଥିଲେ । ଚଢେଇ ଦୁଇଟି ଓ ସୁଧାମଣିଙ୍କର ରହସ୍ୟାବୃତ ସଂପର୍କ ଦର୍ଶନର ଶୋଭା ବଢାଇବା ସାଙ୍ଗେ ସାଙ୍ଗେ ଐଶ୍ୱରୀକ ଶକ୍ତି ବିଷୟରେ ଭକ୍ତମାନଙ୍କର ବିଶ୍ୱାସ ଦୃଢ ହେବାକୁ ଲାଗିଲା ।

ଦେବୀ ସାଧନା ସମୟରେ ଯେତେବେଳେ ଦେବୀ ଦର୍ଶନାଭିଳାଷୀ ହୋଇ ସୁଧାମଣି କାନ୍ଦି କାନ୍ଦି ଅଜ୍ଞାନ ହୋଇ ପଡନ୍ତି, ଏ ପକ୍ଷୀ ଦୁଇଟି ପହଂଚି ଜଗି ରହନ୍ତି । କେତେ ଜଣ ପଡୋଶୀ ସ୍ତ୍ରୀଲୋକ ଆଶ୍ଚର୍ଯ୍ୟ ହୋଇ ଏଇ ଦୁଇଟି ଚଢେଇ ସୁଧାମଣିଙ୍କର ଯନ୍ତ୍ରଣାରେ ବ୍ୟଥିତ ମୁହଁକୁ ଅନାଇ କାନ୍ଦିବାର ଦେଖିଥିଲେ ।

ଦିନେ ଧ୍ୟାନ ସରୁ ସରୁ ସୁଧାମଣିଙ୍କୁ ଭୀଷଣ ଭୋକ ଲାଗିଲା । ଗୋଟିଏ ଗରୁଡ ପକ୍ଷୀ ସାଙ୍ଗେ ସାଙ୍ଗେ ସମୁଦ୍ର ଆଡେ ଉଡିଯାଇ ଅଳ୍ପ ସମୟ ଭିତରେ ଗୋଟିଏ ମାଛ ଥଂଟରେ ଧରି ଧେ ି ଆସିଲା । ଏହି ଗରୁଡ ପକ୍ଷୀ ତାଙ୍କ କୋଳରେ ମାଛକୁ ରଖି ଦେଲା । ସୁଧାମଣି କୃତଜ୍ଞତାର ସହ ମାଛଟି କଂଚା ଖାଇଲେ । ଦମୟନ୍ତୀ ଯେତେବେଳେ ଏ ଘଟଣା ଜାଣିଲେ, ସେ ଗରୁଡ ପକ୍ଷୀ ସବୁଦିନ ମାଛ ନେଇ ଆସିବାର ସମୟକୁ ଅପେକ୍ଷା କରୁଥିଲେ । ଚଢେଇଟି ମାଛଟି ପକାଇ ଦେବା ସାଙ୍ଗେ ସାଙ୍ଗେ ଦମୟନ୍ତୀ ମାଛଟିକୁ ଧରିନେଇ ତାଙ୍କ ଝିଅ ପାଇଁ ରାନ୍ଧି ପକାଉଥିଲେ । ସାଧନା ସମୟରେ ଶ୍ରୀକୃଷ୍ଣଙ୍କୁ ଅନୁଭବ କରିବା ପାଇଁ ନିଷ୍ଠାରେ ସୁଧାମଣି ମାଛ ଖାଇବା ଛାଡି ଦେଇଥିଲେ, ଏପରିକି ମାଛ ଗନ୍ଧରେ ସେ ବାନ୍ତି କରି ପକାଉଥିଲେ । କିନ୍ତୁ ବର୍ତ୍ତମାନ ଗରୁଡ ମାଛ ଆଣି ଆସୁଥିବାରୁ ସେ ତାଙ୍କୁ ଭଗବତ୍ ପ୍ରେରିତ ବୋଲି ମନେ କରି ଆନନ୍ଦରେ ଖାଉଥିଲେ । ଏହିପରି ଗରୁଡଙ୍କର ମାଛ ଆଣିବା ଅନେକ ଦିନ ଧରି ଚାଲିଲା ।

ଗୋଟିଏ ବିଲେଇ ମଧ୍ୟ ସୁଧାମଣିଙ୍କ ସହ ସଂପୃକ୍ତ ହୋଇଥିଲା । ଦେବୀଭାବ ସମୟରେ ବିଲେଇଟି ମନ୍ଦିରରେ ପଶି ସୁଧାମଣିଙ୍କର ଚାରିପାଖରେ ପ୍ରଦକ୍ଷିଣ କଲା ପରି ଘୁରିବ, ତାପରେ ସେ ତାଙ୍କ ପାଖରେ ଆଖି ବନ୍ଦ କରି ତପସ୍ୟା କଲାପରି ବସି ରହିବ । ଥରେ ଜଣେ ବିଲେଇକୁ ବିଦା କରିବା ପାଇଁ ନେଇ ଯାଇ ନଈ ଆର ପାଖେ ଛାଡିଦେଲା, କିନ୍ତୁ ତା ପରଦିନ ସେ ଫେରି ଆସି ସୁଧାମଣିଙ୍କ ପାଖରେ ବସି ରହିଲା ।

ଆଉ ଗୋଟିଏ ସୁନ୍ଦର କଳା ଧଳା ଛୋଟ କୁକୁର ମଧ୍ୟ ଅଦ୍ଭୁତ ଭାବେ ବିଶ୍ୱସ୍ତ ଥିଲା । ସୁଧାମଣି ଯେତେବେଳେ ଦେବୀଙ୍କୁ ଧ୍ୟାନକରି କାନ୍ଦି ପ୍ରାର୍ଥନା ସମୟରେ ଅଚେତ ହୋଇ ଯାଉଥିଲେ, କୁକୁରଟି ଚେତା ଆସିବା ପାଇଁ ତାଙ୍କ ଦେହରେ ଘଷି ହୋଇ ତାଙ୍କର ମୁହଁ ହାତକୁ ଚାଟୁଥିଲା । ଯେତେବେଳେ ସୁଧାମଣି ଇଡାମାନ୍ନେଲ ଛାଡି ଯାଉଛନ୍ତି ବୋଲି ମନେ ହେଉଥିଲା କୁକୁରଟି ଭୁକି ତାଙ୍କର ଲୁଗାକୁ ଭିଡି ତାଙ୍କୁ ଯିବା ପାଇଁ ବାରଣ କରୁଥିଲା । ଅନେକ ସମୟରେ ସେ ଗୋଟିଏ ଖାଦ୍ୟର ପୁଡା

ଆଣି ତାଙ୍କ ଆଗରେ ରଖୁଥିଲା । ଏ କୁକୁରଟି ଆଣିଥିବା ଖାଦ୍ୟର ଗୋଟିଏ ଦାନା ମଧ୍ୟ କେବେ ଖାଉନଥିଲା । ରାତିରେ କୁକୁରଟି ସୁଧାମଣିଙ୍କ ପାଖରେ ଶୋଉଥିଲା, ସେ ତାଙ୍କୁ ତକିଆ ପରି ମୁଣ୍ଡ ତଳେ ରଖି ରାତିରେ ଆକାଶକୁ ଦେଖୁଥିଲେ ।

ଦିନେ ରାତିରେ ପାଣି କୂଳରେ ତପସ୍ୟା କରୁକରୁ ସେ ସାମଧିସ୍ଥ ହେଲେ ଓ ତାଙ୍କର ଦେହ ଚାରିଆଡେ କମ୍ବଳ ପରି ମଶା ମାନେ ଘେରି ହେଇ ପଡିଲେ, ସୁଗୁଣାନନ୍ଦ ତାଙ୍କୁ ଡାକିଲେ କିନ୍ତୁ କୌଣସି ଉତ୍ତର ପାଇଲେ ନାହିଁ । ସେ ଯେତେବେଳେ ତାଙ୍କୁ ଜୋରରେ ହଲାଇବାକୁ ଲାଗିଲେ, ସେ ତାଙ୍କୁ ଛୋଟ କାଠି ଟିଏ ପରି ହାଲୁକା ଲାଗିଲେ । "ତାଙ୍କର ଦେହରେ ଜୀବନ ନଥିବା ପରି ଲାଗିଲା, କିନ୍ତୁ ମୁଁ ତାଙ୍କୁ ଆଗରୁ ଏପରି ଅବସ୍ଥାରେ ଅନେକ ଥର ଦେଖିଛି ତେଣୁ ମୁଁ ଚିନ୍ତିତ ହେଲି ନାହିଁ ।" ସେ ତାଙ୍କର ଝିଅ ପାଖରେ ବସିଲେ । ଏହି ସମୟରେ ସେ କଳା ଧଳା କୁକୁରଟି ଆସି ପହଂଚି ଜୋରରେ ଭୁକିବାକୁ ଆରମ୍ଭ କଲା । ଅଳ୍ପ ସମୟ ଭିତରେ ସୁଧାମଣି ଆଖିଖୋଲି ସାଧାରଣ ଅବସ୍ଥାକୁ ପ୍ରକୃତିସ୍ଥ ହୋଇ ଫେରି ଆସିଲେ । ସୁଧାମଣି ଆଉ ଗୋଟିଏ ଜଗତରେ ଭାବାବିଷ୍ଟ ହୋଇ ଯିବା ଅବସ୍ଥାରେ ଜନ୍ତୁ ମାନେ ହିଁ ତାଙ୍କ ସହ ସଂଯୋଗ କରିବାରେ ବେଶୀ ସକ୍ଷମ ଥିଲେ ।

ବେଳେ ବେଳେ ଏହି କୁକୁରଟିର ପ୍ରଗାଢ ସ୍ନେହ ଓ ମମତା ଦେଖି ସୁଧାମଣିଙ୍କର ମନେ ହେଉଥିଲା ସେ ହିଁ ଯେପରି ଜଗତ୍ ମାତା । ସେଇଠୁ ଭୁଲିଯାଇ ସେ କୁକୁରକୁ ଦିନେ ତପସ୍ୟା ସମୟରେ ସୁଧାମଣି ଭୀଷଣ ଭାବରେ ଉଦ୍‌ବିଗ୍ନ ହୋଇ ପଡିଲେ । ସେ ସାଙ୍ଗେ ସାଙ୍ଗେ ସେଠାରୁ ଉଠି ଗାଁ ଆଡେ ଯିବାକୁ ଆରମ୍ଭ କଲେ । ସେ କଳା ଧଳା କୁକୁର ଟିକୁ କୁକୁର ଧରାଳୀ ଲୋକମାନେ ଧରି ପକାଇଥିଲେ, ସେ କୁକୁରଟି ହିଂସ୍ର ଭାବ ନ ଦେଖାଇ ବିକଳ ହୋଇ କାନ୍ଦୁ ଥିଲା । ଧରାଳୀ ତାକୁ ଜୋରରେ ଭିଡୁଥିଲା ଓ ସେ ଫାଶରୁ ମୁକ୍ତ ନହୋଇ ପାରି ତାର ଗୋଡ ଘୋଷାରୁ ଥିଲା । ସୁଧାମଣିଙ୍କୁ ଶ୍ରଦ୍ଧା କରୁଥିବା କିଛି ଗ୍ରାମ୍ୟ ବାଳିକା କୁକୁରଟିକୁ ସୁଧାମଣିଙ୍କର ବିଶ୍ୱସ୍ତ ଅନୁଗତ ବୋଲି ଜାଣିଥିଲେ ଓ ସେମାନେ କୁକୁର ଧରାଳୀକୁ ଏହି କୁକୁରଟିକୁ ଛାଡିଦେବା ପାଇଁ ଅନୁରୋଧ କରିଥିଲେ । ଏପରିକି ସେମାନେ ତାଙ୍କୁ ଲାଞ୍ଚ ମଧ୍ୟ ଯାଚିଥିଲେ । ଠିକ୍ ଏହି ସମୟରେ ସୁଧାମଣି ଆସି ପହଂଚିଲେ । କୁକୁରଟି ତାଙ୍କ ଆଡେ କାତର ହୋଇ ଅନାଇ କାନ୍ଦିବାକୁ ଆରମ୍ଭ କଲା ! ଏହା ଦେଖି କୁକୁର ଧରାଳୀର ହୃଦୟ

ତରଳିଗଲା, ସେ ନିରୁପାୟ ହୋଇ କୁକୁରକୁ ଛାଡି ଦେଇଥିଲା ।

ଯେତେବେଳେ କୌଣସି ଭକ୍ତ ସୁଧାମଣିଙ୍କ ସମ୍ମୁଖରେ ମୁଣ୍ଡିଆ ମାରନ୍ତି, ଏହି ଧଳା କଳା କୁକୁରଟି ମଧ୍ୟ ତାର ଚାରିଗୋଡ ଭାଙ୍ଗି ତାଙ୍କ ଆଗରେ ନତମସ୍ତକ ହୁଏ । ସେ ଯେତେବେଳେ ଭଗବତ୍ ପ୍ରେମରେ ଉନ୍ମତ ହୋଇ ନାଚନ୍ତି, ଏହି କୁକୁରଟି ମଧ୍ୟେ ତାଙ୍କ ଚାରିପଟେ ଡେଇଁ ଏହି ପ୍ରେମାପ୍ଲୁତ-ନୃତ୍ୟରେ ଯୋଗ ଦିଏ । ପ୍ରତି ଦିନ ଗୋଧୂଳି ମୁହୂର୍ତ୍ତରେ ଶୁଭ ଶଙ୍ଖର ନାଦ ଶୁଣି ଏହି କୁକୁରଟି ଅଦ୍ଭୁତ ଭାବରେ ଏଇ ନାଦକୁ ଅନୁକରଣ କଲାପରି ବୋବାଉ ଥିଲା ।

ଦିନେ ସୁଧାମଣିଙ୍କୁ ପ୍ରବଳ ଭାବରେ ମନେ ହେଲା ଯେପରିକି ଏହି ଧଳାକଳା କୁକୁରଟି ରୋଗରେ ପାଗଳା ହୋଇ ମରିଯିବ । ଠିକ୍ ତାପରେ ତାଙ୍କର ଭବିଷ୍ୟତ ବାଣୀ ଅନୁସାରେ ଏହି କୁକୁରଟି ରେବୀ ରୋଗରେ ସଂକ୍ରମିତ ହୋଇ ବେଶୀ କଷ୍ଟ ନପାଇ ମରିଗଲା । ଯେତେବେଳେ ସୁଧାମଣିଙ୍କୁ ତାଙ୍କର ବିଶ୍ୱାସୀ ଅନୁଗତର ମୃତ୍ୟୁରେ ଦୁଃଖିତ ହେବା କଥା ପଚରା ହୋଇଥିଲା, ସେ କହିଥିଲେ "ମୁଁ ତାର ମୃତ୍ୟୁ ପାଇଁ ଦୁଃଖ ଅନୁଭବ କରୁନାହିଁ । ଯଦିଓ ସେ ମରିଗଲା ସେ ମୋ ପାଖକୁ ହିଁ ଆସିବ । ତେଣୁ ମୁଁ ଦୁଃଖୀ ହେବି କାହିଁକି ?" ପରେ ସେ ସେହି କୁକୁରଟି ଇଡାମାନ୍ନେଲ ପାଖରେ ପୁନର୍ଜନ୍ମ ନେଇଛି ବୋଲି ମନ୍ତବ୍ୟ ଦେଇଥିଲେ । ତେବେ ସେ ବିଷୟରେ ଆଉ କିଛି ଟିପ୍ପଣୀ ଦେଇନଥିଲେ ।

ପାଖ ଆଖର ଆଉ ଗୋଟିଏ କୁକୁରର ମଧ୍ୟ ସୁଧାମଣିଙ୍କ ପ୍ରତି ପ୍ରବଳ ସ୍ନେହ ଥିଲା । ଥରେ ସେ କୁକୁରଟି ଗର୍ଭବତୀ ଥିବା ସମୟରେ, ମନ୍ଦିରର ଗୋଟିଏ ପାଖରେ ସୁଧାମଣିଙ୍କୁ ଅପେକ୍ଷା କରି ଠିଆ ହେଇଥିଲା । ଯେତେବେଳେ ସୁଧାମଣି ଧ୍ୟାନ ଶେଷ କରି ବାହାରି ଆସିଲେ, ସେ ଏହି କୁକୁରଟିକୁ ମନ୍ଦିର ବାରଣ୍ଡାରେ ଠିଆ ହେବାର ଦେଖିଲେ । ସେ ମନ୍ଦିର ଭିତରକୁ ନଯାଇ ମନ୍ଦିରର ପାହାଚ ଦାଢରେ ଗୋଡଭାଙ୍ଗି ଠିଆ ହୋଇ ଜୋରରେ କଷ୍ଟ ପାଉଥିବା ପରି ଅଦ୍ଭୁତ ଭାବରେ ଭୁକିବାକୁ ଆରମ୍ଭ କଲା । ସୁଧାମଣି କୁକୁରକୁ କୁଣ୍ଢାଇ ଚୁମ୍ବନ ଦେଇ ପଚାରିଲେ "କଣ ହେଲା ଝିଅ ? କଣ ହେଲା ?" ତାପରେ ପରେ କୁକୁରଟି ମନ୍ଦିର ବାରଣ୍ଡାରୁ ତଳକୁ ଡେଇଁ ବାଲି ଉପରେ ଶୋଇ ଶେଷ ନିଶ୍ୱାସ ତ୍ୟାଗ କଲା ।

ସୁଧାମଣି ଥରେ ତାଙ୍କୁ ବହୁତ ଭଲ ପାଉଥିବା ଛେଳି ବିଷୟରେ ମନ୍ତବ୍ୟ

ଦେଇଥିଲେ "ତାର ପତ୍ନୀରେ ଗୋଟିଏ ରୋଗ ଯୋଗୁ ଛେଳିଟି ଶେଷ ଅବସ୍ଥାରେ ଜୀବନ ସହ ଯୁଦ୍ଧ ଚଳାଇ ଥିଲା । ମୁଁ ତାର ଦୁଃଖ କଷ୍ଟ ଦେଖି ତା ପାଖରେ ବସି ପ୍ରାର୍ଥନା ଓ ଧ୍ୟାନ କଲି । ମୁଁ ଯେତେବେଳେ ଆଖି ଖୋଲିଲି ବିଚରା ପ୍ରାଣୀଟିକୁ ମୋ ପାଖକୁ ଆଣ୍ଠୁରେ ଗୁରୁଣ୍ଡି ଆସୁଥିବାର ଦେଖିଲି । ସେ ଆସି ମୋ କୋଳରେ ମୁହଁ ରଖି ମୋ ଆଡେ ଚାହିଁ ନିଶବ୍ଦରେ ମରିଗଲା । ତାର ସ୍ନେହ ବଡ ଅନାବିଳ ଥିଲା" ।

କିଛି ବର୍ଷପରେ ଏସବୁ ପୁରୁଣା ଘଟଣା ଗୁଡିକୁ ମନେ ପକାଇ ସେ କହିଲେ "ସେଦିନ ଗୁଡିକ ବି ଶାନ୍ତିମୟ ଥିଲା! ବିଚିତ୍ର ଭାବରେ ସେ ଜନ୍ତୁମାନେ ମୋର ମନର କଥା ବୁଝି ପାରି ସବୁ କରୁଥିଲେ । ମୁଁ ଯଦି କାନ୍ଦୁଥିଲି ସେମାନେ ମଧ୍ୟ ମୋ ସାଙ୍ଗେ କାନ୍ଦିବାରେ ଯୋଗ ଦେଉଥିଲେ । ମୁଁ ଯଦି ମୋର ବାହ୍ୟଜ୍ଞାନ ଶୂନ୍ୟ ହୋଇ ଅଚେତ ହେଉଥିଲି, ସେମାନେ ମୋ ପାଖରେ ଆସି ଗୁଞ୍ଜି ହେଉଥିଲେ । ଜୀବ ଜନ୍ତୁଙ୍କର ଏହିସବୁ ଲକ୍ଷଣ ମଧ୍ୟ ମନୁଷ୍ୟ ଭିତରେ ଦେଖାଯାଏ । ଯେତେବେଳେ ଜଣେ ଆସକ୍ତି, ଘୃଣା ଛାଡି ଦିଏ ତାକୁ ଏହି ସମଦୃଷ୍ଟିର ଜ୍ଞାନ ପ୍ରାପ୍ତି ହୁଏ ଓ ଏପରିକି ଭୟଙ୍କର ଜନ୍ତୁମାନେ ତାଙ୍କ ଆଗରେ ଶାନ୍ତ ହୋଇ ଯାଆନ୍ତି ।"



# ଅଷ୍ଟମ ଅଧ୍ୟାୟ

## ସହସ୍ର ସୂର୍ଯ୍ୟର ତେଜସ୍ୱୀତା

ସ୍ମିତ ହସି ଦେବୀ ଜାଜ୍ୱଲ୍ୟମାନ ଦିବ୍ୟ ଜ୍ୟୋତି ହୋଇ ମୋ ଦେହରେ ସମାବିଷ୍ଟ ହେଲେ । ମୋ ମନ ପରମ ଜ୍ୟୋତିର ସ୍ନିଗ୍ଧ ସଂଜୀବନୀରେ ବିକଶିତ ହୋଇ ଉଠିଲା, ଲକ୍ଷ ଲକ୍ଷ ବର୍ଷଧରି ବିତି ଯାଇଥିବା ସବୁ ଘଟଣା ମୋ ମନରେ ଜାଗ୍ରତ ହୋଇ ଉଠିଲା । ସେହି ଦିନ ଠାରୁ ମୁଁ କାହାକୁ ମୋଠାରୁ ଅଲଗା ଭାବରେ ଦେଖି ପାରିଲି ନାହିଁ । ଏକତ୍ୱ ଭାବରେ ବିଶ୍ୱମାତାଙ୍କ ଭିତରେ ନିମଜ୍ଜିତ ହେଲି । ମୁଁ ସବୁ ପ୍ରକାରର ଉପଭୋଗକୁ ପରିତ୍ୟାଗ କଲି ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ଦୃଶା ଦ୍ରାଘୀୟସ୍ୟା ଦର-ଦଳିତ-ନୀଲୋତ୍ପଳ-ରଚା
ଦବୀୟାଂସଂ ଦୀନଂ ସ୍ନପୟ କୃପୟା ମାମପି ଶିବେ ।
ଅନେନାୟଂ ଧନ୍ୟୋ ଭବତି ନ ଚ ତେ ହାନିରିୟତା
ବନେ ବା ହର୍ମ୍ୟେ ବା ସମକର-ନିପାତେ ହିମକରଃ ॥

ହେ ଶିବପ୍ରିୟେ, ତୁମେ ଥାଉ ଥାଉ ବହୁଦୂରରେ ଅସହାୟ ଭାବେ ମୁଁ ପ୍ରତୀକ୍ଷା କରି ରହିଛି । ମୋତେ ତୁମର ଅର୍ଦ୍ଧ ନିମୀଳିତ ନୀଳୋତ୍ପଳ ସମ ସୁନ୍ଦର ସୁଦୂରପ୍ରସାରୀ ଦୃଷ୍ଟିର କୃପାବର୍ଷା କରି ଆଶ୍ୱସ୍ତ କର । ଏଥିରୁ ହିଁ ମୁଁ ଏହି ଦୀନ ନଶ୍ୱର ମାନବ ଜୀବନର ସାରବତା ଖୋଜି ପାଇବି । ଏତଦ୍ୱାରା ତୁମର ତ କିଛି କ୍ଷତି ହେବନାହିଁ । ଚନ୍ଦ୍ର ତାର ଶୀତଳ କିରଣ ବନରାଜି ଓ ଅଟ୍ଟାଳିକା ଉପରେ ସମଭାବରେ ଜ୍ୟୋତ୍ସ୍ନା ବିକୀରଣ କରିଥାଏ ।

**ସୌନ୍ଦର୍ଯ୍ୟ ଲହରୀ, ପଦ-୫୭**

ଜଗଦମ୍ବାଙ୍କ ଉପରେ ଚରମ ବିଶ୍ୱାସ ଅର୍ପଣ କରି ସୁଧାମଣି ଅମୃତମୟ ପ୍ରେମରେ ଭାସିବାକୁ ଲାଗିଲେ । ତାଙ୍କ ପାଇଁ ସମସ୍ତ ବାତାବରଣ, ଉର୍ଦ୍ଧ୍ୱ, ନିମ୍ନ, ଡାହାଣ ଓ ବାମ ସବୁଦିଗ ଜଗତ ଜନନୀଙ୍କର ଉପସ୍ଥିତିରେ ପ୍ରଜ୍ୱଳିତ ହୋଇ ଉଠିଲା । ସବୁ ଗଛ, ଲତା, ଫୁଲ ସବୁ ହିଁ ଦେବୀ, ତେଣୁ ସବୁକିଛି ସୁଧାମଣିଙ୍କର ଅବିଚ୍ଛେଦ୍ୟ ପୂଜ୍ୟ ବସ୍ତୁ ହୋଇ ଉଠିଲା । ଆକାଶକୁ ଅନାଇ କୌଣସି ଅଦୃଷ୍ଟ ଦୃଶ୍ୟ ଦେଖି ସେ ଅସମ୍ଭାଳ

କୋହ ଭରା ଲୁହରେ କିମ୍ବା ହାସ୍ୟରେ ଭାଙ୍ଗି ପଡୁଥିଲେ ଓ ଶେଷରେ ଅଜ୍ଞାନ ହୋଇ ବାଲିରେ ଲୋଟି ପଡୁଥିଲେ । ଏହି ଅନାଥ ଝିଅର ନିଜ ମାକୁ ଡାକୁଥିବା କାରୁଣ୍ୟ ଭରା ପ୍ରାର୍ଥନା ଦିନ ରାତି ଇଡାମାନ୍ନେଲର ବାତାବରଣକୁ ଭରି ରଖିଥିଲା । ପ୍ରକୃତିର ସମସ୍ତ ସୃଷ୍ଟିକୁ ପରମ ବ୍ରହ୍ମମୟୀ ଭାବିବାର ସର୍ବାଧିକ ଜ୍ଞାନ ଲାଭ କଲାପରେ ସେ ଏହି ଗୀତ ଲେଖିଥିଲେ...

ତମେ ହିଁ ସୃଷ୍ଟି ତମେ ହିଁ ସ୍ରଷ୍ଟା<br>
ତୁମେ ଶକ୍ତି ଓ ସତ୍ୟ<br>
ହେ ଦେବୀ ହେ ଦେବୀ ହେ ଦେବୀ ...

ନିଖିଳ-ବିଶ୍ୱ-ସୃଷ୍ଟିକାରିଣୀ<br>
ତୁମେ ହିଁ ଆଦି ଓ ଅନ୍ତ..<br>
ସକଳ ଘଟର ଅଧିଷ୍ଠାତ୍ରୀ<br>
ତୁମେ ସ୍ଥିତିମୟୀ ପଂଚଭୂତ ।

ବର୍ତ୍ତମାନ ସେହି ପଶୁପକ୍ଷୀଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସୁଧାମଣି ଖାଇବା, ଶୋଇବା ପରିତ୍ୟାଗ କରିଥିଲେ । ସେ କାହା ସାଙ୍ଗରେ ଆଉ ସଂପର୍କ ରଖିଲେ ନାହିଁ । ଯାହାର ଦରକାର ସେମାନେ ନିଜ ଆଡୁ ତାଙ୍କର ଖବର ନେଉଥିଲେ । ତାଙ୍କର ଉର୍ଦ୍ଧଗାମୀ ମନ ସବୁବେଳେ ଆଉଗୋଟିଏ ଅବସ୍ଥାରେ ରହୁଥିଲା । ଏପରିକି ସେ ନିଜର ଦାନ୍ତ ଘଷା ଭୁଲିଗଲେ । ସେ କେତେବେଳେ କେମିତି ସାମନ୍ୟ କିଛି ଖାଉଥିଲେ । ସେ ବେଳେବେଳେ ଭଙ୍ଗା କାଚ, ବିଷ୍ଠା ଯାହା ପାଉଥିଲେ ଖାଉଥିଲେ, ଖାଦ୍ୟ ଓ ଅଖାଦ୍ୟ ଭିତରେ କିଛି ତଫାତ୍ ଦେଖି ପାରୁନଥିଲେ । ଏପରି ମାନସିକ ଅବସ୍ଥାକୁ ବୁଝିବା ସାଧାରଣ ମଣିଷର ବୁଦ୍ଧିର କ୍ଷମତାର ବାହାରେ ।

ସେ କୋମଳ କିଶୋରୀଟି ପକ୍ଷରେ ଦେବୀ ମାତାଙ୍କ ପ୍ରତି ନିଜର ଯନ୍ତ୍ରଣା ଓ ପ୍ରାର୍ଥନା ଜଣାଇବା ଆଉ କ୍ଷଣକ ପାଇଁ ମଧ୍ୟ ରୋକିବା ସମ୍ଭବ ହୋଇ ପାରିଲା ନାହିଁ, "ହେ ମା, ମୋର ହୃଦୟ ତୁମ ଠାରୁ ବିଚ୍ଛେଦ ଦୁଃଖରେ ଜର୍ଜରିତ ହୋଇ ଖଣ୍ଡ ଖଣ୍ଡ ହୋଇ ଯାଉଛି । ହେ ମା, ଅନେକ ମହତ ଯୋଗୀମାନେ ତୁମର ଗୁଣ କୀର୍ତ୍ତନ କରି

ତୁମର ଦର୍ଶନ ପାଇଛନ୍ତି ଓ ତୁମ ସହ ଲୀନ ହୋଇଛନ୍ତି । ହେ ମୋର ମା ! କୃପାକରି ତୁମର କରୁଣାମୟ ହୃଦୟର ଦ୍ୱାରକୁ ଏଇ ହୀନ ଦାସୀ ପାଇଁ ଟିକେ ଖୋଲି ଦିଅ । ମୁଁ ପାଣିରେ ବୁଡି ମରୁଥିବା ଲୋକ ପରି ଶ୍ୱାସରୁଦ୍ଧ ହୋଇ ଯାଉଛି, ଯଦି ମୋ ପାଖକୁ ଆସିବାକୁ ଚାହୁଁ ନାହଁ ତେବେ ମୋର ଜୀବନକୁ ଶେଷ କରିଦିଅ । ଯେଉଁ ଖଣ୍ଡାରେ ତୁମେ ପାପୀ ମାନଙ୍କର ମସ୍ତକ ଛିନ୍ନ କର ସେଇଥିରେ ମୋର ମୁଣ୍ଡ ମଧ୍ୟ ଛିନ୍ନ କର । ଯାହା ହେଲେବି ତୁମର ଖଣ୍ଡାଧାର ମୋ ବେକରେ ଲାଗିବାର ସୌଭାଗ୍ୟ ମୋର ହେଉ ! ଏପରି ମୂଲ୍ୟହୀନ ଦେହ ରଖି ଲାଭ କଣ ? ଏହା ମୋ ପାଇଁ ଏକ ବିରାଟ ବୋଝ ହୋଇ ପଡିଛି" ।

ସୁଧାମଣିଙ୍କର ଯନ୍ତ୍ରଣା ଅତୀବ ତୀବ୍ର ହୋଇ ପଡିଲା, ତାଙ୍କର ପ୍ରାର୍ଥନା ସବୁ ମଧ୍ୟ ସରିଗଲା । ତାଙ୍କ ନିଜ ଭାଷାରେ -

"ମୋ ଦେହର ପ୍ରତି ଲୋମ ଭଗବତ୍ ଦର୍ଶନ ଆଶାରେ ଖୋଲିଗଲା, ମୋ ଦେହର ପ୍ରତି ଅଣୁ ପରମାଣୁ ପବିତ୍ର ମନ୍ତ୍ରରେ ସ୍ପନ୍ଦିତ ହେଲା, ମୋର ସମଗ୍ର ଦେହ ଜଗନ୍ମାତାଙ୍କ ଆଡକୁ ବନ୍ୟାର ପ୍ରବଳ ସ୍ରୋତ ପରି ବହି ଚାଲିଲା..."

ଅକଥନୀୟ ଯନ୍ତ୍ରଣାରେ ସେ କାନ୍ଦି ଉଠିଲେ "ହେ ମା.... ତୁମର ସନ୍ତାନ ମୃତ୍ୟୁର ଦ୍ୱାର ଦେଶରେ, ଅପରିମେୟ ଦୁଃଖରେ ବୁଡି ଯାଉଛି.... ଏ ହୃଦୟ ଯେ ଫାଟି ଯାଉଛି.... ଏ ହାତ ଗୋଡ ଆଉ ଚାଲୁନାହିଁ .... ମୁଁ ସମୁଦ୍ର ବାଲିକୁ ଫିଙ୍ଗା ହେଉଥିବା ମାଛ ପରି ଛଟ ପଟ ହେଉଛି.... ହେ ମା.... ତୁମର କଣ ମୋ ପ୍ରତି କୌଣସି ଦୟା ନାହିଁ.... ମୋ ପାଖରେ ତୁମକୁ ଅର୍ପଣ କରିବାକୁ ମୋର ଶେଷ ନିଶ୍ୱାସ ଛଡା ଆଉ କିଛି ନାହିଁ.... ।"

ତାଙ୍କର ଶ୍ୱାସ ରୁଦ୍ଧ ହେଲା ଏବଂ ତାଙ୍କର ନିଶ୍ୱାସ ପ୍ରଶ୍ୱାସ ପୁରା ବନ୍ଦ ହୋଇଗଲା । ସୁଧାମଣି ଅଚେତ ହୋଇ ପଡିଗଲେ । ମା ଙ୍କର ଇଚ୍ଛାରେ ହିଁ ପ୍ରତ୍ୟେକ ମୁହୂର୍ତ୍ତ ବିତୁଛି । ଜଗତ ମୋହିନୀ, ସର୍ବ ବ୍ୟାପିଣୀ, ସର୍ବ ଶକ୍ତିମୟୀ, ଆଦି ସୃଷ୍ଟି କର୍ତ୍ତ୍ରୀ, ଦେବୀ ମାତା ଲକ୍ଷ ଲକ୍ଷ ସୂର୍ଯ୍ୟଙ୍କର ଉଜ୍ଜ୍ୱଳତାରେ ଉଦ୍‌ଭାସିତ ହୋଇ ସୁଧାମଣିଙ୍କ ଆଗରେ ଉପସ୍ଥିତ ହେଲେ । ତାଙ୍କ ହୃଦୟରୁ ଅବର୍ଣ୍ଣନୀୟ ହାସ୍ୟ ନେଇ ବିମଳ ଅଗ୍ନିର ପିଣ୍ଡୁଳା ହୋଇ ସେ ସୁଧାମଣିଙ୍କ ଭିତରେ ଲୀନ ହେଲେ ।

ସୁଧାମଣି ସ୍ୱରଚିତ କବିତା ଆନନ୍ଦ ବୀଥି ରେ ଏହି ସ୍ୱର୍ଗୀୟ ମିଳନକୁ ସ୍ପଷ୍ଟ କରି ବର୍ଣ୍ଣନା କରିଛନ୍ତି ...

### ଆନନ୍ଦ ବୀଥି

ଦିନେ ସୁଲଗ୍ନ ସମୟର
ଆସିଲା ଏପରି ପବିତ୍ର
ପ୍ରାଣ ମୋ ଉଲ୍ଲାସେ ନାଚିଲା
ଆନନ୍ଦ ପଥକୁ ବାଛିଲା ॥

ଅନ୍ତରୁ ଷଡରିପୁ ଗଲା
ଘୃଣା ଆକର୍ଷଣ ନ ରହିଲା
ନିଜର ଅହନ୍ତା ଭୁଲିଲି
ସ୍ୱର୍ଣିମ ସ୍ୱପ୍ନେ ଲୀନ ହେଲି ॥

ଭାବିଲି ନିର୍ମଳ ମନରେ
ପ୍ରକାଶ ଭରିଲା ଚିନ୍ତାରେ
ଆସିଲା ମହତ ଆକାଙ୍କ୍ଷା
ନୀତିବାଣୀ ଓ ସତଶିକ୍ଷା ॥

ଦେବୀ-ମା ଅପୂର୍ବ ବାତ୍ସଲ୍ୟେ
ହାତ ରଖିଲେ ମଥା ପରେ
ନତମସ୍ତକେ ଭକ୍ତିଭରେ
ଅର୍ପିଲି ନିଜକୁ ପୟରେ ॥

ସ୍ମିତ ହସି ମା ଭଗବତୀ
ପାଲଟି ଗଲେ ଦିବ୍ୟଜ୍ୟୋତି
ମୋ ଦେହେ ଆସି ସେ ମିଶିଲେ
ମୋ ପ୍ରାଣେ ମିଳି ଏକ ହେଲେ ॥

ଫୁଟିଲା ମୋ ମାନସ ଅଙ୍ଗେ
ଦିବ୍ୟ ଆଲୋକ ବହୁ ରଙ୍ଗେ
ଅୟୁତ ବରଷ ଘଟଣା
ସବୁପଡିଲା ମୋତେ ଜଣା ॥

ସଭିଙ୍କୁ ବୁଝିଲି ନିଜର
ମୋଠାରୁ କେ ନୁହେଁ ଅନ୍ତର
ଦେବୀଙ୍କ ଠାରେ ହୋଇ ଲୀନ
ଭୋଗରୁ ତ୍ୟାଗ କଲି ମନ ॥

ମା ମୋତେ ଦେଲେ ଏ ଆଦେଶ
କୁହ ମାନବେ ନିର୍ବିଶେଷ
ସାର୍ଥକ କରନ୍ତୁ ଜନମ
ତେଣୁ ଘୋଷଣା ଏହି ମମ
ଦିବ୍ୟ ଏ ସତ୍ୟ ନରେ ଶୁଣ
ନିଜ ଆତ୍ମାରେ ହୁଅ ଲୀନ ॥

ଅସଂଖ୍ୟ ମୁନିଏ ଭାରତେ
ଜନ୍ମି ଅଛନ୍ତି ଯୋଗୀ କେତେ
ବୈଦିକ ଋଷିଙ୍କର ଜ୍ଞାନ
ମାନି ସେ ବଂଚନ୍ତି ଜୀବନ ।
ଶାଶ୍ୱତ ସତ୍ୟକୁ ହେ ଜାଣ
ଘୁଂଚିବ ମାନବ କଷଣ ॥

ମନେପଡଇ ମାତୃବାଣୀ
ତା କୃପା ପାରେକି ବଖାଣି
ମୋ ଧନ ଆସ ମୋର କୋଳ

ତେଜି ଏ ସଂସାର ଜଞ୍ଜାଳ
ତୁମେ ମୋ ପବିତ୍ର ସନ୍ତାନ
ଏକଥା କେବେ ନୁହେଁ ଆନ ॥

ହେ ଦେବୀ, ଚୈତନ୍ୟ ପବିତ୍ର
ସତ୍ୟର ସ୍ୱୟଂ ଅବତାର
ମୁଁ ଅଟେ ତୋ ଆଜ୍ଞାକାରିଣୀ
ଆଦେଶ ଦିଅ ନାରାୟଣୀ ॥

ଏତେ ତୁ ବିଳମ୍ବେ ଆସିଲୁ
ମନୁଷ୍ୟ ଦେହ କିପାଁ ଦେଲୁ
ମୁଁ ସିନା ଅବୋଧ ଅଜ୍ଞାନୀ
କ୍ଷମ ମା ଆଦି ସନାତନୀ ॥

ଏହି ସମୟରେ ସୁଧାମଣି ପାର୍ଥିବ ଦୁନିଆ ପ୍ରତି ପ୍ରବଳ ବିମୁଖତା ଦେଖାଇ ଥିଲେ । ସେ ଭୋଗ ବିଳାସୀ ଲୋକ ଓ ବିଚିତ୍ର ଦିନିଆର ଲୋକଙ୍କ ପାଖରୁ ଦୂରରେ ରହିବା ପାଇଁ ବଡବଡ ଗାତ ଖୋଳି ଲୁଚୁଥିଲେ । ସେ ଦିନ ରାତି ଏକୁଟିଆ ଭଗବତ ଅନୁଭୂତିର ପରମାନନ୍ଦ ଉପଭୋଗ କରି ସବୁ ମନୁଷ୍ୟ ମାନଙ୍କର ସଙ୍ଗ ପରିହାର କଲେ । ଆଗରୁ ତାଙ୍କୁ ଯେଉଁମାନେ ପାଗଳ ଭାବୁଥିଲେ, ସେମାନଙ୍କର ସେହି ବିଶ୍ୱାସ ଆହୁରି ଦୃଢ ହୋଇଗଲା । ତାଙ୍କର ଭଗବତ୍ ଭାବ ଅନୁଭବର ଉଚ୍ଚ ସ୍ତରକୁ ବୁଝିବାର କାହାର ଶକ୍ତି ନଥିଲା । ଯଦିଓ ସୁଧାମଣି ଅନ୍ତର୍ମନରେ ପରଂବ୍ରହ୍ମଙ୍କର ଦର୍ଶନ ପାଇ ସାରିଥିଲେ, ତଥାପି ଗ୍ରାମବାସୀ ଓ ପରିବାରଙ୍କର ଦୃଷ୍ଟିରେ ସେ ସେହି ଅର୍ଦ୍ଧ ପାଗଳ ସୁଧାମଣି ଥିଲେ ଯିଏ ସପ୍ତାହରେ ତିନି ଦିନ କୃଷ୍ଣଙ୍କର ଭାବ ଧାରଣ କରୁଥିଲେ । ବର୍ତ୍ତମାନ କିଏ ଲକ୍ଷ୍ୟ କରିଛନ୍ତି କି ନାହିଁ ଜଣା ନାହିଁ, ତେବେ ଗୋଟିଏ ମାତ୍ର ନୂଆ ପରିବର୍ତ୍ତନ ହେଲା ସେ ଏବେ ମାଟିରେ ନ ଗଡି, ବଡ ବଡ ଗାତ ଖୋଳୁଛନ୍ତି ।

## ଦେବୀ ଭାବର ଆରମ୍ଭ

ଦିନେ ସୁଧାମଣି ନିଜ ଭିତରୁ ଗୋଟିଏ ସ୍ୱର ଶୁଣିଲେ "ମୋ ଝିଅ, ମୁଁ ସମସ୍ତଙ୍କର ହୃଦୟରେ ଥାଏ, ମୋର ରହିବାକୁ ସେମିତି କିଛି ନିର୍ଦ୍ଧିଷ୍ଟ ଜାଗା ନାହିଁ । ତୋର ଜନ୍ମ ଖାଲି ନିଜେ ସଚ୍ଚିଦାନନ୍ଦ ଅନୁଭବ କରିବା ପାଇଁ ନୁହଁ, ବରଂ ଦୁଃଖ ଭୋଗୁଥିବା ମାନବ ଜାତିର ବେଦନାକୁ ଲାଘବ କରିବା ପାଇଁ, ତେଣୁ ମତେ ସବୁ ଜୀବଙ୍କର ହୃଦୟରେ ପୂଜାକରି, ସେମାନଙ୍କୁ ସମସ୍ତ ସାଂସାରିକ କଷ୍ଟରୁ ଦୂର କର...."

ନିଜ ଭିତରୁ ଏହି ଦୈବୀ ବାଣୀ ଶୁଣି ସାରିଲା ପରେ ହିଁ ସୁଧାମଣି କୃଷ୍ଣଭାବ ସହିତ ଦେବୀଭାବ ଆରମ୍ଭ କରିଥିଲେ । ଦେବୀ ଓ ସେ ଯେ ଏକ ଏହି କଥା ଏହି ସମୟରେ ସେ ଭକ୍ତ ମାନଙ୍କୁ ଜ୍ଞାତ କରାଇଥିଲେ ହେଁ, ଭକ୍ତ ମାନେ ଭାବିଲେ ବର୍ତ୍ତମାନ ତାଙ୍କ ଭିତରେ କୃଷ୍ଣଙ୍କ ସହ ଦେବୀ ମଧ୍ୟ ଆସିଅଛନ୍ତି । ଏହି ପରବର୍ତ୍ତୀ ଘଟଣାରୁ ହିଁ ଦେବୀ ଭାବର ଆରମ୍ଭ ।

୧୯୭୫ ମସହାରେ ଶେଷ ଭାଗ ଆଡକୁ କୃଷ୍ଣଭାବର ଦର୍ଶନ ମାତ୍ର ଛ ମାସ ହୋଇଥାଏ, ଗୋଟିଏ ଦିନ ରାତିରେ କୃଷ୍ଣଭାବ ଚାଲିଥିବା ସମୟରେ ଗୋଟିଏ ପରେ ଗୋଟିଏ ଭକ୍ତ ମନ୍ଦିର ଭିତରେ ପଶୁଥାନ୍ତି । ତା ପରେ ଗୋଟିଏ ଅଦ୍ଭୁତ ଘଟଣା ପୁରା ବାତାବରଣକୁ ବଦଳାଇ ଦେଲା ।

ଭକ୍ତ ମାନେ ମନ୍ଦିର ବାରଣ୍ଡାର ବସି ଭଜନ ଗାଉଥାନ୍ତି । ସୁଧାମଣି ଶ୍ରୀକୃଷ୍ଣଙ୍କର ଭାବ ପ୍ରଦର୍ଶନ କରି ଆନନ୍ଦରେ ଭକ୍ତ ମାନଙ୍କୁ ଗ୍ରହଣ କରୁଥାନ୍ତି । ତାଙ୍କର ଉଜ୍ଜ୍ୱଳ ମୁଖଚନ୍ଦ୍ରମାରେ ମୁଗ୍ଧକାରୀ ହସ ଶୋଭା ପାଇ ଭକ୍ତ ମାନଙ୍କୁ ଆନନ୍ଦିତ କରୁଥାଏ, ଏହି ମନ୍ଦିରରେ ସଂପୂର୍ଣ୍ଣ ଅବସନ୍ନ ହୋଇ ପଡିଥିବା ଜଣେ ଭକ୍ତ ଆସି ପହଂଚିଲେ । ତାଙ୍କୁ ବିପକ୍ଷ ଦଳର ଗ୍ରାମବାସୀ ମାନେ ଭୀଷଣ ହଇରାଣ କରିଥିଲେ । ସେମାନଙ୍କର କଟୁ ବାକ୍ୟ ସହି ନପାରି ସେ କୃଷ୍ଣଙ୍କୁ ତାର ସମାଧାନ କରିବାକୁ ନିବେଦନ କଲେ ।

କୌଣସି ସତର୍କ ବାଣୀ ନ ଜଣାଇ ସୁଧାମଣିଙ୍କର ମୁଖ ମଣ୍ଡଳରୁ ସ୍ମିତ ହାସ୍ୟ ଚାଲିଗଲା ଓ ଶେଷ ସମୟ ଆସିଲାପରି ଭୟଙ୍କର ରୂପ ଧାରଣ କଲା । ତାଙ୍କର ଆଖି ଦୁଇଟି ଜଳୁଥିବା ଲୁହାର ଦୁଇଟି ପିଣ୍ଡୁଳା ପରି ଦିଶିଲା । ମନେ ହେଲା ଯେପରି କି

ପ୍ରଚଣ୍ଡ କ୍ରୋଧରେ ସେ ଆଖିରୁ ନିଆଁ ହୁଳା ବାହାରୁଛି । ତାଙ୍କର ଆଙ୍ଗୁଠି ଗୁଡିକ ଦେବୀ ମୁଦ୍ରା ଧାରଣ କଲା । ମନ୍ଦିର ଭିତରେ ଓ ବାହାରେ ଥିବା ଭକ୍ତ ମାନେ ତାଙ୍କର କିଳିକିଳା ନାଦର ଅଟ୍ଟହାସ୍ୟ ଶୁଣି ସ୍ତମ୍ଭୀଭୂତ ହେଲେ । ସେମାନେ ତାଙ୍କ ଜୀବନରେ ଏପରି ଅଟ୍ଟହାସ୍ୟ କେବେ ବି ଶୁଣି ନଥିଲେ । ସୁଧାମଣିଙ୍କର ଏପରି ହଠାତ୍ ପରିବର୍ତ୍ତନ ଦେଖି ମନ୍ଦିର ଭିତରେ ଥିବା ଭକ୍ତମାନେ ଭୟରେ ଥରିବାକୁ ଲାଗିଲେ । କେତେ ଜଣ ଉପସ୍ଥିତ ପଣ୍ଡିତ ମାନେ ଶାନ୍ତି ମନ୍ତ୍ର ପାଠ କରିବାକୁ ଆରମ୍ଭ କଲେ । ଆଉ କେତେ ଜଣ ଦେବୀ ମାତାଙ୍କର ମହିମା ଗାନ କଲେ ଓ କିଛି ଭକ୍ତ ଆରତି କଲେ । ବହୁତ ପ୍ରାର୍ଥନା, ଅନେକ ମନ୍ତ୍ର ପାଠ ପରେ ସେ ଶାନ୍ତ ହେଲେ, କିନ୍ତୁ କୃଷ୍ଣ ଭାବ ଦେବୀ ଭାବରେ ପରିଣତ ହୋଇ ଯାଇଥିଲା ।

ସୁଧାମଣି ପରେ କହିଥିଲେ "ଭକ୍ତର ନିର୍ଯ୍ୟାତନା ଦେଖି ମୋର ଇଚ୍ଛା ହେଲା ଯେପରିକି ଭକ୍ତ ମାନଙ୍କୁ ପରିହାସ କରୁଥିବା ଦୁଷ୍ଟ ମାନଙ୍କୁ ବିନାଶ କରି ଦିଅନ୍ତି । ଭକ୍ତ ମାନଙ୍କୁ ଶରଣ ଦେଇ ଦୁଷ୍ଟ ମାନଙ୍କୁ ଦମନ କରିବା ପାଇଁ ଦେବୀଙ୍କର ଭୟଙ୍କର ଭାବ ଉପସ୍ଥିତ ହୋଇଥିଲା ।" ସେହି ଦିନଠାରୁ କୃଷ୍ଣଭାବ ସହ ପୁଣ୍ୟମୟୀ ମାତା ଭକ୍ତ ମାନଙ୍କୁ ଦେବୀ ରୂପରେ ଦର୍ଶନ ଦେଇଥିଲେ । ପବିତ୍ର ଅମ୍ମା ସାର୍ବଜନୀନ ପ୍ରେମର ଅବତାର । ଏହି ସାଧ୍ୱୀ ଗୁଣ ଗୁଡିକ ତାଙ୍କର ବାଲ୍ୟକାଳରୁ ପ୍ରକଟ ହୋଇଥିଲା । ସମସ୍ତଙ୍କୁ ସ୍ନେହ, ସାହାଯ୍ୟ ଓ ସେବା କରିବାର ପ୍ରବଳ ଇଚ୍ଛା ପୂର୍ଣ୍ଣମାତ୍ରାରେ ପ୍ରକାଶ ପାଇଲା । ଅମ୍ମା ବିଷୟୀ ଲୋକ, ସାଧୁ, ଶିକ୍ଷିତ, ଅଶିକ୍ଷିତ, ଧନୀ, ଗରୀବ, ରୋଗୀ ଓ ସୁସ୍ଥ ଲୋକ ସମସ୍ତଙ୍କୁ ସମାନ ସ୍ନେହ ଓ କରୁଣାରେ ଗ୍ରହଣ କରିଥିଲେ । ଧୈର୍ଯ୍ୟ ସହ ସମସ୍ତଙ୍କର ଦୁଃଖ ଦୁର୍ଦ୍ଦଶା ଶୁଣି ସେମାନଙ୍କର ଜ୍ଞାନ ଓ ବୁଦ୍ଧି ଅନୁସାରେ ସେମାନଙ୍କୁ ଉପଯୁକ୍ତ ଉପଦେଶ ଦେଉଥିଲେ । ପ୍ରତ୍ୟେକଙ୍କର ଯେପରି ଦରକାର, ସେ ସେପରି ପଥ ପ୍ରଦର୍ଶନ କରି ସେମାନଙ୍କର ଦୁରାବସ୍ଥାରେ ସାନ୍ତ୍ୱନା ଦେଉଥିଲେ ।

ଦେବୀ ଭାବର ଦର୍ଶନ ପରେ ପରେ ଅମ୍ମାଙ୍କ ଭିତରେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରାଗଲା । ତାଙ୍କର ଦେବୀ ସାଧନା ସମୟରେ ସେ କାହା ସହିତ ମନୋଭାବ ବିନିମୟ ନ କରି ସମସ୍ତଙ୍କ ଠାରୁ ପୁରାପୁରି ଅଲଗା ହୋଇ ରହୁଥିଲେ । ତାଙ୍କର ସମସ୍ତ ସମୟ ଦେବୀ ମାତାଙ୍କର ପ୍ରାର୍ଥନା ଓ ତପ ଧ୍ୟାନରେ କଟୁଥିଲା । ଯଦିଓ

ତାଙ୍କର ବାପା ମା ଓ ଭାଇ ତାଙ୍କୁ ଦୈହିକ ଓ ମାନସିକ ନିର୍ଯ୍ୟାତନା ଦେଉଥିଲେ, ସେ ନୀରବ ରହୁଥିଲେ । ଯେତେବେଳେ ତାଙ୍କର ବାପା, ମା, ଭାଇ ଭାବ ଦର୍ଶନ କିମ୍ବା ତାଙ୍କର ଭକ୍ତ ମାନଙ୍କ ସହ ସଂପର୍କ ନେଇ ଚର୍ଚ୍ଚା କରୁଥିଲେ, ସେ ସେମାନଙ୍କ ସହ ନିର୍ଭୟରେ ଯୁକ୍ତି କରି ନିଜର ଇଚ୍ଛାକୁ ବଜାୟ ରଖୁଥିଲେ । ଏଣିକି ସେ ଭକ୍ତ ମାନଙ୍କ ସହ ବେଶୀ ମିଶିବାକୁ ଆରମ୍ଭ କରି ସେମାନଙ୍କୁ ଆଧ୍ୟାତ୍ମିକ ଉପଦେଶ ଦେବାକୁ ଆରମ୍ଭ କଲେ । ଏହିଠାରୁ ହିଁ ଅମ୍ମାଙ୍କର ଆଧ୍ୟାତ୍ମିକ ପ୍ରଚାର ଆରମ୍ଭ ହେଲା ।

**ମୋର ନିରାକାର ବ୍ରହ୍ମ**

ସେହି ଦିନ ଠାରୁ ମୁଁ କାହାକୁ ମୋର ନିରାକାର ବ୍ରହ୍ମ ଠାରୁ ଅଲଗା ଭାବରେ ଦେଖି ପାରିଲି ନାହିଁ ତାହାରି ଭିତରେ ହିଁ ଚରାଚର ବିଶ୍ୱ ଜଗତ ଗୋଟିଏ ପାଣି ଫୋଟକା ପରି ଜାଣିନି ।

ପୁଣ୍ୟମୟୀ ମା ପରି ଅନେକ ଅମୂଲ୍ୟ ବଚନରେ ଅନ୍ତର୍ଦୃଷ୍ଟିର ଆଭାସ ଦେଇଥିଲେ । ଭଗ ଅନୁଭବର ଚରମ ସ୍ତରରେ ପହଂଚିସାରି ମଧ୍ୟ ଅମ୍ମା ଆହୁରି ଅନେକ ସାଧନା କରି ଦେଖାଇଥିଲେ ଯେ ବିଭିନ୍ନ ରୂପ ଧାରଣ କରିଥିବା ଦେବାଦେବୀ ମାନେ ମଧ୍ୟ ଅଦ୍ୱୈତ ଭାବର ଗୋଟିଏ ଗୋଟିଏ ଅଂଶ । ନିଜ ମନକୁ ସଂପୂର୍ଣ୍ଣ ଭାବରେ ଆୟତ୍ତ କରି ଅମ୍ମା ଜାଣିପରିଥିଲେ ଯେ ସେ ସ୍ୱଇଚ୍ଛାରେ ଯେ କୌଣସି ଐଶ୍ୱରୀକ ଭାବ ଧାରଣ କରି ପାରିବା ପାଇଁ ସକ୍ଷମ । ନିଜର ସାଧନା ସମୟର ବିଭିନ୍ନ ଅନୁଭୂତି ସେ ବର୍ଣ୍ଣନା କରିଛନ୍ତି ।

"ଦିନେ ସାଧନାର ଶେଷ ଆଡକୁ ମୋର ମନେ ହେଲା ମୋ ପାଟିରୁ ଗୋଟିଏ ତୀକ୍ଷ୍ଣ ଦାନ୍ତ ବାହାରୁଛି । ସେହି ସମୟରେ ମୁଁ ଗୋଟିଏ ଭୟଙ୍କର ଗୁଣୁ ଗୁଣୁ ଶବ୍ଦ ଶୁଣିଲି, ମୁଁ ସ୍ପଷ୍ଟ ଦେଖିଲି ଦେବୀଙ୍କର ତୀକ୍ଷ୍ଣ ଦାନ୍ତ, ଲମ୍ବା ଝୁଲୁଥିବା ଜିଭ, କଳା କୁଂଚୁ କୁଂଚୁ ବାଳ, ଲାଲ ବାହାରି ଆସୁଥିବା ବଡ ଆଖି ଓ ଘନ ନୀଳ କଳା ରଙ୍ଗ । ମୁଁ ଭାବିଲି ଜଲଦି ଦଉଡି ପଳା, ଦେବୀ ମୋତେ ମାରିବାକୁ ଆସୁଛନ୍ତି । ମୁଁ ଠିକ୍ ଦଉଡି ଯିବାକୁ ବସିଲା ବେଳେ, ହଠାତ୍ ମନେ ପଡିଗଲା ଯେ ମୁଁ ନିଜେ ହିଁ ଦେବୀ ଆଉ ସେ ଗୁଣୁ ଗୁଣୁ ଶବ୍ଦ ମୁଁ ନିଜେ ହିଁ କରୁଛି । ପରମୁହୂର୍ତ୍ତରେ ମୁଁ ଦେଖିଲି ଯେ ମୁଁ ଦେବୀଙ୍କର

ବୀଣା ଧରିଛି । ମୁଁ ତାଙ୍କର ମୁକୁଟ ପିନ୍ଧିଛି ଓ ନାକ ଗୁଣା ମଧ୍ୟ ପିନ୍ଧିଛି । କିଛି ସମୟ ପରେ ଭାବିଲି, ଏ କଅଣ ? ମୁଁ କଣ ଦେବୀ ହୋଇ ଯାଇଛି ? ଏ ନିଶ୍ଚୟ ଦେବୀ ମାତାଙ୍କର ମୋ ସାଧନାରେ ବାଧା କରିବା ପାଇଁ କିଛି ଗୋଟେ କୌଶଳ, ତେଣୁ ମୁଁ ଭାବିଲ, ମୁଁ ତାହାହେଲେ ଶିବଙ୍କୁ ଧ୍ୟାନ କରିବି, ଦେଖେଁ କଣ ହେଉଛି । କିନ୍ତୁ ଯେଉଁ ମୁହୂର୍ତ୍ତରେ ମୁଁ ଶିବଙ୍କ ରୂପକୁ ଧ୍ୟାନ କରିବାକୁ ଲାଗିଲି, ମୁଁ ଠିକ୍ ତାଙ୍କ ପରି ହୋଇଗଲି, ସେହି ଜଟ ବାଳ, ବେକରେ ଓ ହାତରେ ଗୁଡେଇ ହୋଇଥିବା ସାପ ମାଳ । ମୁଁ ଭାବିଲି ମତେ ବୋଧେ ଶିବ ପରୀକ୍ଷା କରୁଛନ୍ତି । ତେଣୁ ଶିବଙ୍କ ରୂପକୁ ଧ୍ୟାନ କରିବା ବନ୍ଦ କରି ବର୍ତ୍ତମା[illegible] ମୁଁ ମୋର ହୃଦୟ ଓ ଆତ୍ମା ଦେଇ ବିଘ୍ନ ବିନାଶକ ପ୍ରଭୁ ଗଣେଶଙ୍କର ରୂପକୁ ଧ୍ୟାନ କଲି, [illegible]ଙ୍ଗେ ସାଙ୍ଗେ ମୋର ରୂପ ପୂରାପୁରି ଗଣେଶଙ୍କ ପରି ହୋଇଗଲା, ଗୋଟିଏ ହାତୀର ମୁ[illegible] [illegible]ମ୍ୱା ଶୁଣ୍ଢ , ଗୋଟିଏ ଯୋଡା ଦାନ୍ତ, ତା ଭିତରୁ ଗୋଟିଏ ଅଧା ଭଙ୍ଗା .... ଯେଉଁ ଦେବା ଦେବୀଙ୍କର ରୂପକୁ ମୁଁ ଧ୍ୟାନ କଲି, ମୁଁ ସେହି ରୂପକୁ ଧାରଣ କଲି । ତାପରେ ମୁଁ ନିଜ ଭିତରୁ ଗୋଟିଏ ଦୈବୀ ବାଣୀ ଶୁଣିଲି "ତୁ ସେମାନଙ୍କ ଠାରୁ ଅଲଗା ନୁହଁ, ସେମାନେ ଅନେକ ଆଗରୁ ତୋ ଦେହରେ ମିଶି ସାରିଛନ୍ତି । ତେଣୁ ତୁ କାହିଁକି ଏଇ ଦେବା ଦେବୀଙ୍କୁ ଡାକୁଛୁ ?"

ସେହି ଦିନଠାରୁ ପୁଣ୍ୟମୟୀ ଅମ୍ମାଙ୍କର ରୂପକୁ ଧ୍ୟାନ କରିବା ବଳେ କମିଗଲା । ସର୍ବମୟ ପବିତ୍ର ଶବ୍ଦ ଓଁ ତାଙ୍କ ଭିତରୁ ବାହାରିବାକୁ ଲାଗିଲା ଏବଂ ତାଙ୍କର ଜୀବାତ୍ମା ସଂପୂର୍ଣ୍ଣ ଭଗବତ୍‌ଙ୍କ ଭିତରେ ଲୀନ ହେଲା । ତା ସତ୍ତ୍ୱେ ଲୋକ ଶିକ୍ଷା ପାଇଁ ସେ ବସି ଧ୍ୟାନ କଲେ । ତାଙ୍କୁ ଏ ବିଷୟରେ ପଚରା ଗଲେ ସେ କହୁଥିଲେ "ଧ୍ୟାନ ସମୟରେ ମା ସବୁ ପିଲାଙ୍କର ଖବର ରଖେ । ବିଶେଷ କରି କଷ୍ଟ ଭୋଗୁ ଥିବା କିମ୍ୱା ମାଙ୍କ କଥା ଗଭୀର ଭାବରେ ଚିନ୍ତା କରୁଥିବା ପିଲା ମାନଙ୍କ ପାଖକୁ ମା ନିଶ୍ଚୟ ଯାଏ ।"

ଠିକ୍ ସେହିପରି ଗୋଟିଏ ଘଟଣା ଶ୍ରୀମଦ୍ ଭାଗବତରେ ଲେଖା ଅଛି । ଦିନେ ମହର୍ଷି ନାରଦ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିବା ପାଇଁ ଦ୍ୱାରକା ଯାଇଥିଲେ । ଦ୍ୱାରକାରେ ପହଂଚି ଶ୍ରୀକୃଷ୍ଣଙ୍କୁ ଗଭୀର ତପସ୍ୟାରତ ଦେଖିଲେ । ନାରଦ ଭକ୍ତି ସହ ମହାପ୍ରଭୁଙ୍କୁ ନମସ୍କାର କରି ପଚାରିଲେ "ହେ ମହାଭାଗ ! ଆପଣ କାହାକୁ ଧ୍ୟାନ କରୁଛନ୍ତି ?" ଭଗବାନ ଶ୍ରୀକୃଷ୍ଣ ଅଳ୍ପ ହସି ଉତ୍ତର ଦେଲେ "ମୁଁ ମୋର ଭକ୍ତ ମାନଙ୍କୁ ଧ୍ୟାନ କରୁଛି" ।

ଯଦିଓ ଛୋଟିଆ ସୁଧାମଣି ଅନେକଙ୍କ ପାଇଁ ଅମ୍ମା ରୂପ ଧାରଣ କରିଥିଲେ, ନିଜ ପରିବାର ଲୋକଙ୍କ ପାଇଁ ସେ ସେହି ସୁଧାମଣି ହିଁ ଥିଲେ । ସେ ପ୍ରକୃତରେ ପରଂବ୍ରହ୍ମରେ ଅଧିଷ୍ଠିତ ହୋଇ ସାରିଥିଲେ, କିନ୍ତୁ ତାଙ୍କର ବାପା, ମା ବଡ ଭାଇଙ୍କ ଲାଗି ଏକଥା ଦୁର୍ବୋଧ୍ୟ ଥିଲା । ସେମାନେ ତାଙ୍କର ବ୍ୟବହାରକୁ ମସ୍ତିଷ୍କ ବିକୃତି ବୋଲି ହିଁ ଭାବୁଥିଲେ । ସେମାନେ ଭାବୁଥିଲେ ଭକ୍ତ ମାନଙ୍କ ସହ ସଂପର୍କ ତାଙ୍କ ଗୋଡ ଖସାଇ ଖରାପ ରାସ୍ତାକୁ ନେଇଯିବ ଓ ତା ଫଳରେ ଘରର ଦୁର୍ନାମ ହୋଇ ମାନସମ୍ମାନ ମାଟିରେ ମିଶି ଯିବ । ତାଙ୍କର ଭାଇ ସୁଭଗନ ଅମ୍ମାଙ୍କ ବିରୁଦ୍ଧରେ ଅତୀବ କଟୁ ଓ ହିଂସ୍ର ହୋଇ ପଡିଥିଲା । ଦିନେ ସୁଭଗନ ଓ କିଛି ଜ୍ଞାତି ଭାଇ ମାନେ ମିଳି ମିଛ ଆଳରେ ତାଙ୍କୁ ଜଣେ ଆତ୍ମୀୟଙ୍କ ଘରକୁ ଡାକି ନେଲେ । ସେ ଯେତେବେଳେ ସେଠି ପହଂଚିଲେ ସେମାନେ ମିଳି ତାଙ୍କୁ ଗୋଟିଏ ବଖରା ରେ ବନ୍ଦ କରିଦେଲେ ଓ ଜଣେ ଜ୍ଞାତି ଭାଇ ହଠାତ୍ ଅଂଟା ତଳେ ଲୁଚାଇ ରଖିଥିବା ଲମ୍ବ ଛୁରା ବାହାର କରି ତାଙ୍କୁ ଧମକାଇବାକୁ ଲାଗିଲା, "ତୋର ଏ ବ୍ୟବହାର ବହୁତ ଆଗକୁ ବଢିଲାଣି ! ତୁ ନିଶ୍ଚୟ ଘରର ବଦନାମ କରିବୁ ! ତୁ ଏଣୁ ତେଣୁ ସବୁ ପ୍ରକାରର ଲୋକ ସାଙ୍ଗରେ ଖୋଲା ଖୋଲି ମିଶି ଜିଦ୍ କରି ନାଚୁଛୁ, ଗାଉଛୁ । ଏହାଠାରୁ ତୋର ମରିଯିବା ଭଲ" । ସେ ଅମ୍ମାଙ୍କର ହସ ହସ ପ୍ରତ୍ୟୁତ୍ତର ଶୁଣି ରାଗି ଯାଇଥିଲେ । ଅମ୍ମା କହିଲେ "ମୁଁ ମରିବା ପାଇଁ ଜମାରୁ ଡରୁ ନାହିଁ, ଏ ଦେହର ଶେଷ ସମୟ ଦିନେ ନା ଦିନେ ନିଶ୍ଚୟ ଆସିବ । କିନ୍ତୁ ତୁମେ ଆତ୍ମାକୁ ମାରିବା ଅସମ୍ଭବ । ବର୍ତ୍ତମାନ ତୁମେ ମୋର ଏଇ ପାର୍ଥିବ ଦେହକୁ ଶେଷ କରିବାକୁ ଚାହୁଁଛ । ମୁଁ ମୋର ଶେଷ ଇଚ୍ଛା ଜଣାଉଛି, ତୁମକୁ ମୋର ଇଚ୍ଛା ପୁରଣ କରିବାକୁ ହିଁ ହେବ । ମତେ କିଛି ସମୟ ଧ୍ୟାନ କରିବାକୁ ଦିଅ, ତା ପରେ ମୁଁ ଧ୍ୟାନ କଲାବେଳେ ହତ୍ୟା କରିପାର ।" ତାଙ୍କର ନିର୍ଭୀକ ଉତ୍ତର ଶୁଣି ସେମାନେ ଆହୁରି କ୍ରୋଧାନ୍ୱିତ ହୋଇଗଲେ । ସେମାନଙ୍କ ଭିତରୁ ଜଣେ କହିଲା "ତୁ କିଏସେ ଆମକୁ ଆଦେଶ ଦେବା ପାଇଁ? ଆମେ କଣ ଏଠିକୁ ଆସିଛୁ ତୋ ଇଚ୍ଛା ଅନୁସାରେ ତତେ ମାରିବୁ କିମ୍ବା ନ ମାରିବୁ ଠିକ୍ କରିବା ପାଇଁ" ? ଅମ୍ମା ହସି ସାହସର ସହିତ ପ୍ରତ୍ୟୁତ୍ତର ଦେଲେ "ଭଗବାନଙ୍କ ଛଡା ମୋ ଜୀବନକୁ ଶେଷ କରିବାର କାହାର ସାଧ୍ୟ ନାହିଁ" । ଆଉ ଜଣେ ଜ୍ଞାତି ଭାଇ ପାଟି କଲେ "ଭଗବାନ ! କିଏ

ତୋର ଭଗବାନ ?" ସେମାନେ ଅମ୍ମାଙ୍କୁ ମାରିବାକୁ ମୁହଁରେ ଧମକାଇ ଥିଲେ, କିନ୍ତୁ ତାଙ୍କର ନିର୍ଭୀକ ଉତ୍ତର ଓ ଅବିଚଳିତ ଭାବ ଦେଖି ସେମାନଙ୍କର ସାହସ ହେଲା ନାହିଁ । ପ୍ରଥମେ ଛୁରୀ ଦେଖାଇଥିବା ଜ୍ଞାତି ଭାଇଟି ହଠାତ୍ ସାମ୍ନାକୁ ଡେଇଁପଡି ସୁଧାମଣିଙ୍କ ଛାତିରେ ଖାଲି ଛୁରୀଟି ଲଗାଇ ଦେଲେ, କିନ୍ତୁ ସେହିକ୍ଷଣି ସେ ନିଜେ ପୁରା ଅଚଳ ହୋଇ ଗଲେ ଓ ଅମ୍ମାଙ୍କ ପରି ନିଜ ଛାତିର ଠିକ୍ ସେହି ଜାଗାରେ ଭୟଙ୍କର ଯନ୍ତ୍ରଣା ଅନୁଭବ କରି ତଳେ ଚିତ୍କାର କରି ପଡିଗଲେ । ଠିକ୍ ସେହି ସମୟରେ ଦମୟନ୍ତୀ ଆସି ପହଂଚି ଗଲେ । ଆଗରୁ ସେ ସୁଧାମଣିଙ୍କୁ ସୁଭଗନ ଓ ଅନ୍ୟାନ୍ୟ ଜ୍ଞାତି ଭାଇମାନଙ୍କ ସଙ୍ଗେ ବାହାରି ଆସିବାର ଦେଖିଥିଲେ । ଭିତରୁ ପାଟି ଚିତ୍କାର ଶୁଣି ବଡ ପାଟିରେ ଡାକି ସେ ଦୁଆର ବାଡେଇବାକୁ ଆରମ୍ଭ କଲେ । ଯେତେବେଳେ ଦ୍ୱାର ଖୋଲିଗଲା ଦମୟନ୍ତୀ ଅମ୍ମାଙ୍କ ହାତ ଧରି ସମୁଦ୍ର କୂଳ ବାଟ ଦେଇ ଘରକୁ ନେଇ ଯିବାକୁ ଆରମ୍ଭ କଲେ । ଇଡାମାନ୍ନେଲକୁ ଫେରିବା ବାଟରେ ଅମ୍ମା ତାଙ୍କ ମାଙ୍କୁ କହିଲେ "ତମ ମାନଙ୍କର ମୋ ଯୋଗୁଁ ସମ୍ମାନ ହାନି ହେଉଛି, ଏହି ସମୁଦ୍ର ମଧ୍ୟ ମୋର ମା । ସେ ମତେ ବାହୁ ପ୍ରସାରି ଗ୍ରହଣ କରିବେ । ମୁଁ ତାଙ୍କ କୋଳକୁ ଯାଉଛି" । ତାଙ୍କ କଥା ଶୁଣି, ଦମୟନ୍ତୀ ବିଚଳିତ ହୋଇ ପଡିଲେ । ସେ ଚିତ୍କାର କରି କହିଲେ "ଝିଅ ! ଏପରି କହ ନାହିଁ, ଏପରି କହ ନାହିଁ ଝିଅ ! କୃଷ୍ଣଭାବ ସମୟରେ ଭଗବାନ ମତେ କହିଥିଲେ ତୁ ଯଦି ଆତ୍ମହତ୍ୟା କରିବୁ, ମୋର ସବୁ ପିଲାମାନେ ପାଗଳ ହୋଇଯିବେ..." ଅମ୍ମାଙ୍କୁ ବହୁତ ବୁଝାଇ ଶୁଝାଇ ଇଡାମାନ୍ନେଲକୁ ଫେରାଇ ନେଇଗଲେ ।

ଏ ଘଟଣା ଏଠାରେ ଶେଷ ହୋଇନଥିଲା, ଅମ୍ମାଙ୍କୁ ଛୁରୀ ଭୁଷିବାକୁ ଉଦ୍ୟମ କରିଥିବା ଜ୍ଞାତି ଭାଇଟିର ଛାତିରେ ଯନ୍ତ୍ରଣା ଯୋଗୁଁ ତାଙ୍କୁ ଡାକ୍ତରଖାନାକୁ ନିଆ ଯାଇଥିଲା । ସେ ସାଂଘାତିକ କଷ୍ଟ ଭୋଗୁଥିବା ସମୟରେ ଅମ୍ମା ତାଙ୍କୁ ଡାକ୍ତରଖାନାରେ ଦେଖିବାକୁ ଯାଇଥିଲେ । ସେ ତାଙ୍କୁ ସ୍ନେହ ସହ ସାନ୍ତ୍ୱନା ଜଣାଇ ଥିଲେ ଓ ତାଙ୍କୁ ନିଜ ହାତରେ ଖୁଆଇ ଥିଲେ । ସେ ମଧ୍ୟ ନିଜର ବିରାଟ ଭୁଲ ପାଇଁ ଗଭୀର ଅନୁତାପ କରିଥିଲେ ଓ ଅମ୍ମାଙ୍କର କରୁଣା ଓ କ୍ଷମାଶୀଳ ଭାବ ଦେଖି କାନ୍ଦି ପକାଇଥିଲେ । ତାଙ୍କୁ ଖୁବ୍ ଭଲ ଚିକିତ୍ସା ମିଳିବା ସତ୍ତ୍ୱେ ସେ ଖାଲି ରକ୍ତ ବାନ୍ତି କରି କରି ମରିଗଲେ ।

ଅମ୍ମାଙ୍କର ମନ ଭିତରେ ତାଙ୍କୁ ହତ୍ୟା କରିବାକୁ ଆସିଥିବା ଜ୍ଞାତି ଭାଇଟି ପ୍ରତି କୌଣସି ଶତ୍ରୁତା ଭାବ ଆସି ନଥିଲା କିମ୍ବା ସେ ଏପରି କୁକର୍ମର ପ୍ରତିଶୋଧ ନେବା ପାଇଁ କୌଣସି ଚେଷ୍ଟା କରି ନଥିଲେ । ସେ ତାର ନିଜର କର୍ମଫଳ ଭୋଗ କରିଥିଲା । ଅମ୍ମା କହିଥିଲେ "ଯେପରି ମଣିଷ ମାନେ ମୋ ପ୍ରତି ପ୍ରଗାଢ ପ୍ରେମ ଅନୁଭବ କରନ୍ତି, ସେହିପରି ଅନେକ ଭୁତାତ୍ମା ମଧ ଅମ୍ମାକୁ ଭଲ ପାଆନ୍ତି । ଯଦି କିଏ ଅମ୍ମାର ଅନିଷ୍ଟ କରିବାକୁ ଚାହେଁ ଅମ୍ମା କୌଣସି ପ୍ରତିକ୍ରୟା ଦେଖାଏ ନାହିଁ, ଅମ୍ମା ଏହିପରି ଲୋକ ପ୍ରତି ଉତ୍ତେଜିତ ଭାବ ଦେଖାଏ ନାହିଁ, କିମ୍ବା ସେ ଅଜ୍ଞ ବ୍ୟକ୍ତି ପ୍ରତି କୌଣସି ଅନିଷ୍ଟକର ଚିନ୍ତା କରେ ନାହିଁ, କିନ୍ତୁ ଏହି ଅଶରିରୀ ଆତ୍ମାମାନେ ରାଗିଯାଇ ପ୍ରତିଶୋଧ ନିଅନ୍ତି । ତୁମେମାନେ ଏହା ବୁଝି ପାରୁଛ ? ଯଦି କାହାର ମା କୁ କେବେ ଆକ୍ରମଣ କରାଯାଏ, ପିଲାମାନେ କେବେ ନିର୍ଲିପ୍ତ ଭାବରେ ବସି ପାରିବେ ? ଯଦି ତାଙ୍କର ମା ତାଙ୍କୁ ବନ୍ଦ କରାଇବା ପାଇଁ ଚେଷ୍ଟା କରିବ, ତେବେ ମଧ ସେମାନେ ସେ ଲୋକଙ୍କୁ ଖୋଜି ତାର ପ୍ରତିଶୋଧ ନେବେ ।"

ପାର୍ଥିବ ଦୁନିଆର ବାଧା ଅତିକ୍ରମ କରି ଅମ୍ମା ଭକ୍ତ ମାନଙ୍କର ଜାତି, ଗୋତ୍ର, ସାମାଜିକ ସ୍ଥିତି, ଲିଙ୍ଗ କିଛି ଭେଦ ନ ମାନି ସମସ୍ତଙ୍କୁ ସମାନ ଭାବରେ ଗ୍ରହଣ କରୁଥିଲେ । ଅଜ୍ଞାନ ଅବିଶ୍ୱାସୀ ଲୋକ ମାନେ ଅମ୍ମାଙ୍କର ସମଦୃଷ୍ଟି, ଉଦାର ମନୋଭାବକୁ ମାନସିକ ବିକୃତି ବୋଲି ଭାବୁଥିଲେ । ଏହି ଗଣ୍ଡଗୋଳକାରୀ ଲୋକମାନେ ଭାବ ଦର୍ଶନ ସମୟରେ ମନ୍ଦିରରେ ପଶି ଅମ୍ମାଙ୍କୁ ଅବଜ୍ଞା ସୂଚକ ପ୍ରଶ୍ନ ପଚାରିବା ଚାଲୁ ରଖିଥିଲେ । ଯଦିଓ ଅମ୍ମା ଏହା ଶୁଣି ଶାନ୍ତ ଓ ଅବିଚଳିତ ରହୁ ଥିଲେ, ସୁଗୁଣାନନ୍ଦ ଏପରି ଔଦ୍ଧତ୍ୟ ପୂର୍ଣ୍ଣ ବ୍ୟବହାର ଦେଖି ଅତ୍ୟନ୍ତ ବିମର୍ଷ ହୋଇ ପଡୁଥିଲେ । ତାଙ୍କର ଝିଅର ବିବାହ ଠିକ କରିବାର ସବୁ ଚେଷ୍ଟା ବିଫଳ ହୋଇ ଯାଇଥିଲା, ତଥାପି ସେ ଚିନ୍ତା ମନରୁ କୌଣସି ମତେ ଦୂର କରି ପାରୁନଥିଲେ । ଭାବ ଦର୍ଶନ ତାଙ୍କର ଏହି ଉଚ୍ଛାରେ ବିରାଟ ବାଧା ସୃଷ୍ଟିକରୁଛି ବୋଲି ସେ ଅନୁଭବ କରିବା ଆରମ୍ଭ କଲେ । ଭାବ ଦର୍ଶନ ଗୋଟିଏ ଲଜ୍ଜାଜନକ ଜିନିଷ ବୋଲି ସୁଭଗନର ଧାରଣା ସହ ସେ ଏକମତ ହେଲେ । ଆଉ ଗୋଟିଏ ଜିନିଷ ମଧ୍ୟ ତାଙ୍କୁ ଚିନ୍ତିତ କରାଇଲା । ତାଙ୍କ ଝିଅର ଦେହ ଭାବ ଦର୍ଶନ ପରେ ପଥର ପରି ଟାଣ ହୋଇ ଯାଉଥିଲା । ଘଂଟା ଘଂଟା

ଧରି ଜୋରରେ ଘଷା ହେଲାପରେ ଯାଇ ସେ ସାଧାରଣ ଅବସ୍ଥାକୁ ଫେରୁଥିଲେ ।

ସୁଗୁଣାନନ୍ଦ ମନେ ମନେ ସିଦ୍ଧାନ୍ତ କରିଦେଲେ ଯେ ସୁଭଗନ ସଙ୍ଗରେ ମିଶି କୌଣସିମତେ ଭାବ ଦର୍ଶନ ବନ୍ଦ କରିଦେବେ । ତାପର ଦେବୀ ଭାବ ଦର୍ଶନ ଦିନ ମନ୍ଦିରରେ ପହଂଚି ସୁଗୁଣାନନ୍ଦଙ୍କ ଅମ୍ମାଙ୍କୁ କହିଲେ "ଦେବୀ ଝିଅର ଦେହରୁ ବାହାରି ଚାଲିଯିବା ଉଚିତ । ଆମର ଏଠି ଭାବ ଦର୍ଶନ ଦରକାର ନାହିଁ । ଆମେ ମାନେ ତାର ବାହାଘର କରାଇ ଦବାକୁ ଚାହୁଁଛୁ । ମୋ ଝିଅ ମତେ ଫେରାଇ ଦିଅ" । ଅମ୍ମା ତାଙ୍କୁ ଶାନ୍ତ ଭାବରେ ଉତ୍ତର ଦେଲେ "ଯଦି ମୁଁ ତମର ଝିଅକୁ ଫେରାଇ ଦେବି ତାହେଲେ ଗୋଟିଏ ଶବ ହିଁ ଫେରିବ ଓ ତାର ଶରୀର ଶୀଘ୍ର ପଚିବାକୁ ଆରମ୍ଭ କରିବ । ବାହାଘର ନକରି ଜଲଦି ପୋଡିବାକୁ ହେବ" । ସୁଗୁଣାନନ୍ଦ ଏ ସବୁ ଶୁଣିବାକୁ ଚାହିଁଲେ ନାହିଁ, ଓଲଟି ଦାବୀ କଲେ "ଦେବୀ ତାଙ୍କ ନିଜ ଘରକୁ ଫେରନ୍ତୁ, ମୋତେ ମୋ ଝିଅ ଦରକାର !"

ଅମ୍ମା କହିଲେ "ଯଦି ତମେ ତାହା ହିଁ ଚାହିଁ, ତେବେ ହେଇ ତାକୁ ନିଅ!" ସାଙ୍ଗେ ସାଙ୍ଗେ ସେ ମନ୍ଦିରର ଚଟାଣ ଉପରେ ପଡିଗଲେ । କିଛି ମୁହୂର୍ତ୍ତ ଭିତରେ ତାଙ୍କର ଦେହ ଟାଣ ହୋଇଗଲା ଓ ତାଙ୍କର ହୃଦୟର ସ୍ପନ୍ଦନ ବନ୍ଦ ହୋଇଗଲା, ଯଦିଓ ତାଙ୍କର ଆଖି ପୁରା ଖୋଲା ଥିଲା, ତା ଭିତରେ କୌଣସି ଜୀବିତାବସ୍ଥାର ଲକ୍ଷଣ ନଥିଲା । ସେ ଦେହ ତ୍ୟାଗ କଲେ ।

ସମସ୍ତେ ଜୋର୍‌ରେ କାନ୍ଦିବାକୁ ଆରମ୍ଭ କଲେ । ଦମୟନ୍ତୀ ଓ ତାଙ୍କର ଝିଅ ମାନେ ଚେତା ଶୂନ୍ୟ ହୋଇ ମାଟିରେ ପଡିଗଲେ । ଚାରିଆଡେ କୋଳାହଳ ପଡିଗଲା ଯେ ସୁଗୁଣାନନ୍ଦଙ୍କର କିଛି ଭୁଲ ଯୋଗୁ ଦେବୀ ସୁଧାମଣିଙ୍କର ଜୀବନ ନେଇଗଲେ । ସମସ୍ତେ ତାଙ୍କୁ ଅମ୍ମାଙ୍କର ଅସାମୟିକ ମୃତ୍ୟୁ ପାଇଁ ଦାୟୀ କଲେ ।

ଦେହର ଚାରିପଟେ ତେଲର ଦୀପ ସବୁ ଜଳା ଗଲା । ସମସ୍ତ ପ୍ରକୃତି ସେହି ମୁହୂର୍ତ୍ତରେ ପୁରା ନୀରବ ନିଷ୍କ୍ରିୟ ହୋଇଗଲା । କେତେକ ଭକ୍ତ ଜୋରରେ କାନ୍ଦିବାକୁ ଲାଗିଲେ, ଆଉ କେତେକ ଦୁଃଖ ସମ୍ଭାଳି ନପାରି ବାଚାଳ ପରି ଗପିବାକୁ ଆରମ୍ଭ କଲେ । ଆଉ କେତେକ ଦେହ ପାଖରେ ଚୁପ ହୋଇ ବସିଲେ ଓ ମଝିରେ ମଝିରେ

ନାକ ପାଖରେ ହାତ ଦେଇ ନିଶ୍ୱାସ ଆସୁଛି କି ନାହିଁ ପରୀକ୍ଷା କଲେ । କିଛି ଆସୁନଥିଲା । ଡାକ୍ତର ତାଙ୍କର ନାଡୀ ପରୀକ୍ଷା କରି ସେ ମୃତ ବୋଲି କହିଲେ । ସବୁ କିଛି ଦୁଃସହ ମୁହୂର୍ତ୍ତ ପରି ମନେ ହେଲା ।

ସୁଗୁଣାନନ୍ଦ ଯେତେବେଳେ ହୃଦୟଙ୍ଗମ କଲେ ଯେ ସେ ନ ବୁଝି ନ ଶୁଝି ଏତେ ବଡ ଭୟଙ୍କର ଅଘଟଣ ସୃଷ୍ଟି କରିଛନ୍ତି ସେ ଦୁଃଖରେ ଚେତା ଶୁନ୍ୟ ହୋଇ ପଡିଗଲେ । ଚାରିଆଡେ ଶୋକାତୁର ନୀରବତା ଛାଇ ଗଲା । ଯାହା ଅସମ୍ଭବ ତାହା ହୋଇ ଯାଇଛି । ଆଉ ତାଙ୍କୁ ବଂଚାଇ ଉଠାଇବାର ଆଶା ସମସ୍ତେ ପରିତ୍ୟାଗ କଲେ । ଅଶୁଭ ଆଠ ଘଂଟା ବହୁତ କଷ୍ଟରେ କଟିଲା । ସୁଗୁଣାନନ୍ଦ ଚେତନା ଲାଭ କରି ସେ ଭୟଙ୍କର ପରିସ୍ଥିତି କୁ ପୁଣିଥରେ ସମ୍ମୁଖୀନ ହୋଇ ଦୁଃଖରେ ଦେବୀ ଅମ୍ମାଙ୍କୁ ଡାକିଲେ "ହେ ଦେବୀ ! ମୁଁ ତୁମକୁ ପ୍ରାର୍ଥନା କରୁଛି, ଅତୀବ ଅଜ୍ଞାନତାରେ ମୁଁ ଯେଉଁ କଥା ସବୁ ତୁମକୁ କହିଛି ସେଥିଲାଗି ମୋତେ ଦୟାକରି କ୍ଷମାକର, ମୋର ଝିଅ ଦେହରେ ପ୍ରାଣ ସଂଚାର କରାଅ । ମୋର ଦୋଷ କ୍ଷମା କର ! ମୁଁ ଭୁଲରେ କେବେବି ଏହି ଅଧମ କାମ କରିବି ନାହିଁ ।" ଏହିପରି କାକୁତି ବିନତି କରି ଅଜସ୍ର କାନ୍ଦି ସେ ଭୂମିରେ ସାଷ୍ଟାଙ୍ଗ ପ୍ରଣିପାତ କରି ପଡି ରହିଲେ ।

ହଠାତ ଜଣେ ଭକ୍ତ ଅମ୍ମାଙ୍କ ଶରୀରରେ ଈଷତ୍ ଭାବରେ ଜୀବନ ସଂଚାରଣ ହେବାର ଭାବ ଲକ୍ଷ୍ୟ କଲେ । ଆଶାରେ ଉତ୍କଣ୍ଠିତ ହୋଇ ଦେଖୁଥିବା ଭକ୍ତ ମାନଙ୍କର ଦୁଃଖର ଅଶ୍ରୁଧାରା ଆନନ୍ଦାଶ୍ରୁରେ ପରିଣତ ହେଲା । ଅମ୍ମା ପୁଣି କୃଷ୍ଣଭାବ ନେଇ ଜୀବନ୍ତ ହୋଇ ଉଠିଲେ ! କୃଷ୍ଣ ଭକ୍ତ ସୁଗୁଣାନନ୍ଦଙ୍କୁ ଉଦ୍ଦେଶ୍ୟ କରି କହିଲେ "ଦେବୀ ଶକ୍ତି ବିନା କୃଷ୍ଣଙ୍କର ରହିବା ଅସମ୍ଭବ ।"

ଏହି ଘଟଣା ପିତାଙ୍କର ଭଗବାନ ଓ ତାଙ୍କର ଝିଅ ବିଷୟରେ ମତ ପୁରାପୁରି ବଦଳେଇ ଦେଲା । ସେହିଦିନ ଠାରୁ ସେ ତାଙ୍କୁ ନିଜ ଖୁସିରେ ଯାହା କିଛି କରିବାକୁ ଛାଡିଦେଲେ ଓ ତାଙ୍କର ବାହାଘର ବନ୍ଦୋବସ୍ତ କରିବାର ଚେଷ୍ଟା ପରିତ୍ୟାଗ କଲେ । ପରେ ଅମ୍ମା ଏଇ ବିଷୟରେ ସିଦ୍ଧାନ୍ତ ଦେଇଥିଲେ ।

"ସେ ଦେବୀଙ୍କ ପାଖକୁ ତାଙ୍କର ଝିଅକୁ ଫେରି ପାଇବା ପାଇଁ ଦୃଢଭାବେ ଜିଦ୍

କରିଥିଲେ । କିନ୍ତୁ ସେ ଯଦି ପ୍ରକୃତରେ ସେମାନଙ୍କର ଝିଅ ହୋଇଥାନ୍ତା, ସେମାନଙ୍କର ତାକୁ ଜୀବନ୍ତ କରିବାର କ୍ଷମତା ଥାଆନ୍ତା । ସେକଥା ସେମାନେ କରିପାରିଲେ ନାହିଁ । ସର୍ବ ମୋଟ ଏ ଦେହଟା ହିଁ ସେମାନଙ୍କର । ଯେତେବେଳେ ସେ ତାଙ୍କର ସନ୍ତାନକୁ ଫେରି ଚାହିଁଲେ, ଏ ଶରୀରଟି କେବଳ ସେମାନଙ୍କୁ ଫେରାଇ ଦିଆଗଲା" ।



## ନବମ ଅଧ୍ୟାୟ

### ସତ୍ୟର ଖଣ୍ଡାଧାର

ପିଲା ମାନେ !

ଗଛଟିକୁ ମୂଳୋତ୍ପାଟନ କରୁଥିବା ଲୋକଟିକୁ ମଧ୍ୟ ଗଛଟି ଛାୟାଦାନ କରି ଚାଲିଥାଏ । ଆଧ୍ୟାତ୍ମିକ ପଥରେ ଯାଉଥିବା ବ୍ୟକ୍ତି ଠିକ୍ ସେହିପରି ହେବା ଉଚିତ । ଯେଉଁ ବ୍ୟକ୍ତି ତାକୁ ନିର୍ଯ୍ୟାତନା ଦେଉଥିବା ବ୍ୟକ୍ତିର ମଧ୍ୟ ଶୁଭକାମନା କରିପାରେ ସେ ହିଁ କେବଳ ଆଧ୍ୟାତ୍ମିକ ପଥାନୁଗାମୀ ହୋଇପାରେ । ସାଧକର ପ୍ରଧାନ ଅସ୍ତ୍ର ହେଲା ସତ୍ୟର ଖଣ୍ଡାଧାର ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ଦୁର୍ବୃତ ବୃତଶମନଂ ତବ ଦେବି ଶୀଳଂ
ରୂପଂ ତଥୈତଦବିଚିନ୍ତ୍ୟମତୁଲ୍ୟମନ୍ୟୈଃ
ବୀର୍ଯ୍ୟଂ ଚ ହନ୍ତୃହୃତଦେବପରାକ୍ରମାଣାଂ
ବୈରିଷ୍ୱପି ପ୍ରକଟିତୈବ ଦୟା ତ୍ୱୟେତ୍ଥଂ

ହେ ଦେବୀ !

ତୁମେ ଦୁଷ୍ଟଙ୍କୁ ଦମନ କରିବାରେ ନିପୁଣା । ତୁମର ବିମଳ ରୂପ ଅବର୍ଣ୍ଣନୀୟ । ତୁମର ପରାକ୍ରମ ଦେବତା ମାନଙ୍କୁ ହରାଇ ଦେଇଥିବା ସୁରାସୁର ମାନଙ୍କୁ ମଧ୍ୟ ଭୟଭୀତ କରାଏ । ତୁମର କରୁଣା ଶତ୍ରୁ ମାନଙ୍କ ପ୍ରତି ମଧ୍ୟ ପ୍ରକାଶ ପାଇଥାଏ ।

**ଦେବୀ ମାହାତ୍ମ୍ୟ**

ମନେ ହୁଏ ସବୁ ମହାତ୍ମା ମାନଙ୍କୁ ସାଧାରଣ ଲୋକଙ୍କ ପାଖରୁ ଲାଞ୍ଛନା ସହନ କରିବାକୁ ପଡିଥାଏ, ଓ ସେମାନଙ୍କର ପଥରେ ବାଧାବିଘ୍ନ ଆସିଲେ ମଧ୍ୟ ସେମାନେ ତାକୁ ଅନାୟସରେ ଅତିକ୍ରମ କରି ପାରିଥାନ୍ତି । ଭଗବାନ ଶ୍ରୀକୃଷ୍ଣ, ଶ୍ରୀରାମ, ଯୀଶୁଖ୍ରୀଷ୍ଟ ଓ ବୁଦ୍ଧଦେବଙ୍କ ଜୀବନ ଏହିପରି ଉଦାହରଣ । ବର୍ତ୍ତମାନ ତିନିବର୍ଷ ଅତିକ୍ରମ ହୋଇ ଗଲାଣି । ୧୯୭୮ ମସିହା ଠାରୁ ଭକ୍ତ ମାନଙ୍କର ସଂଖ୍ୟା ବଢି ଚାଲିଲା ଏବଂ

ଅମ୍ମାଙ୍କର ଦର୍ଶନ ପାଇଁ ପୃଥିବୀର ବିଭିନ୍ନ କୋଣରୁ ଲୋକମାନଙ୍କର ସମାଗମ ଆରମ୍ଭ ହୋଇଗଲା । ତାଙ୍କର ଅନୁଗାମୀ ମାନଙ୍କର ସଂଖ୍ୟା ବଢିବା ସଙ୍ଗେ ସଙ୍ଗେ ତାଙ୍କରି ବିରୋଧୀମାନେ ମଧ୍ୟ କୁତ୍ସା ଓ ଅପ ପ୍ରଚାରରେ ଲାଗି ପଡିଲେ, କିନ୍ତୁ ଆଧ୍ୟାତ୍ମିକ ଲକ୍ଷ୍ୟକୁ ପ୍ରତିରୋଧ କରିବା ସାଧାରଣ ମନୁଷ୍ୟର ଶକ୍ତିର ବାହାରେ ।

ଏହି ସମୟରେ ଇଡାମାନ୍ନେଲରେ କିଛି ଗୋଟିଏ ଅଶୁଭ ଘଟଣା ଘଟିବାର ଲକ୍ଷଣ ଦେଖା ଯାଇଥିଲା । ସୁଭଗନ ଭଉଣୀଙ୍କୁ ହତ୍ୟାକଲେ କୁଫଳର ସମ୍ମୁଖୀନ ହେବେ ଜାଣି ମଧ୍ୟ ଷଡଯନ୍ତ୍ରରୁ ପଛଘୁଂଚା ଦେଇ ନଥିଲେ । ସେ ବର୍ତ୍ତମାନ ଖୋଲା ଖୋଲି ପ୍ରତିରୋଧ ଭାବ ପ୍ରଦର୍ଶନ କରିବାକୁ ଲାଗିଲେ । ସେ ନିଜର ସ୍ୱାର୍ଥପର ଚିନ୍ତାରେ ସମଗ୍ର ପରିବାରକୁ ପ୍ରଭାବିତ କରିବାକୁ ଲାଗିଲେ । ଏପରିକି ସେମାନେ ମଧ୍ୟ ତାଙ୍କର ଭୟଙ୍କର ବଦ୍‌ରାଗୀ ପ୍ରକୃତିର ବିରୋଧ କରିବାକୁ ଭୟ କରୁଥିଲେ । କ୍ରମଶଃ ଭକ୍ତ ମାନଙ୍କର ସଂଖ୍ୟା ବୃଦ୍ଧି ଓ ସମାଲୋଚକ ମାନଙ୍କର କୁତ୍ସା ରଟନା ତାଙ୍କ ମନରେ ଅସ୍ଥିରତାର ନିଆଁ କୁହୁଳାଇବାକୁ ଆରମ୍ଭ କରିଦେଲା । ଭାବଦର୍ଶନକୁ ଆସୁଥିବା ଭକ୍ତ ମାନେ ଯେପରି ଦର୍ଶନ କରି ନ ପାରନ୍ତି ସେହି ଆଶାରେ ତାଙ୍କୁ ଘଉଡେଇଦବା ପାଇଁ ସେମାନଙ୍କ ପ୍ରତି ସେ ଭୀଷଣ ଦୁର୍ବ୍ୟବହାର କରିବାକୁ ଲାଗିଲେ ।

ଠିକ ଏହି ସମୟରେ ସୁଭଗନ ଦୁର୍ଭାଗ୍ୟ ବଶତଃ ହେଉ କିମ୍ବା ନିଜର କୁକର୍ମର ଫଳ ଯୋଗୁ ହେଉ ଗୋଦର ରୋଗରେ ଆକ୍ରାନ୍ତ ହୋଇ ପଡିଲେ । ଏହି ରୋଗର ଲକ୍ଷଣ ତାଙ୍କର ହାତ ଓ ଗୋଡରେ ଦେଖାଗଲା । ଯଦିଓ ସେ ଅନେକ ରକମର ଚିକିତ୍ସା କରାଇଲେ, ତାର ଉପଶମ ହେଲା ନାହିଁ । ଆଜୀବନ ରୋଗୀ ହୋଇ ଯିବାର ଚିନ୍ତା ତାଙ୍କୁ ଆହୁରି ବିବ୍ରତ କରିବାକୁ ଲାଗିଲା । ସେ ଅତ୍ୟନ୍ତ ଉଦାସୀନ ହୋଇ ପଡିଲେ ଓ ଆତ୍ମହତ୍ୟା କରିବାର ଲକ୍ଷଣ ତାଙ୍କଠି ଦେଖାଗଲା । ତାଙ୍କର ମାନସିକ ଯନ୍ତ୍ରଣା ସେ ତାଙ୍କର ବନ୍ଧୁ ମାନଙ୍କ ଆଗରେ ପ୍ରକାଶ କରିବାକୁ ଲାଗିଲେ । ସାରା ରାତି ଅନିଦ୍ରା ରହିବା ଯୋଗୁଁ ଶେଷରେ ନିଦ ଔଷଧର ବଟିକା ସେବନ କରିବାକୁ ଲାଗିଲେ । ଦୈହିକ ଓ ମାନସିକ ଦୁଃଶ୍ଚିନ୍ତା ଫଳରେ ସୁଭଗନ ଧୀରେ ଧୀରେ ନିଜ ମାନସିକ ଭାରସ୍ୟାମ ହରାଇ ବସିଲେ ।

ଦିନେ ସୁଭଗନ କ୍ରୋଧାନ୍ୱିତ ହୋଇ ଅମ୍ମାଙ୍କୁ ଦର୍ଶନ କରିବାକୁ ଆସୁଥିବା ଗୋଟିଏ

ମୁସଲମାନ ମହିଳାଙ୍କୁ ଅତ୍ୟନ୍ତ ଅଶାଳୀନ ବ୍ୟବହାର କରିଥିଲେ । ସୁଭଗନଙ୍କର ତାଚ୍ଛଲ୍ୟକୁ ସହି ନପାରି ମହିଳା ଜଣକ କାନ୍ଦିକାନ୍ଦି ମନ୍ଦିର ଭିତରକୁ ଯାଇ ମନ୍ଦିରର ଏଗୁଣ୍ଡି ବନ୍ଧ ଉପରେ ଜୋରରେ ମୁଣ୍ଡ ପିଟିବାକୁ ଆରମ୍ଭ କଲେ । ସେ କାନ୍ଦି କାନ୍ଦି କହିଲେ "ହେ ମା !, ହେ ମା ! ତମ ଦର୍ଶନ ପାଇଁ ଆସୁଥିବା ଲୋକ ମାନଙ୍କର ଭାଗ୍ୟରେ କଣ ଏହିପରି ନିର୍ଯ୍ୟାତନା ଅଛି ?"

ଏହି ସ୍ତ୍ରୀ ଲୋକର ଅସହାୟ କାନ୍ଦ ଶୁଣି ଅମ୍ମାଙ୍କର ଉଜ୍ଜ୍ୱଳ ହସ ହସ ମୁଖମଣ୍ଡଳର ଭାବ ସାଙ୍ଗେ ସାଙ୍ଗେ ବଦଳି ଗଲା ଓ ଭୟଙ୍କର ରୂପ ଧାରଣ କଲା । ସେ ତାଙ୍କର ପବିତ୍ର ଆସନରୁ ଉଠି ଗୋଟିଏ ହାତରେ ତ୍ରିଶୂଳ ଓ ଆଉ ଗୋଟିଏ ହାତରେ ଖଣ୍ଡା ଧରି ଠିଆହେଲେ ଓ ଗମ୍ଭୀର କଣ୍ଠରେ କହିଲେ, "ଯିଏ ଏହି ଭକ୍ତକୁ ଏପରି ବିନା କାରଣରେ ଦୁଃଖ ଦେଇଛି ତାର ସାତଦିନ ପରେ ହିଁ ମୃତ୍ୟୁ ହେବ" ।

ଅମ୍ମାଙ୍କର ଭବିଷ୍ୟତ ବାଣୀ ଶୁଣି ସୁଗୁଣାନନ୍ଦ ମନ୍ଦିରକୁ ଦଉଡି ଆସି ତାଙ୍କର ପୁଅର ଭୁଲ ପାଇଁ କ୍ଷମା ମାଗିବାକୁ ଲାଗିଲେ, ସେ ଅମ୍ମାଙ୍କୁ ତାଙ୍କ ପ୍ରାଣ ନେଇ ତା ବଦଳରେ ସୁଭଗନଙ୍କୁ ବଂଚାଇବାକୁ ଅନୁରୋଧ କଲେ । ଅମ୍ମା ଧୀର କଣ୍ଠରେ କହିଲେ "ମୁଁ କାହାକୁ ଶାସ୍ତି ଦିଏ ନାହିଁ, ମୋତେ ଯଦି କିଏ ଦୁଃଖ ନିର୍ଯ୍ୟାତନା ଦିଏ ମୁଁ ସେଥିପାଇଁ ଖାତିର କରେ ନାହିଁ କିନ୍ତୁ ଯେତେବେଳେ ଗୋଟିଏ ଭକ୍ତ ଏପରି କଷ୍ଟ ଭୋଗକରେ, ତେବେ ଭଗବାନ ମଧ୍ୟ କ୍ଷମା କରିବେ ନାହିଁ । ପ୍ରତ୍ୟେକଙ୍କୁ ତାଙ୍କର କର୍ମର ଫଳ ଭୋଗ କରିବାକୁ ହିଁ ପଡିବ, ଆଉ କିଛି ଉପାୟ ନାହିଁ" ।

ସାତଦିନ ବିତିଗଲା । ସୁଭଗନ ଅମ୍ମାଙ୍କର ଭବିଷ୍ୟତ ବାଣୀ ଶୁଣିଥିଲେ ଓ ଜୁନ ୨ ତାରିଖ ୧୯୭୮ ମସିହା ମଧ୍ୟ ରାତିରେ ସେ ବେକରେ ଦଉଡି ଦେଇ ଆତ୍ମହତ୍ୟା କଲେ । ସେ ଶେଷ ଚିଠିରେ ତାଙ୍କର ଆରୋଗ୍ୟ ନ ହେବାର ନୈରାଶ୍ୟ ଓ ତଜ୍ଜନିତ ଦୁଃଶ୍ଚିନ୍ତା ହିଁ ଆତ୍ମହତ୍ୟାର ପ୍ରଧାନ କାରଣ ବୋଲି ଦର୍ଶାଇ ଥିଲେ । ସୁଭଗନଙ୍କର ଆତ୍ମହତ୍ୟା ଇଡ଼ାମାନ୍ନେଲ ଘରେ ଅନେକ ଅଶାନ୍ତି ଓ ବିଭ୍ରାଟ ସୃଷ୍ଟି କଲା । ଏଇ ସୁଯୋଗରେ ବିରୋଧୀ ଦଳଙ୍କର ଅମ୍ମାଙ୍କ ବିରୁଦ୍ଧରେ ପ୍ରଚାର ଆହୁରି ଦୃଢୀଭୁତ ହେଲା । ସେମାନେ ସୁଭଗନଙ୍କ ମୃତ୍ୟୁ ସଂକ୍ରାନ୍ତରେ ଗୁଜବ ପ୍ରଚାର କରିବାକୁ ଲାଗିଲେ । ନିଜ ପୁଅକୁ ପ୍ରାଣରୁ ବଳି ଅଧିକ ଭଲ ପାଉଥିବା ସୁଗୁଣାନନ୍ଦଙ୍କୁ ସୁଭଗନଙ୍କର ହତ୍ୟା ପାଇଁ

ଦାୟୀ ବୋଲି ସେମାନେ ଆକ୍ଷେପ କରିବାକୁ ଲାଗିଲେ ।

ବିରୋଧୀ ଦଳର ଏସବୁ କଟୁ ଆକ୍ଷେପ ଦୃଢ଼ୀଭୂତ ହୋଇ ପାରିଲା ନାହିଁ କାରଣ ସୁଭଗନଙ୍କର ଆତ୍ମହତ୍ୟା ନେଇ ଅନେକ ପ୍ରତ୍ୟକ୍ଷ ପ୍ରମାଣ ମହଜୁଦ ଥିଲା । ତାଛଡା ତାଙ୍କର ଆତ୍ମହତ୍ୟା ଚିଠି ସେ ନିଜେ ଲେଖିଥିଲେ । ସୁଭଗନ ମଧ୍ୟ ବନ୍ଧୁବାନ୍ଧବ ମାନଙ୍କୁ ତାଙ୍କର ଉଦ୍ଦେଶ୍ୟ ଜଣାଇ ଚିଠି ଦେଇଥିଲେ । ମରଣୋତ୍ତର ଶବ ବ୍ୟବଛେଦ ମଧ୍ୟ ଆତ୍ମହତ୍ୟା ବୋଲି ପ୍ରମାଣିତ ହୋଇଥିଲା । ତେଣୁ କୌଣସି ମକଦ୍ଦମା ଇତ୍ୟାଦିର ପ୍ରଶ୍ନ ଉଠି ନଥିଲା ।

ସୁଭଗନଙ୍କର ଆତ୍ମହତ୍ୟା ପରିବାରର ବନ୍ଧୁବାନ୍ଧବଙ୍କ ଭିତରେ ଚହଳ ପକାଇ ଦେଲା । ସେମାନେ ଖୋଲା ଖୋଲି ଭାବେ ସେହି ପରିବାର ପ୍ରତି ଘୃଣା ଓ ହେୟ ଭାବ ଦେଖାଇବାକୁ ଲାଗିଲେ । ତାଙ୍କର ପରିବାରକୁ କୌଣସି ସାମାଜିକ କ୍ରିୟାରେ ଯୋଗଦେବା ପାଇଁ ନିମନ୍ତ୍ରଣ ଦିଆଗଲା ନାହିଁ କିମ୍ବା କୌଣସି ବିବାହ, ଧାର୍ମିକ ଅନୁଷ୍ଠାନରେ ଭାଗ ନେବାକୁ ଅନୁମତି ଦିଆଗଲା ନାହିଁ । ବନ୍ଧୁ ବାନ୍ଧବ ମାନେ ପରିବାରର ପଡିଶା ଘରକୁ ବୁଲି ଆସି ଫେରିଯାଆନ୍ତି କିନ୍ତୁ ଇଡାମାନ୍ନେଲ ଆଡେ ଦୃଷ୍ଟି ପର୍ଯ୍ୟନ୍ତ ନିକ୍ଷେପ କରନ୍ତି ନାହିଁ, ଯଦି ବନ୍ଧୁବାନ୍ଧବ ମାନେ ଇଡାମାନ୍ନେଲ ପାଖ ସମୁଦ୍ର କୂଳକୁ ଶ୍ରାଦ୍ଧ କ୍ରିୟା କରିବାକୁ ଆସନ୍ତି, ସେମାନେ କର୍ମ ସରିବା ପରେ ସାଙ୍ଗେ ସାଙ୍ଗେ ଫେରି ଯାଆନ୍ତି । ଏହିପରି ବ୍ୟବହାର ପରିବାର ଲାଗି ଅତି କଷ୍ଟ ଦାୟକ ହୋଇ ସେମାନଙ୍କର ଦୁଃଖ ଭରା ହୃଦୟକୁ ଆହୁରି ଭାରାକ୍ରାନ୍ତ କରି ଦେଉଥିଲା ।

ସୁଭଗନର ମୃତ୍ୟୁର ଷୋହଳ ଦିନ ପରେ ଭାବଦର୍ଶନ ପୁଣି ଆରମ୍ଭ ହେଲା ଓ ସୁଗୁଣାନନ୍ଦ ଦୁଃଖଭରା ହୃଦୟରେ ଅମ୍ମାଙ୍କ ପାଖରେ କାନ୍ଦି କାନ୍ଦି ଅଭିଯୋଗ କରିଥିଲେ ଯେ ଅମ୍ମା ତାଙ୍କର ପ୍ରିୟ ପୁତ୍ରଙ୍କୁ ଭୟଙ୍କର ମୃତ୍ୟୁ ମୁଖରୁ ବଂଚାଇ ପାରିଲେ ନାହିଁ । ତାଙ୍କୁ ସାନ୍ତ୍ୱନା ଦେଇ ଅମ୍ମା କହିଲେ "ଚିନ୍ତା କର ନାହିଁ । ତୁମର ମୃତ ପୁତ୍ର ପୁଣିଥରେ ଭକ୍ତ ହୋଇ ଏହି ଘରେ ତିନିବର୍ଷ ପରେ ଜନ୍ମ ଲାଭ କରିବ ।" କିଛି ବର୍ଷ ପରେ ଝିଅ କସ୍ତୁରୀଙ୍କର ବିବାହ ହୋଇଥିଲା । ସେ ପ୍ରଥମ ଥର ପାଇଁ ଗର୍ଭବତୀ ହେଲା ବେଳେ ଅମ୍ମା ସେହିପରି ଗର୍ଭାବସ୍ଥାରେ ଶିଶୁକୁ "ଶିବ" ବୋଲି ନାମ ଦେଇଥିଲେ । ଅମ୍ମା ଗୋଟିଏ ପୁଅର ନାମ ଦେଇଥିବାରୁ ସମସ୍ତଙ୍କର ପୁତ୍ର ସନ୍ତାନ ହେବ ବୋଲି

ଦୃଢ ବିଶ୍ୱାସ ଥିଲା । ସତକୁ ସତ ପୁଅଟିଏ ଜାତ ହୋଇଥିଲା । ତାଙ୍କର ଜନ୍ମ ପରେ ଅମ୍ମା ଥରେ କହିଥିଲେ, "ସୁଭଗନର ଆତ୍ମା ମୃତ୍ୟୁର ତିନି ବର୍ଷ ପର୍ଯ୍ୟନ୍ତ ଆଶ୍ରମର ବାତାବରଣ ପାଖା ପାଖି ରହୁଥିଲା । ସବୁବେଳେ ସେ ବେଦ ମନ୍ତ୍ର ଓ ଭଜନ କୀର୍ତ୍ତନ ଶୁଣି, ପୁଣି ସେହି ଘରେ "ଶିବ" ନାମ ନେଇ ଜନ୍ମ ପାଇଲା ।" ଶିବନ୍ ଗୋଟିଏ ବୁଦ୍ଧିମାନ ବାଳକ ହୋଇ ବଡ ହେବାକୁ ଲାଗିଲା । ଶୈଶବରୁ ସେ "ଓମ୍" ମନ୍ତ୍ର କହି ମନକୁ ମନ ଧ୍ୟାନରେ ବସେ ।

## ସମାଲୋଚକ ମାନଙ୍କର ପ୍ରତ୍ୟାବର୍ତ୍ତନ

ଦେବୀଭାବ ଦର୍ଶନ ଆରମ୍ଭ ହେଲାପରେ ସମାଲୋଚକ ମାନଙ୍କର ଦିନକୁ ଦିନ ବିଦ୍ୱେଷ ଓ ଉଗ୍ରତା ବଢିବାକୁ ଲାଗିଲା । ସେମାନେ ଖବର କାଗଜରେ ଅମ୍ମା ଜଣେ ପାଗଳ ମହିଳା ଓ ଭାବଦର୍ଶନ ଗୋଟିଏ ଭଣ୍ଡାମୀ ବୋଲି ଛପାଇ ଲୋକମାନଙ୍କୁ ମିଥ୍ୟା ଖବର ଦେବାକୁ ଲାଗିଲେ । ତେବେ ଅମ୍ମାଙ୍କର ଯେତେ ନିନ୍ଦା କଲେ ମଧ୍ୟ ସେମାନଙ୍କର ପରାଜୟ ହେବାକୁ ଲାଗିଲା । ତଥାପି ସେମାନେ ଅବିରତ ତାଙ୍କ ଚେଷ୍ଟାରେ ଦୃଢ ରହିଲେ ।

ଦିନେ ରାତିରେ ଗଣ୍ଡଗୋଳକାରୀ ଗୁଣ୍ଡାମାନେ ପୁଣି ଅମ୍ମାଙ୍କୁ ଭାବଦର୍ଶନ ବେଳେ ଧରି ଅପମାନିତ କରିବାକୁ ଚେଷ୍ଟା କଲେ । ଦୁଇଜଣ ବିରୋଧୀ ଯୁବକ ମଦ ପିଇ ମାତାଲ ହୋଇ ପୂଜା ଘରେ ଗଣ୍ଡଗୋଳ ଆରମ୍ଭ କରିବା ପାଇଁ ପ୍ରସ୍ତୁତ ଥିଲେ । ସେମାନେ ଅନ୍ୟ ଭକ୍ତ ମାନଙ୍କ ସହ ଭିତରକୁ ପଶିବା ପାଇଁ ଠିଆ ହେଲେ । ସେହି ସମୟରେ ଅମ୍ମା ଭାବ ଦର୍ଶନ ପାଇଁ ବସି ସାରିଥିଲେ ଓ ସେ ପାଖରେ ବସିଥିବା ଭକ୍ତ ମାନଙ୍କୁ କହିଲେ "ଏଇନେ ଖାଲି ଅପେକ୍ଷା କର, ଅମ୍ମା ତୁମମାନଙ୍କୁ ଗୋଟିଏ ମଜା ଖେଳ ଦେଖାଇବ" । ଏହିପରି କହି ସେ ମାତାଲ ଯୁବକ ମାନଙ୍କୁ ମନ୍ତ୍ର ମୁଗ୍ଧ କରିଦେଲେ । ସେମାନେ ଠିଆ ହେବା ସ୍ଥାନରୁ ଘୁଂଚିବାକୁ ଅକ୍ଷମ ହୋଇପଡିଲେ ଯେପରିକି ପକ୍ଷାଘାତ ଗ୍ରସ୍ତ ହୋଇ ପଡିଛନ୍ତି । କିଛିକ୍ଷଣ ଲାଗି ସେମାନେ ଜଡବତ୍ ହୋଇଗଲେ । ତାଙ୍କ ପଛରେ ଠିଆ ହୋଇଥିବା ତାଙ୍କର ବନ୍ଧୁ ମାନେ ରାଗିଯାଇ କର୍କଶ ଭାବରେ କାହିଁକି ସେମାନେ ମନ୍ଦିର ଭିତରକୁ ଯାଉ ନାହାନ୍ତି ବୋଲି ପଚାରିଲେ । ଜଣେ ଉତର ଦେଲେ "ଦେଖି ପାରୁନୁ ମୋ ଆଗରେ ଆହୁରି କେତେ ଲୋକ ଠିଆ

ହୋଇଛନ୍ତି" । ଆର ଲୋକଟି ପାଟି କରି କହିଲା "ତୁ ତ ସେଇଠି ଗୋଟିଏ ଜାଗାରେ କାଠ ପରି କେତେ ସମୟରୁ ଠିଆ ହୋଇଛୁ! ଏ ଝିଅ କଣ ତତେ କିମିଆ କରି ଦେଇଛିକି ?" ଦୁଇଜଣଙ୍କ ଭିତରେ କଡା କଥା କଟାକଟି ହୋଇ ଭୀଷଣ କଳହ ଆରମ୍ଭ ହୋଇ ଗଲା ଓ ସେମାନେ ଇଡାମାନ୍ନେଲ ଛାଡି ଚାଲିଗଲେ । ଅମ୍ମା ଏହା ଆଗରୁ ଜାଣି ପାରିଥିଲେ ।

ସେହି ସମୟରେ ଅନେକ ଭକ୍ତ ମାନେ ଅମ୍ମାଙ୍କୁ ତାଙ୍କ ଘରକୁ ଭଜନ ଗାଇବାକୁ ଓ ପୂଜା କରିବାକୁ ନିମନ୍ତ୍ରଣ କରୁଥିଲେ । ଏହି ଗଣ୍ଡଗୋଳକାରୀ ଲୋକମାନେ ଆଗରୁ ତାହା ଜାଣିପାରି ସେଠାରେ ମଧ୍ୟ ହାଜର ହେଉଥିଲେ । ଦିନେ ସନ୍ଧ୍ୟାରେ ଅମ୍ମା ପରାୟାକାଦା ଠାରୁ କୋଡିଏ କିଲୋମିଟର ଦୂରରେ ଥିବା ପନମନା ଗ୍ରାମକୁ ଜଣେ ଭକ୍ତଙ୍କର ଘରକୁ ଯାଇଥିଲେ । ଅନେକଦିନ ଧରି ଏହି ପରିବାରର ବ୍ୟକ୍ତିମାନେ ମାନସିକ ଓ ଶାରୀରିକ ପୀଡା ଅନୁଭବ କରୁଥିଲେ ଓ ତାର ସମାଧାନ ଖୋଜି ପାଉନଥିଲେ । ସେମାନେ ଦେବା ଦେବୀଙ୍କର ପୂଜା ଉପଚାର କଲାପରେ ମଧ୍ୟ କିଛି ଫଳ ହୋଇ ନଥିଲା । ସେମାନେ ଅମ୍ମାଙ୍କର ବିଷୟରେ ଶୁଣି, ଭାବଦର୍ଶନ ସମୟରେ ତାଙ୍କୁ ଦର୍ଶନ କରି ତାଙ୍କର ସାହାଯ୍ୟ ପ୍ରାର୍ଥନା କରିଥିଲେ । ଅମ୍ମା ସେମାନଙ୍କର ଘରକୁ ଆସି ଦୁଃଖ ନିବାରଣ ପାଇଁ ଗୋଟିଏ ସ୍ୱତନ୍ତ୍ର ପୂଜା କରିବା ପାଇଁ ସମ୍ମତି ଦେଲେ ।

କେତେଜଣ ପରିବାର ଲୋକ ଏ ପୂଜାର ବିରୋଧ କରି ଗଣ୍ଡଗୋଳ କରୁଥିବା ଦଳ ସହ ଯୋଗ ଦେଇ ପୂଜାରେ ବିଘ୍ନ ଘଟାଇବା ପାଇଁ ସ୍ଥିର କଲେ । ସେଦିନ ସନ୍ଧ୍ୟା ବେଳେ ଅମ୍ମା ପହଂଚିଲା ପରେ ପରିବାରର ଜଣେ ଅହଂକାରୀ ବ୍ୟକ୍ତି ଅମ୍ମାଙ୍କୁ କହିଲେ "ମୁଁ ପୂଜା ତନ୍ନ ତନ୍ନ କରି ଦେଖିବି ଓ ତାପରେ ତୁମକୁ ପ୍ରଶ୍ନ ପଚାରିବି" । ଅମ୍ମା ତାଙ୍କୁ ପଚାରିଲେ "ଏହି 'ଅହଂ' ବା 'ମୁଁ' କଣ ଖାଲି ପାର୍ଥିବ ଦେହ ଭିତରେ ସୀମିତ ? ତାହା କଣ ତୁମର ଆୟତ୍ତରେ ଅଛି ?"

ରାତି ଦୁଇଟା ହେଲାଣି, ଅମ୍ମା ପୂଜାର ସମସ୍ତ ସାମଗ୍ରୀ ପ୍ରସ୍ତୁତ କରୁଅଛନ୍ତି, ଅମ୍ମାଙ୍କୁ ପ୍ରଶ୍ନ କରିଥିବା ଅହଂକାରୀ ବ୍ୟକ୍ତିଟି ଗଭୀର ନିଦ୍ରାରେ ଶୋଇଗଲା ପରି ଜଣାଗଲେ । ଏଥିରେ ପରିବାରର ଅନ୍ୟ ଭକ୍ତମାନେ ଟିକିଏ ଆଶ୍ୱସ୍ତି ଅନୁଭବ କଲେ । ପୂଜା ଠିକ୍ ଶେଷ ହେଲାବେଳକୁ ସେହି ବ୍ୟକ୍ତି ହଠାତ୍ ଉଠିପଡି ପଚାରିଲେ "କଣ

ପୂଜା ସରିଗଲା ?"

ଅମ୍ମା ଉତ୍ତର ଦେଲେ "ହଁ! ପୂଜା ସରିଗଲା, ତୁମେ କହିଥିଲ ଯେ ସବୁ ତନ୍ନ ତନ୍ନ କରି ଦେଖିବ । ଦେଖିଲ କି ନାହିଁ? ବର୍ତ୍ତମାନ ବୁଝି ପାରୁଛ ତ ଯାହାକୁ "ମୁଁ" ବୋଲି କହୁଛ, ତା ଉପରେ ଆମର କୌଣସି ଅକ୍ତିଆର ନାହିଁ । ଯେତେବେଳେ ତମେ ଶୋଇଥିଲ ସେତେବେଳେ ତୁମର "ମୁଁ" ଭାବଟି କେଉଁଠି କି ଯାଇଥିଲା ?" ଲୋକଟିର ମୁହଁ କଳାପଡି ଆଉ କଥା ନ କହି ସେ ମୁଣ୍ଡ ତଳକୁ କରି ରହିଲା ।

ତଥାପି ଗଣ୍ଡଗୋଳ କରିବାକୁ ଆସିଥିବା ବିରୋଧୀ ଲୋକମାନେ ଏତେ ସହଜରେ ଚୁପ୍ ହେଲେ ନାହିଁ । ସେମାନେ ଅମ୍ମାଙ୍କୁ ଅଭଦ୍ର ଭାବରେ ଅବାନ୍ତର ପ୍ରଶ୍ନ ପଚାରିବାକୁ ଲାଗିଲେ । ଅମ୍ମା ସେଥିରେ ବିଚଳିତ ନହୋଇ ପ୍ରଫୁଲ୍ଲ ମନରେ ବସି ରହିଲେ, କିନ୍ତୁ ସାହାଯ୍ୟ କରିବାକୁ ଅ. ବା ବ୍ରହ୍ମଚାରୀ ବିରକ୍ତ ହୋଇଗଲେ । ସେ ଅମ୍ମାଙ୍କୁ କହିଲେ "ଅମ୍ମା, ଦୟାକରି ସେ ମାନଙ୍କୁ କିଛି ଗୋଟିଏ ଦେଖାଇ ସେମାନଙ୍କର ମୁହଁ ବନ୍ଦ କର, ନଚେତ୍ ସେମାନଙ୍କ ର ଗଣ୍ଡଗୋଳ କେବେହେଲେ ବନ୍ଦ ହେବ ନାହିଁ" ।

ମାତ୍ର ଅଳ୍ପ ସମୟ ପରେ ନିକଟରେ ଥିବା ଶ୍ମଶାନରେ ବିରାଟ ଅଗ୍ନି ପିଣ୍ଡୁଳା ଟିଏ ଆବିର୍ଭାବ ହେଲା । ତାହା ଭିତରୁ ଭୟଙ୍କର ବହ୍ନି ରଶ୍ମି ରେଖା ମାନ ବାହାରି ଅଗ୍ନି ପିଣ୍ଡୁଳା ଚାରିପଟେ ନାଚିବାକୁ ଆରମ୍ଭ କଲେ । ବର୍ତ୍ତମାନ ମୂକ ହୋଇଯାଇଥବା ବିରୋଧୀ ଦଳଙ୍କୁ ଅମ୍ମାଙ୍କର ପ୍ରଶ୍ନ ପଚାରିବାର ପାଳି ଆସିଲା, "ତୁମ ମାନଙ୍କ ଭିତରୁ କିଏ ସବୁ ସାହସୀ ଅଛ, ଶ୍ମଶାନ ଯାଇ ଟିକିଏ ବୁଲି ଆସ ?" ସେମାନଙ୍କ ଭିତରୁ କେହି ଡାକରାର ସମ୍ମୁଖୀନ ହେବା ପାଇଁ ଆଗଭର ହେଲେ ନାହିଁ । କିଛି ସମୟ ପରେ ଜଣେ ଅତି କମ ବୟସ୍କ ଯୁବକ ପଛଘୁଂଚା ଦେଇ ସେ ସ୍ଥାନରୁ ଦଉଡି ପଳାଇଲେ ।

ଏହାପରେ ଆଉ ଗୋଟିଏ ଘଟଣା ବଲ୍ଲିକାଓ୍ୱ ଠାରୁ ଦଶ କିଲୋମିଟର ଦୂରରେ କରୁଣାପାଲୀ ଗ୍ରାମରେ ଶ୍ରୀମତୀ ଇନ୍ଦିରାଙ୍କର ଘରେ ଘଟିଥିଲା । ଇନ୍ଦିରା ଅମ୍ମାଙ୍କର ଜଣେ ବଡ ଭକ୍ତ ଓ ସେ ଅମ୍ମାଙ୍କୁ ତାଙ୍କ ଘରକୁ ପବିତ୍ର ପର୍ବ ପାଇଁ ନିମନ୍ତ୍ରଣ କରିଥିଲେ । ଠିକ୍ ଆଗପରି ବିରୋଧୀ ଦଳ ମଧ୍ୟ ଠିକ୍ ସମୟରେ ଆସି ସେଠି ପହଂଚି ଯାଇଥିଲେ । ସେମାନଙ୍କୁ ଦେଖି ପରିବାରର ଲୋକ ସେମାନଙ୍କର ଗୁଣ୍ଡାମୀ କଥା ଜାଣି ଡରି

ଯାଇଥିଲେ । ସେମାନେ ଅମ୍ମାଙ୍କୁ ଏହି ଗୁଣ୍ଡାମାନଙ୍କୁ ଦୂର କରିବା ପାଇଁ ପ୍ରାର୍ଥନା କଲେ ।

ଅମ୍ମା ଧ୍ୟାନ ମଗ୍ନ ହେଲେ । କିଛି ମୁହୂର୍ତ୍ତ ଭିତରେ ଗୋଟିଏ ବିରାଟ ଉଜ୍ଜ୍ୱଳ ଆଲୋକର ପିଣ୍ଡୁଳା ଓ ତା ଚାରିପଟେ ଘେରିଥିବା ଅନେକ ଛୋଟ ଛୋଟ ଦୀପଶିଖାମାନ ଘରର ଉତ୍ତର ଦିଗରୁ ବାହାରି ପ୍ରବେଶ ଦ୍ୱାର ଦେଇ ଘରର ଦକ୍ଷିଣ ଦିଗ ଆଡକୁ ଗତି କଲା । ଭକ୍ତମାନେ ଆଶ୍ଚର୍ଯ୍ୟ ଓ ଭକ୍ତି ଗଦ୍‌ଗଦ ହୋଇ ଅମ୍ମାଙ୍କ ନାମ ଜପ କରିବାକୁ ଲାଗିଲେ । ଧୀରେ ଧୀରେ ଏହି ଆଲୋକ ପିଣ୍ଡୁଳା ଉପରକୁ ଉଠି ଉଭେଇ ଯିବା ପୂର୍ବରୁ ବାଡିପାଖ ଦକ୍ଷିଣ ପାଖରେ ଥିବା ବେଲ ଗଛର ଚାରିପାଖେ ପ୍ରଦକ୍ଷିଣ କରିଥିଲା । ଭୟରେ ବାକ୍‌ଶୂନ୍ୟ ହୋଇ ବିରୋଧୀ ଗୁଣ୍ଡାମାନେ ଘର ଛାଡି ପଳେଇଲେ ଓ ଆଉ କେବେ ଭକ୍ତ ମାନଙ୍କୁ ଭଜନ ଗାଇଲା ବେଳେ ଉପଦ୍ରବ କଲେ ନାହିଁ । ଏପରିକି ସେମାନଙ୍କ ମଧ୍ୟରୁ ଅନେକ ଅମ୍ମାଙ୍କର ଭକ୍ତରେ ପରିଣତ ହେଲେ ।

**ତନ୍ତ୍ର ଓ ଗୁଣି-ଗାରେଡିର ପରାଜୟ**

ସେହି ଘରର ପାଖା ପାଖି ଘରେ ଜଣେ ତନ୍ତ୍ର ସାଧକ ରହୁଥିଲେ । ସେ ଶୁଣିଲେ ପରାୟାକାଦାଭୁରେ ଜଣେ କିଶୋରୀଙ୍କୁ ସପ୍ତାହରେ ତିନି ଦିନ ଦେବୀ ଓ କୃଷ୍ଣ ଭାବ ଲାଗୁଛି । ସେହି ତନ୍ତ୍ର ସାଧକ ଗର୍ବର ସହ କହିଲେ, ଗୁଣି କରି ଏପରି ଭାବ ସାଙ୍ଗେ ସାଙ୍ଗେ ବନ୍ଦ କରିଦେବେ । ସେ କହିଲେ "ମୁଁ ମନ୍ତ୍ର ପଢି ଗୋଟିଏ ନଡିଆ ପତ୍ରର ଖଡିକାକୁ ମଝିରୁ ଚିରିଦେବି, ଫଳରେ ତା ଦେହକୁ ଦେବା ଦେବୀ ମାନଙ୍କ ଆସିବା ସାଙ୍ଗେ ସାଙ୍ଗେ ବନ୍ଦ ହୋଇଯିବ" । ସେ ଇଡାମାନ୍ନେଲକୁ ଆସିଲେ, କିନ୍ତୁ ଯେତେ ଚେଷ୍ଟା କଲେ ମଧ୍ୟ ତାଙ୍କର ଗୁଣି ଗାରେଡି କିଛି କାମ ଦେଲା ନାହିଁ । ତାଙ୍କର ଗର୍ବ ଖର୍ବ ହୋଇଗଲା ଓ ସେ ଗାଁ ଛାଡି ପଳାଇଗଲେ । ତଥାପି ସେ ଅମ୍ମାଙ୍କ ଉପରେ ଗୁଣି ଗାରେଡି କରିବା ଚାଲୁ ରଖିଲେ । କେତେଥର ଅନିଷ୍ଟକାରୀ ମନ୍ତ୍ର ପଢି ତିଆରି କରୁଥିବା ବିଭୂତି ଅମ୍ମାଙ୍କ ପାଖକୁ ପଠାଇଲେ, କିନ୍ତୁ ସବୁ ଚେଷ୍ଟା ବଫଳ ହେଲା । ଠିକ୍ ତା ପରେ ପରେ ସେ ପାଗଳ ହୋଇ ରାସ୍ତାରେ ଭିକ ମାଗିବାକୁ ଆରମ୍ଭ କଲେ । ସେ ସବୁବେଳେ "ମତେ ଦଶ ପଇସା ଦିଅ, ମତେ ଦଶ ପଇସା ଦିଅ" କହି ଲୋକ ମାନଙ୍କୁ ମାଗୁଥିଲେ ।

ଅମ୍ମାଙ୍କ ଦ୍ୱୀପରେ ଆରିକେଲ ବୋଲି ଆଉ ଗୋଟିଏ ଗ୍ରାମ ଥିଲା, ସେଠି ଜଣେ ମନ୍ଦିର ପୂଜାରୀ ରହୁଥିଲେ । ତାଙ୍କର ପୂଜାରୀ କାମ ବ୍ୟତୀତ ତନ୍ତ୍ର ଗୁଣି-ଗାରେଡି ସାଧନାରେ ଭାରି ନାମ ଡାକ ଥିଲା । ସେ ଦୁଷ୍ଟ ପ୍ରେତାତ୍ମା ମାନଙ୍କୁ ସାଧାରଣ ନିରୀହ ଲୋକଙ୍କ ଦେହରୁ ବାହାର କରି ଦେଉଥିଲେ । ଅମ୍ମାଙ୍କୁ ଘୃଣା କରୁଥିବା ଗୋଟିଏ ବୁଢୀ ସ୍ତ୍ରୀ ଲୋକ ଏହି ପୂଜାରୀଙ୍କୁ ଅନୁରୋଧ ଜଣାଇଥିଲେ । ଅମ୍ମାଙ୍କର ଭାବ ଦର୍ଶନର ପତନ କରାଇବା ତାଙ୍କର ଏକାନ୍ତ ଅଭିପ୍ରାୟ ଥିଲା । ଏହି କୁକର୍ମ କରାଇବା ପାଇଁ ସେ ଅମ୍ମାଙ୍କର ନାମ ଓ ଜନ୍ମ ନକ୍ଷତ୍ର ଗୋଟିଏ କାଗଜରେ ଲେଖି ପୂଜାରୀଙ୍କୁ ଦେଲେ ।

ସେହିଦିନ ଆଉ ଗୋଟିଏ ଭକ୍ତ ସ୍ତ୍ରୀଲୋକ ଯେ ସ୍ୱପ୍ନ ଦେଖିଲେ ଅମ୍ମା ତାଙ୍କୁ ଗୋଟିଏ ମନ୍ଦିରକୁ ଯାଇ ପ୍ରାର୍ଥନା କରିବାକୁ ଆଦେଶ ଦେଉଛନ୍ତି । ପରଦିନ ସେ ସ୍ତ୍ରୀ ଲୋକ ଅମ୍ମାଙ୍କୁ ଆସି ତାଙ୍କର ସ୍ୱପ୍ନାଦେଶ କଥା ଜଣାଇଲେ । ଅମ୍ମା କହିଲେ "ତୁମେ ସେଠାକୁ ଯାଇ ଫେରି ଆସ, ତେବେଯାଇ ଏ ସ୍ୱପ୍ନର ମାନେ ବୁଝି ପାରିବ ।"

ଏହି ପରି ଅମ୍ମାଙ୍କର ଅନୁମତି ନେଇ ସେ ଭକ୍ତ ସ୍ତ୍ରୀଲୋକ ଜଣକ ମନ୍ଦିରକୁ ଗଲେ । ସେହି ମନ୍ଦିରର ପୂଜାରୀ ଯେ ଅମ୍ମାଙ୍କ ବିରୁଦ୍ଧରେ ଗୁଣୀ ଗାରେଡି କରୁଛନ୍ତି ସେ ବିଷୟରେ ସେ ଅଜ୍ଞ ଥିଲେ । ପ୍ରାର୍ଥନା ସାରିଲା ପରେ ସେ ପୂଜାରୀଙ୍କ ସାଙ୍ଗରେ କଥାବାର୍ତ୍ତା କରିବାକୁ ଗଲେ । ତାଙ୍କୁ ଦେଖି ଅତିଥି ସତ୍କାର କରିବା ପାଇଁ ସେ ଖଟ ଉପରୁ ଉଠି ଠିଆ ହେଇ ଗଦିକୁ ମୋଡି ରଖିଲାବେଳେ ଉକ୍ତ ସ୍ତ୍ରୀଲୋକଙ୍କ ଆଗରେ କାଗଜଟିଏ ପଡିଗଲା । ସେହି କାଗଜ ଚିଠାଟିକୁ ଉଠାଇ ସେ ସେଥିରେ ଅମ୍ମାଙ୍କର ନାମ ଓ ଜନ୍ମ ନକ୍ଷତ୍ର ଲେଖା ହେବା ଦେଖିଲେ । ସାଙ୍ଗେ ସାଙ୍ଗେ ସେ କାଗଜ ଚିଠା, ତାନ୍ତ୍ରିକ ପୂଜାରୀ ଓ ତାଙ୍କର ସ୍ୱପ୍ନର ଯଥାର୍ଥ ସ୍ପଷ୍ଟ ଭାବରେ ବୁଝି ପାରିଲେ । ସେ ଛାତି ପିଟି ପାଟି କରିବାକୁ ଆରମ୍ଭ କଲେ, "ତୁମେ ଏ କଣ କରୁଛ ? ତୁମେ ଆମ ଅମ୍ମାଙ୍କର କିଛି ଅନିଷ୍ଟ କରି ନାହଁ ତ ? ତାହା ସତ ହୋଇଥିଲେ ଆମେ ଆଉ ବଂଚି ପାରିବୁ ନାହିଁ" । ଏହା କହି ସେ ଖୁବ୍ ଜୋରରେ କାନ୍ଦିବାକୁ ଲାଗିଲେ । ପୂଜକ ବୁଝାଇଲେ "ନାଁ, ନାଁ, ମୁଁ କିଛି କରି ନାହିଁ । କାଲି ଜଣେ ବୁଢୀ ଏଠାକୁ ଆସି ମତେ ବାରମ୍ବାର ସେହି ସ୍ଥାନ ଧ୍ୱଂସ କରିବାକୁ ଅନୁରୋଧ କରିଗଲେ । ମୁଁ ପିଛା ଛଡାଇବା ପାଇଁ ତାଙ୍କଠାରୁ ଏହି ଚିଠାଟି ନେଇ ଗଦି ତଳେ ରଖିଥିଲି ।"

ପୂଜକଙ୍କର ସତ୍ୟବାଦିତା ଅନୁଭବ କରି ସେ ଶାନ୍ତ ହେଲେ ଓ ତାଙ୍କୁ କହିଲେ "ଦୟାକରି ଆପଣ ଆସି ସେଠାରେ କଣ ହେଉଛି ଦେଖନ୍ତୁ, ତାପରେ ସବୁ ସତ ଘଟଣା ଠିକ୍ ଭାବରେ ବୁଝି ପାରିବେ" । ପୂଜାରୀ ସେଠାକୁ ଶୀଘ୍ର ଯାଇ ସବୁ ଘଟଣା ନିଜେ ବିଚାର କରି ଦେଖିବାର ପ୍ରତିଶ୍ରୁତି ଦେଲେ ।

ପ୍ରତିଶ୍ରୁତି ରକ୍ଷାକରି ପୂଜକ ଇଡାମାନ୍ନେଲରେ ଗୋଟିଏ ଭାବଦର୍ଶନ ଦିନ ଆସି ପହଂଚିଲେ । ଏହି କୁଖ୍ୟାତ ତାନ୍ତ୍ରିକ ପୂଜକଙ୍କର ଅମ୍ମାଙ୍କ ସହ ଭେଟ ହେବାକୁ ଯାଉଥିବା ଶୁଣି ଭକ୍ତମାନେ ଓ ବିଶ୍ୱାସ କରୁନଥିବା ଦେଖଣାହାରୀ ମାନେ ଆଗ୍ରହର ସହ ଅପେକ୍ଷା କରି ରହିଲେ । କେତେକ କହିଲେ "ଏ ପୂଜକ ଜଣେ ମହା ବିଚକ୍ଷଣ ତାନ୍ତ୍ରିକ, ଏଠାରେ ଯାହାସବୁ ଚାଲିଛି ସେ ନିଶ୍ଚେ ସବୁ ବନ୍ଦ କରି ଦେବେ" । ଭକ୍ତମାନେ ଉତର ଦେଲେ "ସେ ଏଠାରେ ଆଦୌ କିଛି କରି ପାରିବେ ନାହିଁ" ।

ସେ ପୂଜାରୀ ଜଣେ ବୃଦ୍ଧାଙ୍କୁ ସାଙ୍ଗରେ ଧରି ଆସିଥିଲେ । ମନ୍ଦିରରେ ପଶିବା ଆଗରୁ ନିଜେ ଧରିଥିବା ଖୁଦ ପୁଡିଆଟି ସେ ବୃଦ୍ଧାଙ୍କୁ ଧରିବାକୁ କହିଲେ । ମନ ଭିତରେ ସେ ଆଗରୁ ସ୍ଥିର କରିନେଇଥିଲେ ଯେ ଯଦି ଅମ୍ମା ସତରେ ନିଜକୁ ଦେବୀ ବୋଲି ପ୍ରମାଣିତ କରିଦେବେ, ତେବେ ସେ ତାଙ୍କର ଭକ୍ତ ହୋଇଯିବେ । ଅମ୍ମା ସେତେବେଳେ କୃଷ୍ଣ ଭାବରେ ଥିଲେ । ସେ ପୂଜାରୀଙ୍କୁ ମୁଠାଏ ପବିତ୍ର ବିଭୂତି ଦେଇ କହିଲେ "ତୁମେ ଏଠାକୁ ଆସି ଏହି ମନ୍ତ୍ର ଉଚ୍ଚାରଣ କରିବାକୁ ଠିକ କରିଚ ନାଁ ?" ଏହା କହି ସେ କେବଳ ପୂଜାରୀ ଜାଣିଥିବା ଗୋଟିଏ ଅତି ଅସ୍ପଷ୍ଟ ଅବୋଧ ମନ୍ତ୍ର ଉଚ୍ଚାରଣ କଲେ । ସେ ପୂଜକ ଅତି ଆଶ୍ଚର୍ଯ୍ୟ ହୋଇଗଲେ । ଅମ୍ମା ତାଙ୍କୁ କହି ଚାଲିଲେ "ତୁମେ ହନୁମାନଙ୍କର ଉପାସକ ନୁହଁ ? ଏପରି ଅନିଷ୍ଟକାରୀ ମନ୍ତ୍ର ସହ ସେହି ଏକା ଜିଭରେ ପ୍ରଭୁ ହନୁମାନଙ୍କର ଗୁଣ ଗାନ କରିବା ଅନୁଚିତ" । ପୂଜକ ସେଠାରେ ବାକ୍‌ଶୂନ୍ୟ ହୋଇ ଜଡବତ୍ ଠିଆ ହୋଇ ରହିଲେ । ତାଙ୍କର ଇଷ୍ଟ ଦେବତା ଯେ ହନୁମାନ ଏକଥା କାହାକୁ ଜଣା ନଥିଲା । ଅମ୍ମା ତାଙ୍କର ଜୀବନର ସବୁଠାରୁ ଗୂଢ ତଥ୍ୟ ଜାଣିଛନ୍ତି । ଅମ୍ମାଙ୍କ ବାକ୍ୟାରୋପ ଆହୁରି ବାକିଥିଲା । ସେ ପୁଣି କହିଲେ "ତୁମେ ମନ୍ଦିର ବାହାରେ ଜଣେ ସ୍ତ୍ରୀ ଲୋକଙ୍କୁ ଖୁଦ ପୁଡିଆଟି ଧରିବାକୁ ଦେଇନ ? କୁଚେଲା (ସୁଦାମା) ଶ୍ରୀକୃଷ୍ଣଙ୍କୁ ଦର୍ଶନ ପାଇଁ ଖୁଦ ପୁଡିଆଟି ନେଇ ଯାଇଥିଲେ । ତୁମେ ଠିକ୍ ସେହିପରି ଖୁଦର ବୁଜୁଳାଟିଏ ଦେଇ ଆସିଛ, ନୁହେଁ ? ତଫାତ୍ ଏତିକି

ଯେ କୁଚେଲା ଶ୍ରୀକୃଷ୍ଣଙ୍କୁ ସତ୍ୟ ଓ ତ୍ୟାଗର ପ୍ରତୀକ ଭାବରେ ଖୁଦ ଦେଇଥିଲେ । ଯଦିଓ ଖୁଦରେ ଗୋଡି ଓ ବାଲି ମିଶିଥିଲା ମହାପ୍ରଭୁ ତାହା ଦେଖି ପାରି ନଥିଲେ । ସେ ତାକୁ ଦେଖିଲାବେଳେ ଖାଲି କୁଚେଲାଙ୍କର ପ୍ରେମ ଭାବ ଓ ଭକ୍ତି ଦେଖିଥିଲେ । ସବୁ ହିଁ ଅମୃତମୟ, ସେଥି ପାଇଁ ମହାପ୍ରଭୁ ତାକୁ ଖାଇଥିଲେ । ତୁମେ କାହିଁକି ପଡୋଶୀ ଘରୁ ଧାନ ଉଧାର ଆଣିଲ ? ତାପରେ ଧାନରୁ କୁଣ୍ଡା ବାହାର କରି ତା ସହିତ କାହିଁକି ଗୋଡି ଓ ବାଲି ମିଶାଇ ଏଠାକୁ ଆଣିଲ ?" ପୂଜାରୀ ସନ୍ଦିଗ୍ଧ ଚିତ୍ତରେ ଠିଆ ହୋଇ ରହିଲେ । ଅମ୍ମାଙ୍କ ମୁଖରୁ ସଂପୂର୍ଣ୍ଣ କଥା ଶୁଣି ସେ କାନ୍ଦି ପକାଇଲେ । ଅତ୍ୟନ୍ତ ଅନୁତପ୍ତ ହୋଇ ସେ ଅମ୍ମାଙ୍କ ପାଖରୁ ନିଜର କର୍ମ ପାଇଁ କ୍ଷମା ଭିକ୍ଷା କଲେ । ସେହିଦିନଠାରୁ ସେ ଅମ୍ମାଙ୍କର ପ୍ରକୃତ ଭକ୍ତ ହୋଇଗଲେ ।

## ଅନ୍ଧବିଶ୍ୱାସ ବନ୍ଦ କରିବା ପାଇଁ ବିରୋଧୀଙ୍କର ମନ୍ତ୍ରଣା

ଦଳେ ଲୋକ ଅନ୍ଧବିଶ୍ୱାସ ବିରୁଦ୍ଧରେ ଏଥର ଅମ୍ମାଙ୍କ ବିରୁଦ୍ଧରେ ମନ୍ତ୍ରଣା ଆହୁରି ଘନୀଭୂତ କଲେ । ସେମାନେ ଉଚ୍ଚ ପଦସ୍ଥ ପୋଲିସ ଓ ସରକାରୀ କର୍ମଚାରୀ ମାନଙ୍କୁ ଭାବଦର୍ଶନ ବିରୁଦ୍ଧରେ କିଛି ପ୍ରତିକ୍ରିୟା ପ୍ରକାଶ କରିବାକୁ ପ୍ରବର୍ତାଇଲେ । ଏହି ଲୋକଙ୍କ ଅଭିଯୋଗ ଫଳରେ ଅନେକ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ ସାଧାରଣ ଭାବେ ଓ ଗୁଇନ୍ଦା ଲଗାଇ କରାଗଲା, କିନ୍ତୁ ଶେଷରେ ଅନେକ ଅନୁସନ୍ଧାନକାରୀ ଭକ୍ତରେ ପରିଣତ ହେଲେ ।

ଦିନେ ସନ୍ଧ୍ୟାରେ ଅମ୍ମାଙ୍କ ଭାବଦର୍ଶନ ସମୟରେ ବଦମାସ ଲୋକମାନେ ଗୋଟିଏ ଝିଅକୁ ଭଜନ ଗାଇବା ବନ୍ଦ କରିବାକୁ ଆଦେଶ ଦେଲେ । ସେ ଝିଅଟି ଉତ୍ତର ଦେଲା "ମୁଁ ଅଲବତ୍ ଗାଇବି, ମୋର ଅମ୍ମାଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ" । ଏହି କଥା କଟାକଟିରୁ ଭକ୍ତ ଓ ଗୁଣ୍ଡାମାନଙ୍କ ଭିତରେ ଭୀଷଣ ଗଣ୍ଡଗୋଳ ଆରମ୍ଭ ହୋଇଗଲା । ଶେଷରେ ସୁଗୁଣାନନ୍ଦ ପହଂଚି ଗୁଣ୍ଡାମାନଙ୍କୁ ଘଉଡାଇ ଦେଲେ ।

ସେମାନେ ଚାଲିଯିବା ସାଙ୍ଗେ ସାଙ୍ଗେ, ଅମ୍ମା ତାଙ୍କ ବାପାଙ୍କୁ ଡାକି ସାବଧାନ କରାଇ ଦେଲେ "ସେମାନେ ଥାନାକୁ ଆମ ବିରୋଧରେ ଆବେଦନ କରିବା ପାଇଁ ଯାଇଛନ୍ତି । ମୁଁ ପ୍ରଥମ ଅଭିଯୁକ୍ତ ବ୍ୟକ୍ତି ଓ ତୁମେ ଦ୍ୱିତୀୟ ଅଭିଯୁକ୍ତ ବ୍ୟକ୍ତି ବିଷୟରେ ଗଣା ହେବା । ତେଣୁ ତୁମେ ଆଗ ଯାଇ ଅଫିସର ବା କ୍ଷମତାପନ୍ନ ବ୍ୟକ୍ତି ମାନଙ୍କୁ

ସତ୍ୟ ଘଟଣା ଜଣାଇ ଦିଅ ।" ଅମ୍ମାଙ୍କ ଉପଦେଶ ଶୁଣି ସେ କହିଲେ, "ସେମାନେ ଆମ ବିରୁଦ୍ଧରେ ମକଦ୍ଦମା କରିବେ ନାହିଁ ।" ଅମ୍ମା ବାରମ୍ବାର ବାଧ କଲା ପରେ ସୁଗୁଣାନନ୍ଦ ଥାନାକୁ ଗଲେ । ସେଠାରେ ଯାଇ ଦେଖିଲେ ଅମ୍ମାଙ୍କର ପୂର୍ବ ସୂଚନା ସତ । ତେଣୁ ସେ ସବୁ ଘଟଣା ପରିଷ୍କାର ଭାବରେ ଜଣାଇ ଦେଲେ । "ଆମେମାନେ କାହାକୁ ଠକାଉ ନାହୁଁ, ମୋର ଝିଅ ଦେବୀଭାବ ପ୍ରଦର୍ଶନ କରିବା କଥା ସତ । ଆପଣ ଯଦି ନିଜେ ସେଠାକୁ ଆସିବେ ତାହେଲେ ଏକଥାର ସତ୍ୟତା ଅନୁଭବ କରିପାରିବେ । ଭକ୍ତମାନେ ଆସି ଭଜନ ଗାଆନ୍ତି । ଏଥିରେ କୌଣସି କୃତ୍ରିମତା ନାହିଁ । ସରକାରୀ କଳରୁ ପାଣି ଓ ଏଚିରା ପାଖରୁ ବିଭୂତି କିଣାଯାଇ ପ୍ରସାଦ ଭାବରେ ବଂଟନ କରାଯାଏ । ଆମେ ଆକାଶରୁ ଫୁଲ ତୋଳି ଆଣୁ ନାହିଁ । ଆମେ ଗଛ ବୁଦାରେ ଫୁଟୁଥିବା ଫୁଲ ପୂଜା ପାଇଁ ତୋଳି ଆଣୁ । ଭାବଦର୍ଶନ ପାଇଁ କୌଣସି ପ୍ରଚାର କିମ୍ବା ବିଜ୍ଞାପନ କରାଯାଏ ନାହିଁ । ଲୋକମାନେ ସାଧାରଣତଃ ଅନ୍ୟ ଲୋକମାନଙ୍କର ଭାବଦର୍ଶନର ଅନୁଭୂତି ଶୁଣି ଦର୍ଶନ ପାଇଁ ଆସନ୍ତି । ତାଛଡା ଏ ସମସ୍ତ ଘଟଣା ମୋ ଘର ଭିତରେ ହୁଏ, ତାହା ଆଉ କାହାରି ସଂପତି ନୁହେଁ । ଏହି ଗୁଣ୍ଡାମାନେ ମୋ ଘର ଭିତରେ ପଶି ମୋ ସହିତ କଳି କରୁଛନ୍ତି । ଏହା କଣ ନ୍ୟାୟ ? ତେଣୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ଆପଣ ଆମମାନଙ୍କୁ ସେମାନଙ୍କର ଉପଦ୍ରବରୁ ରକ୍ଷା କରନ୍ତୁ ।"

ଉଚ୍ଚପଦସ୍ଥ କର୍ମଚାରୀ ମାନେ ସୁଗୁଣାନନ୍ଦଙ୍କର ନିଷ୍ଠାପୂର୍ଣ୍ଣ ବକ୍ତବ୍ୟ ଶୁଣି କିଛି କହିବାକୁ ଅକ୍ଷମ ହୋଇଗଲେ । ବିରୋଧୀ ଦଳର ମିଛ ମକଦ୍ଦମା ମଧ ବାତିଲ୍ ହୋଇଗଲା । ଗୁଣ୍ଡାମନେ ବିଫଳ ହୋଇ କ୍ରୋଧାନ୍ୱିତ ହୋଇ ପଡିଲେ । ଅମ୍ମାଙ୍କର ଅନିଷ୍ଟ କରି ପ୍ରତିଶୋଧ ନେବା ପାଇଁ ପୁଣି ଷଡଯନ୍ତ୍ର କରିବାରେ ଲାଗିଲେ । ସେହି ସମୟରେ ଭାବଦର୍ଶନ ବେଳେ ଅମ୍ମା ଦେବୀଙ୍କ ସହ ବିଭିନ୍ନ ଭାବ ଦେଖାଇଲା ପରେ, ମନ୍ଦିର ବାହାରକୁ ଆସି ଆନନ୍ଦରେ ନୃତ୍ୟ କରୁଥିଲେ । ଦିନେ ସନ୍ଧ୍ୟା ବେଳେ ଗୁଣ୍ଡାମାନେ ଇଡାମାନ୍ନେଲକୁ ଗୋଟିଏ ଝୁଡି ଭର୍ତ୍ତି ବିଷ ଲଗା କଂଟା ନେଇ ଆସିଲେ । ବିଷାକ୍ତ କଂଟା ଗୁଡାକ ଯାହା ଗୋଡରେ ଫୁଟିଯିବ ସେ ତତ୍କ୍ଷଣାତ୍ ଅଚେତ ହୋଇ ପଡିଯିବ ।

ଏହି କଂଟା ଗୁଡିକ ଅମ୍ମା ନାଚୁଥିବା ଜାଗାରେ ଗୋପନରେ ବିଂଚି ଦବା ପାଇଁ କିଛି ପିଲାଙ୍କୁ କୁହା ଯାଇଥିଲା । ଆଳତି ସମୟରେ ଯେତେବେଳେ ଅମ୍ମାଙ୍କ ଉପରେ

ସମସ୍ତଙ୍କ ଧ୍ୟାନ ଥିବ ଠିକ୍ ସେହି ସମୟରେ ପିଲାମାନେ କଂଟା ବିଂଚି ଦେବେ, ଯାହାଫଳରେ ତାଙ୍କର ଏ କାମ କେହି ଧରି ପାରିବେ ନାହିଁ । ଆଦେଶ ଅନୁସାରେ ପିଲାମାନେ ଠିକ୍ ତାହା କଲେ । ଅମ୍ମା ଯେତେବେଳେ ମନ୍ଦିରରୁ ବାହାରିଲେ, ସେ ଭକ୍ତ ମାନଙ୍କୁ କଣ ଘଟିଛି ବୁଝାଇ ଦେଲେ ଏବଂ ସେମାନଙ୍କୁ ନିଜର ଠିଆ ହେବା ସ୍ଥାନରୁ ନ ଘୁଂଚିବାକୁ ଆଦେଶ ଦେଲେ । ଏହା କହି ଅମ୍ମା ହାତରେ ଖଣ୍ଡା ଓ ତ୍ରୀଶୂଳ ଧରି ହାତ ଉଠାଇ ଆନନ୍ଦରେ ଉନ୍ମତ ହୋଇ ନାଚିବାକୁ ଆରମ୍ଭ କଲେ । ଏହା ଗୋଟିଏ ଅଦ୍ଭୁତ ଦୃଶ୍ୟ ଥିଲା । ଭକ୍ତମାନେ ମନେ କଲେ ଯେପରି ଦୁଷ୍ଟ ବିନାଶିନୀ ସ୍ୱୟଂ ମା କାଳୀ ସେମାନଙ୍କ ସମ୍ମୁଖରେ ନୃତ୍ୟ କରୁଛନ୍ତି । ସେ ମନ୍ଦିର ଆଗରେ ଥିବା ବାରଣ୍ଡାରେ ନାଚୁ ନାଚୁ ତାଙ୍କର ଖଣ୍ଡା ଧାରରେ କାନ୍ଥରେ ଝୁଲୁଥିବା ଅନେକ ଫଟୋ ସୁତା ଛିଣ୍ଡି ପଡିଗଲା । ଫଟୋ ଗୁଡିକ ଜୋରରେ ମାଟିରେ ପଡି କାଚ ଖଣ୍ଡ ଖଣ୍ଡ ହୋଇ ବାରଣ୍ଡା ସାରା ବିଛାଡି ହୋଇ ପଡିଗଲା । ଅମ୍ମା ତାକୁ ଖାତିର ନକରି ଠିକ ଆଗପରି ନାଚି ଚାଲିଲେ, ଯେପରିକି ଭଙ୍ଗା କାଚ ଖଣ୍ଡ ଗୁଡିକ ହେଲା ଫୁଲର ପାଖୁଡା ।

ଯେଉଁମାନେ ଅମ୍ମାଙ୍କର ଅନିଷ୍ଟ ଘଟାଇବାକୁ ଆସିଥିଲେ ସେମାନେ ଆଶ୍ଚର୍ଯ୍ୟ ହୋଇ ଦେଖିବାକୁ ଲାଗିଲେ ଓ ମନେ ମନେ ଅପେକ୍ଷା କଲେ କିପରି ସେ କଂଟା ମାଡି ସହି ନପାରି ଭୂମିରେ ପଡି ଅଚେତ ହୋଇ ଯିବାର ଦୃଶ୍ୟ ଦେଖିବେ ।

ତାପରେ ଅମ୍ମା ମନ୍ଦିରର ବାରଣ୍ଡାର ତଳକୁ କଂଟା ବିଛା ହୋଇଥିବା ଜାଗାକୁ ଆସିଲେ । ସେ ଖଣ୍ଡାର ମୁନରେ ମାଟିରେ ଗୋଟିଏ ଗାର କାଟି ତା ଉପରେ କାହାକୁ ଡେଇଁ ଯିବାକୁ ବାରଣ କଲେ । ଗୁଣ୍ଡାମାନେ ଏ ଦୃଶ୍ୟ ଦେଖି ତାଙ୍କର ନିଜ ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ । ସେମାନେ ଏପରି ଭୟାନକ ଦୃଶ୍ୟ ଦେଖି ସେ ସ୍ଥାନ ଛାଡି ସାଙ୍ଗେ ସାଙ୍ଗେ ପଳାଇ ଗଲେ ।

ଯେତେବେଳେ ସୁଗୁଣାନନ୍ଦ ଘଟଣାଟି ପୁରା ବୁଝି ପାରିଲେ ସେ ତାଙ୍କ ଝିଅର କ୍ଷତ ବିକ୍ଷତ ଗୋଡ କଥା ଭାବି ବିଚଳିତ ହୋଇ ଏପାଖ ସେପାଖ ଦଉଡିବାକୁ ଲାଗିଲେ । ସେ କ୍ଷତରେ ଲଗାଇବାକୁ ଔଷଧ ଆଣି ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଯେ ଅମ୍ମାଙ୍କଠି କୌଣସି ଖଣ୍ଡିଆ ଖାବରାର ଚିହ୍ନବର୍ଣ୍ଣ ନଥିଲା ।

ସମାଲୋଚକ ମାନେ ଏପରି ଅନେକ ଦୈବୀ ଘଟଣା ନିଜ ଆଖିରେ ଦେଖିଲେ

ସତ, ତଥାପି ସେମାନେ ଅମ୍ମାଙ୍କ ପ୍ରତି ଈର୍ଷା ଓ ଶତ୍ରୁତା ଛାଡି ପାରିଲେ ନାହିଁ । ଗ୍ରାମବାସୀ ଓ ଭକ୍ତମାନେ ଏପରି ଅଲୌକିକ ଘଟଣା ସବୁ ଯୋଗୁ ଅମ୍ମାଙ୍କୁ ଆଶ୍ଚର୍ଯ୍ୟର ଭଣ୍ଡାର ବୋଲି ମନେ କଲେ । ପରଂବ୍ରହ୍ମଙ୍କ ସହ ସର୍ବଦା ନିମଜ୍ଜିତ ରହିଥିବା ଅମ୍ମାଙ୍କ ପାଇଁ ଏପରି ଘଟଣା ପିଲାଖେଳ ଥିଲା । ଯେତେବେଳେ ଭକ୍ତମାନେ ପ୍ରିୟ ଅମ୍ମାଙ୍କ ପ୍ରତି ଗୁଣ୍ଡାମାନଙ୍କର ଅତ୍ୟାଚର ଦେଖି ଦୁଃଖିତ ହୋଇ ପଡୁଥିଲେ, ସେ କହୁଥିଲେ "ପିଲାମାନେ, ଏପରି କୌଣସି ଜଗତ ନାହିଁ ଯେଉଁଠାରେ ଦୁଃଖ, ସୁଖ, ଆଲୁଅ ଓ ଅନ୍ଧାର ଦୁଇଟିଯାକ ନାହିଁ । ଆମେମାନେ ଏସବୁ ନେଇ ଚିନ୍ତା କରିବାରେ ଲାଭ ନାହିଁ ।

ଅମ୍ମାଙ୍କର ଭକ୍ତମାନେ ପୃଥିବୀ ସାରା ଅଛନ୍ତି । ସେମାନେ ଏପରି ସବୁ ଦେଖି ବିଚଳିତ ହେବେ ନାହିଁ ।"

ଅମ୍ମା ଭକ୍ତ ଓ ପରିବାର ବର୍ଗଙ୍କୁ ଶାନ୍ତି ସହ ଧୈର୍ଯ୍ୟ ଧରିବାକୁ ନିବେଦନ କଲେ । ସେମାନେ ନୀରବ ହୋଇ ନିଃସନ୍ଦେହ ଚିତ୍ତରେ ସମାଲୋଚକ ମାନଙ୍କର ଅଭଦ୍ର ବ୍ୟବହାର ସହ୍ୟ କଲେ ।

ଆଉଥରେ ବିରୋଧୀ ଦଳର କେତେକ ଗୁଣ୍ଡା ଯୁବକ ବଦମାସୀ କରିବାର ମତଲବରେ ଇଡାମାନ୍ନେଲକୁ ଆସିଲେ । ସେମାନେ ସ୍ଥିର କଲେ ଦେବୀଭାବ ସମୟରେ ଅମ୍ମାଙ୍କର ନୃତ୍ୟକୁ ପରିହାସ ଛଳରେ ଅନୁକରଣ କରି ନାଚି ଭକ୍ତ ମାନଙ୍କୁ ଭୁଲାଇ ଦେବେ ଓ ଅମ୍ମାଙ୍କୁ ପ୍ରହସନ ପାତ୍ରୀରେ ପରିଣତ କରାଇବେ ।

ସେମାନେ ଆସି ପହଂଚିଲା ବେଳକୁ ଦର୍ଶନ ଆରମ୍ଭ ହୋଇ ଯାଇଥିଲା । ଅମ୍ମା ଗୋଟିଏ ପରେ ଗୋଟିଏ ଭକ୍ତ ମାନଙ୍କୁ ସ୍ନେହରେ କୋଳେଇ ନେବା ଆରମ୍ଭ କରି ଦେଇଥିଲେ ଏବଂ କିଛି ଭକ୍ତ ମାନଙ୍କୁ ଡାକି ଗୁଣ୍ଡା ଯୁବକ ମାନଙ୍କର ନୃତ୍ୟର ପରିହାସ କରିବାର ମତଲବ ବିଷୟରେ କହି ଦେଇଥିଲେ । ସେ ଭକ୍ତ ମାନଙ୍କୁ ସେମାନଙ୍କର ଅନିଷ୍ଟ କରିବା ପାଇଁ ବାରଣ କରି ଉପଯୁକ୍ତ ଉପଦେଶ ଦେଇ ବାହାରକୁ ପଠାଇ ଦେଲେ । ଏହି ଭକ୍ତମାନେ ବାହାରେ ହୁସିଆର ହୋଇ ଅପେକ୍ଷା କରି ରହିଲେ । କିଛି ସମୟ ପରେ ଗୋଟିଏ ଗୁଣ୍ଡା ଅମ୍ମାଙ୍କର ଦେବୀଭାବ ସମୟର ଅଙ୍ଗ ଭଙ୍ଗୀ ଅନୁକରଣ କରି ପ୍ରହସନ ଆରମ୍ଭ କଲା । ଭକ୍ତମାନେ ତାକୁ ଘେରିଯାଇ ପ୍ରଶ୍ନ ପଚାରିବାକୁ

ଲାଗିଲେ । କୌଣସି ପ୍ରଶ୍ନର ଉତ୍ତର ନ ଦେଇ ପାରି ସେ ନିଜ କର୍ମର ଗୁରୁତ୍ୱ ବୁଝି ପାରିଲା । ତାର ସାଙ୍ଗମାନେ ତାକୁ ଛାଡି ଦଉଡିବାକୁ ଲାଗିଲେ । ସେ ନିଜେ କୁଆଡେ ଯିବ ନଜାଣି ପାରି କେନାଲ ପାଣିକୁ ଝାମ୍ପ ଦେଲା । ଭକ୍ତ ମାନେ ତାକୁ ପାଣିରୁ ଓଟାରିଆଣି ଆଉ କେବେ ଏପରି ନ କରିବା ପାଇଁ ସାବଧାନ କରି, ତାକୁ ତା ଘରକୁ ପଠାଇ ଦେଲେ ।

ଏହାପରେ ଗୁଣ୍ଡାମାନେ ସେମାନଙ୍କ ସବୁଠାରୁ ଭୟଙ୍କର ଯୋଜନା କଲେ । ସେମାନେ ଗୋଟିଏ ଗୁପ୍ତ ଘାତକକୁ ମନ୍ଦିର ଭିତରକୁ ଯାଇ ଭାବଦର୍ଶନ ସମୟରେ ଅମ୍ମାଙ୍କୁ ଛୁରାରେ ବଧ କରିବା ପାଇଁ ନିଯୁକ୍ତ କଲେ । ଲୋକଟି କମରପଟି ତଳେ ଛୁରାକୁ ଲୁଚାଇ ମନ୍ଦିରରେ ପ୍ରବେଶ କଲା । ଅମ୍ମା ତାକୁ ଦେଖି ବିମଳ ମୁଗ୍ଧ ହସ ହସିଲେ ଓ ଭକ୍ତ ମାନଙ୍କୁ ଗୋଟିକ ପରେ ଗୋଟିଏ ଦର୍ଶନ ଦେଇ ଚାଲିଲେ । ତାଙ୍କର ହସ ସେହି ଆତାତୟୀଙ୍କୁ ଅଦ୍ଭୁତ ଭାବରେ ସମ୍ମୋହିତ କଲା । ନିଜର ଭୁଲ ବୁଝିପାରି, ଅମ୍ମାଙ୍କର ଚରଣ ତଳେ ପଡି ସେ ନିଜ କର୍ମ ଓ ଅଭିପ୍ରାୟ ପାଇଁ କ୍ଷମା ପ୍ରାର୍ଥନା କଲା । ସେ ମନ୍ଦିର ଛାଡି ବାହାରିଲା ବେଳକୁ ତା ମାନସିକ ପରିବର୍ତ୍ତନ ହୋଇ ସାରିଥିଲା । ତାର ଏପରି ହଠାତ୍ ଆଶ୍ଚର୍ଯ୍ୟ ଭାବରେ ପରିବର୍ତ୍ତନ ହେବା ଦେଖି ତାର ସାଙ୍ଗମାନେ ସେ ବି କଣ ଅମ୍ମାଙ୍କର କିମିଆଁ ରେ ପଡି ଯାଇଛି ବୋଲି ଟାପରା କରି ପଚାରିଲେ । ସେ ଖାଲି ସେମାନଙ୍କୁ ହସି ଅନେଇଲା ଏବଂ ସେହିଦିନ ଠାରୁ ସେ ଅମ୍ମାଙ୍କର ପରମ ଭକ୍ତରେ ପରିଣତ ହେଲା । ଏହି ସମୟରେ ଗୁଣ୍ଡାମାନଙ୍କର ଅଭଦ୍ର ବ୍ୟବହାର ଓ ଟାହି ଟାପରାର ଜ୍ୱାଳାରେ ଅମ୍ମା ଗ୍ରାମ ଦାଣ୍ଡରେ ଶାନ୍ତିରେ ଚାଲି ଯିବା ଅସମ୍ଭବ ହୋଇ ପଡିଲା । ସେମାନେ ରାସ୍ତା ଦୁଇପାଖେ ଠିଆ ହୋଇ ନିଷ୍ଠୁର ଭାବରେ ତାଙ୍କୁ ଥଟ୍ଟା ଟାପରା ଶୁଣାଉଥିଲେ, ଏପରିକି ସେମାନେ ଗ୍ରାମର ଛୋଟ ଛୋଟ ପିଲାମାନଙ୍କୁ ସେପରି କରିବା ପାଇଁ ପ୍ରବର୍ତାଉ ଥିଲେ । ବଡି ଭୋରୁ ସେମାନେ ଗଛ ବୁଦା ମୂଳେ ଲୁଚି, ଅମ୍ମା ଗଲାବେଳେ ତାଙ୍କ ଉପରକୁ ଟେକା ଫିଙ୍ଗୁ ଥିଲେ । ଏହି ଅସଭ୍ୟ ଲୋକମାନେ କେବଳ ଅମ୍ମାଙ୍କୁ ପରିଶ୍ରାନ୍ତ କରିବାରେ ସୀମିତ ନଥିଲେ । ତାଙ୍କର ସମସ୍ତ ପରିବାରକୁ ହଇରାଣ କରିବା ସେମାନଙ୍କ ଦୈନିକ ପେଷା ହୋଇ ଯାଇଥିଲା । ତାଙ୍କର ପରିବାର ଲୋକ ମାନଙ୍କୁ ଦେଖି ସେମାନେ ଡାକ ଛାଡୁଥିଲେ "ଏଇ କୃଷ୍ଣ ଆସିଲେ, କୃଷ୍ଣ ଆସିଲେ" ।

ଗୁଣ୍ଡାମାନଙ୍କର ଯେଉଁଦିନ ଅନ୍ୟ କିଛି କାମ ନଥିଲା, ସେମାନେ ମନ୍ଦିରରେ ପଶି ଅମ୍ମାଙ୍କୁ ନକଲି ବୋଲି ପ୍ରମାଣ କରାଇବାର ଚେଷ୍ଟା କରୁଥିଲେ । ଦିନେ ଗୋଟିଏ ଲୋକ ଆସି ଅମ୍ମାଙ୍କୁ ସେ ଅନ୍ଧ ବୋଲି ମିଛରେ କହିଲା । ଅମ୍ମା ଜାଣିପାରି ସାଙ୍ଗେ ସାଙ୍ଗେ ତାର ଆଖିରେ ଆଙ୍ଗୁଠି ଗେଞ୍ଜିବାକୁ ପ୍ରୟାସ କରିବା ସାଙ୍ଗେ ସାଙ୍ଗେ ସେ ଲୋକଟି ପଛକୁ ଡେଇଁ ପଡିଲା । ଏହିପରି ଅମ୍ମାଙ୍କୁ ନକଲି ବୋଲି ପ୍ରମାଣ କରିବାକୁ ଆସିଥିବା ଲୋକଙ୍କୁ ନିଜେ ନକଲି ବୋଲି ପ୍ରମାଣ କଲେ । ଆଉଥରେ ଗୋଟିଏ ଗୁଣ୍ଡା ଯୁବକ ଅମ୍ମାଙ୍କ ପାଖକୁ ଆସି ମିଛରେ ତାଙ୍କ ହାତରେ ଭୀଷଣ ପୀଡା ହେଉଥିବା କଥା ଜଣାଇଲେ । ଅମ୍ମା ସେ କଥା ଶୁଣି ତାଙ୍କ ହାତକୁ ନିଜେ ଆଉଁସି ଘଷି ଦେବେ ବୋଲି ସେ ଭାବିଥିଲେ । ତା ବଦଳରେ ଅମ୍ମା ପାଖରେ ଠିଆ ହୋଇଥିବା ଜଣେ ବ୍ରହ୍ମଚାରୀଙ୍କୁ ଯୁବକଙ୍କର ହାତ ଘଷି ଦେବା ପାଇଁ କହିଲେ । ଯେତେବେଳେ ବ୍ରହ୍ମଚାରୀ ତାଙ୍କୁ ଘଷିବା ଆରମ୍ଭ କଲେ, ଅମ୍ମାଙ୍କୁ ଦେଖାଇଥିବା ଜାଗାରେ ଯୁବକଟି ଭୟଙ୍କର ବ୍ୟଥା ଅନୁଭବ କଲେ । କଷ୍ଟ ସମ୍ଭାଳି ନପାରି ସେ ଅମ୍ମାଙ୍କ ପାଖରୁ ନିଜର ପିଲାଳିଆମୀ ଭୁଲ ପାଇଁ କ୍ଷମା ପ୍ରାର୍ଥନା କରିଥିଲେ । ଏହିପରି ଯେତେ ଲୋକ ଅମ୍ମାଙ୍କୁ ଭଣ୍ଡ ବୋଲି ପ୍ରମାଣ କରାଇବାକୁ ଆସିଥିଲେ ସେମାନେ ନିଜେ ହିଁ ପ୍ରତିଫଳ ଭୋଗି ଧରା ପଡି ଯାଇଥିଲେ ।

### ଆଜିର ଶତ୍ରୁ କାଲିର ମିତ୍ର

ସୁଗୁଣାନନ୍ଦ ଏହି ଗୁଣ୍ଡା ମାନଙ୍କର ଅନବରତ ଉପଦ୍ରବ ଓ ବିଶୃଙ୍ଖଳା ସୃଷ୍ଟି କରିବା ଦେଖି ଅତ୍ୟନ୍ତ ବିରକ୍ତ ହୋଇ ଗଲେ । ହତାଶାରେ ସେ ଦିନେ ଦେବୀଭାବ ସମୟରେ ଅମ୍ମାଙ୍କୁ କହିଲେ "ଭଗବାନ କଣ ମତେ ଏହାହିଁ ଦେଇଛନ୍ତି ? ଲୋକେମାନେ ମତେ ମୋ ନିଜ ପୁଅର ହତ୍ୟାକାରୀ ବୋଲି କହୁଛନ୍ତି ! ମୁଁ ଗାଁ ଭିତରେ ସମାଲୋଚନା ଓ ବିଦ୍ୱେଷ ବିନା ଚାଲିପାରୁ ନାହିଁ । ମୋର ବଡ ଶୋଚନୀୟ ଅବସ୍ଥା । ଦେବୀ ଦୁଷ୍ଟ ଲୋକ ମାନଙ୍କୁ ଶାସ୍ତି ଦେବା ଦରକାର" ।

ଅମ୍ମା ଉତ୍ତର ଦେଲେ "ଅପେକ୍ଷା କର । ଦେଖ, ଆଜିର ଶତ୍ରୁ କାଲିର ବନ୍ଧୁ ପାଲଟି ପାରେ । ତେଣୁ ମୁଁ କାହାକୁ ଶାସ୍ତି ଦେବି ? ଆଜି ତୁମକୁ ବିରୋଧ କରୁଥିବା ଲୋକମାନେ ହୁଏତ କାଲି ତୁମ ପାଖକୁ ହଜାର ହଜାର ପୁଅହୋଇ ଆସିବେ" ।

ଦମୟନ୍ତୀ ପୁତ୍ର ଶୋକରେ ଭାରାକ୍ରାନ୍ତ ରହୁଥିଲେ । ଅମ୍ମା ତାଙ୍କୁ କହିଲେ "ଦୁଃଖ କରନାହିଁ, ଭବିଷ୍ୟତରେ ପୃଥିବୀର ବିଭିନ୍ନ କୋଣରୁ ବହୁ ପୁଅ ଝିଅ ମାନେ ଆସିବେ, ତୁମେ ଯେପରି ସେମାନଙ୍କୁ ନିଜର ସନ୍ତାନ ପରି ଭଲ ପାଇବ" ।

ଯଦିଓ ଅମ୍ମା ଦିନରାତି ଭକ୍ତମାନଙ୍କ ସାନ୍ତ୍ୱନା ଓ ସହାୟତା କରିବାରେ କଟାଉଥିଲେ, ସେ ନିଜ ପରିବାର ବର୍ଗଙ୍କୁ ମଧ୍ୟ ଦୁଃଖ, ଝଡଝଞ୍ଜାର ସମ୍ମୁଖୀନ ହେଲାବେଳେ ସାହାଯ୍ୟ କରୁଥିଲେ । ସେତେବେଳକୁ ସେ ଅଳ୍ପ ବୟସର ଯୁବତୀ କହିଲେ ଚଳେ । ସେ ତାଙ୍କର ହଜାର ହଜାର ଭକ୍ତ ମାନଙ୍କର କଥା ବୁଝିଲା ବେଳେ ପଥଚ୍ୟୁତ ନ ହୋଇ ନିଜ ପିତାମାତାଙ୍କ ପ୍ରତି କର୍ତ୍ତବ୍ୟରେ କେବେ ହେଲେ ହେଳା କରୁ ନଥିଲେ । ତାଙ୍କର ଧର୍ମ ଓ କର୍ତ୍ତବ୍ୟ ସଂପାଦନର ଦୃଷ୍ଟାନ୍ତ, ତାଙ୍କର ସଂସାରୀ ଭକ୍ତ ମାନଙ୍କୁ ଅନୁପ୍ରାଣିତ କରୁଥିଲା । ଜଣେ କିପରି ପରମ ଆଧ୍ୟାତ୍ମିକ ହୋଇ ସଂସାରିକ କର୍ତବ୍ୟ ସଂପାଦନ କରିପାରେ, ଏଥିରେ ଅମ୍ମାଙ୍କର ଦୃଷ୍ଟାନ୍ତ ନିଖୁଣ ।

ସୁଗୁଣାନନ୍ଦଙ୍କର ମାଛ ବିକ୍ରି ବ୍ୟବସାୟରେ ଲାଭ ହେଉ ନଥିଲା । ଭାବଦର୍ଶନ ପାଇଁ ଯେତେବେଳେ ଚାରିଆଡୁ ଅନେକ ଲୋକ ତାଙ୍କ ଘରକୁ ଆସିବାକୁ ଆରମ୍ଭ କଲେ ସେତେବେଳେ ସେ ମାଛ ବେପାର ବନ୍ଦ କରିଦେଲେ । ଗ୍ରାମବାସୀ ମାନଙ୍କର ଭାବଦର୍ଶନ ନେଇ ବିରୋଧ ଓ ବିଦ୍ୱେଷ ପାଇଁ ସେ ବ୍ୟବସାୟରେ ମନ ଧ୍ୟାନ ଦେଇ ପାରିଲେ ନାହିଁ । ସେ ତାଙ୍କର ସମସ୍ତ ସମୟ ଇଡାମାନ୍ନେଲରେ ହିଁ କଟାଇବାକୁ ଲାଗିଲେ । ତାଛଡା ତାଙ୍କର ଆହୁରି ଝିଅ ବାହା ହେବାକୁ ଥିଲେ, ଯଦିଓ ସେ ବିଷୟରେ ସେ ଏତେଟା ଚିନ୍ତା କରୁଥିବା ପରି ମନେ ହେଉନଥିଲା । ତାଙ୍କ ପୁଅମାନେ ସ୍କୁଲରେ ପାଠ ପଢୁଥିଲେ । ମଝିମଝିରେ ପରିବାରରେ ଜଣଙ୍କର ଦେହ ଖରାପ ହୋଇ ଚିକିତ୍ସାର ଦରକାର ପଡୁଥିଲା ।

୧୯୭୯ ମସିହାର ଆରମ୍ଭରେ ଏହିସବୁ ଚିନ୍ତାର ଚାପରେ ସୁଗୁଣାନନ୍ଦ ଅସୁସ୍ଥ ହୋଇ ଡାକ୍ତର ଖାନାରେ ଭର୍ତ୍ତି ହେଲେ, ଓ ତାଙ୍କର ଅସ୍ତ୍ରୋପଚାର କରାଯାଇଥିଲା ।

କ୍ୱିଲନର ସେହି ଚିକିତ୍ସାଳୟଟି ବଲ୍ଲିକାଓ୍ୱ ଠାରୁ ୩୫ କିଲୋମିଟର ଦକ୍ଷିଣରେ ଥିଲା । ହସପିଟାଲରେ ସୁଗୁଣାନନ୍ଦଙ୍କର ସେବା ଶୁଶ୍ରୁଷା କରିବା ପାଇଁ କିମ୍ବା ଘର କାମ ଚଳାଇବାକୁ କେହି ନଥିଲେ । ସବୁ ବନ୍ଧୁ ବାନ୍ଧବମାନେ ପରିବାରକୁ ପରିତ୍ୟାଗ କରି

ସାରିଥିଲେ । କସ୍ତୁରୀ ଗୋଟିଏ ଦୂର ଜାଗାରେ କାମ କରୁଥିଲେ । ଦମୟନ୍ତୀ ଆଣ୍ଠୁ ଗଣ୍ଠି ବାତରେ ଶଯ୍ୟାଶୟୀ ହୋଇ ପଡିଥିଲେ । ପୁଅମାନେ ଅତି ଛୋଟ, ସ୍କୁଲରେ ପାଠ ପଢୁଥିଲେ । ଘରର ସମସ୍ତ ଦାୟିତ୍ୱ ଅମ୍ମାଙ୍କର କାନ୍ଧରେ ପଡିଲା ।

ଦର୍ଶନ ଦିନ ଭକ୍ତମାନେ ଦିନ ଗୋଟାଏ ସୁଦ୍ଧା ଆସି ପହଂଚି ଯାଆନ୍ତି । ଚାରିଟା ବେଳକୁ ଅମ୍ମା ଭଜନ ଗାଇବା ପରେ ବସି ଠିକ ତା ପରେ ପରେ ଦର୍ଶନ ଦେବା ଆରମ୍ଭ କରୁଥିଲେ । ଅନେକ ସମୟରେ ଦର୍ଶନ ତା ପରଦିନ ୮ଟା ବା ୯ଟା ଯାଏ ଚାଲୁଥିଲା । ସମସ୍ତେ ଦର୍ଶନ ନ ପାଇବା ଯାଏ ଅମ୍ମା ତାଙ୍କର ଆସନରୁ କେବେହେଲେ ଉଠୁ ନଥିଲେ । ତା ଭିତରେ ଆଧ୍ୟାତ୍ମିକ ଉପଦେଶ ଚାହୁଁଥିବା ଭକ୍ତ ମାନଙ୍କୁ ଉପଦେଶ ଦେଉଥିଲେ । ଦର୍ଶନ ସରିଗଲାପରେ ଅମ୍ମା ଆଗ ପରି ଘରର ସମସ୍ତ କାମ କରୁଥିଲେ । ସବୁ ସାନ ପିଲା ମାନଙ୍କୁ ସ୍କୁଲ ଲାଗି ସାଜ ସରଞ୍ଜାମ ଯୋଗାଡ କରି ସ୍କୁଲକୁ ପଠେଇ, ଘରର ଦୈନନ୍ଦିନ କାର୍ଯ୍ୟ ସମାପ୍ତ ହେଲା ପରେ ସେ ଖାଦ୍ୟ ଓ ଅନ୍ୟାନ୍ୟ ଦରକାରୀ ଜିନିଷ ନେଇ ସୁଗୁଣାନନ୍ଦଙ୍କୁ ହସପିଟାଲରେ ଦେଖିବାକୁ ଯାଉଥିଲେ । ବାପାଙ୍କର ସେବା ଶୁଶ୍ରୂଷା ସେ ଅତି ଯତ୍ନର ସହ କରୁଥିଲେ । ଗୁଣ୍ଡାମାନେ ଅମ୍ମାଙ୍କୁ ହଇରାଣ କରିବାର କୌଣସି ସୁଯୋଗ ଛାଡୁ ନଥିଲେ । ଅମ୍ମା ଯେତେବେଳେ ଗ୍ରାମର ରାସ୍ତା ଦେଇ କ୍ଲିନିକ କୁ ଚାଲି ଯାଉଥିଲେ ସେମାନେ ତାଙ୍କ ଉପରକୁ "କୃଷ୍ଣ...... କୃଷ୍ଣ" କହି ଟେକା ଫିଙ୍ଗୁଥିଲେ । ନୀରବରେ ସେମାନଙ୍କର ଅଭଦ୍ର ବ୍ୟବହାରକୁ ସହ୍ୟ କରି ଅମ୍ମା ମନେ ମନେ ଭାବୁଥିଲେ "ଯାହାହେଉ ସେମାନେ ତ ଭଗବାନଙ୍କର ନାମ କହୁଛନ୍ତି" । ଥରେ ଗୋଟିଏ ଦୁଷ୍ଟ ଲୋକ ତାଙ୍କ ସାମନାରେ ଡେଇଁପଡି ଠିଆ ହୋଇ ତାଙ୍କୁ ଧରିବାକୁ ଚେଷ୍ଟା କଲା, କିନ୍ତୁ ଗୋଡ ଖସି ରାସ୍ତା କଡର ଗୋଟିଏ ଗାତରେ ପଡିଗଲା ।

ଧୀରେ ଧୀରେ ସୁଗୁଣାନନ୍ଦଙ୍କର ଦେହ ଭଲ ହୋଇ ଆସିଲା । କିନ୍ତୁ ଠିକ୍ ଅଳ୍ପ ଦିନ ପରେ ଦମୟନ୍ତୀ ଓ ତା ପରେ ପରେ ସୁରେଶର ଦେହ ଖରାପ ହେବାରୁ ତାଙ୍କୁ ହସପିଟାଲରେ ଭର୍ତ୍ତି କରିବାକୁ ପଡିଲା । ଏହି ସମୟରେ ଅମ୍ମା ହିଁ ଘରର ଦୈନନ୍ଦିନ କାର୍ଯ୍ୟ କରି, ହସପିଟାଲରେ ପଡିଥିବା ଘରର ରୋଗୀ ମାନଙ୍କର ସେବା ଶୁଶ୍ରୂଷା କରୁଥିଲେ ।

ଘରେ ଏପରି ବିଶୃଙ୍ଖଳା, ଅଶାନ୍ତି ଛାଇ ଯାଇଥିଲେ ମଧ୍ୟ ସେ ଟାଣ ଖୁଂଟପରି ଶାନ୍ତ ରହି ସମସ୍ତଙ୍କୁ ସାନ୍ତ୍ୱନା ଓ ଆଶ୍ୱାସନା ଦେଉଥିଲେ । ସେ ସମୟର ପରିସ୍ଥିତି ଅନୁମାନ କରି ହୁଏନା । ସୁଭଗନର ଆତ୍ମହତ୍ୟା ପାଇଁ ଗୁଜବ, ବନ୍ଧୁବାନ୍ଧବ ମାନଙ୍କର ଅସହଯୋଗ, ସମାଲୋଚକ ମାନଙ୍କର ବିରୋଧ ଭାବଦର୍ଶନ ପାଇଁ ଆସୁଥିବା ହଜାର ହଜାର ଭକ୍ତଙ୍କର ମେଳ ଓ ଘରେ ତିନୋଟି ଅବିବାହିତା ଝିଅ ଇତ୍ୟାଦି ନାନା ସମସ୍ୟା । ତେଣୁ ସେ ଘରକୁ ବିବାହ ପ୍ରସ୍ତାବ ନେଇ ଆସିବାକୁ କିଏ ବା ଆଗ୍ରହୀ ହେବ ? ଯଦିବା କାଁ ଭାଁ କିଏ ଗୋଟିଏ ଦୂର ଗ୍ରାମରୁ ବିବାହ ପ୍ରସ୍ଥାବ ନେଇ ଆସୁଥିଲା, ଇଡ଼ାମାନ୍ନେଲରେ ପହଂଚିଲା ବେଳକୁ ଗାଁରୁ କିଛି ଲୋକ ଯାଇ ତାଙ୍କୁ ଭେଟି ସେଥିରୁ ନିବୃତ କରାଉ ଥିଲେ । ଅନେକ ବରପାତ୍ର ଏକ ମୁହାଁ ହୋଇ ଫେରି ଯାଉଥିଲେ ।

ଏପରି ଅନେକଥର ଘଟିବା ପରେ ସୁଗୁଣାନନ୍ଦ ଦେବୀ ଅମ୍ମାଙ୍କୁ କହିଲେ "ଭାବଦର୍ଶନ ଯୋଗୁଁ ମୋର ମୁଣ୍ଡ ତଳକୁ ହୋଇଗଲା, ମୁଁ ଇଡାମାନ୍ନେଲ ବାହାରେ କାହାକୁ ମୁହଁ ଦେଖାଇ ପାରୁ ନାହିଁ, ଗ୍ରାମବାସୀ ଓ ବନ୍ଧୁ ବାନ୍ଧବମାନେ ମତେ ହତାଦାର କରୁଛନ୍ତି, ମୋର ଝିଅ ମାନେ ଅଭିଆଡି ରହିଲେ, ମୋର ଆଉ କି ଉପାୟ ଅଛି କୁହ ?"

ଅମ୍ମା ଉତ୍ତର ଦେଲେ "ଭାବଦର୍ଶନ ପାଇଁ ଯେ ତୁମର ଦୁର୍ଦ୍ଦଶା ହେଉଚି ତାହା ନୁହଁ, ପ୍ରତ୍ୟେକଟି ଜିନିଷ ପରମାତ୍ମାଙ୍କ ଇଚ୍ଛାରେ ହିଁ ହେଉଛି । ସମୟ ଆସିଲେ ସବୁ ଠିକ ହୋଇଯିବ । ତୁମେ ଚିନ୍ତା କର ନାହିଁ ।" ସୁଗୁଣାନନ୍ଦ ଏଥିରେ ସାନ୍ତ୍ୱନା ପାଇଲେ ନାହିଁ । ସେ ରାଗି ଚିତ୍କାର କଲେ "ମୁଁ ବିଷ ଖାଇ ମରିବି" । ଏହାଶୁଣି ଅମ୍ମା କାନ୍ଥରେ ଝୁଲୁଥିବା ଦେବୀଙ୍କର ଫଟୋକୁ ଚାହିଁ ଲୁହଭରା ଆଖିରେ କହିଲେ "ହେ କୃପାମୟୀ ମା, ମୁଁ କଣ ଏ ଘରକୁ ଖାଲି ଦୁଃଖ ହିଁ ଆଣିବା ପାଇଁ ଆସିଛି ?"

ଅନେକଥର ଅମ୍ମା ଇଡ଼ାମାନ୍ନେଲ ଛାଡି ଚାଲିଯିବାକୁ ପ୍ରସ୍ତୁତ ହୋଇଥିଲେ, କିନ୍ତୁ ରହସ୍ୟଜନକ ଭାବରେ ବାଧା ଆସି ପହଂଚୁ ଥିଲା । ପୁଣିଥରେ ସୁଗୁଣାନନ୍ଦ ଅମ୍ମାଙ୍କୁ ନିଜର ଦୁଃଶ୍ଚିନ୍ତା ବିଷୟରେ ପଚାରିଥିଲେ । ପୁଣିଥରେ ସେ କହିଲେ "ଚିନ୍ତା କର ନାହିଁ, ତୁମର ଝିଅ ମାନଙ୍କର ବିବାହରେ ଆଉ ଡେରି ହେବ ନାହିଁ, ଏଥର ହୋଇଯିବ" ।

ମାସକ ଭିତରେ ଅମ୍ମାଙ୍କର କହିବା ସତ୍ୟ ହେଲା । କଳ୍ପନାତୀତ ଭାବେ ଗୋଟିଏ ପରିବାରରୁ ବିବାହ ପ୍ରସ୍ତାବ ଆସିଲା । ସେହି ପରିବାର ପୂର୍ବରୁ ଅମ୍ମାଙ୍କର ବିରୋଧୀ ଥିଲେ ଓ ସେହି ବରପାତ୍ରଟି ଗୁଣ୍ଡା ବିରୋଧୀ ଦଳର ନେତା ଥିଲେ । ଭାଗ୍ୟର ଏପରି ବିଡମ୍ବନା ଯେ ସେହିଠାରେ ହିଁ ବିବାହ ସ୍ଥିର ହେଲା । ସୁଗୁଣାନନ୍ଦ କୌଣସି ଦାୟିତ୍ୱରେ ରହିଲେ ନାହିଁ । ବିବାହ କାର୍ଯ୍ୟ ସଂପାଦନାର ସମସ୍ତ ଦାୟିତ୍ୱ ଅମ୍ମାଙ୍କର ଉପରେ ପଡିଲା । ଅମ୍ମା ଶାନ୍ତ ଚିତରେ ସବୁ କର୍ମ କଲେ । ପୂର୍ବ ଘଟଣା ଯୋଗୁଁ ତାଙ୍କର ଦକ୍ଷତା ଓ ଉତ୍ସାହ ଊଣା ପଡିନଥିଲା । ସୁଗୁଣାନନ୍ଦ ଆଡେଇ ହୋଇ ଦେଖଣାହାରୀ ପରି ହୋଇ ଠିଆ ହେବା ସତ୍ୱେ ବିବାହ ଅନୁଷ୍ଠାନ ସୁରୁଖୁରୁରେ ସଂପାଦିତ ହୋଇଥିଲା । ଅମ୍ମାଙ୍କର ଭବିଷ୍ୟତ ବାଣୀ "ଆଜିର ଶତ୍ରୁ କାଲିର ବନ୍ଧୁରେ ପରିଣତ ହୋଇପାରେ" ସତ୍ୟ ହେଲା । ଅନ୍ୟ ଝିଅ ମାନଙ୍କର ବିଭାଘରରେ ମଧ୍ୟ ସେହି ଘଟଣା ଘଟିଥିଲା ।

ମାଲାୟଲମ୍‌ରେ ଗୋଟିଏ ପ୍ରଚଳିତ ଢଗ ଅଛି "ଦାଣ୍ଡ ଦୁଆରେ ଫୁଟିଥିବା ମଲ୍ଲୀ ଫୁଲର ବାସ୍ନା ଜଣା ଯାଏ ନାହିଁ" । ତାର ଅର୍ଥ ହେଲା ଜଣେ ବ୍ୟକ୍ତି ବାହାରେ ଯେତେ ମହତ ଓ ପ୍ରସିଦ୍ଧ ହୋଇଥିଲେ ମଧ୍ୟ ନିଜ ଅଂଚଳରେ ତାକୁ ସେପରି ସମ୍ମାନ ମିଳିବ ନାହିଁ । ଅନେକ ନିଷ୍ପାପର ବ୍ୟକ୍ତି ଏହି ଉକ୍ତିର ସତ୍ୟତା ଅନୁଭବ କରିଛନ୍ତି । ଅମ୍ମା କହନ୍ତି "କେହି ଜଣେ ରେଡିଓରେ ମିଠା ସ୍ୱରର ଭଲ ଗୀତଟିଏ ଶୁଣି ଉପଭୋଗ କଲାବେଳେ ଯଦି ତାଙ୍କର ଘନିଷ୍ଠ ବନ୍ଧୁ ଆସି କହନ୍ତି 'ଜାଣୁ ଏ ଗୀତ କିଏ ଗାଉଛି ? ଇଏ ଆମ ପଡୋଶୀ ଶଙ୍କର' । ଠିକ୍ ତା ପରେ ଗୀତ ଉପଭୋଗ କରୁଥିବା ଲୋକଟି ରେଡିଓ ବନ୍ଦ କରି ଦେଇ କହିବ 'ଏ ଏକବାରେ ବାଜେ ଗୀତ ଗାଉଛି, ପୁରା ବେକାର' । ପିଲାମାନେ ! ଏହାହିଁ ହେଲା ଲୋକମାନଙ୍କର ମତିଗତି । ସେମାନଙ୍କ ପାଇଁ ଅତି ଘନିଷ୍ଠ ବ୍ୟକ୍ତିକୁ ମହାନ୍ ଭାବରେ ଗ୍ରହଣ କରିବା କଷ୍ଟକର । "ଦେବୀ ଅମ୍ମାଙ୍କର ଠିକ୍ ସେହି ଅବସ୍ଥା ହୋଇଥିଲା ।

ଅମ୍ମାଙ୍କର ଚାରିଆଡେ ପରିସ୍ଥିତ ନିତାନ୍ତ ପ୍ରତିକୂଳ ଥିଲା । ଏହି କେଉଟ ଘରର ଝିଅଟି କାହାରି ପାଖରୁ ସମର୍ଥନ ପାଇନଥିଲା । ଯେହେତୁ ଅମ୍ମାଙ୍କର ଭକ୍ତମାନେ ଦେଶର ବିଭିନ୍ନ କୋଣରୁ ଆସିଥିଲେ, ସେମାନେ ଅମ୍ମାଙ୍କୁ ହଇରାଣ କରୁଥିବା ଅଜ୍ଞ ଓ ଅଭଦ୍ର ସ୍ଥାନୀୟ ବାସିନ୍ଦା ମାନଙ୍କୁ କିଛି କଟକଣା କରି ପାରୁନଥିଲେ । ତା ଛଡା ପ୍ରାୟ ଅଧିକାଂଶ ଭକ୍ତ ମାନେ ଭାବୁଥିଲେ ଯେ ଅମ୍ମା କେବଳ ଭାବଦର୍ଶନ ସମୟରେ ହିଁ

କୃଷ୍ଣ ଏବଂ ଦେବୀଙ୍କ ଦ୍ୱାରା ଅଧିକୃତ ରହନ୍ତି । ସେମାନେ ଅମ୍ମାଙ୍କର ଆଧ୍ୟାତ୍ମିକ ଅନୁଭୂତିର ଗଭୀରତା ବା ସଂପୂର୍ଣ୍ଣତାକୁ ବୁଝିବାକୁ ଅକ୍ଷମ ଥିଲେ । ତା ଛଡା ସେ ସମସ୍ତେ ପ୍ରାୟ ବେଶୀ ଭାଗ ଭକ୍ତ ବିଷୟାଦି ଲାଳସା ପୂର୍ଣ୍ଣ କରିବା ଆଶାରେ ହିଁ ଦର୍ଶନକୁ ଆସୁଥିଲେ, ଆଧ୍ୟାତ୍ମିକତା ଜିଜ୍ଞାସା ପାଇଁ ଆସୁ ନଥିଲେ । ଯଦି ସେମାନଙ୍କର ମନସ୍କାମନା ପୂର୍ଣ୍ଣ ହେଉନଥିଲା, ତେବେ ସେମାନେ ଆଉ ଫେରୁ ନଥିଲେ । ତାଙ୍କର ଅମ୍ମାଙ୍କ ପ୍ରତି ଭକ୍ତି ସେହିଠାରେ ହିଁ ସମାପ୍ତ ହେଉଥିଲା । ଅମ୍ମାଙ୍କର ପାଖରେ ଇଂଚେ ମାତ୍ର ଜମି ବା ପଇସା ଟିଏ ମଧ୍ୟ ସମ୍ବଳ ନଥିଲା । ତାଙ୍କ ନିଜର ବନ୍ଧୁ ବାନ୍ଧବମାନେ ସହଯୋଗ କରିବା ପରିବର୍ତ୍ତେ ତାଙ୍କର ଭୀଷଣ ବିରୋଧୀ ଥିଲେ । ତାଙ୍କର ନିଜ ପରିବାର ବର୍ଗ ତାଙ୍କୁ ଉତ୍ସାହ କିମ୍ବା କୌଣସି ପ୍ରକାର ସାହଯ୍ୟ ଦେଉ ନଥିଲେ ।

ଥରେ ଜଣେ ଭକ୍ତ ଅମ୍ମାଙ୍କୁ ତାଙ୍କ ସାଧନା ସମୟର ଅତିବାହିତ ହୋଇଥିବା ଦିନ ଗୁଡିକରେ ଦୁଃଖ, କଷ୍ଟ ଓ ପରୀକ୍ଷା ବିଷୟରେ ପଚାରିଲେ । ସେମାନେ ଏତେ ଦୁଃଖ କଷ୍ଟ, ପରୀକ୍ଷା ଭିତରେ ଦେଇ ଗତି କରି କିପରି ଶେଷରେ ପରଂବ୍ରହ୍ମଙ୍କୁ ଅନୁଭବ କରି ପାରିବେ ଏ ପ୍ରଶ୍ନ ନିଜକୁ ପଚାରିବାକୁ ଲାଗିଲେ । ସେମାନେ ଯେ ଅମ୍ମାଙ୍କ ପରି ଏତେ ସହନଶୀଳ ହୋଇ ପାରିବେ ତାହା ସନ୍ଦେହ ଜନକ ଥିଲା । ଅମ୍ମା ତାକୁ ବୁଝାଇ ଦେଇଥିଲେ ଯେ ତାଙ୍କ ଜୀବନ ଦୃଷ୍ଟାନ୍ତରୁ ଜଣାପଡେ ଯେ ଜୀବନର ସବୁଠାରୁ ଦୁର୍ଦ୍ଦଶା ଜନକ ପରିସ୍ଥିତି ଭିତରେ ଥାଇ ମଧ୍ୟ ଭଗବତ୍ ଅନୁଭବ ସମ୍ଭବ ହୋଇପାରେ ।



# ଦଶମ ଅଧ୍ୟାୟ

## ମାତା ଅମୃତାନନ୍ଦମୟୀ

ଏକଥା ସବୁବେଳେ ମନେରଖ ଯେ ଜଗଜ୍ଜନନୀ ଅମ୍ମା ସର୍ବବ୍ୟାପୀ । ବିଶ୍ୱାସ ରଖ ଯେ ତୁମେ ଓ ମା ଅଭିନ୍ନ । ପିଲାମାନେ ! ତୁମର ଜନ୍ମଦାତ୍ରୀ ମା କେବଳ ଏଇ ଜନ୍ମରେ ତୁମର ଦେଖାଚାହାଁ କରିପାରେ । ବର୍ତ୍ତମାନ ଯୁଗରେ ତାହା ମଧ୍ୟ କଷ୍ଟକର ହୋଇ ପଡିଲାଣି । କିନ୍ତୁ ଅମ୍ମା ଚାହେଁ ଯେ ସେ ତୁମ ଭବିଷ୍ୟତ ଜନ୍ମ ମାନଙ୍କରେ ମଧ୍ୟ ଆନନ୍ଦ ଲାଭ କରିବାର ପଥ ପ୍ରଦର୍ଶନ କରାଇବ ।

ଶ୍ରୀ ମାତା ଅମୃତାନନ୍ଦମୟୀ ଦେବୀ

ତ୍ରୈଲୋକ୍ୟ ସ୍ଫୁଟ ବକ୍ତାରୋ
ଦେବାଦ୍ୟସୁର ପନ୍ନଗାଃ
ଗୁରୁବକ୍ତ୍ର ସ୍ଥିତା ବିଦ୍ୟା
ଗୁରୁଭକ୍ତ୍ୟା ତୁ ଲଭ୍ୟତେ ॥

ଗୁରୁଙ୍କଠାରୁ ପ୍ରାପ୍ତ ଜ୍ଞାନ ଦେବତା ମାନଙ୍କଠାରୁ ମଧ୍ୟ ଲାଭ କରାଯାଇପାରେନାହିଁ । ବିଶୁଦ୍ଧ ଗୁରୁଭକ୍ତି ଦ୍ୱାରା ହିଁ ଏହି ଜ୍ଞାନ ଲାଭ କରାଯାଇଥାଏ ।

**ଗୁରୁଗୀତା, ଶ୍ଲୋକ- ୨୨**

ଗୁରୁଙ୍କର ଜ୍ଞାନ ଶିକ୍ଷା ସ୍ୱର୍ଗ ଲୋକର ଦେବାଦେବୀ ମାନଙ୍କ ପାଖରୁ ମଧ୍ୟ ମିଳେ ନାହିଁ । ଯିଏ ଗୁରୁଙ୍କ ନିର୍ମଳ ପ୍ରେମ ନିବେଦନ କରି ସେବା କରେ ଗୁରୁ ତାକୁ ଜ୍ଞାନରେ ଜାଗୃତ କରନ୍ତି ।

ପିଲାମାନେ ! ସୁନ୍ଦର ଶୀତଳ ପବନ, ଚନ୍ଦ୍ରର ଜ୍ୟୋତ୍ସ୍ନା, ଆକାଶର ଅସୀମତା ଏବଂ ପୃଥିବୀର ସମସ୍ତ ସୃଷ୍ଟି ଦେବୀଭାବ ଚୈତନ୍ୟରେ ପରିବ୍ୟାପ୍ତ । ମନୁଷ୍ୟ.ଜୀବନର ମୂଳ ଲକ୍ଷ୍ୟ ହେଲା, ଏହି ସତ୍ୟକୁ ଉପଲବ୍ଧି କରିବା । ଏହି କଳିଯୁଗରେ କିଛି ଯୁବ ସାଧକ ସମସ୍ତ ଆମ୍ ତ୍ୟାଗ କରି ପୃଥିବୀରେ ଅଧ୍ୟାତ୍ମର ଆଲୋକ ପ୍ରଦର୍ଶନ କରିବେ ।

**ମାତା ଅମୃତାନନ୍ଦମୟୀ**

**ଯୁବ ଗୋଷ୍ଠୀ**

୧୯୭୬ ମସିହାରେ ଆଲାପଦ ଗ୍ରାମରୁ ଉନ୍ନିକୃଷ୍ଣ ବୋଲି ଜଣେ ୨୦ ବର୍ଷର ଯୁବକ ଅମ୍ମାଙ୍କୁ ଦର୍ଶନ କରିବା ପାଇଁ ଆସିଲା । ସେ ଗୋଟିଏ ସନ୍ନ୍ୟାସୀ ପିଲା । ଯଦିଓ ତାର ପରିବାର, ଘର ସବୁଥିଲା, ସେ ସେମାନଙ୍କୁ ବହୁତ କମ ଦେଖିବାକୁ

ଯାଉଥିଲା । ଅମ୍ମାଙ୍କୁ ଦେଖିବା ପରେ ସେ ସନ୍ୟାସ ଜୀବନ ଯାପନ କରିବା ପାଇଁ ଗଭୀର ତୃଷ୍ଣା ଅନୁଭବ କଲା । ଅମ୍ମା ତାହା ବୁଝିପାରି, ବର୍ଷକ ପରେ ତାକୁ ଇଡାମାନ୍ନେଲ ମନ୍ଦିରରେ ନିଜ ତଦାରଖରେ ଦୈନିକ ପୂଜା ଉପଚାର କାର୍ଯ୍ୟରେ ନିଯୁକ୍ତ କଲେ । ସେ ସାରାଦିନ ଛୋଟିଆ ମନ୍ଦିରଟି ଭିତରେ ଦୈନିକ ପୂଜା ଏବଂ ଅମ୍ମାଙ୍କର ନିର୍ଦ୍ଦେଶରେ ଶ୍ରୀ ଲଳିତା ସହସ୍ର ନାମାବଳୀ ପାଠ କରି କଟାଇଲା । ତା ସହିତ ସେ ମଧ୍ୟ ଧର୍ମଶାସ୍ତ୍ର ପଢିବା, ଭଜନ ଲେଖିବା ଇତ୍ୟାଦି ଭଗବତ୍ ସଂପର୍କୀୟ କାର୍ଯ୍ୟରତ ରହୁଥିଲା । ରାତିରେ ସେ ମନ୍ଦିରର ବାରଣ୍ଡାରେ ଖଣ୍ଡେ ପତଳା ଚାଦର ବିଛାଇ ଶୁଏ । ସେ ଏତେ ଶାନ୍ତ ଶିଷ୍ଟ ଥିଲା ଯେ ତାର ସେଠାରେ ରହୁଥିବା କଥା ସୁଦ୍ଧା ବାହାର ଲୋକେ ଜାଣି ପାରି ନଥିଲେ । ଏହିପରି ସେ ମନ୍ଦିରର ପ୍ରଥମ ଅଧିବାସୀ ଭାବେ ଗଣିତ ହୁଅନ୍ତି ।

୧୯୭୮ ମସିହାର ଶେଷ ବେଳରୁ କିଛି ଶିକ୍ଷିତ ଯୁବକ ବିଷୟ ସଂସାର ତ୍ୟାଗ କରି ଭଗବତ୍ ଅନୁଭୂତି ପ୍ରାପ୍ତି ଓ ଲୋକ ସେବା ପାଇଁ ଆସି ଅମ୍ମାଙ୍କର ଚରଣରେ ଶରଣ ନେଲେ । ଅମ୍ମାଙ୍କର ଅଦ୍ଭୁତ ଆକର୍ଷଣୀୟ ସ୍ୱଭାବ ଓ ସମଭାବରେ ସମସ୍ତଙ୍କୁ ଗ୍ରହଣ କରିବା ସେମାନଙ୍କ ଭିତରେ ଉଦ୍ଦୀପନା ଜଗାଇଲା । ସେମାନେ ସମସ୍ତ ବିରୋଧର ସମ୍ମୁଖୀନ ହୋଇ ମଧ୍ୟ ସନ୍ନ୍ୟାସ ଜୀବନ ଯାପନ କରିବାକୁ ସ୍ଥିର କଲେ । ସେମାନଙ୍କ ଭିତରୁ ବେଶୀ ଭାଗ ହରିପଦ ଗ୍ରାମର ଉଚ୍ଚବଂଶୀୟ ପରିବାରର ଥିଲେ । ଅମ୍ମାଙ୍କ ସହ ଦର୍ଶନ ପରେ, ଜୀବନର ଚରମ ଲକ୍ଷ୍ୟ କଣ ଓ ତାର ପ୍ରାପ୍ତି ଲାଗି ସାଧନାରେ ଅମ୍ମା ଯେ ପଥ ପ୍ରଦର୍ଶକ ଏ ବିଷୟରେ ସେମାନଙ୍କର ବିଶ୍ୱାସ ଦୃଢୀଭୂତ ହେଲା । ସେମାନେ ସେହି ପଥରେ ଯିବା ପାଇଁ ଦୃଢ ସଂକଳ୍ପ ହେଲେ ।

ଗୋଟିଏ ମାସ ଭିତରେ ଶ୍ରୀକୁମାର, ରମେଶ ରାଓ, ବେଣୁଗୋପାଳ, ହରିକୁମାର ପାଲ, ରାମକୃଷ୍ଣନ ଓ ବାଳ ଗୋପାଳ (ବାଲୁ) ଅମ୍ମାଙ୍କୁ ଦେଖା କରି, ସେମାନଙ୍କ ସାଧନା ପଥରେ ମାର୍ଗ ଦର୍ଶକ ଦେବା ପାଇଁ ତାଙ୍କୁ ଅନୁନୟ କଲେ । ଯାହାହେଉ ସୁଗୁଣାନନ୍ଦ ସେମାନଙ୍କୁ ଅମ୍ମାଙ୍କ ପାଖରେ ସ୍ଥାୟୀ ଭାବରେ ରହିବା ପାଇଁ ଅନୁମୋଦନ କଲେ । ତାଙ୍କ ଘରେ ଅବିବାହିତା ଝିଅମାନେ ଥିବା ଯୋଗୁ ସେ ଏହାର ପ୍ରଶ୍ରୟ ଦେବାକୁ ପ୍ରଥମେ ନାରାଜ ଥିଲେ । ଏହି ଭଗବତ ପ୍ରେମୀ ଯୁବକ ମାନଙ୍କ ମଧ୍ୟରୁ କିଛି କଲେଜରେ ପଢୁଥିଲେ । କିଛି ଚାକିରୀ ଆରମ୍ଭ କରିଥିଲେ । ତା ମଧ୍ୟରୁ କେବଳ ବାଲୁ କଲେଜ ଶେଷ କରିଥିଲେ । ସେମାନେ ପ୍ରାୟ ପ୍ରତିଦିନ କିମ୍ବା ଦିନେ ଛଡା

ଦିନେ ନିଜ ଦୈନନ୍ଦିନର କର୍ତ୍ତବ୍ୟ ଶେଷ କରି ଅମ୍ମାଙ୍କ ନିକଟକୁ ଆସୁଥିଲେ ।

ଭକ୍ତ ଓ ଯୁବକମାନେ ଖବର କାଗଜରେ ମନଗଢା ଗୁଜବ ଛପା ହେବା ଦେଖି ଚିନ୍ତିତ ହୋଇ ପଡିଥିଲେ । ଅମ୍ମା ସେମାନଙ୍କର ଚିନ୍ତା ବିଷୟରେ ଜାଣିପାରି ହସି ହସି ଉତ୍ତର ଦିଅନ୍ତି "ଆମେମାନେ ସେ ଖବର କାଗଜରେ ଛପା ହୋଇଥିବା ଦୂଷିତ ଅକ୍ଷର ବା ଶବ୍ଦ ନୋହୁଁ । ତୁମେମାନେ ସମୟ ନଷ୍ଟ ନକରି ନିଜ ଆଧ୍ୟାତ୍ମିକ ମାର୍ଗରେ ଚିନ୍ତାଶୂନ୍ୟ ହୋଇ ନିମଜ୍ଜିତ ରୁହ । ଯେଉଁମାନେ ଆଜି ବିରୋଧ କରୁଛନ୍ତି, ସେମାନେ କାଲି ଭକ୍ତ ପାଲଟିବେ" । କିଛିଦିନ ପରେ ଅମ୍ମାଙ୍କର ଭବିଷ୍ୟତ ବାଣୀ ସତ୍ୟରେ ପରିଣତ ହୋଇଥିଲା ।

ସେହି ବର୍ଷ ନଭେମ୍ବର ମାସରେ ଗୋଟିଏ କଲେଜ ପିଲା ଇଡ଼ାମାନ୍ନେଲକୁ ଅମ୍ମାଙ୍କୁ ଭେଟିବା ପାଇଁ ଆସିଥିଲା । ପ୍ରଥମ ଦର୍ଶନରେ ହିଁ ତାର ଚରିତ୍ରର ବିରାଟ ପରିବର୍ତ୍ତନ ହୋଇଥିଲା । ସେ ମଝି ମଝିରେ ସୁବିଧା ଦେଖି ଅମ୍ମାଙ୍କୁ ଦେଖା କରିବାକୁ ଆସିବାକୁ ଲାଗିଲା । ତାର ସଂସାର ତ୍ୟାଗ କରିବାର ଇଚ୍ଛା ପ୍ରବଳ ହେଲା ଏବଂ କେଉଁଠାରେ ରହି ସେ ତାର ସାଧନା କରିବ ସେ ବିଷୟରେ ଅମ୍ମାଙ୍କୁ ପଚାରିଥିଲା । ସେ ସମୟରେ ସୁଗୁଣାନନ୍ଦ ଅମ୍ମାଙ୍କ ଆଗରେ ପହଂଚି ଥିବା ସନ୍ନ୍ୟାସୀ ଯୁବକ ମାନଙ୍କୁ ଘଉଡାଇ ଦେଉଥିଲେ । ସେହି ଯୁବକଟିକୁ ସୁଗୁଣାନନ୍ଦ ଭୀଷଣ ତିରସ୍କାର କରି ଇଡ଼ାମାନ୍ନେଲରୁ ବାହାରିଯିବା ପାଇଁ ଆଦେଶ ଦେଇଥିଲେ । ସେ ଅତି ଦୁଃଖର ସହ ଅମ୍ମାଙ୍କୁ ସାଧନା କରିବା ପାଇଁ ଗୋଟିଏ ଉପଯୁକ୍ତ ସ୍ଥାନ ବିଷୟରେ ସନ୍ଧାନ ଦେବା ପାଇଁ କହିଥିଲେ । ଅମ୍ମା ତାଙ୍କୁ ତିରୁବନମଲାଇ ଜଙ୍ଗଲସ୍ଥିତ ମହର୍ଷି ରମଣଙ୍କର ଆଶ୍ରମକୁ ଯାଇ ଏକଚାଳିଶ ଦିନ ମୌନ ବ୍ରତ କରିବା ପାଇଁ ଉପଦେଶ ଦେଲେ ।

ଯିବା ଆଗରୁ ସେ ଅମ୍ମାଙ୍କୁ ପଚାରିଲେ "ଅମ୍ମା ! ଯଦି ସୁଗୁଣାନନ୍ଦ ଭକ୍ତ ମାନଙ୍କ ପ୍ରତି ଏହିପରି ଦୁର୍ବ୍ୟବହାର ଚାଲୁ ରଖିବେ ତେବେ ଏଠି କିପରି ଆଶ୍ରମ ଆରମ୍ଭ ହୋଇ ପାରିବ ? ସେ ଆପଣଙ୍କ ପ୍ରତି ଓ ଆପଣଙ୍କ ନିକଟରେ ରହୁଥିବା ଭକ୍ତମାନଙ୍କ ପ୍ରତି ଦୁର୍ବ୍ୟବହାର କରୁଛନ୍ତି ! ମୁଁ ଆପଣଙ୍କର କଷ୍ଟ ସହି ପାରୁ ନାହିଁ । ଆପଣଙ୍କର କଥା ବୁଝିବା ପାଇଁ ଓ ଯତ୍ନ ନେବା ପାଇଁ କିଏ ଅଛି" ?

ଅମ୍ମା ତାଙ୍କୁ ସାନ୍ତ୍ୱନା ଦେଇ କହିଲେ "ଚିନ୍ତା କର ନାହିଁ, ତୁମେ ତିରୁବନ

ମଲାଇକୁ ଫେରିଲାବେଳକୁ ସବୁ ଠିକ୍ ହୋଇ ଯାଇଥିବ । ଏଠି ଅମ୍ମା ଏବଂ ଆଶ୍ରମର ଦେଖାଶୁଣା କରିବା ପାଇଁ ଭକ୍ତ ହୋଇ ଯାଇଥିବେ । ଅନ୍ୟାନ୍ୟ ଦେଶରୁ ମୋ ପିଲାମାନେ ମତେ ଦେଖିବା ପାଇଁ ଅପେକ୍ଷା କରି ରହିଛନ୍ତି । ଦେଖିବ, ଦିନ ଆସିବ ଯେଉଁଦିନ ତୁମକୁ ସୁଗୁଣାନନ୍ଦ ସ୍ନେହ ଓ ପ୍ରେମ ସହ ସ୍ୱାଗତ ଜଣାଇବେ ।"

ସେ ତାଙ୍କର ଅମ୍ମାଙ୍କୁ ସମୟ ଅନୁସାରେ କାମ କରିବା ପାଇଁ ଗୋଟିଏ ଘଂଟା ଓ ନାମ ଜପ ପାଇଁ ରୁଦ୍ରାକ୍ଷ ମାଳା ମାଗିଲେ । ଅମ୍ମା କହିଲେ "ଅମ୍ମାଙ୍କୁ ଏପରି ସବୁ ଜିନିଷ କେବେହେଲେ ମାଗିବ ନାହିଁ କିମ୍ବା ମାଗିବା କଥା ଭାବିବ ନାହିଁ । ପ୍ରକୃତ ସାଧକ ତାର ଆସନରୁ ଉଠିବା ମଧ୍ଯ ଉଚିତ ନୁହେଁ । ସେ ଯାହା ଚାହେଁ ତାହା ବଳେ ଆସି ପହଂଚିବ । ବୁଢିଆଣୀ ଓ ଅଜଗର ସାପକୁ ଦେଖ, ସେମାନେ କେବେହେଲେ ତାଙ୍କର ଶିକାର ଖୋଜିବାକୁ ଯାଆନ୍ତି ନାହିଁ । ବୁଢିଆଣୀ ଚୁପ ହୋଇ ତାର ଜାଲ ମଝିରେ ବସିଥାଏ, ଛୋଟ ପୋକ ଜୋକ ଆପେ ଆସି ତା ଜାଲରେ ଛନ୍ଦି ହୋଇ ଯାଆନ୍ତି । ଭଗବାନଙ୍କର କର୍ତବ୍ୟ ତାଙ୍କ ଭକ୍ତ ମାନଙ୍କର ଦେଖା ଚାହାଁ କରିବା । ତାଙ୍କ ପାଦ ତଳେ ସବୁ ଅର୍ପଣ କରିଦିଅ । ଅରୁଣାଚଳକୁ ଯାଅ, ତୁମର ଯାହା ଦରକାର ତାହା ସବୁ ଆସି ପହଂଚିବ" ।

ଅମ୍ମାଙ୍କର ଛବି ହୃଦୟରେ ଧରି, ଓ ତାଙ୍କର ଅଫୁରନ୍ତ ସ୍ନେହବାରିକୁ ମନେ ପକାଇ, ଯୁବକଟି ତିରୁବନମଲାଇ ଯିବା ପାଇଁ ସାଙ୍ଗଟିଏ ଦେଇଥିବା ପଇସା ନେଇ ବାହାରି ପଡିଲେ । ଶିବଙ୍କର ବାସସ୍ଥାନରେ ପହଂଚି ସେ ପବିତ୍ର ଅରୁଣାଚଳ ପାହାଡର ଗୁମ୍ଫାରେ କିଛିଦିନ କଟାଇଲେ । ପ୍ରଥମ ଦୁଇଦିନ ସେ ଖାଲି ପତ୍ର ଖାଇ ଓ ପାଣି ପିଇ କଟାଇଲେ । ତୃତୀୟଦିନ ସନ୍ଧ୍ୟା ବେଳେ ଆହାର ବିନା ଚେତାଶୂନ୍ୟ ହୋଇ ସେ 'ଅମ୍ମା ଅମ୍ମା !' ବୋଲି ଡାକିବାକୁ ଲାଗିଲେ । ଗୋଟିଏ ଚିଠିରେ ସେ ଅମ୍ମାଙ୍କ ପାଖକୁ ଲେଖିଥିଲେ "ପ୍ରାୟ ଉପର ଓଳି ପାଂଚଟା ବେଳକୁ ମୁଁ ଭୋକରେ ଅର୍ଦ୍ଧ ଚେତନ ଅବସ୍ଥାରେ ପାହାଡରେ ପଡିଥିଲି । ଠିକ୍ ସେତିକି ବେଳେ ମୁଁ ଅମ୍ମାଙ୍କର ଡାକ ପରିଷ୍କାର ଭାବରେ ଶୁଣି ପାରିଲି 'ମୋ ପୁଅ !' ମୋର ମନେ ହେଲା ଯେପରିକି ମୋର କପାଳକୁ କିଏ ଧୀରେ ଧୀରେ ଆଉଁସି ଦେଉଛି । ଯେତେବେଳେ ଆଖି ଖୋଲିଲି, ଅମ୍ମାଙ୍କୁ ଧଳା ଶାଢୀ ପିନ୍ଧି ଆଗରେ ଠିଆ ହୋଇଥିବା ଦେଖିଲି । ସେହି ଦୃଶ୍ୟ ଦେଖି ମୁଁ ଆନନ୍ଦରେ ଅଧୀର ହୋଇଗଲି" ।

ଅମ୍ମା ଏହି ଚିଠି ପାଇଲା ପରେ, ଭକ୍ତମାନେ ବୁଝିପାରିଥିଲେ ଯେ ଠିକ ସେହି ସମୟରେ ବଲ୍ଲିକାଓ୍ୱରେ ଅମ୍ମା ହଠାତ୍ "ମୋ ପୁଅ" ବୋଲି କହି ଉଠିପଡିଥିଲେ । ପାଖରେ ବସିଥିବା ଭକ୍ତ ମାନଙ୍କୁ କହିଲେ "ମୋର ପୁଅ ତିରୁବନ ମଲାଇରେ ଗତ ତିନିଦିନ ଧରି ଓପାସରେ ପଡି ରହିଛି ଓ ମତେ ଦେଖିବା ପାଇଁ କାନ୍ଦୁଛି!" ଏହି ଘଟଣା ପରେ ସେହି ଯୁବକଟିର ନିୟମିତ ଖାଦ୍ୟ ପାଇବାରେ ଅସୁବିଧା ହୋଇ ନଥିଲା ।

ସାଧନା ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ ନ ପାଇ ଯୁବକଟି ପାହାଡ ଉପରେ ସାରାଦିନ କଟାଉଥିଲା ଏବଂ ରାତି ହେଲେ ପାହାଡର ପାଦ ଦେଶକୁ ଆସି ଶୋଉଥିଲା । ଦିନେ ପାହାଡରୁ ତଳକୁ ଓହ୍ଲାଇ ଆସିଲାବେଳେ ସେ ଗାୟତ୍ରୀ ନାମ୍ନୀ ଜଣେ ଅଷ୍ଟ୍ରେଲିୟାନ ଭଦ୍ର ମହିଳାଙ୍କୁ ଭେଟିଲେ । କିଛିଦିନ ପରେ ସେ ରିୟୁନିୟନ ଦୀପର ବାସିନ୍ଦା ମଧୁସୂଦନଙ୍କୁ ଭେଟିଲେ । ମଧୁସୂଦନଙ୍କର ପୂର୍ବ ପୁରୁଷମାନେ ଭାରତବର୍ଷର ଲୋକ । ସେ ତିନିଜଣ ଯାକ ଗୋଟିଏ ସ୍ନେହର ବନ୍ଧନରେ ବାନ୍ଧି ହୋଇଥିଲା ପରି ଅନୁଭବ କଲେ । ଅମ୍ମାଙ୍କର ଭବିଷ୍ୟତ ବାଣୀ ମନେ ପକାଇ ସେ ଅନୁଭବ କରୁଥିଲେ ଯେ ଏହି ଦୁଇଜଣ ମଧ ଅମ୍ମାଙ୍କର ସନ୍ତାନ । ସେ ସେମାନଙ୍କୁ ଅମ୍ମାଙ୍କ ବିଷୟରେ କହି ଅମ୍ମାଙ୍କର ଛବି ଦେଖାଇଥିଲେ । ଗାୟତ୍ରୀ ଛବିରେ ଅମ୍ମାଙ୍କର ଶାନ୍ତ ପବିତ୍ର ମୁଖ ମଣ୍ଡଳ ଓ ଉଜ୍ୱଳ ଚକ୍ଷୁ ଦ୍ୱୟ ଦେଖି ମୁଗ୍ଧ ହୋଇ ଯାଇଥିଲେ ।

ଯଦିଓ ସବୁଦିନ ଗାୟତ୍ରୀ ଜପ କରିବାକୁ ଚେଷ୍ଟା କରୁଥିଲେ, ତଥାପି ସାଧନାରେ ଆଗେଇବା ପରି ତାଙ୍କର ମନେ ହେଉନଥିଲା । ଅମ୍ମାଙ୍କର ଫଟୋ ଦେଖି ଓ ତାଙ୍କର ନିସ୍ୱାର୍ଥ ସ୍ନେହ ଓ କରୁଣାର କାହାଣୀ ଶୁଣି ଗାୟତ୍ରୀଙ୍କର ପ୍ରଥମ ଥର ପାଇଁ ଦୈବୀ ଅନୁଭୂତି ହେଲା । ସେ ବର୍ଣ୍ଣନା କରିଥିଲେ "ମୁଁ ମୋ ଭିତରେ ଆଲୋକର ବଳୟ ଭିତରେ ଅମ୍ମାଙ୍କୁ ଠିଆ ହୋଇଥିବାର ଦେଖିଲି, ହଠାତ୍ ମୋ ନିଜ ଭିତରୁ କ୍ରନ୍ଦନ ଧ୍ୱନି ଉଠିଲା "ଅମ୍ମା, ଅମ୍ମା, ଅମ୍ମା! ତାପରେ ସବୁ ଚିନ୍ତା ବନ୍ଦ ହୋଇ ମନ ସଂପୂର୍ଣ୍ଣ ଭାବରେ ସ୍ଥିର ହୋଇଗଲା । ମୁଁ ଯେତେବେଳେ ଆଖି ଖୋଲି ଘଂଟାକୁ ଅନେଇଲି ପ୍ରାୟ କୋଡିଏ ମିନିଟ୍ କଟି ଯାଇଥିଲା । ମୁଁ ପୁରାପୁରି ବାହ୍ୟଜ୍ଞାନ ଶୂନ୍ୟ ହୋଇ ଯାଇଥିଲି ।"

ମଧୁ ଅମ୍ମାଙ୍କ ବିଷୟରେ ଶୁଣି ପାଇଥିବା ଆନନ୍ଦକୁ ଅନ୍ୟମାନଙ୍କୁ କହିବା ଲାଗି ଭାରି ଇଚ୍ଛୁକ ଥିଲେ, ତେଣୁ ଏହି ଯୁବକଙ୍କୁ ସେ ଜଣେ ନିଲୁ ନାମକ ଆମେରିକାନ

ଭକ୍ତ ସହ ଆଳପ କରାଇ ଦେଲେ । ନିଲୁ ଜଣେ ଭାବୁକ ପ୍ରକୃତିର ଯୁବକ । ତାଙ୍କ ଗୁରୁ ଥିଲେ ରମଣ ମହର୍ଷିଙ୍କର ଜଣେ ଶିଷ୍ୟ, ମାତ୍ର ଚାରିବର୍ଷ ତଳେ ଦେହ ତ୍ୟାଗ କରିଥିଲେ । ଗୁରୁଙ୍କର ସେବା କରି ନିଲୁ ତିରୁବନମଲାଇରେ ପ୍ରାୟ ଏଗାର ବର୍ଷ ଧରି ରହିଥିଲେ । ଏହି ସମୟରେ ସେ ପେଟ ଓ ମେରୁଦଣ୍ଡର ପୀଡାରେ ଶଯ୍ୟାଶୟୀ ହୋଇ ଯାଇଥିଲେ । ଅଳ୍ପ ସମୟ ପାଇଁ ମଧ୍ୟ ଚାଲିବା ଓ ବସିବା ତାଙ୍କ ପାଇଁ ସମ୍ଭବ ନଥିଲା । ଡାକ୍ତର ମାନେ ସୁଦ୍ଧା ତାଙ୍କର ରୋଗର କାରଣକୁ ନିର୍ଣ୍ଣୟ କରି ପାରୁନଥିଲେ ।

ଏହି ଯୁବକଟିକର ସାଧନା ପାଇଁ ନିର୍ଦ୍ଦିଷ୍ଟ ଜାଗାର ଅଭାବ ଜାଣିପାରି ନିଲୁ ତାଙ୍କୁ ସ୍ୱର୍ଗବାସୀ ଗୁରୁଙ୍କର କୁଟୀର ରେ ସାଧନା କରିବାକୁ ପ୍ରସ୍ତାବ ଦେଇଥିଲେ । ସେ ଅମ୍ମାଙ୍କ ବିଷୟରେ ଆଗ୍ରହ ଦେଖାଇ ନଥିଲେ, କାରଣ ସେ ସେତେବେଳକୁ ଅନେକ ମହାନ୍ ଯୋଗୀ ମାନଙ୍କୁ ଭେଟି ସାରିଥିଲେ । ତାଙ୍କର ଏକମାତ୍ର ଚିନ୍ତା ଥିଲା ନିଜ ଶରୀର ପୀଡାରୁ ଆରୋଗ୍ୟ ଲାଭକରି ସାଧନାର ପଥରେ ଆଗେଇବା । ମନରେ ଏହି ଚିନ୍ତା କରି ସେ ସେହି ଯୁବକଙ୍କୁ ତାଙ୍କର ମୌନ ବ୍ରତ ଶେଷ ପରେ ଅମ୍ମାଙ୍କ ଦର୍ଶନ ପାଇଁ ନେଇ ଯିବାକୁ କହିଲେ । ତାପରେ ନିଲୁ ଯୁବକଙ୍କର ସାଧନାରେ ସାହାଯ୍ୟ ପାଇଁ ତାଙ୍କୁ ଗୋଟିଏ ଘଂଟା ଓ ରୁଦ୍ରାକ୍ଷର ଜପମାଳା ଉପହାର ଦେଇଥିଲେ । ସେ ଚାହିଁଥିବା ଜିନିଷ ସବୁ ମନକୁ ମନ ଆସିବ, ଅମ୍ମାଙ୍କର ଏ ଭବିଷ୍ୟତ ବାଣୀ କଥା ମନେ ପକାଇ ବିହ୍ୱଳ ହୋଇ ସେ ମୌନବ୍ରତ ଆରମ୍ଭ କଲେ ।

ଦିନେ ସେ ଅରୁଣାଚଳରେ ଯାତ୍ରା କଲାବେଳେ ଦେଖିଲେ ଜଣେ ଲମ୍ବା ଗୋରା ବିଦେଶୀ ଲୋକ ତାମିଲରେ ମନ୍ତ୍ର ଉଚ୍ଚାରଣ କରି କିଛି ଲୋକଙ୍କ ଗହଣରେ ଯାଉଛନ୍ତି । ସେଦିନ ରମଣ ମହର୍ଷିଙ୍କର ବାର୍ଷିକୀ ପାଳନ କରା ଯାଉଥିଲା । ତାଙ୍କୁ ଅନାଇ ଯୁବକ ଭାବିଲେ, ଯଦିଓ ସେ ଅହଂକାରୀ ପରି ମନେ ହେଉଛନ୍ତି ତଥାପି ସେ ଅମ୍ମାଙ୍କର ପୁଅପରି ଲାଗୁଛନ୍ତି । ଏହି ଲୋକଟି ପ୍ରକୃତରେ ଫ୍ରାନସ୍ ଦେଶର, ତାଙ୍କ ନାମ ଗଙ୍ଗା ଓ ସେ ପରେ ଅମ୍ମାଙ୍କ ପାଖରେ ରହିବାକୁ ଆସିଥିଲେ ।

ଏକଚାଳିଶ ଦିନର ମୌନବ୍ରତ ସରିଲାପରେ ସେ ନିଲୁଙ୍କୁ ନେଇ ବଲ୍ଲିକାଓ୍ୱକୁ ଫେରି ଆସିଲେ । ନିଲୁଙ୍କର ଅମ୍ମାଙ୍କ ସହ ପ୍ରଥମ ଦର୍ଶନ ବଡ ସ୍ମରଣୀୟ ଥିଲା । ନିଲୁ ନିଜେ ପରେ ବର୍ଣ୍ଣନା କରିଥିଲେ "ମୋର ପ୍ରଥମ ଚାରିଦିନ ରହଣୀରେ ମନେ ହେଲା

ଯେପରିକି ମୁଁ ସ୍ୱର୍ଗରେ ଅଛି । ଅମ୍ମାଙ୍କ ଉପସ୍ଥିତିରେ ଏପରି ପରମାନନ୍ଦ ଚୈତନ୍ୟ ଅନୁଭବ ହୁଏ । ଦିନେ ରାତିରେ ଦେବୀଭାବର ଶେଷରେ ଅମ୍ମା ମନ୍ଦିରର ଦ୍ୱାର ପାଖରେ ଠିଆ ହୋଇଥିଲେ । ମୁଁ ବାହାରେ ଯୋଡ ହସ୍ତରେ ତାଙ୍କୁ ଅନାଇ ଠିଆ ହୋଇଥିଲି । ମୁଁ ଦେଖିଲି ତାଙ୍କର ଶରୀର ମିଳାଇ ଯାଇ ଗୋଟିଏ ବିରାଟ ଆଲୋକ ପିଣ୍ଡରେ ପରିଣତ ହୋଇ ଚାରିଆଡେ ଖେଳିଗଲା ଓ ସବୁକିଛିକୁ ଘୋଡାଇ ଦେଲା । ସେହି ଆଲୋକ ପିଣ୍ଡଟି ହଠାତ୍ ଗୋଟିଏ ନିଆଁହୁଲା ପରି ଉଜ୍ଜ୍ୱଳମୟ ହୋଇ ତୀର ପରି ମୋ ଦେହରେ ଆସି ପଶିଗଲା । ତିନିଦିନ ପାଇଁ ମୁଁ ଏକ ପ୍ରକାର ଦୈବୀ ଭାବରେ ମତୁଆଲା ହୋଇ ରହିଲି । ନଖାଇ ନଶୋଇ ମୁଁ ଖାଲି ଅମ୍ମାଙ୍କ ବିଷୟ ହିଁ ସାରାଦିନ ରାତି ଭାବିବାକୁ ଲାଗିଲି । ତାଙ୍କ ପାଖରେ ମୋ ଜୀବନର ଶେଷ ମୁହୂର୍ତ୍ତ ଯାଏ ରହି ତାଙ୍କର ଉପଦେଶ ମତେ ଚଳି ଆଜୀବନ ତାଙ୍କର ସେବା କରିବାକୁ ସିଦ୍ଧାନ୍ତ କଲି" ।

ନିଲୁ ତିରୁବନମଲାଇକୁ ଯୁବକଟି ସହ ଫେରି ଆସି ସେଠାରେ ବାକିଥିବା ସମସ୍ତ କର୍ମକୁ ସଂପାଦନ କରି ସବୁଦିନ ପାଇଁ ବଲ୍ଲିକାଓ୍ୱ କୁ ଫେରିବାକୁ ସ୍ଥିର କଲେ । ଆସିଲାବେଳେ ଗାୟତ୍ରୀ ମଧ୍ୟ ସେମାନଙ୍କ ସହ ଆସି ଅମ୍ମାଙ୍କର ସେବା କରିବା ପାଇଁ ଇଚ୍ଛୁକ ଥିଲେ । ଆଶ୍ଚର୍ଯ୍ୟ ଜନକ ଭାବରେ ସୁଗୁଣାନନ୍ଦ ମଧ୍ୟ ସେମାନଙ୍କୁ ନିଜ ପିଲାଙ୍କ ପରି ସ୍ୱାଗତ ଜଣାଇ ଆନନ୍ଦିତ ହେଲେ । ତିନିବର୍ଷ ପରେ ପ୍ରଥମଥର ପାଇଁ ନିଲୁଙ୍କର ଶରୀର ପୀଡା କିଛି ପରିମାଣରେ ଉପଶମ ହୋଇଥିଲା ଏବଂ ସେ ଚାଲବୁଲ କରି କିଛି ଛୋଟ ଛୋଟ କାମ କରିବାକୁ ସକ୍ଷମ ହୋଇ ପାରିଥିଲେ ।

ଯେତେବେଳେ ନିଲୁ ତିରୁଭନମଲାଇରୁ ଫେରିଲେ, ସେ ଅମ୍ମାଙ୍କ ପାଖରେ ନିଜର ଇଚ୍ଛା ପ୍ରକାଶ କଲେ "ମୁଁ ଏଠାରୁ ଯିବାକୁ ଚାହେଁ ନାହିଁ, ମୁଁ ଆପଣଙ୍କ ପାଖରେ ସାରା ଜୀବନ ସେବକ ହୋଇ ରହିବାକୁ ଚାହେଁ" । ଅମ୍ମା ତାକୁ କହିଲେ "ପୁଅ ! ମୋ ନିଜର ଗୋଟିଏ ଇଂଚ ମାତ୍ର ଜାଗା ନାହିଁ । ମୋ ବାପାଙ୍କୁ ପଚାର । ଆମର ରହିବା ପାଇଁ ଗୋଟିଏ ଜାଗା ନିହାତି ଦରକାର" ।

ସୁଗୁଣାନନ୍ଦ ନଡିଆ ବରଡା ଛାଆଣୀ କୁଡିଆଟିଏ କରିବା ପାଇଁ ଜାଗାଟିଏ ଦେବାକୁ ରାଜି ହୋବାରୁ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । କୁଡିଆଟି ମାତ୍ର ନଅ

'ଫୁଟ ଚଉଡ଼ା ଓ ଅଠର ଫୁଟ ଲମ୍ବା ଥିଲା । ତାର ଗୋଟିଏ କୋଣରେ ଛୋଟିଆ ରୋଷେଇ ଘରଟିଏ ହେଲା, ଅମ୍ମାଙ୍କ ପାଇଁ କିଛି ପାନୀୟ ତିଆରି କରିବା ପାଇଁ । କିନ୍ତୁ ଦୈନିକ ଖାଇବା ମୁଖ୍ୟ ଘରେ ରନ୍ଧା ହେଉଥିଲା । ଏହି କୁଡିଆରେ ଅମ୍ମା, ଗାୟତ୍ରୀ, ନିଲୁ ଓ ବାଲୁ ରହିବାକୁ ଆରମ୍ଭ କଲେ । ଏହିଠାରେ ହିଁ ଅନିୟମିତ ଭାବରେ ଆଶ୍ରମ ପ୍ରତିଷ୍ଠା ହୋଇଥିଲା ।

ଅମ୍ମାଙ୍କ ସହ ପ୍ରଥମ ଭେଟ ହେବା ପରେ ବାଲୁ ତାର ଘର ଛାଡି ଅମ୍ମାଙ୍କ ପାଖରେ ପ୍ରାୟ ସବୁ ସମୟ କଟାଉଥିଲା । ସୌଭାଗ୍ୟ ବଶତଃ ସେ ସୁଗୁଣାନନ୍ଦଙ୍କ ପାଖରୁ ଇଡାମାନ୍ନେଲରେ ସ୍ଥାୟୀ ଭାବରେ ରହିବାକୁ ଅନୁମତି ପାଇଥିଲା । ତେଣୁ ଯେତେବେଳେ ନିଲୁ ତିରୁଭନମଲାଇରୁ ଆସି ସ୍ଥାୟୀ ଭାବରେ ରହିବାକୁ ଚାହିଁଲେ, ବାଲୁ ମଧ୍ୟ ସେଠାରେ ରହିଗଲେ ।

ନିଲୁ, ଗାୟତ୍ରୀ, ଗଙ୍ଗା ଓ ଶେଷରେ ମଧୁ ମଧ୍ୟ ଆସି ଅମ୍ମାଙ୍କ ପାଦତଳେ ଆଶ୍ରୟ ନେଲେ । ସେମାନେ ଅମ୍ମାଙ୍କୁ ଭକ୍ତି ସହ କିଛି ଧନ ଦେବାକୁ ଚାହିଁଲେ କିନ୍ତୁ ଅମ୍ମା ନାହିଁ କରି କହିଲେ "ତୁମେମାନେ ଯଦି ନିର୍ମଳ ଚରିତ୍ରବାନ ଓ ସଂପୂର୍ଣ୍ଣ ଭାବରେ ଆଧ୍ୟାତ୍ମିକ ସାଧକ ହୋଇ ପାରିବ, ତେବେ ତାହାହିଁ ମୋର ଧନ । ଯିଏ ନିଜ ଭିତରେ ତାହା ଦେଖିବାକୁ ସକ୍ଷମ ହୋଇ ପାରିବ, ସାରା ପୃଥିବୀ ତାହାରି ହୋଇଯିବ ।"

ଦିନେ ରାତିରେ ଜଣେ ପଡୋଶୀ ଆସି ଗଙ୍ଗାକୁ ଉଠାଇ ଟର୍ଚ୍ଚ ଲାଇଟ ମାଗି ନେଲେ । ସେହି ଲୋକର ଝିଅ ପ୍ରବଳ ଶ୍ୱାସରେ ଆକ୍ରାନ୍ତ ହୋଇ କଷ୍ଟ ପାଉଥିଲେ, ତାଙ୍କୁ ଅନ୍ଧାରରେ ସଙ୍ଗେ ସଙ୍ଗେ ହସପିଟାଲ ନେବାକୁ ପଡିଥିଲା । କିଛି ଘଂଟାପରେ ସେହି ଲୋକଟି ଆସି ଟର୍ଚ୍ଚ ଲାଇଟଟି ଫେରାଇ ଦେଲେ । ତା ପରଦିନ ଗଙ୍ଗା ଅମ୍ମାଙ୍କୁ ଏହି ଘଟଣାଟି ଜଣାଇଲେ । ସେତେବେଳେ ତାଙ୍କ ନିଦରେ ବ୍ୟାଘାତ ହେବାରୁ ବିରକ୍ତରେ ସେ ଲୋକଟିର ମୁଣ୍ଡ ଫଟେଇ ଦେବାକୁ ତାଙ୍କ ଇଚ୍ଛା ହୋଇଥିଲା । ଅମ୍ମା ତାଙ୍କୁ ଗାଳି ଦେଇ କହିଲେ -

"ତୁମେ କିପରି ସାଧକ ? ଏଠିକି ଆସିବା ଆଗରୁ ଏତେ ସାଧନା କରି ତୁମର କଣ ବା ଲାଭ ହେଲା ? ଏଇଆ ତୁମ ସାଧନାର ଫଳ ? ତୁମେ ଯଦି ନିଜକୁ ଜ୍ଞାନ ମାର୍ଗର ସାଧକ ବୋଲି ମନେ କର ତେବେ ସବୁ ଜିନିଷକୁ ସ୍ୱୟଂ ବୋଲି ଦେଖିବା

ଉଚିତ । ଯଦି ତମେ ତାହା ଦେଖିଥାନ୍ତ ତେବେ ଏ ଲୋକଟି ଉପରେ କଣ ରାଗି ପାରିଥାନ୍ତ ? ଯଦି ତୁମ ଗୋଡରେ କଂଟା ଫୁଟି ଯାଇଥାନ୍ତା, ତୁମେ କଣ କଷ୍ଟ ଅନୁଭବ କରି ନଥାନ୍ତ ଓ ସେ କଂଟାକୁ ବାହାର କରିବାକୁ ଚେଷ୍ଟା କରି ନଥାନ୍ତ ? ସେହି ଲୋକଟିର ନିଜ ଝିଅକୁ ଯନ୍ତ୍ରଣାରୁ ଉଦ୍ଧାର କରିବାର କଷ୍ଟ ସାରା ଜୀବଜଗତର କଷ୍ଟ ଓ ନିଜର କଷ୍ଟ ବୋଲି ଅନୁଭବ କରିବା ଉଚିତ । ତାପରେ ହିଁ ତୁମର ମନ ଏହି ଆକାଶ ପରି ପ୍ରସାରିତ ହୋଇ ସବୁକୁ ସମାନ ଭାବରେ ସ୍ଥାନ ଦେଇ ପାରିବ ।"

ଗଙ୍ଗା ବ୍ୟଙ୍ଗ କଲା ପରି ସ୍ୱରରେ କହିଲେ, "ସମର୍ପଣ ଜମା ମନରେ ବୁଦ୍ଧି ସଂପାଦିତ ଶାନ୍ତି ଦେଇ ପାରେ ନାହିଁ । ପ୍ରେମ, ନିଷ୍ଠାର ମାର୍ଗରେ ଗଲେ କିଛିଟା ଦୁର୍ବଳତା ପ୍ରଦର୍ଶିତ ହୁଏ । କାନ୍ଦିବା, ଗାଇବା ଏସବୁ ଭାବପ୍ରବଣତାର ଦରକାର କଣ ? ମୁଁ ଏସବୁ କରି ପାରିବି ନାହିଁ । ଶ୍ରୀ ରମଣ ମହର୍ଷି ଏପରି ଉତ୍ସର୍ଗ ପଥ ଜମାରୁ ନିର୍ଦ୍ଦେଶ କରି ନଥିଲେ । ସେ ଖାଲି ତାଙ୍କର ଭକ୍ତ ମାନଙ୍କୁ ଜ୍ଞାନ ମାର୍ଗରେ ହିଁ ନିର୍ଦ୍ଧାରିତ କରିଥିଲେ । ମୋର ଧୀ ଶକ୍ତି, ଚିନ୍ତାଧାରାକୁ ଜ୍ଞାନ ମାର୍ଗ ଉଦ୍ଦୀପ୍ତ କରେ, ତେଣୁ ମୁଁ ତାହାହିଁ ପସନ୍ଦ କରେ । ଜ୍ଞାନ ମାର୍ଗରେ ହିଁ ବେଶୀ ବିଶ୍ୱାସ ସୃଷ୍ଟି ହୁଏ" । ଅମ୍ମାଙ୍କ ପାଖକୁ ଆସିଲା ବେଳେ ଗଙ୍ଗାର ନିଷ୍ଠା ଓ ସମର୍ପଣ ବିଷୟରେ ଏହିପରି ଚିନ୍ତାଧାରା ଥିଲା ।

ଅମ୍ମା ହସି ଉତ୍ତର ଦେଲେ -

"ଜ୍ଞାନ ପଥର ସାଧନାର ଫଳ ତ ମୁଁ ଏଇ ଦେଖୁଛି । ତୁମର ସାଧନାର ଫଳ ଯଦି ଏଇୟା ତେବେ ତୁମେ ନିସ୍ୱାର୍ଥ ତ୍ୟାଗମୟ ଜୀବନ ଯାପନ କରିବା କଥା ଭୁଲି ଯାଅ । ତାଠୁ ବରଂ ଇନ୍ଦ୍ରିୟ ମାନଙ୍କୁ ଉପଭୋଗ କରି ରୁହ । ତୁମେ ଶ୍ରୀ ରମଣଙ୍କର ଲେଖା ଓ ତାଙ୍କ ବିଷୟରେ କିଛି ପଢିଛ ? ଯଦି ପଢି ନାହଁ, ତେବେ ଦୟାକରି ପଢିବା ଆରମ୍ଭ କର । ବାସ୍ତବରେ ସେ ମହାପ୍ରଭୁ ଅରୁଣାଚଳଙ୍କ ପ୍ରତି ପ୍ରେମ ନିଷ୍ଠା ପ୍ରଦର୍ଶନରେ ନିଜେ ଜଣେ ସମର୍ପଣର ଅବତାର ଥିଲେ । ଖାଲି ପ୍ରଭୁଙ୍କର ନାମ ଉଚ୍ଚାରଣରେ ତାଙ୍କ ଆଖି ପ୍ରେମ ଅଶ୍ରୁ ଛଳ ଛଳ ହୋଇ ଯାଉଥିଲା । ପ୍ରେମ ଓ ନିଷ୍ଠାପର ସମର୍ପଣ ଯେ ମାନସିକ ଦୁର୍ବଳତା, ଏହା ତୁମର ଭୁଲ ଧାରଣା । ଏହା ମନୁଷ୍ୟ ପାଇଁ ଶ୍ରେଷ୍ଠ ସାଧନା । ଏହାର ଅର୍ଥ ହେଲା ସମସ୍ତଙ୍କ ଭିତରେ ଭଗବାନଙ୍କୁ ସମାନ ଭାବରେ ଦେଖିବା । ଏହାହିଁ ନିର୍ମଳ ନିସ୍ୱାର୍ଥ ପ୍ରେମ । ପୁଅ ! ତୁମେ ନିଜ ଭିତରେ ଏଇ ପ୍ରେମକୁ ଆବିଷ୍କାର

କରିବାକୁ ଚେଷ୍ଟା କର ।"

ଅମ୍ମାଙ୍କର କଥାକୁ ପୂର୍ଣ୍ଣ ବିଶ୍ୱାସ କରି ନପାରି ଗଙ୍ଗା ତିରୁବନମଲାଇକୁ ଫେରିଗଲା । ସେଠାରେ ପହଂଚିଲା ପରେ ଶ୍ରୀ ରମଣଙ୍କର ପ୍ରେମ ଭକ୍ତି ମୂଳକ ଲେଖା ବହି ପଢି ସେ ଆଶ୍ଚର୍ଯ୍ୟ ହୋଇଗଲେ ଓ ଅମ୍ମାଙ୍କର କଥା ମନେ ପକାଇ ପ୍ରେମ ଆବେଗରେ ଗଦ୍‌ଗଦ ହୋଇ କାନ୍ଦିବାକୁ ଲାଗିଲେ । ସେ ଅମ୍ମାଙ୍କୁ ତାଙ୍କ ପାଖକୁ ଫେରାଇ ନେବା ପାଇଁ ପ୍ରାର୍ଥନା କରିବାକୁ ଲାଗିଲେ । ଏହି ସମୟରେ ଅମ୍ମା ତାଙ୍କର ମାନସିକ ଅବସ୍ଥା ବୁଝିପାରି ଚିଠି ଲେଖି ତାଙ୍କୁ ଡାକି ଫେରାଇ ଆଣିଲେ । ଅମ୍ମାଙ୍କର ମହାନ ଉଦାରତା ପାଖରେ ନିଜକୁ ସେ ସଂପୂର୍ଣ୍ଣ ଭାବରେ ସମର୍ପଣ କରିଦେଲେ ।

ମଧୁ ଅମ୍ମାଙ୍କ ପାଖକୁ ଆସିବା ଆଗରୁ ଅନେକ ମହାତ୍ମାଙ୍କୁ ଭେଟିଥିଲେ, କିନ୍ତୁ ଅମ୍ମାଙ୍କୁ ପ୍ରଥମ ଥର ପାଇଁ ଦେଖିଲା ପରେ ସେ ଅନୁଭବ କଲେ ଯେପରିକି ତାଙ୍କ ଯାତ୍ରାର ଶେଷରେ ଆସି ପହଂଚିଛନ୍ତି । ଭକ୍ତ ମାନଙ୍କର ସାଧନାରେ ଉପକାର ପାଇଁ ମଧୁ ଅମ୍ମାଙ୍କ ପାଖରେ ଆତ୍ମା ଓ ହୃଦୟ ସମର୍ପଣ କରି, ଫ୍ରାନ୍ସର ଭକ୍ତ ମାନଙ୍କର ସାଧନାର ପ୍ରଗତି ପାଇଁ ଶ୍ରୀମଦ ଭଗବତ ଗୀତାର ବିଭିନ୍ନ ବ୍ୟାଖ୍ୟା ଅନୁବାଦ କରିବା ଉଦ୍ଦେଶ୍ୟରେ ସଂଗ୍ରହ କରିବା ଆରମ୍ଭ କଲେ । ଅମ୍ମାଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ତାଙ୍କର ସିଦ୍ଧି ଓ ସାଧନାର ଲକ୍ଷ୍ୟକୁ ପ୍ରଚାର କରିବାକୁ ସେ ନିଜ ଦେଶ ରିୟୁନିୟନ ଦ୍ୱୀପରେ ଅମ୍ମାଙ୍କ ପାଇଁ ଗୋଟିଏ ସୁନ୍ଦର ଆଶ୍ରମ ତିଆରି କଲେ । ଅମ୍ମାଙ୍କର ଆଶୀର୍ବାଦ ଫଳରେ ସେ ଅନେକ ଲୋକଙ୍କୁ ଧର୍ମ ପଥକୁ ଆଣିବାରେ ସାହାଯ୍ୟ କରିଥିଲେ ।

ସେହିଦିନ ଗୁଡିକରେ ଅମ୍ମା ଅଧିକାଂଶ ରାତି ବାହାରେ କଟାଉଥିଲେ । ସେଥିପାଇଁ ସମସ୍ତେ ନଡିଆ ଗଛ ତଳ ବାଲିରେ ଶୋଇବାକୁ ଭଲ ପାଉଥିଲେ । ଅମ୍ମା କୁଡିଆ ଭିତରେ ବିଶ୍ରାମ ନିଅନ୍ତି, କିନ୍ତୁ ଅର୍ଦ୍ଧ ରାତିରେ ସେ ଉଠି ବାହାରକୁ ଆସି ଭୂଇଁରେ ଶୋଇଯାନ୍ତି । କ୍ରମେ ଅମ୍ମା ଖୁବ୍ କମ ଶୋଇଲେ, ଖାଇଲେ ଏବଂ ଅନବରତ ପର ହିତ ପାଇଁ ନିଜକୁ ଅର୍ପଣ କରି ଚାଲିଲେ । ମନ୍ଦିରରେ ସପ୍ତାହରେ ତିନିଥର ସାରାରାତି ଦର୍ଶନ ଦେଲାପରେ ମଧ୍ୟ ଦିନବେଳେ ସମୟ କରି ଅନ୍ୟ ଭକ୍ତ ମାନଙ୍କୁ ସେ ଭେଟନ୍ତି ଓ ଉପଦେଶ ଖୋଜୁଥିବା ସାଧକ ମାନଙ୍କୁ ସତ୍ ପଥ ପ୍ରଦର୍ଶନ କରନ୍ତି ।

ଆରମ୍ଭରେ ନିଲୁ ଓ ଗାୟତ୍ରୀଙ୍କର ଭାଷା ବୁଝିବା ପାଇଁ ଅନେକ ଅସୁବିଧା

ହେଉଥିଲା । ସେମାନେ ସବୁବେଳେ ଅମ୍ମାଙ୍କ ସହ କଥାବାର୍ତା ଲାଗି ବାଲୁର ସାହାଯ୍ୟ ନିଅନ୍ତି । କିନ୍ତୁ ଖୁବ୍ ଶୀଘ୍ର ସେମାନେ ଅମ୍ମାଙ୍କର ଭାଷା ମାଲାୟାଲାମ ଶିଖିବାକୁ ଆରମ୍ଭ କଲେ । ଆଉ କେହି ଅମ୍ମାଙ୍କର ଖବର ବୁଝିବା ପାଇଁ ନଥିବା ଯୋଗୁଁ ବାଲୁଙ୍କୁ ଏହି ସୌଭାଗ୍ୟ ମିଳିଥିଲା ।

ଦିନେ ସୁଗୁଣାନନ୍ଦ ରୁକ୍ଷ ଭାବରେ କହିଲେ ଯେ ସେ ଏଇ 'ବିଦେଶୀ' ମାନଙ୍କୁ ଆଉ ଖୁଆଇ ପୋଷିବାକୁ ଚାହୁଁ ନାହାନ୍ତି । ତା ପରଠାରୁ ଗାୟତ୍ରୀ ମା, ନିଲୁ, ବାଲୁ ଓ ନିଜ ପାଇଁ କୁଡିଆରେ ରୋଷେଇ ଆରମ୍ଭ କଲେ । ଅମ୍ମା ପ୍ରାୟ କିଛି ଖାଉ ନଥିଲେ କହିଲେ ଚଳେ । ବେଳେ ବେଳେ ନିଲୁ ଓ ବାଲୁଙ୍କର ବାଧ ବାଧକତାରେ ସାମାନ୍ୟ କିଛି ନାମକୁ ମାତ୍ର ଆହାର କରୁଥିଲେ । ।

ଦିନେ ନିଲୁ ଅମ୍ମାଙ୍କୁ ଖାଇବା ପାଇଁ ବହୁତ ବାଧ କଲେ । ଶେଷରେ ଅମ୍ମା କହିଲେ "ହଉ ମୁଁ ଖାଇବି, କିଛି ଖାଇବାକୁ ଆଣ" । ଡେରି ନକରି ନିଲୁ ଗୋଟିଏ ଥାଳି ଭରି ଖାଇବା ଆଣି ହାଜର ହେଲେ । ଆଶ୍ଚର୍ଯ୍ୟ ଭାବରେ ଅମ୍ମା ସବୁ ଖାଦ୍ୟ ମୁହୂର୍ତକ ଭିତରେ ଶେଷ କରିଦେଲେ । ନିଲୁ ପୁଣି ଖାଇବା ବାଢି ଦେଲେ । ସେ ଖାଦ୍ୟ ମଧ୍ୟ ସାଙ୍ଗେ ସାଙ୍ଗେ ସରିଗଲା । ଅମ୍ମା ନିଜ ଆସନରୁ ନ ଉଠି ନିଲୁକୁ ପୁଣି ଖାଦ୍ୟ ପାଇଁ ଅନେଇ ରହିଲେ । ଆହୁରି ଖାଦ୍ୟ ବାଢି ଦିଆଗଲା । ତାହା ମଧ୍ୟ ସେ ଖାଇଦେଲେ । ଅମ୍ମା ଅବିରତ ଖାଇ ଚାଲିଲେ, କିନ୍ତୁ ଯେତେ ଖାଇଲେ ବି ତାଙ୍କର ଉଦର ଶାନ୍ତି ହେଉନଥିବା ପରି ମନେ ହେଉଥିଲା । ନିଲୁ ଓ ଅନ୍ୟମାନେ ପରସ୍ପରକୁ ଚକିତ ହୋଇ ଅନେଇବାକୁ ଲାଗିଲେ, ପାଖ ଚାହା ଦୋକାନରୁ ଆହୁରି ଜଳଖିଆ କିଣା ହୋଇ ଆସିଲା । ତାକୁ ମଧ୍ୟ ଅମ୍ମା ସେହିକ୍ଷଣି ଖାଇ ଦେଲେ । ନିଲୁ ପରିଶ୍ରାନ୍ତ ହୋଇ ପଡିଲେ । ତାଙ୍କର ଚେହେରା ଶୁଖିଗଲା । ଏହାପରେ ଆଉ କେବେ ହେଲେ ସେ ଅମ୍ମାଙ୍କୁ ଖାଇବା ପାଇଁ ବାଧ କରି ନଥିଲେ ।

ଠିକ ଏହି ସମୟରେ ପାରିବାରିକ ଗଣ୍ଡଗୋଳ ଆରମ୍ଭ ହୋଇଗଲା । ଝିଅ ବାହାଘର ସରିବାର ମାତ୍ର ଦୁଇମାସ ପରେ ପରେ ସୁଗୁଣାନନ୍ଦ ତରବରରେ ଅନ୍ୟ ଦୁଇ ଝିଅଙ୍କର ବିବାହ ଠିକ କରି ଦେଲେ । କାହାକୁ ନ ପଚାରି ବଡ ଝିଅ କସ୍ତୁରୀର ବିବାହ ଠିକ୍ କରିଦେଲେ । ଏପରିକି ସୁଗୁଣାନନ୍ଦ ଜ୍ୱାଇଁ ଘରକୁ ସ୍ୱୀକାର ଦେଲା

ପରେ ଯାଇ ଅମ୍ମାଙ୍କୁ ଏ ଖବର ଜଣାଇଥିଲେ ।

ଏ ବାହାଘରର ବିରାଟ ସମସ୍ୟା ହେଲା ପଇସା । ସୁଗୁଣାନନ୍ଦଙ୍କର କୌଣସି ଆୟ ନଥିଲା ଏବଂ ମନ୍ଦିରରେ କୌଣସି ପଇସା ନଥିଲା । ସୁଗୁଣାନନ୍ଦ ଏହି ସମୟରେ ପୂର୍ବଥର ପରି ବିଭାଘର ଆୟୋଜନର ଝାମେଲାରୁ ବାହାରି ଯାଇ ଚୁପ୍ ହୋଇ ରହିଗଲେ । ଅମ୍ମା ବି ନିର୍ବିକାର ହୋଇ ରହିଲେ । ଏହା ଦେଖି ବାଲୁ ଦୁଃଖର ସହ ଅମ୍ମାଙ୍କୁ ପଚାରିଲା "ଅମ୍ମା, କଣ କରାଯିବ ? ଏ ବାହାଘର କିପରି ହେବ" ? ନିଲୁ ଏକଥା ଜାଣି କହିଲେ "ଅମ୍ମା, ମୋର ଯାହା ଅଛି ଦେଇଦେବି, ଶିଷ୍ୟର କର୍ତବ୍ୟ ହେଲା ଗୁରୁଙ୍କର ଦାୟିତ୍ୱ ବହନ କରିବା । ମୋର ତ ନିଜର କିଛି ନାହିଁ । ମୋର ଯାହା କିଛି ଅଛି ସେ ସବୁ ତ ଅମ୍ମାଙ୍କର ହିଁ କହିଲେ ଚଳେ । ତେଣୁ ଦୟାକରି କସ୍ତୁରୀର ବିବାହ ମୋ ଦାୟିତ୍ୱରେ ଥିବା ପଇସାରେ ଚଳାଇ ନିଅନ୍ତୁ" ।

ଅମ୍ମା କହିଲେ "ବିବାହ ପରେ ଝିଅଟି ସଂସାରୀ ହୋଇ ଚଳିବ । ତୁମ ପାଖରେ ଥିବା ଧନ ଧର୍ମ କାର୍ଯ୍ୟ ପାଇଁ ଅଛି । ତେଣୁ ସେ ଧନ କେବଳ ସତ୍ କର୍ମରେ ହିଁ ଲାଗିବା ଉଚିତ୍ । ତାହା ଯଦି ବିଷୟୀ ସଂସାରୀ ଲୋକଙ୍କୁ ଦିଆଯାଏ ତାହାହେଲେ ପାପ ହେବ । ତାହାର ପ୍ରଭାବ ଆମ ଉପରେ ଆମର ସାଧନା ଉପରେ ହିଁ ପଡିବ । ଯଦି ଭଗବାନ ବାପାଙ୍କ ଦ୍ୱାରା ଏ ବାହାଘର ଠିକଣା କରାଇଛନ୍ତି, ତେବେ ଭଗବାନ ହିଁ ଏହା କାର୍ଯ୍ୟକାରୀ କରାନ୍ତୁ । ଆମମାନଙ୍କର ଏ ବିଷୟରେ ଚିନ୍ତା କରିବା ଦରକାର ନାହିଁ । ସୁଗୁଣାନନ୍ଦ ତ ଏ ବିଷୟରେ ବ୍ୟସ୍ତ ହେଉ ନାହାନ୍ତି, ତେବେ ଆମେ କାହିଁକି ଅଯଥା ଚିନ୍ତା କରିବା ? ପିଲାମାନେ, ଆମେ ଏ ବିଷୟରେ ବ୍ୟସ୍ତ ହେବା ଦରକାର ନାହିଁ" ।

ଯଦିଓ ସୁଗୁଣାନନ୍ଦ ତରବରରେ ବାହାଘର ଠିକ କରିଦେଲେ, ସେ ଖର୍ଚ୍ଚ ଟଙ୍କା ବିଷୟରେ ବା ଅନ୍ୟ କେଉଁଥିରେ ସଂପୃକ୍ତ ହେବାକୁ ଚାହୁଁ ନଥିଲେ । ଅମ୍ମା କାହାକୁ କିଛି ନ କହି ଯାହା ଦରକାର ପାରୁ ପର୍ଯ୍ୟନ୍ତ ଯୋଗାଡ କରିବାକୁ ଆରମ୍ଭ କଲେ । ଏହା ଦେଖି ବାଲୁ ଦୁଃଖ କରି ଅମ୍ମାଙ୍କୁ କହିଲେ, "ମୁଁ ଘରକୁ ଯାଇ ମୋର ପୈତୃକ ସଂପତ୍ତି ନେଇଆସିବି ।" ଅମ୍ମା ତାର ବିରୋଧ କଲେ । ତାପରେ ବାଲୁ କେତେକ ଭକ୍ତଙ୍କୁ ଆର୍ଥିକ ସାହାଯ୍ୟ ପାଇଁ ଚିଠି ଲେଖିଲେ । ପରେ ଯେତେବେଳେ ଅମ୍ମା ଏ

ବିଷୟରେ ଶୁଣିଲେ, ତାଙ୍କୁ ତିରସ୍କାର କରି କହିଲେ "ପୁଅ, ଧୀର ଭାବରେ ଏ ଘଟଣାର ସମ୍ମୁଖୀନ ହେବାକୁ ପଡିବ । ଏଥିପାଇଁ ବ୍ୟସ୍ତ ହୋଇ କିଛି ଲାଭ ନାହିଁ" ।

କେବଳ ପାଂଚ ହଜାର ଟଙ୍କା ଛାଡି ବାକି ସବୁ ଠିକ୍ ହୋଇଗଲା । ବାହାଘର ଖର୍ଚ୍ଚ ପାଇଁ ଏହି ପାଂଚ ହଜାର ଟଙ୍କା ନିହାତି ଦରକାର ଥିଲା । କିଛିଦିନ ଭିତରେ ମାଡ୍ରାସରୁ ଜଣେ ଅଜ୍ଞାତ ବ୍ୟକ୍ତି ଅମ୍ମାଙ୍କ ବିଷୟରେ ଶୁଣି ତାଙ୍କ ପାଖକୁ ପାଂଚ ହଜାର ଟଙ୍କାରଗୋଟିଏ ଚେକ୍ ପଠାଇଥିଲେ । ଏହିପରି ୧୯୮୦ ମସିହା ସେପ୍ଟେମ୍ବର ମଝାମଝି କସ୍ତୁରୀର ବିବାହ ହୋଇଗଲା ।

ପୁଣି ତିନିମାସ ନ ବିତୁଣୁ ସୁଗୁଣାନନ୍ଦ ତା ତଳ ଝିଅ ସଜନୀର ବିବାହ ସ୍ଥିର କରିଦେଲେ । ତାହା କରିସାରିଲା ପରେ ପୁଣି ଆଗପରି ନିଜ ଦାୟିତ୍ୱରୁ ଓହରି ଯାଇ, ଅମ୍ମାଙ୍କ ଉପରେ ସବୁ ଭାର ଅଜାଡି ଦେଲେ । ଯୌତୁକ ଟଙ୍କା, ବାହାଘର ଖର୍ଚ୍ଚ ଓ ସୁନା ଗହଣା ତିଆରି କରିବାର ସବୁ ଭାର ଅମ୍ମାଙ୍କ କାନ୍ଧରେ ଆସି ପଡିଲା । ନିଲୁର ଏଥର ଦୁଃଖ ନଆସି ଭୀଷଣ ରାଗ ଆସିଲା । ଅମ୍ମା ମଧ୍ୟ ସୁଗୁଣାନନ୍ଦଙ୍କର ବିବେଚନାର ଅଭାବ ଦେଖି ଅସନ୍ତୁଷ୍ଟ ହେଲେ । ବିରକ୍ତ ହୋଇ ମଧ୍ୟ ସେ ଶାନ୍ତ ଚିତରେ ନିପୁଣଭାବରେ ସବୁ ଆୟୋଜନ କଲେ । ବର ପକ୍ଷର ଲୋକମାନେ ଆହୁରି ସୁନା ଦାବି କଲେ । ଆଗପରି ନଗଦ ଟଙ୍କା ଆଣିବା ବଡ ସମସ୍ୟା ହୋଇ ପଡିଲା । ଅମ୍ମା ଆଗପରି ସତ୍ କର୍ମ ପାଇଁ ଥିବା ପଇସାକୁ କୌଣସି ମତେ ଖର୍ଚ୍ଚ କରିବାକୁ ଅନୁମତି ଦେଲେ ନାହିଁ । ପ୍ରଶ୍ନହେଲା ବର୍ତ୍ତମାନ ପୁଣି କଣ କରାଯିବ ?

ଠିକ୍ ଏହି ସମୟରେ କସ୍ତୁରୀ ଶ୍ୱଶୁର ଘର ସହିତ ମନୋମାଳିନ୍ୟ ହୋଇ ଇଡାମାନ୍ନେଲକୁ ଫେରି ଆସିଥିଲେ । ସେ ଯେତେବେଳେ ଆହୁରି ସୁନା ଦରକାର ହେଉଛି ବୋଲି ଜାଣିଲେ, ସେ କହିଲେ "ବର୍ତ୍ତମାନ ପାଇଁ ମୋର ଗହଣା ସଜନୀର ବାହାଘର ପାଇଁ ନେଇଯାଇପାର । ପରେ ଫେରାଇ ଦେଲେ ଚଳିବ" । କେବଳ ଗୋଟିଏ ହାର ଓ ସୁନା ମୁଦି ଛଡା ବାକି ସବୁ ଗହଣା ଠିକ୍ ହୋଇଗଲା । ବାହାଘର ମାତ୍ର ଦୁଇ ଦିନ ଥିଲା ଏଇ ଦୁଇଟି ଗହଣା ତିଆରି ହୋଇ ପାରି ନଥିଲା । ତଥାପି ଅମ୍ମା ପୂର୍ବ ପରି ପୁରା ଶାନ୍ତ ଓ ଅନାସକ୍ତ ଥାଆନ୍ତି । ତାପର ଦିନ ଭାବ ଦର୍ଶନ ସରିଲା ପରେ, ଗାୟତ୍ରୀ ମନ୍ଦିର ସଫା କରୁ କରୁ ଦାନ ଥାଳିରେ ଅନ୍ୟାନ ଜିନିଷ ସହ ଗୋଟିଏ

ପୁଡିଆ ଦେଖିଲେ । ସେଇଟିକୁ ଖୋଲିଲା ପରେ ଦେଖିଲେ ସେଥିରେ ଠିକ୍ ବାହାଘର ପାଇଁ ଦରକାର ଥିବା ଭଳି ହାର ଓ ମୁଦିଟିଏ ଅଛି । ଏପରିକି ସେହି ଗହଣାର ନକ୍ସା ମାସକ ଆଗରୁ ବଛା ହୋଇଥିବା ଗହଣା ପରି ଠିକ୍ ଥିଲା । ଆଉ କଣ ପ୍ରମାଣ ଦରକାର ଯେ ଦୈବୀ ଶକ୍ତି ସବୁ ଆବଶ୍ୟକତା ପୂରଣ କରିଦିଏ ?

ତଥାପି ବିବାହର ଶେଷ ପର୍ଯ୍ୟନ୍ତ ବାଧା ବିଘ୍ନ ଚାଲୁ ରହିଲା । କେତେକ ସ୍ଥାନୀୟ ଭକ୍ତ ସୁଗୁଣାନନ୍ଦଙ୍କ ବିରୁଦ୍ଧରେ ମତ ଜଣାଇଥିଲେ । ସେ କାହିଁକି ବିରୋଧି ଦଳଙ୍କ ସହିତ ଦୁଇ ଝିଅଙ୍କ ବିବାହ ଠିକଣା କଲେ ? ଭକ୍ତ ଓ ଶୁଭାକାଂକ୍ଷୀ ଲୋକ ମାନଙ୍କ ପୁଅମାନେ କେହି କଣ ଉପଯୁକ୍ତ ନଥିଲେ ? ସୁଭଗନଙ୍କର କେତେକ ଘନିଷ୍ଟ ବନ୍ଧୁ ସୁଗୁଣାନନ୍ଦଙ୍କ ଝିଅ ମାନଙ୍କୁ ବିବାହ କରିବାକୁ ଚାହିଁଥିଲେ । ବର୍ତ୍ତମାନ ସେମାନେ ମଧ୍ୟ ସୁଗୁଣାନନ୍ଦଙ୍କ ଉପରେ ଅସନ୍ତୁଷ୍ଟ ହୋଇ ବିରକ୍ତ କଲେ । ଏହିପରି ଶତ୍ରୁମାନେ ସୁଗୁଣାନନ୍ଦଙ୍କ ସହ କଜିଆ କରିବାକୁ ଆସିଲେ ଓ ସଜନୀର ବାହାଘରରେ ଗଣ୍ଡଗୋଳ ସୃଷ୍ଟି କରିବାକୁ ଚେଷ୍ଟା କଲେ । ବାହାଘର ଭଙ୍ଗି ଦେବା ପାଇଁ ସେମାନେ ମିଥ୍ୟା ଗୁଜବ ପ୍ରଚାର କରି ବରପାତ୍ର ପାଖକୁ ଖବର ପଠାଇଲେ । ବାହାଘରର ପୂର୍ବଦିନ ପର୍ଯ୍ୟନ୍ତ ବାହାଘର ହେବ କି ନହେବ ବୋଲି ସମସ୍ତଙ୍କର ସନ୍ଦେହ ହେଉଥିଲା ।

ବିଭାଘର ଦିନ, ଅମ୍ମା ବ୍ରହ୍ମଚାରୀ ମାନଙ୍କୁ ପଡୋଶୀ ଘରକୁ ନେଇ ଗଲେ । ଗତ ଦୁଇଟି ବାହାଘରରେ ମଧ୍ୟ ସେ ସେଇଆ କରିଥିଲେ । ଏହା ବ୍ରହ୍ମଚାରୀ ମାନଙ୍କର ମଙ୍ଗଳ ପାଇଁ, ସେମାନେ ବିବାହ ଅନୁଷ୍ଠାନରେ ଉପସ୍ଥିତ ରହିବା ଅନୁଚିତ ।

ଅମ୍ମା ବୁଝାଇ ଦେଇଥିଲେ, "ସାଧକମାନେ ବିବାହ କିମ୍ବା ଶ୍ରାଦ୍ଧ କ୍ରିୟାରେ ଭାଗ ନେବା ଉଚିତ ନୁହଁ । ବିବାହ ଅନୁଷ୍ଠାନରେ ସମସ୍ତେ ବିବାହ ବିଷୟରେ ଭାବୁଥିବେ ଯାହାକି ବାସ୍ତବରେ ଏକ ସାଂସାରିକ ଜଞ୍ଜାଳ । ଶ୍ରାଦ୍ଧ କ୍ରିୟାରେ କାହାରି ଗୋଟିଏ ମୃତ୍ୟୁର ଦୁଃଖରେ ଅଭିଭୂତ ହେବାକୁ ହୁଏ । ଦୁଇଟିଯାକ ଘଟଣାରେ ମନୁଷ୍ୟର ଅନିତ୍ୟ କ୍ଷଣସ୍ଥାୟୀ ଜିନିଷ ସାଙ୍ଗରେ ଜଡିତ ହେବାକୁ ପଡିଥାଏ । ଏହି ଚିନ୍ତାଧାରା ଭିତରେ ରହିଲେ ସାଧକର କ୍ଷତି ହୋଇପାରେ । ସାଂସାରିକ ଚିନ୍ତାର ସ୍ପନ୍ଦନ ସାଧକର ଅବଚେତନ ମନରେ ଚାପ ପକାଇପାରେ, ସାଧକର ମନ ଏହିସବୁ ଅନିତ୍ୟ ଜିନିଷ ଯୋଗୁଁ ଅସ୍ଥିରତା ଅନୁଭବ କରିପାରେ ।"

ଏହି ପରି ବ୍ରହ୍ମଚାରୀ ମାନଙ୍କର ଅମ୍ମାଙ୍କର ପାଖରେ ରହିବାରେ ବାଧକ ଦୂର ହୋଇଗଲା । ବର୍ତ୍ତମାନ ସୁଗୁଣାନନ୍ଦନଙ୍କର ତିନୋଟି ଯାକ ଝିଅ ବାହା ହୋଇଯାଇଥିଲେ । ଖାଲି ତା ନୁହଁ, ସମାଲୋଚକ ଗଣ୍ଡଗୋଳକାରୀ ଗୁଣ୍ଡା ମାନେ ହାର ମାନି ଗୋଟିଏ ପରେ ଗୋଟିଏ ଛାଡି ପଳାଇଗଲେ । ବାକି ରହିଯାଇଥିବା ଦଳ ଲୋକମାନେ ନିଜ ନିଜ ଭିତରେ କଳହ କରିବାକୁ ଆରମ୍ଭ କଲେ । ଏହିପରି "ଅନ୍ଧ ବିଶ୍ୱାସ ଦୂର କର" ସଂଘ ଭାଙ୍ଗିଗଲା ।

ଯେଉଁମାନେ ସତ୍ୟ ଓ ନ୍ୟାୟ ବିରୁଦ୍ଧରେ ବିରୋଧ ସୃଷ୍ଟି କରିବାକୁ ଆସିଥିଲେ ସେମାନେ ଶେଷରେ ନିଜକୁ ହିଁ ଧ୍ୱଂସ କରିଥିଲେ । ଏହି ଘଟଣା ସବୁ ପରେ ଜନ କଲ୍ୟାଣରେ ଅମ୍ମାଙ୍କର ସେବା, ଧର୍ମ ପ୍ରସାର ନୂଆ ଅଧ୍ୟାୟ ଆରମ୍ଭ ହୋଇଥିଲା ।

ନିଜର ପରିବାରର ଲାଞ୍ଛନା, ବିରୋଧୀ ଗୁଣ୍ଡା ମାନଙ୍କର ଦୁର୍ବ୍ୟବହାର ସତ୍ତ୍ୱେ ଅମ୍ମାଙ୍କର ଏସବୁ ବିଷୟରେ ମନୋଭାବ ସଂପୂର୍ଣ୍ଣ ରୂପେ ନିର୍ଲିପ୍ତ ଥିଲା । ସେମାନେ ନିଜର ଅଜ୍ଞାନ ଯୋଗୁଁ ହିଁ ଧାର୍ମିକ ଜୀବନର ସାଧନା ଓ ତାର ଉଦ୍ଦେଶ୍ୟ ବିଷୟରେ ବୁଝିବାକୁ ଅକ୍ଷମ ଥିଲେ ବୋଲି ଅମ୍ମା କହନ୍ତି । ଏଥିରେ ସେମାନଙ୍କ ପ୍ରତି ରାଗ କିମ୍ବା ଘୃଣା କରି ଲାଭ କଣ ? ଏହା କରିବା ଅଜ୍ଞାନତା ହିଁ ହେବ ଓ ଆମର ମନ ମଧ୍ୟ କଳୁଷିତ ହୋଇଯିବ । ଏହି ସୁନ୍ଦର ଗୋଲାପ ଫୁଲକୁ ଦେଖ, କେତେ ସୁନ୍ଦର ସେଗୁଡିକ ! କିପରି ସୁବାସରେ ଭରି ଦେଉଛନ୍ତି ! କିନ୍ତୁ ସେମାନଙ୍କୁ କଣ ବା ଦିଆ ହେଉଛି ? ଖାଲି ଟିକିଏ ସିଝା ଚାହା ପତ୍ର ଓ ଗୋବର ! ସୌନ୍ଦର୍ଯ୍ୟ ଓ ସୁବାସ ସହ ଖତର କେବେ ବି ତୁଳନା ହୋଇ ପାରେ ? ଆଧ୍ୟାତ୍ମିକ ପଥରେ ଜୀବନର ପ୍ରତିବନ୍ଧକ ଠିକ୍ ଖତ ପରି, ତାହା ଆମକୁ ଆଧ୍ୟାତ୍ମିକ ପଥରେ ଆହୁରି ଶକ୍ତିଶାଳୀ କରି ଉପରକୁ ଉଠାଇ ନିଏ । ଏହି ବାଧାବିଘ୍ନ ହିଁ ହୃଦୟକୁ ବିକଶିତ କରି ତୋଳେ । ରାତିସାରା ଝିଂଟିକାମାନେ ଡାକ ଦେଉଥାନ୍ତି, କିନ୍ତୁ ସେ ଶବ୍ଦ କାହାର ନିଦରେ ବ୍ୟାଘାତ ଆଣିଦିଏ ନାହିଁ । ଠିକ ସେହିପରି ଅଜ୍ଞାନୀ ମାନଙ୍କର ଗଣ୍ଡଗୋଳ ସୃଷ୍ଟି କରିବା ଅଭ୍ୟାସ । ଆମେମାନେ ଭଗବାନଙ୍କ ପାଖରେ ସେମାନଙ୍କୁ କ୍ଷମା କରି ଠିକ ରାସ୍ତା ଦେଖାଇବା ପାଇଁ ପ୍ରାର୍ଥନା କରିବା ଉଚିତ । ଭଗବାନଙ୍କ ପାଖରେ ସବୁକିଛି ଅର୍ପଣ କର ଏବଂ ସେ ନିଶ୍ଚୟ ତୁମର ଦେଖାଶୁଣା କରିବେ" ।

## ମାତା ଅମୃତାନନ୍ଦମୟୀ

ସୁଗୁଣାନନ୍ଦ ଝିଅ ମାନଙ୍କର ବିବାହ ହୋଇଯାଇଥିବା ଯୋଗୁ ମାନସିକ ଶାନ୍ତି ଓ ନିଶ୍ଚିନ୍ତତା ଅନୁଭବ କରୁଥିଲେ । ପ୍ରଥମ ଦଳ ବ୍ରହ୍ମଚାରୀ ମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା ଅମ୍ମାଙ୍କ ପାଖରେ ରହିବା । ତେଣୁ ସେମାନେ ଖାଦ୍ୟ, ଆଶ୍ରୟ, ଲୁଗାପଟାର ଅସୁବିଧାକୁ ଦୃଷ୍ଟି ଦେଉନଥିଲେ । ବେଶୀ ଭାଗ ସମୟ ସେମାନେ ବାହାରେ ରହୁଥିଲେ ଓ ବିନା ମଶିଣାରେ ମାଟିରେ ଶୋଉଥିଲେ, ବିନା ଭିକ୍ଷା ମାଗି ଯାହ ମିଳି ଯାଉଥିଲା, ତାକୁହିଁ ନିଜ ଭିତରେ ବାଂଟିକୁଂଟି ଚଳିଯାଉଥିଲେ । ପଇସା ଅଭାବରୁ କେଉଁଆଡେ ଯିବାକୁ ହେଲେ ଦ ୍ରେ ଚାଲି ଯାଉଥିଲେ । ସେମାନଙ୍କର ଦେହରେ ଖଣ୍ଡିଏ ମାତ୍ର ଲୁଗା ଥିଲା, ସେମା୍େ ସେଇଥିରେ ଚଳୁଥିଲେ ।

ଦିନେ ଜଣେ ବ୍ରହ୍ମଚାରୀ ନିଜର ପିନ୍ଧିଥିବା ଏକମାତ୍ର ଛିଣ୍ଡା ମଇଳା ଲୁଗା ଦେଖାଇ ଅମ୍ମାଙ୍କୁ ସାଧାରଣ ଆବଶ୍ୟକୀୟ ପଦାର୍ଥର ଅଭାବ ବିଷୟରେ ଆପତ୍ତି ଜଣାଇ ଥିଲେ । ଅମ୍ମା ଉତ୍ତର ଦେଲେ "ପୁଅ, ଭଗବାନଙ୍କୁ ଏପରି ଛୋଟ ଛୋଟ ଜିନିଷ ମାଗ ନାହିଁ। ତାଙ୍କ ପାଦ ପଦ୍ମରେ ନିଜକୁ ସମର୍ପଣ କର । ସେ ତୁମର ଯାହା ଦରକାର ତାହା ଯୋଗାଇଦେବେ" । ଅମ୍ମା ନିଜେ ଏହିପରି ସବୁବେଳେ ଚଳିଛନ୍ତି, ତେଣୁ ସେ ନିଜ ଅନୁଭୂତିରୁ ହିଁ ଏହିପରି ଉପଦେଶ ଦେଲେ । ଠିକ ତା ପରଦିନ ଜଣେ ଭକ୍ତ ଏସବୁ କଥା ଜାଣି, ସବୁ ବ୍ରହ୍ମଚାରୀଙ୍କ ପାଇଁ ନୂତନ ବସ୍ତ୍ର ନେଇ ଆସିଥିଲେ ।

ଆଶ୍ରମର ଆରମ୍ଭ ସମୟରେ ଏହି ଯୁବକମାନେ ଅଭାବ ଅସୁବିଧା, ତ୍ୟାଗ, ତିତିକ୍ଷା ଭିତରେ ସର୍ବତ୍ୟାଗୀ ସନ୍ୟାସୀ ହୋଇ ରହିବାର ଶିକ୍ଷା ପାଇଥିଲେ । ସେମାନଙ୍କୁ ସାହସ ଦେବା ପାଇଁ ଅମ୍ମା କହୁଥିଲେ "ତୁମେ ମାନେ ଯଦି ଏହିପରି ପରିସ୍ଥିତିରେ ଚଳି ପାରିବ, ତେବେ ଯେ କୌଣସି ଜାଗାରେ ରହିଲେ ତୁମକୁ ଘର ପରି ଲାଗିବ । ବର୍ତ୍ତମାନ ତୁମେମାନେ ଯଦି କୌଣସି ପ୍ରତିକୂଳ ସମସ୍ୟାର ସମ୍ମୁଖୀନ ହୋଇ ତାକୁ ସମାଧାନ କରି ଅଗେଇ ପାରିବ, ତେବେ ତୁମେମାନେ ଜୀବନର ଯେ କୌଣସି ବିପଦ ଝଡ ଝଞ୍ଜା ଆସିଲେବି ତାକୁ ସହଜରେ ସାମ୍ନାକରି ପାରିବ ।

ଦିନକୁ ଦିନ ଭକ୍ତ ଓ ବ୍ରହ୍ମଚାରୀ ମାନଙ୍କର ସଂଖ୍ୟା ବଢିବାକୁ ଲାଗିଲେବି ରହିବା,

ଚଳିବା ପାଇଁ ସବୁ ରକମର ବ୍ୟବସ୍ଥା ଉପଯୁକ୍ତ ନଥିଲା । ସେହି ସମୟରେ ନିୟମାନୁସାରେ ଆଶ୍ରମକୁ ଗୋଟିଏ ଅନୁଷ୍ଠାନ କରାଯିବା ପାଇଁ ଚିନ୍ତା କରାଗଲା । ତେବେ ମଧ୍ୟ ପରିସ୍ଥିତି ଆଦୌ ଭଲ ନଥିଲା । ଅମ୍ମାଙ୍କର ଜମିବାଡି, ଧନ ସଂପତି ଆଦୌ କିଛି ନଥିଲା । ଏପରିକି ନିଲୁ ତିଆରି କରିଥିବା କୁଡିଆଟି ମଧ୍ୟ ସୁଗୁଣାନନ୍ଦନଙ୍କର ସଂପତି ଥିଲା । ଯଦିଓ ସେ ନିଲୁ, ବାଲୁ ଓ ଗାୟତ୍ରୀଙ୍କୁ ରହିବାଲାଗି ଅନୁମତି ଦେଇଥିଲେ, ସେ କଦାପି ତାଙ୍କ ଘରକୁ ଭବିଷ୍ୟତରେ ଆଶ୍ରମରେ ପରିଣତ କରିବାର କଳ୍ପନା କରି ନଥିଲେ । ଧୀରେ ଧୀରେ ବେଶୀ ବେଶୀ ଲୋକଙ୍କୁ ରଖିବାକୁ ମଧ୍ୟ ସେ ଭଲ ପାଉ ନ୍‌ଥିଲେ । ଦିନେ ଯେତେବେଳେ ଅମ୍ମା ଭବିଷ୍ୟତ ଆଶ୍ରମ ବିଷୟରେ ଚର୍ଚ୍ଚା କରୁଥିଲେ, ସୁଗୁଣାନନ୍ଦନ ରାଗି ତାଙ୍କର ମନକଥା ଖୋଲି କହି ଦେଲେ, "ଏସବୁ କଣ ଚାଲିଛି ? ଆମେମାନେ କଣ ଧନୀ ନାଁ ପଇସା କୋଉଠି ପୋତା ହୋଇଛି ? ଏ ଆଶ୍ରମ ଚାଲିବ କିପରି ? ଏଠି ଯଦି ଗୋଟେ ଆଶ୍ରମ ହେବ ଆମ ପରିବାର କୋଉଠିକି ଯିବେ ? ନାଁ ! ମୁଁ ଏଠାରେ ଆଶ୍ରମ କରାଯିବା ପାଇଁ ସରକାରୀ ତାଲିକାରେ ଜମାରୁ ମତ ଦେବି ନାହିଁ !"

ଆରମ୍ଭରେ ଅମ୍ମା ମଧ୍ୟ ସେଠାରେ ଆଶ୍ରମ ପ୍ରତିଷ୍ଠା ପାଇଁ ମତ ଦେଇ ନଥିଲେ । ଯେତେବେଳେ କେତେକ ଭକ୍ତ ତାଙ୍କୁ ପୁଣି ଏ ପ୍ରସ୍ତାବ ବିଷୟରେ ପଚାରିଲେ, ସେ ଉତର ଦେଲେ "ଅମ୍ମା ଏହି ଆଶ୍ରମ ବିଷୟରେ ବହୁତ ଶୁଣିଲାଣି । ଅମ୍ମାର ଆଶ୍ରମ ଦରକାର ନାହିଁ । ଏହା କଣ ବନ୍ଦୀ ଜୀବନ ନୁହଁ ? ତୁମେ ମାନେ କଣ ଜ୍ୟୋତିଷକୁ ପଞ୍ଜୁରୀରେ ଶାରୀ ନେଇ ଯାଉଥିବା ଦେଖି ନାହଁ ? ଶେଷରେ ଅମ୍ମାର ଅବସ୍ଥା ମଧ୍ୟ ଠିକ ସେହିପରି ହେବ (ଆଉ ଜଣକ ଇଚ୍ଛା ପୁରଣ ପାଇଁ ନିଜେ ବନ୍ଦୀ ହେବା) । ମୁଁ ସେପରି ହେବାକୁ ଦେଇ ପାରିବି ନାହିଁ । ମୋର ନିଜର ସ୍ୱାଧୀନତା ଅଛି । ସେଥିପାଇଁ କୌଣସି ବାଧା ରହିବା ଉଚିତ ନୁହଁ" ।

ତଥାପି, ଯେତେବେଳେ ଭକ୍ତ ଓ ବ୍ରହ୍ମଚାରୀ ମାନଙ୍କର ସଂଖ୍ୟା ଆହୁରି ବଢି ଚାଲିଲା, ଆଶ୍ରମକୁ ସଂଗଠନ ଭାବରେ ରେଜିଷ୍ଟ୍ରି ଭୁକ୍ତ ନକରି ରହି ହେଲା ନାହିଁ । ତାଛଡା ଅମ୍ମାଙ୍କର ବିଦେଶୀ ଶିଷ୍ୟ ମାନଙ୍କର କୌଣସି ବ୍ୟକ୍ତିଗତ ଘରେ ବେଶୀ ଦିନ

ରହିବା ବେଆଇନ୍ ଥିଲା ।

ଠିକ ଏହି ସମୟରେ ଅମ୍ମାଙ୍କର ଆଶ୍ରମକୁ ସରକାରୀ ତାଲିକାଭୁକ୍ତ ଆଧ୍ୟାତ୍ମିକ ଅନୁଷ୍ଠାନ କରିବାର ବିଶ୍ୱାସ ଦୃଢୀଭୁତ ହେଲା । ପୁଣି ଅମ୍ମାଙ୍କର ଏ ବିଷୟରେ ମତାମତ ପଚରା ଗଲା । ଅମ୍ମା ଦୁଷ୍ଟାମୀ ର ସହ ହସ ହସି କହିଲେ "ପରିବାର ଲୋକମାନେ ତ ଏହାକୁ ଆଶ୍ରମ କରିବା ପାଇଁ ନାରାଜ । ସେମାନଙ୍କର ସଂସ୍କାର ସହଂତି ଅଲଗା । ତେଣୁ ସେମାନଙ୍କର ଅନୁମତି ପାଇଁ ଅପେକ୍ଷା ନକରିବା ଉଚିତ, କାରଣ ସେମାନେ କେବେ ହେଲେ ମତ ଦେବେ ନାହିଁ । କିନ୍ତୁ ଅମ୍ମାଙ୍କୁ ଏଥିପାଇଁ କିଛିଟା ଗାଳି ଗୁଲଜ ଶୁଣିବାକୁ ପଡିବ" ।

ଏହିପରି ୧୯୮୧ ମସିହା ମଇମାସ ୬ ତାରିଖ ଦିନ ତ୍ରିଭାଙ୍କୁର କୋଚିନ ପ୍ରଦେଶର ଲିଟରାରୀ ଓ ଚାରିଟି ଆକ୍ଟ ୧୯୧୧ ଅନୁସାରେ କେରଳ, କ୍ୱିଲନ୍, ଦକ୍ଷିଣ ଭାରତ ଅମ୍ମାଙ୍କ ଆଦର୍ଶ, ଧର୍ମ ସଂସ୍କରଣ, ପ୍ରଚାର ପାଇଁ ମାତା ଅମୃତାନନ୍ଦମୟୀ ମଠ ଟ୍ରଷ୍ଟ ପ୍ରତିଷ୍ଠା କରା ଯାଇଥିଲା । ସେହିଦିନଠାରୁ ଅମ୍ମା ଆଇନ ଅନୁସାରେ "ମାତା ଅମୃତାନନ୍ଦମୟୀ" ନାମ ନେଇଥିଲେ । ଏହି ନାମଟି ତାଙ୍କର ଜଣେ ବ୍ରହ୍ମଚାରୀ ପୁତ୍ର ଦେଇଥିଲେ । ସେ ସେତେବେଳକୁ ସମସ୍ତଙ୍କୁ ଅମୃତମୟ ଶାନ୍ତି ପ୍ରଦାନ କରି ଚାଲିଥିଲେ । ତେଣୁ ଏହି ନାମଟି ବଡ ଉପଯୁକ୍ତ ମନେ ହୋଇଥିଲା ।

ଜଣେ ବ୍ରହ୍ମଚାରୀଙ୍କର କିଛି ଧର୍ମଶାସ୍ତ୍ର ମୂଳକ ପୁସ୍ତକ ଦରକାର ଥିଲା । ସେହି ସମୟରେ ଗୋଟିଏ ଲଟେରୀ ଘୋଷଣା ହୋଇଥିଲା ଯେ ଜିତିବା ବ୍ୟକ୍ତିଙ୍କୁ କିଛି ବହି ମିଳିବ । ସେହି ଆଶାରେ ସେ ବ୍ରହ୍ମଚାରୀ ଅମ୍ମାଙ୍କୁ ଲଟେରୀର ଗୋଟିଏ ସଂଖ୍ୟା ବାଛିବାକୁ ଅନୁରୋଧ କଲେ । ଅମ୍ମା ଉତ୍ତର ଦେଲେ "ଏପରି ଜିନିଷ ସବୁ ଆଶା କରୁଛ କାହିଁକି ? ତୁମେମାନେ ଅତି ଶୀଘ୍ର ବହୁତ ବହି ପାଇବ" । ଏହି ଘଟଣାର କିଛିଦିନ ଭିତରେ ନିଲୁ ବର୍ତ୍ତମାନ ଆସି ଚିରସ୍ଥାୟୀ ଭାବରେ ବଲ୍ଲିକାଓ୍ୱ ଆଶ୍ରମରେ ରହୁଥିବା ଯୋଗୁଁ, ତାଙ୍କର ନିଜର ଦୁଇହଜାରରୁ ବେଶୀ ଇଂରାଜୀ ଓ ବିଭିନ୍ନ ଭାରତୀୟ ଭାଷାରେ ପୁସ୍ତକ ପାଠାଗାରକୁ ତିରୁଭନମଲାଇରୁ ଉଠାଇ ଆଣିବାକୁ ସ୍ଥିର କଲେ । ସେହି ଦିନଠାରୁ ଆଶ୍ରମର ପାଠାଗାର ସୃଷ୍ଟି ହେଲା ।

୧୯୮୨ ଅଗଷ୍ଟ ମାସ ୨୭ ତାରିଖ ଦିନ ଆଶ୍ରମ ବାସୀ ମାନଙ୍କର ବୈଦିକ ପରମ୍ପରା ଓ ସଂସ୍କୃତ ଶିକ୍ଷା ପାଇଁ ବେଦାନ୍ତ ବିଦ୍ୟାଳୟ ସ୍ଥାପନ ହେଲା । ତଥାପି ଅମ୍ମା ସବୁବେଳେ ବ୍ରହ୍ମଚାରୀ ମାନଙ୍କୁ ଖାଲି ବହି ଶିକ୍ଷା ଉପରେ ଏତେ ଗୁରୁତ୍ୱ ନ ଦେଇ ଦୈନିକ ଧ୍ୟାନ ଉପରେ ଗୁରୁତ୍ୱ ଦେବାକୁ କହୁଥିଲେ । ଯେଉଁମାନେ ସମସ୍ତ ସମୟ ଧ୍ୟାନରତ ହେବାକୁ ଚାହୁଁଥିଲେ ସେମାନଙ୍କୁ ଉତ୍ସାହିତ କରା ହେଉଥିଲା, ଯଦିଓ ଆଶ୍ରମରେ ସେମାନଙ୍କର ସଂଖ୍ୟା ବହୁତ କମ ଥିଲା ।

ଅମ୍ମା କହନ୍ତି "ଧର୍ମ ଶାସ୍ତ୍ର ସବୁ ଖାଲି ବିଜ୍ଞାପନ ପଟ୍ଟା ପରି, ସେଗୁଡ଼ିକ ପଥ ମାତ୍ର, କିନ୍ତୁ ଶେଷଫଳ ନୁହଁ । ଶେଷଫଳ ବା ଭଗବତ୍ ପ୍ରାପ୍ତି ତାଠାରୁ ଅନେକ ଉପରେ । କୃଷିବିଜ୍ଞାନ ପଢୁଥିବା ଛାତ୍ର ଯେପରି ମଞ୍ଜି ପୋତିବା, ସାର ଦେବା, କୀଟନାଶକ ଔଷଧ ଦିଆଯିବା ଇତ୍ୟାଦି ବିଷୟରେ ଜାଣିଥାଏ, ଠିକ୍ ସେହିପରି ଧର୍ମଶାସ୍ତ୍ର ସାଧନା ପଥରେ ଯିବାର ପଥ ପ୍ରଦର୍ଶକ ହୁଏ ।"

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏହା ଭିତରେ ଅମ୍ମାଙ୍କର ପରିବାର ଓ ଗ୍ରାମବାସୀଙ୍କ ଭିତରେ ଅନେକ ପରିବର୍ତ୍ତନ ଦେଖା ଦେଇଥିଲା । ଅମ୍ମା ଯେ ଦିବ୍ୟ ଐଶ୍ୱରୀକ ଅଂଶ ସଂପନ୍ନା ଏହା ହୃଦୟଙ୍ଗମ କରିପାରି ସେମାନେ ତାଙ୍କ ବନ୍ଧୁ ବାନ୍ଧବ ବୋଲାଇବାକୁ ଓ ଏକା ଗ୍ରାମବାସୀ ହୋଇଥିବା ଯୋଗୁ ଗର୍ବ ଅନୁଭବ କରିବାକୁ ଆରମ୍ଭ କରିଥିଲେ । ସୁଗୁଣାନନ୍ଦନ ଓ ଦମୟନ୍ତୀ ପୂର୍ବ ଜନ୍ମର କେତେ ପୁଣ୍ୟର ଫଳରେ ଏହି ଈଶ୍ୱରୀ ମାତାଙ୍କର ପିତା ମାତା ହୋଇ ପାରିଛନ୍ତି ଭାବି ନିଜକୁ ଭାଗ୍ୟବାନ ମନେ କରିବାକୁ ଲାଗିଲେ । ବର୍ତ୍ତମାନ ସେମାନେ ଆଦର୍ଶ ଗୃହସ୍ଥ ତଥା ଆଶ୍ରମରେ ରହୁଥିବା ବ୍ରହ୍ମଚାରୀ ମାନଙ୍କ ମାତା ପିତା ଭାବେ ସେମାନଙ୍କୁ ନିଜ ପିଲାଙ୍କ ପରି ସ୍ନେହ ମମତା ଦେଖାଇବାକୁ ଆରମ୍ଭ କରିଥିଲେ ।

ବର୍ତ୍ତମାନ ମାତା ଅମୃତାନନ୍ଦମୟୀ ମଠ ଏବଂ ମିଶନ୍ ଟ୍ରଷ୍ଟ ଅମ୍ମାଙ୍କର ତତ୍ତ୍ୱାବଧାନରେ ଭାରତର ପୁରାତନ ପରଂପରା ଅନୁସାରେ ଉତ୍ତରୋତ୍ତର ଉନ୍ନତି କରିବାରେ ଲାଗିଛି । ଆଶ୍ରମବାସୀ ମାନେ ପ୍ରତିଦିନ ଅତି କମରେ ଘଂଟାଏ ଲେଖାଁ ସମୟ ଆଶ୍ରମର ଦେଖାଶୁଣା, ରନ୍ଧାବଢ଼ା, ବାସନ ଓ ଲୁଗା ଧୁଆ, ଗୁହାଳ ପୋଛା,

ଗାଈ କାମ ଇତ୍ୟାଦିର ଦାୟିତ୍ୱ ଦେଇଥାନ୍ତି । ଅମ୍ମାଙ୍କର ଭକ୍ତମାନେ ଆଶ୍ରମକୁ ତାଙ୍କର ସାଧନାର ଭୂମି ବୋଲି ମଣନ୍ତି ଏବଂ ତାଙ୍କର ବିଶ୍ୱାସ ଯେ ସେହି ଉର୍ବର ଭୂମିରେ ଅନେକ ଆଧ୍ୟାତ୍ମିକ ଓ ମହତ କାର୍ଯ୍ୟର ବୀଜ ବପନ କରାଯାଇ, ଭଗବତ ପ୍ରାପ୍ତିର ଫଳ ଅମଳ କରାଯାଇ ପାରେ ।

୧୯୮୭ ମସିହା ମେ ମାସ ଠାରୁ ଅଗଷ୍ଟ ମାସ ଯାଏ ବିଦେଶୀ ଭକ୍ତ ମାନଙ୍କର ବିଶେଷ ଅନୁରୋଧରେ ଅମ୍ମା ପ୍ରଥମ ପୃଥିବୀ ଭ୍ରମଣ ଆରମ୍ଭ କଲେ । ସେ ୟୁରୋପ ଓ ଆମେରିକା ରେ ଅନେକ ସ୍ଥାନ ଭ୍ରମଣ କରିଥିଲେ । ତାଙ୍କର ପ୍ରଭାବ ଅତୀବ ଚମତ୍କାର ଥିଲା ।

ଅମ୍ମା ଅନେକଙ୍କ ମନରେ ଭାବାବେଗ ଜାଗରଣ କରିଥିଲେ । ତାଙ୍କର ମନ ମୁଗ୍ଧକାରୀ ଆଧ୍ୟାତ୍ମିକ ଭାବ ଓ ନିଷ୍କପଟ ପ୍ରେମ ଅନୁଭବ କରି ପ୍ରତିବର୍ଷ ବିଭିନ୍ନ ଦେଶରୁ ଆମନ୍ତ୍ରିତ ହୋଇ ସେ ପୃଥିବୀ ପ୍ରଦକ୍ଷିଣ କରିବାକୁ ଲାଗିଲେ । କାଲିଫର୍ଣ୍ଣିଆର ସାନ୍ ଫ୍ରାଂସିସ୍‌କୋ ଠାରୁ ପଇଁଚାଳିଶ ମିନିଟ ଦୂରରେ ଗୋଟିଏ ମନୋହର ମାତା ଅମୃତାନନ୍ଦମୟୀ ସାଧନା ପୀଠ ସ୍ଥାପିତ ହୋଇଅଛି । ୧୯୮୭ ମସିହା ଡିସେମ୍ବର ମାସରେ ଅମ୍ମା ରିୟୁନିୟନ ଓ ମରିସିୟସ ଦ୍ୱୀପ ଦ୍ୱୟକୁ ଯାଇଥିଲେ । ତାଙ୍କର ଜଣେ ପ୍ରଧାନ ଭକ୍ତ ସେଠାରେ ମାତା ଅମୃତାନନ୍ଦମୟୀ ଆଶ୍ରମ ଅନେକ ଦିନରୁ ସ୍ଥାପିତ କରିଛନ୍ତି ।

ଯେଉଁ ଭାଗ୍ୟବାନ ଭକ୍ତ ମାନେ ଅମ୍ମାଙ୍କର ପବିତ୍ର ଉପସ୍ଥିତିକୁ ଆସି ପାରନ୍ତି, ଅମ୍ମା ସେମାନଙ୍କୁ ସଦିଚ୍ଛା ସହ ଉପଦେଶ ଦିଅନ୍ତି ।

"ଗୋଟିଏ ବଡ ପଥର ମୁଣ୍ଡା ଦେଖି ଶିଳ୍ପୀ ତାର ଅସମତଳ ଉପରି ଭାଗକୁ ନଦେଖି କେବଳ ଭିତରେ ଥିବା ପରିକଳ୍ପିତ ମୂର୍ତ୍ତିକୁ ଦେଖେ, ଠିକ ସେହିପରି ଭଗବତ୍ ଜ୍ଞାନ ପ୍ରାପ୍ତ ମହାତ୍ମା ଖାଲି ମଣିଷ ଭିତରେ ଥିବା ପ୍ରଜ୍ୱଳିତ ଆତ୍ମାକୁ ହିଁ ଦେଖନ୍ତି । ସେ କୌଣସି ଭେଦଭାବ ରଖନ୍ତି ନାହିଁ ବା ବାହାରର ପ୍ରଭେଦକୁ ଗୁରୁତ୍ୱ ଦିଅନ୍ତି ନାହିଁ । ମଦ୍ୟପ କେବେହେଲେ ମଦ ବ୍ୟବସାୟ ବନ୍ଦ ପାଇଁ ପ୍ରଚାର କରିବ ନାହିଁ । ସେ ନିଜେ ପ୍ରଥମେ ମଦ୍ୟପାନ ତ୍ୟାଗ କରିବ, ତାପରେ ଯାଇ ଅନ୍ୟକୁ ତାହା କରିବାକୁ

କହିବ । ଠିକ୍ ସେହିପରି ମୋ ପିଲାମାନେ, ତୁମେ ନିଜେ ନୈତିକତା ଓ ଆଧ୍ୟାତ୍ମିକତାରେ ସଂପୂର୍ଣ୍ଣ ଭାବରେ ନିପୁଣତା ଲାଭ କରି, ସମସ୍ତଙ୍କ ଭିତରେ ଭଗବତ୍ ଦର୍ଶନ କଲାପରେ ହିଁ ଅନ୍ୟମାନଙ୍କୁ ସେହି ଶିକ୍ଷା ଦେଇପାରିବ ।"

ଅମ୍ମାଙ୍କର ସମସ୍ତ ମାନବ ଜଗତକୁ ଆବାହନରେ ହିଁ ତାଙ୍କର ଜୀବନ ଚରିତ ଲେଖା ଶେଷ ହେଲା । "ମୋ ପିଲାମାନେ, ଶୀଘ୍ର ଆସ । ତୁମେମାନେ "ଓମ୍" ର ମୂଳ ପ୍ରକୃତି । ସବୁ ଦୁଃଖ ତ୍ୟାଗକରି, ସମସ୍ତଙ୍କ ସ୍ନେହ ଶ୍ରଦ୍ଧାର ପାତ୍ର ହୋଇ ସେହି ପବିତ୍ର "ଓମ୍" ରେ ହିଁ ମିଶିଯାଅ ।"



# ଦେବୀ ଭାବର ଅର୍ଥ

ଅମ୍ମାଙ୍କର କୃଷ୍ଣ ଓ ଦେବୀ ଉଭୟ ଭାବକୁ ବୁଝିବା ସାଧାରଣ ମନୁଷ୍ୟର ଶକ୍ତିର ବାହାରେ, ତଥାପି ଭାବ ମଗ୍ନ ହୋଇ ଚିନ୍ତା କଲେ ଜଣେ ଅମ୍ମାଙ୍କର ଅପରିସୀମ ଦୈବୀ ଶକ୍ତି ସମ୍ବନ୍ଧରେ ଟିକିଏ ଧାରଣା କରି ପାରିବ । ଭକ୍ତ ମାନଙ୍କର ନିଷ୍ଠା ପୂର୍ଣ୍ଣ ଡାକରେ ସର୍ବଗୁଣ ସଂପନ୍ନ ଗୁରୁ ଧୀରେ ଧୀରେ ନିଜର ମହିମାରେ ସେମାନଙ୍କର ହୃଦୟକୁ ଭରି ଦିଅନ୍ତି । ଯେତେବେଳେ ଶିଷ୍ୟର ନିଷ୍କଳୁଷତାର ପରୀକ୍ଷା ଅତୀବ କଠିନ ହୋଇ ପଡେ, ଗୁରୁ କୃପାରୁ ଶିଷ୍ୟର ପ୍ରକୃତ ଆତ୍ମନ୍ ବିକଶିତ ହୋଇ ଉଠେ । ଅମ୍ମାଙ୍କ ମହିମା ବୁଝିବା ପାଇଁ ପ୍ରଭୁ କୃପା ଅତ୍ୟାବଶ୍ୟକ ।

ଭାରତର ମହର୍ଷିମାନେ ଐଶ୍ୱରୀକ ଅବତାର ମାନଙ୍କୁ ତିନୋଟି ପ୍ରଧାନ ଭାଗରେ ବିଭକ୍ତ କରିଛନ୍ତି ।

୧. ପୂର୍ଣ୍ଣ ଅବତାର ।

୨. ଅଂଶ ଅବତାର (ଅର୍ଦ୍ଧ ଅବତାର) ।

୩. ଆବେଶ ଅବତାର (ଅଳ୍ପ ସମୟ ପାଇଁ ରହିଥିବା ଦୈବୀକ ଶକ୍ତି) ।

ଅବତାର ଶବ୍ଦର ଅର୍ଥ ହେଲା ଯିଏ ଯୁଗ ଯୁଗ ଧରି ଧରା ଧାମକୁ ଆସିଛନ୍ତି । ସିଏ ଅରୂପ, ଅନାମ, ଅପରିବର୍ତନୀୟ, ପରମ ଜ୍ୟୋତିର୍ମୟ ବ୍ରହ୍ମ, ମନୁଷ୍ୟ ରୂପରେ ଅପରିସୀମ ଶକ୍ତି ନେଇ ମହିମଣ୍ଡଳକୁ ଆସନ୍ତି । ସେ ଏହି ଧରାଧାମକୁ ପାପ ଭାରରୁ ଉଦ୍ଧାର କରି ଧର୍ମ ପ୍ରତିଷ୍ଠା ଏବଂ ମହି ମଣ୍ଡଳରେ ଭଗବତ ମହିମା ସ୍ଥାପିତ କରିବା ଉଦ୍ଦେଶ୍ୟରେ ଆସିଥାନ୍ତି । ଅଂଶ ଅବତାରରେ ଭଗବାନ ଏ ପୃଥିବୀକୁ ଆସି ତାଙ୍କର ଏକମାତ୍ର ଲକ୍ଷ୍ୟ ପରିପୂର୍ଣ୍ଣ କରିବା ପାଇଁ ନିଜର ଅପରିସୀମ କ୍ଷମତାର ଅର୍ଦ୍ଧଭାର

ଦର୍ଶିତ କରାଇ ଥାଆନ୍ତି । ସ୍ୱୟଂ ବିଷ୍ଣୁଙ୍କର ବାମନ ଅବତାର ରୂପ, ନର ସିଂହ ରୂପ, ଅଂଶ ଅବତାରର ସାକ୍ଷାତ ଉଦାହରଣ ।

ଆବେଶ ଅବତାର ଏହି ଦୁଇ ରକମରର ଅବତାର ଠାରୁ ସଂପୂର୍ଣ୍ଣ ଅଲଗା । ଏହି ଅବତାରରେ କୌଣସି ଲକ୍ଷ୍ୟ ସାଧନ ପାଇଁ ଦେବା ଦେବୀ ମାନେ ଅଳ୍ପ ସମୟ ପାଇଁ କୌଣସି ମନୁଷ୍ୟ ଶରୀରକୁ ଗ୍ରହଣ କରିଥାନ୍ତି । ଶ୍ରୀମଦ ଭଗବତ୍ ରେ ବର୍ଣ୍ଣିତ ଭଗବାନ ବିଷ୍ଣୁଙ୍କର ପରଶୁରାମ ରୂପ ଧାରଣ ଏହାର ଉଦାହରଣ । ଏଠାରେ ଭଗବାନ ପରଶୁରାମଙ୍କର ଶରୀର ମଧ୍ୟରେ ପ୍ରବେଶ କରି ଭୟଙ୍କର ଅତ୍ୟାଚାରୀ, ଅହଂକାରୀ କ୍ଷତ୍ରୀୟ ରାଜା ମାନଙ୍କୁ ଧ୍ୱଂସ କରିଥିଲେ । ଏହି କର୍ମ ସାଧନ କଲାପରେ ପରେ ପରଶୁରାମଙ୍କ ପାଖରୁ ଶକ୍ତି ଚାଲି ଯାଇଥିଲା । ସ୍ୱୟଂ ବିଷ୍ଣୁଙ୍କର ଅବତାର ଶ୍ରୀରାମ ଯେତେବେଳେ ସୀତାଙ୍କୁ ବିବାହ କରି ଅଯୋଧ୍ୟାକୁ ଫେରୁଥିଲେ, ସେ ପରଶୁରାମଙ୍କ ପାଖରୁ ଏହି ଶକ୍ତି ଫେରାଇ ନେଇଥିଲେ ବୋଲି କୁହାଯାଏ । ଧର୍ମ ଶାସ୍ତ୍ରରେ ମଧ୍ୟ ବର୍ଣ୍ଣିତ ଅଛି ଯେ ମାନସିକ ଦୁର୍ବଳତା ଥିବା ବ୍ୟକ୍ତି ମାନଙ୍କ ଭିତରେ ରାକ୍ଷସ ବା ଭୂତପ୍ରେତାଦି ମାନେ ପ୍ରବେଶ କରି ପାରନ୍ତି, ସାତ୍ୱିକ ଓ ଧାର୍ମିକ ଲୋକ ମାନଙ୍କ ଭିତରେ ଦେବତା ମାନେ ପ୍ରବେଶ କରିଥାନ୍ତି । ସୃଜନ ଶକ୍ତି ସଂପନ୍ନ, ରାଜସିକ ବ୍ୟକ୍ତି ମାନଙ୍କ ଭିତରେ ଦିବ୍ୟ ପରୀମାନେ ପ୍ରବେଶ କରନ୍ତି, ତାମସିକ, ପାଶବିକ ଲୋକମାନଙ୍କ ଭିତରେ ଦୁରାତ୍ମା ପ୍ରେତ ମାନେ ପ୍ରବେଶ କରିଥାନ୍ତି । ଶାସ୍ତ୍ରରେ ମଧ୍ୟ ଉଲ୍ଲିଖିତ ଅଛି ଯେ ଅତ୍ୟନ୍ତ ନିର୍ମଳ ହୃଦୟ ଥିବା ଆତ୍ମା ମାନଙ୍କ ଭିତରେ ଅଳ୍ପ ସମୟ ପାଇଁ ଐଶ୍ୱରୀକ ଶକ୍ତି ପ୍ରବେଶ କରିଥାଏ । ସେଇଥି ପାଇଁ ପରଶୁରାମଙ୍କୁ ଆବେଶ ଅବତାର ବୋଲି କୁହାଯାଇଥାଏ ।

ଅମ୍ମାଙ୍କର ଐଶ୍ୱରୀକ ଭାବର ଅନ୍ତର୍ଦୃଷ୍ଟି ପାଇଁ କେତେ ଗୁଡିଏ ଉଦାହରଣ ଦିଆ ଯାଉଛି । ଯେତେବେଳେ ଭଗବାନ କୃଷ୍ଣ ଦ୍ୱାରକାରେ ରହୁଥିଲେ ସେ ତାଙ୍କର ପରମ ଭକ୍ତ ହନୁମାନଙ୍କୁ ଦେଖିବାକୁ ଚାହିଁଲେ । ତାଙ୍କର ବାହନ ଗରୁଡ ହନୁମାନଙ୍କର ଅବସ୍ଥାନ ଜାଗା କଦଳି ବଣକୁ ଉଡିଗଲେ, କିନ୍ତୁ ହନୁମାନ ଆସିବାକୁ ରାଜି ହେଲେ ନାହିଁ । ସେ କହିଲେ "ମୁଁ ମୋର ପ୍ରଭୁ ଶ୍ରୀରାମଙ୍କ ଛଡା ଆଉ କାହାକୁ ଦେଖିବାକୁ ଯିବି ନାହିଁ" । ଏ ଖବର ପାଇ ଶ୍ରୀକୃଷ୍ଣ ଆଉଥରେ ଗରୁଡଙ୍କୁ ଶିଖାଇ ହନୁମାନଙ୍କ ପାଖକୁ ପଠେଇ କହିବାକୁ କହିଲେ ଯେ "ଭଗବାନ ଶ୍ରୀରାମ, ଦେବୀ ସୀତାଙ୍କ ସହ ଦ୍ୱାରକାକୁ

ଆସିଛନ୍ତି ଓ ସେମାନେ ହନୁମାନଙ୍କୁ ଦେଖିବାକୁ ଚାହୁଁଛନ୍ତି" ।

ଯେତେବେଳେ ଗରୁଡ଼ ହନୁମାନଙ୍କୁ ନେଇ ଆସୁଛନ୍ତି ସେତେବେଳେ ଦ୍ୱାରକାରେ ଗୋଟିଏ ଘଟଣା ଘଟିଲା । ଶ୍ରୀକୃଷ୍ଣ ସ୍ୱଇଚ୍ଛାରେ ସତ୍ୟଯୁଗର ଶ୍ରୀରାମଙ୍କର ରୂପ ଧାରଣ କଲେ ଓ ରୁକ୍ମିଣୀ ସୀତାଙ୍କର ରୂପ ଧାରଣ କଲେ । ହନୁମାନ ଦ୍ୱାରକାରେ ଶ୍ରୀରାମ ଓ ସୀତାଙ୍କୁ ତାଙ୍କର ପୂଜା ଅଭିଷେକ ଅର୍ପଣ କଲେ, ଏବଂ ତାପରେ ତାଙ୍କର ବାସସ୍ଥାନକୁ ଫେରିଗଲେ ।

ଶ୍ରୀରାମ ଚନ୍ଦ୍ର ଭଗବାନ ବିଷ୍ଣୁଙ୍କର ଅବତାର ଥିଲେ । ସେ ଶ୍ରୀକୃଷ୍ଣଙ୍କର ହଜାର ହଜାର ବର୍ଷ ଆଗରୁ ଅଯୋଧ୍ୟା ରେ ରହୁଥିଲେ । ତଥାପି ଯେ ସୀତା ଓ ରାମଚନ୍ଦ୍ର ଦ୍ୱାରକାରେ ପୁଣି ଥରେ ଆବିର୍ଭାବ ହୋଇ ପାରନ୍ତି ଏ ବିଷୟରେ ହନୁମାନଙ୍କର ଜମାରୁ ସନ୍ଦେହ ନ ଥିଲା, ଯଦିଓ ସେ ଭଲ ଭାବରେ ଜାଣିଥିଲେ ଯେ ଶ୍ରୀକୃଷ୍ଣ ହିଁ ଦ୍ୱାରକାର ରାଜା । ଆହୁରି ମଧ୍ୟ ହନୁମାନ ଭଲ ଭାବରେ ଜାଣିଥିଲେ ଯେ ଶ୍ରୀକୃଷ୍ଣ ହିଁ କେବଳ ଶ୍ରୀରାମ ଭାବରେ ଦର୍ଶନ ଦେଇପାରିବା ସମ୍ଭବ । ଏଠାରେ ହନୁମାନ ମଧ୍ୟ ସିଦ୍ଧାନ୍ତ କରିଥିଲେ ଯେ ସେ ଏହି ସୁଯୋଗରେ ହିଁ ଶ୍ରୀରାମ ଓ ସୀତାଙ୍କୁ ମନୁଷ୍ୟ ରୂପରେ ଦର୍ଶନ ପାଇ ପାରିବେ । ଭକ୍ତର ଦାସ ଭଗବାନ ଶ୍ରୀକୃଷ୍ଣ ଆନନ୍ଦରେ ତାଙ୍କ ଭକ୍ତର ଇଚ୍ଛା ପରିପୂର୍ଣ୍ଣ କରି ଆଶୀର୍ବାଦ କରିଥିଲେ ।

କେବଳ ପୂର୍ଣ୍ଣ ଅବତାର ହିଁ ଆଉ ଗୋଟିଏ ଭଗବାନ ବା ଭଗବତୀ ସହ ଲୀନ ହୋଇ ପାରିବ । କୃଷ୍ଣ ନିଜେ ଅବତାର ହୋଇ ସହଜରେ ରାମ ଭାବ ପ୍ରଦର୍ଶନ କରି ପାରିଥିଲେ । ଦିନେ ଶ୍ରୀକୃଷ୍ଣ ତାଙ୍କର ପ୍ରିୟ ରାଣୀ ସତ୍ୟଭାମାଙ୍କ ସହ ଅନ୍ୟାନ୍ୟ ରାଣୀ ମାନଙ୍କୁ ସୀତା ଭାବ ପ୍ରଦର୍ଶିତ କରିବା ପାଇଁ ଅନୁରୋଧ କଲେ । କିନ୍ତୁ କେହି ହେଲେ ତାହା କରି ପାରିନଥିଲେ । ଶେଷରେ ରୁକ୍ମିଣୀ, ଯିଏକି ସାକ୍ଷାତ ଲକ୍ଷ୍ମୀଙ୍କର ଅବତାର, ସହଜରେ ସୀତା ଭାବ ଦେଖାଇ ପାରିଥିଲେ ।

ଆବେଶ ଅବତାରରେ ଭଗବତ ଶକ୍ତି ଗୋଟିଏ ନିର୍ଦ୍ଦିଷ୍ଟ ମନୁଷ୍ୟ ଭିତରେ ପଶି, ଲକ୍ଷ୍ୟ ସାଧନ କରି ସାରିଲା ପରେ, ପୁଣି ସେହି ମନୁଷ୍ୟ ପାଖରୁ ଶକ୍ତି ନେଇ ଫେରି ଯାଆନ୍ତି । ଶ୍ରୀକୃଷ୍ଣ ଓ ରୁକ୍ମିଣୀଙ୍କ ଘଟଣାରେ ଏପରି ହୋଇ ନଥିଲା । ଭଗବାନ ଶ୍ରୀକୃଷ୍ଣଙ୍କର "ରାମ ଭାବ" ବା ତାଙ୍କ ଭିତରେ ଆଗରୁ ପ୍ରଚ୍ଛନ୍ନ ଥିବା ଶ୍ରୀରାମଙ୍କର ଗୁଣ

ଗୁଡିକୁ ପ୍ରଦର୍ଶିତ କରିଥିଲେ ।

ଠିକ ଏହିପରି ଆଉ ଗୋଟିଏ ଘଟଣା ବଙ୍ଗ ଦେଶର ଶ୍ରୀ ଚୈତନ୍ୟ ଦେବଙ୍କର ଜୀବନରେ ଘଟିଥିଲା । ପ୍ରଭୁ ନରସିଂହଙ୍କର ପରମ ଭକ୍ତ ଓ ପୂଜକ ପଣ୍ଡିତ ଶ୍ରୀବାସ ଦୈନିକ ମନ୍ତ୍ର ଜପ ଠାକୁର ଘରେ ବସି କରୁଥିଲେ । । ଠିକ ସେତିକି ବେଳେ ଦ୍ୱାରରେ ଠକ୍ ଠକ୍ ଶବ୍ଦ ହେଲା । ପଣ୍ଡିତ ପଚାରିଲେ "କିଏ ସେ ?" ଉତର ଆସିଲା "ତୁମର ପ୍ରିୟ ଆରାଧ୍ୟ ଠାକୁର ।" ପଣ୍ଡିତ ଶ୍ରୀବାସ ଯେତେବେଳେ କବାଟ ଖୋଲିଲେ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କୁ ଏରୁଣ୍ଡି ବନ୍ଧ ଉପରେ ଭଗବତ ଭାବରେ ମଗ୍ନ ହୋଇ ଠିଆ ହୋଇଥିବା ଦେଖିଲେ ଓ ସେ ପୂଜା ଘରକୁ ଆସି ଆସନ ଉପରେ ଅଧିଷ୍ଠିତ ହେଲେ । ପଣ୍ଡିତ ଦେଖିଲେ ଚୈତନ୍ୟ ମହାପ୍ରଭୁଙ୍କ ଭିତରେ ପ୍ରଭୁ ନରସିଂହ ଦୀପ୍ତିମାନ ହୋଇ ଆବିର୍ଭାବ ହୋଇଛନ୍ତି । ପଣ୍ଡିତ ଆନନ୍ଦରେ ବିଭୋର ହୋଇ ଚୈତନ୍ୟ ମହାପ୍ରଭୁଙ୍କୁ ପୂଜା କରିବାରେ ଲାଗିଲେ । ମହାପ୍ରଭୁ ଚୈତନ୍ୟ ପଣ୍ଡିତଙ୍କର ସମସ୍ତ ପରିବାରକୁ ଦର୍ଶନ ଓ ଆଶୀର୍ବାଦ ଦେଇ ପୂଜା କରିବାକୁ ଅନୁମତି ଦେଲେ ।

ସମସ୍ତେ ତାଙ୍କର ଆଶିର୍ବାଦ ନେଲା ପରେ ପରେ ଚୈତନ୍ୟ ମହାପ୍ରଭୁ ସଂଜ୍ଞାହୀନ ହୋଇ ପଡିଲେ । କିଛି ସମୟ ପରେ ସଂଜ୍ଞା ଲାଭ କରି ସେ ପଣ୍ଡିତଙ୍କୁ ପଚାରିଲେ "କଣ ହେଲା ? ମୋର କିଛି ମନେ ପଡୁ ନାହିଁ । ମୁଁ କିଛି ଭୁଲ କଥା କହି ବସିଛି କି ?" ଅତ୍ୟନ୍ତ ବିନୟ ସହ ଶ୍ରୀବାସ ପ୍ରଭୁଙ୍କ ଆଗରେ ନତ ମସ୍ତକ ହୋଇ କହିଲେ "ହେ ଭଗବାନ, ଦୟାକରି ଏହି ନଗଣ୍ୟ ଦାସକୁ ଆଉ ବିଭ୍ରାନ୍ତ କରନ୍ତୁ ନାହିଁ । ଭଗବାନଙ୍କର ଅପାର କରୁଣା ଯୋଗୁ ମୁଁ ଆପଣଙ୍କର ପ୍ରକୃତ ରୂପ ଦର୍ଶନ କରି ପାରିଲି" । ଏହିପରି ଚୈତନ୍ୟ ମହାପ୍ରଭୁ ବିଭିନ୍ନ ସମୟରେ ଓ ବିଭିନ୍ନ ଭାବରେ ତାଙ୍କର ଭକ୍ତ ମାନଙ୍କୁ ଦର୍ଶନ ଦେଉଥିଲେ ।

ଭାବ ଦର୍ଶନର ତାତ୍ପର୍ଯ୍ୟ ଏହିସବୁ ଦୃଷ୍ଟାନ୍ତରୁ ସ୍ପଷ୍ଟ ଭାବରେ ବୁଝାଯାଏ । ଭାବ ଦର୍ଶନ କହିଲେ "ଈଶ୍ୱର ଭାବ" ପ୍ରକଟକୁ ବୁଝାଏ । ଭକ୍ତର ମନସ୍କାମନା ପୂର୍ଣ୍ଣ କରିବା ପାଇଁ ଅବତାର ମାନେ ତାଙ୍କ ମନୋମତ ରୂପରେ ତାକୁ ଦର୍ଶନ ଦେଇଥାନ୍ତି । ବଙ୍ଗ ଦେଶର ଅଧିବାସୀ "ଆନନ୍ଦମୟୀ ମା" ଭଜନ ଗାଇଲା ବେଳେ କୃଷ୍ଣ ଓ କାଳୀ ରୂପରେ ଦର୍ଶନ ଦେଇଛନ୍ତି । ଅବତାର ମାନେ ଏହିସବୁ 'ଭାବ' କୌଣସି ଗୋଟିଏ

ଲକ୍ଷ୍ୟ ପରିପୂର୍ଣ୍ଣ କରିବା ପାଇଁ ପ୍ରକଟ କରିଥାନ୍ତି । ଏହି ଭାବ ପ୍ରାୟତଃ ତାଙ୍କର ପ୍ରିୟ ଅନୁଗତ ଭକ୍ତ ମାନଙ୍କର ଅଭିଳାଷ ପୂରଣ ପାଇଁ ହୋଇଥାଏ ଓ ଏହି ଭାବ ଖୁବ୍ କ୍ଷଣସ୍ଥାୟୀ ଅଟେ । ମାତା ଅମୃତାନନ୍ଦମୟୀଙ୍କର ଐଶ୍ୱରିକ ଭାବ ସପ୍ତାହରେ ଥରେ ହୁଏ ଏବଂ ଦର୍ଶନ ପାଇଁ ଆସିଥିବା ଭକ୍ତ ମାନଙ୍କର ସଂଖ୍ୟା ଅନୁସାରେ ଦଶ ଠାରୁ ବାର ଘଂଟା ଯାଏ ରହିଥାଏ । ଏହି ଉପାୟରେ ଅମ୍ମା ସଂସାର ମାୟାର ଗଭୀର ପଙ୍କରେ ବୁଡି ରହିଥିବା ମାନବଜାତିର ସେବା କରନ୍ତି ।

ଚୈତନ୍ୟ ମହାପ୍ରଭୁଙ୍କ ଦୁଇଟି ଭାବ ଦର୍ଶନ ହେଉଥିଲା । ଗୋଟିଏ ହେଲା "ଭକ୍ତର ଭାବ" ଯେଉଁଥିରେ କି ତାଙ୍କୁ ପ୍ରାୟ ଦେଖିବାକୁ ମିଳୁଥିଲା ଏବଂ ଅନ୍ୟଟି "ଭଗବତ୍ ଭାବ", ସେତେବେଳେ ସେ ନିଜର ପ୍ରକୃତ ରୂପ ହିଁ ଦେଖାଉଥିଲେ । ଶ୍ରୀ ରାମକୃଷ୍ଣ ପରମହଂସ ମଧ୍ୟ ଗୋଟିଏରୁ ବେଶୀ ଭାବ ଦର୍ଶନ ଦେଇଥିଲେ । "ହନୁମାନ" ଭାବ ପ୍ରଦର୍ଶନର ସାଧନା ସମୟରେ ତାଙ୍କର ପଛରେ ଛୋଟ ଲାଙ୍ଗୁଡଟିଏ ଉଠିଥିଲା ବୋଲି କୁହାଯାଏ ।

ଅମ୍ମାଙ୍କର କୃଷ୍ଣ ଓ ଦେବୀଭାବ ସମୟରେ ସେ ନିଜ ଭିତରେ ଥିବା ସେହି ଭାବକୁ ପ୍ରକଟ କରି ଭକ୍ତ ମାନଙ୍କୁ ଆଶୀର୍ବାଦ କରନ୍ତି । ଅମ୍ମା ଥରେ ତାଙ୍କର ଭାବ ଦର୍ଶନ ବେଳେ 'ଭାବ' ବିଷୟରେ କହିଥିଲେ "ଅମ୍ମା ତାର ଐଶ୍ୱରୀକ ଶକ୍ତିରୁ କାଣିଚାଏ ମଧ୍ୟ ପ୍ରଦର୍ଶିତ କରୁନାହିଁ । ଯଦି ତାହା ପ୍ରକୃତରେ ପ୍ରକଟ କରାଯାଆନ୍ତା, ତାହାହେଲେ ପାଖକୁ କିଏ ହେଲେ ଆସି ପାରନ୍ତେ ନାହିଁ!" ସେ ଆହୁରି କହିଲେ "ହିନ୍ଦୁ ଧର୍ମର ଯେତେ ଦେବା ଦେବୀ ଅଛନ୍ତି, ସେମାନେ ସେହି ଗୋଟିଏ ପରମବ୍ରହ୍ମଙ୍କର ସଂଖ୍ୟାହୀନ ଅଂଶ ମାତ୍ର, ସେମାନେ ସମସ୍ତେ ଆମରି ମଧ୍ୟରେ ହିଁ ଅଛନ୍ତି । ଜଗତ କଲ୍ୟାଣର ପ୍ରବଳ ଇଚ୍ଛା ଫଳରେ ହିଁ ଅବତାରମାନେ ମନୁଷ୍ୟ ଭିତରେ ପ୍ରବେଶ କରି ପ୍ରକାଶିତ ହୋଇ ଥାଆନ୍ତି । କୃଷ୍ଣଭାବ ଦ୍ୱାରା ଚିରନ୍ତନ "ପ୍ରକୃତି ଭାବ", "ସୃଷ୍ଟିକର୍ତ୍ତୀ ଭାବ" ପ୍ରକାଶିତ ହୋଇଥାଏ । ଏଠି ଗୋଟିଏ ପାଗଳୀ କେତେବେଳେ କୃଷ୍ଣ ବେଶ ସାଜୁଛି, କିନ୍ତୁ ଏହି ଉନ୍ମତ ଝିଅଟି ଭିତରେ ଉଭୟେ ଅଛନ୍ତି । କିନ୍ତୁ ସବୁବେଳେ ମନେ ରଖିବାକୁ ପଡିବ ଯେ ଭଗବାନଙ୍କୁ କୌଣସି ଆକାର ବା ନାମ ଦେବା, ସବୁ ଆମ ମନର ପରିକଳ୍ପନା ମାତ୍ର । ହାତୀକୁ କାହିଁକି ସଜା ହୁଏ ? ଓକିଲ କାହିଁକି କଳା କୋଟ ପିନ୍ଧନ୍ତି ?

ମନ ଭିତରେ ଧାରଣା ସୃଷ୍ଟି କରିବା ପାଇଁ ଏସବୁ ବାହାର ଆବରଣ ଜରୁରୀ ହୋଇଥାଏ । ଠିକ ସେହିପରି ଅମ୍ମା କୃଷ୍ଣ ଓ ଦେବୀଙ୍କର ବେଶ ପୋଷାକ ପିନ୍ଧିଥାଏ । ଦର୍ଶନ ପାଇଁ ଆସିଥିବା ଭକ୍ତ ମାନଙ୍କର ଭକ୍ତିରେ ଶକ୍ତି ଯୋଗାଇବା ନିମିତ୍ତ । ମୋ ଭିତରେ ଥିବା ଆତ୍ମା ମଧ୍ୟ ତୁମ ଭିତରେ ଅଛି । ତୁମେ ଯଦି ନିଜ ଭିତରେ ପ୍ରଜ୍ୱଳିତ ବ୍ରହ୍ମାତ୍ମା କୁ ବୁଝିପାରିବ ତେବେ ତୁମେ ମଧ୍ୟ 'ତାହା' ହୋଇ ପାରିବ ।"

ବର୍ତ୍ତମାନ ସୁଦ୍ଧା ଅନେକ ଲୋକ ଭାବୁଥିଲେ ଯେ ଭଗବାନ ଶ୍ରୀକୃଷ୍ଣ ଓ ଦେବୀ, ପୂର୍ଣ୍ଣମୟୀ ଅମ୍ମାଙ୍କର ଦେହ ଭିତରେ ସପ୍ତାହରେ ତିନିଥର ଆସି ପଶୁଛନ୍ତି ଓ ତା'ପରେ ତାଙ୍କ ଦେହ ଛାଡି ଚାଲି ଯାଆନ୍ତି । ଅମ୍ମାଙ୍କର ଐଶ୍ୱରୀକ ଭାବର ତାତ୍ପର୍ଯ୍ୟ ବୁଝି ପାରୁନଥିବା ଯୋଗୁଁ ଲୋକଙ୍କ ମଧ୍ୟରେ ଏପରି ଭୁଲ ଧାରଣା ସୃଷ୍ଟି ହୋଇଥିଲା । ଏହି ଐଶ୍ୱରୀକ ଭାବ ପରମାତ୍ମାଙ୍କ ସହ ତାଙ୍କର ଏକତ୍ୱକୁ ପ୍ରଦର୍ଶିତ କରୁଥିଲା । ତାଙ୍କ ଦେହରେ ଦେବୀ ପ୍ରବେଶ କରିବା ବା ଖାଲି ଠାକୁରଙ୍କର ଦୟାରୁ ଏପରି ହେଉଥିବା ସାଙ୍ଗରେ ବାସ୍ତବିକ ସତ୍ୟର ସଂପର୍କ ନଥିଲା ।

ଭକ୍ତ ମାନଙ୍କୁ ଭାବ ଦର୍ଶନ ବିଷୟରେ ଅମ୍ମା ଅନେକ ପ୍ରଶ୍ନର ଉତ୍ତର ଦେଇଛନ୍ତି:

**ଭକ୍ତ:** ଅନେକ ଭକ୍ତ କହନ୍ତି ଅମ୍ମାଙ୍କର ଐଶ୍ୱରୀକ ଭାବ ଏବଂ ଅନ୍ୟ ସମୟର ଭାବ ସବୁ ସମାନ । ଯଦି ତାହା ସତ୍ୟ ତା ହେଲେ ଭାବ ଦର୍ଶନର ତାତ୍ପର୍ଯ୍ୟ କଣ ?

**ଅମ୍ମା:** ଭାବ ଦର୍ଶନ ସମୟରେ ଅମ୍ମା ଦୁଇ ବା ତିନୋଟି ପରଦା ଉଠାଇ ଦିଏ, ଯଦ୍ୱାରା ଭକ୍ତ ମାନେ ପରମାତ୍ମାଙ୍କର ଟିକିଏ ଦର୍ଶନ ପାଇ ପାରିବେ । ବିଭିନ୍ନ ଲୋକଙ୍କର ବିଭିନ୍ନ ମତ ଓ ବିଶ୍ୱାସ, ଅମ୍ମାର ଇଚ୍ଛା ଯେପରି ଭାବରେ ହେଉ ଲୋକମାନେ ଭଗବାନଙ୍କ ନିକଟବର୍ତୀ ହୁଅନ୍ତୁ । କିଛି ଲୋକଙ୍କର ଅମ୍ମାକୁ ଦେବୀ ବା କୃଷ୍ଣ ବେଶରେ ଦେଖିଲେ ଆଗ୍ରହ ସୃଷ୍ଟି ହୁଏ । କେବଳ ତାହା ନୁହଁ, ଖୁବ କମ ଲୋକ ଐଶ୍ୱରୀକ ଭାବ ସଂପର୍କରେ କିଛି ଜାଣିଛନ୍ତି । ଅନେକ ଲୋକ ସାଧାରଣ ସମୟରେ ଅମ୍ମାର କଥାକୁ ବିଶ୍ୱାସ କରି ପାରନ୍ତି ନାହିଁ, କିନ୍ତୁ ଅମ୍ମା ଯଦି ଦେବୀ ଭାବ ସମୟରେ କୁହେ ତେବେ ସେମାନେ ବିଶ୍ୱାସ କରନ୍ତି ।

**ଭକ୍ତ :** ଅମ୍ମା ! ଏହିପରି ଭାବ ଦର୍ଶନ କରାଇବାର କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସମୟ ଅଛି ?

**ଅମ୍ମା:** ନାଁ ସେପରି କିଛି ନାହିଁ । ଏହା ଯେକୌଣସି ସମୟରେ ପ୍ରତ୍ୟକ୍ଷ ଭାବରେ ଦେଖା ଯାଇପାରେ । ଖାଲି ଇଚ୍ଛା କଲେ ହିଁ ହେଲା ।

**ଭକ୍ତ :** ଅମ୍ମା ! ତୁମେ କାହିଁକି କୃଷ୍ଣଙ୍କର ଓ ଦେବୀଙ୍କର ବେଶ ଭୂଷା ପରିଧାନ କର ?

**ଅମ୍ମା:** ଏହା ଲୋକ ମାନଙ୍କୁ 'ଭାବ' ର ତାତ୍ପର୍ଯ୍ୟ ବୁଝାଇବାରେ ସାହଯ୍ୟ କରେ । ପିଲାମାନେ, ପ୍ରତ୍ୟେକ ବେଶର କିଛି ନାଁ କିଛି ବିଶିଷ୍ଟତା ଅଛି । ଆମେ ଜନ୍ମ ହେଲାବେଳେ ଲଙ୍ଗଳା ହୋଇ ଜନ୍ମ ହୋଇଥାଉ, ପରେ ନିଜ ଜନ୍ମ ଦେଶର ରୀତି ନୀତି, ସମାଜିକ ପ୍ରଥା ନେଇ ଲୋକେ ନିଜର ବେଶ ପୋଷାକ ଅବଲମ୍ବନ କରି ନେଉ । ବେଶ ପୋଷାକ ଯାହା ହେଉନା କାହିଁକି, ଲୋକେ ସବୁଠାରେ ସମାନ । ତେବେ ବର୍ତ୍ତମାନ ଯୁଗରେ ଲୋକ ବେଶ ଭୂଷାକୁ ବେଶୀ ଗୁରୁତ୍ୱ ଦେଉଛନ୍ତି । ଏ ବିଷୟରେ ଗୋଟିଏ କାହାଣୀ କହିବି । ଗୋଟିଏ ଲୋକ ରାସ୍ତା କଡରେ ଥିବା ଗଛଟିକୁ କାଟୁଥିଲା, ଆଉ ଗୋଟିଏ ଲୋକ ତାହା ଦେଖି କହିଲା, "ଗଛ କାଟ ନାହିଁ! ଏହା ଅନୁଚିତ ଓ ବେଆଇନ" । ଗଛ କାଟୁଥିବା ଲୋକଟି କାଟିବା ବନ୍ଦ ନକରି ଓଲଟି ଗାଳି ଦେବାକୁ ଆରମ୍ଭ କଲା । ଯିଏ ଏ ଦୁଷ୍ଟ ଲୋକଟିକୁ ଗଛ କାଟିବାକୁ ମନା କରୁଥିଲା, ସେ ଲୋକଟି ପୋଲିସ ଥିଲା । ତେଣୁ ସେ ଶିଘ୍ର ଚାଲିଯାଇ, ସାଙ୍ଗେ ସାଙ୍ଗେ ତାର ସରକାରୀ ପୋଷାକ ପିନ୍ଧି ଫେରି ଆସିଲା । ଦୂରରୁ ପୋଲିସ ଟୋପି ଦେଖୁ ଦେଖୁ ଦୁଷ୍ଟ ଲୋକଟି ଗଛକୁ ନ ଅନେଇ ଏକ ମୁହାଁ ହୋଇ ଦଉଡିବାକୁ ଆରମ୍ଭ କଲା । ସରକାରୀ ପୋଷାକ ପିନ୍ଧିବାରେ ଦୁଇଟି ଭିନ୍ନ ରକମର ପ୍ରଭାବ ପଡିଥିଲା । ତେଣୁ ଅଜ୍ଞାନୀ ଲୋକ ମାନଙ୍କୁ ଶିକ୍ଷା ଦେବା ପାଇଁ ବିଶିଷ୍ଟ ବେଶ ପୋଷାକର ଆବଶ୍ୟକତା ଅଛି । ଠିକ ସେହିପରି କୃଷ୍ଣ ଭାବ, ଦେବୀ ଭାବର ଆବଶ୍ୟକତା ରହିଛି । କିଛି ଲୋକ ଅମ୍ମା ସହ ଘଂଟା ଘଂଟା ଧରି କଥା ହେଲାପରେ ମଧ୍ୟ ସନ୍ତୁଷ୍ଟ ହେଉନାହାନ୍ତି । ସେମାନେ ଭାବଦର୍ଶନ ବେଳେ ଭଗବାନଙ୍କୁ ତାଙ୍କର ସମସ୍ୟା ସିଧା କହି ଶାନ୍ତି ଲାଭ କରୁଛନ୍ତି ।

ସବୁ ଅବତାରର ବିଭିନ୍ନ ବୈଶିଷ୍ଟ୍ୟ ଅଛି । କେହିହେଲେ କହି ପାରିବ ନାହିଁ ଯେ କୃଷ୍ଣ ରାମଙ୍କ ଠାରୁ ମହାନ । ପ୍ରତ୍ୟେକ ଅବତାରରେ ସେମାନେ ମାନବ ଜାତିକୁ

ଉଦ୍ଧାର କରିବା ପାଇଁ ବିଭିନ୍ନ କର୍ମ ସଂପାଦନ କରିଥିଲେ । ଏହାର ମାନେ ନୁହଁ ଯେ ସେମାନଙ୍କର ଜୀବନର ଦର୍ଶନ ଭିନ୍ନ ଭିନ୍ନ ଥିଲା । ଆମର ସୀମିତ ଜ୍ଞାନ, ଯୁକ୍ତି ନେଇ ସେମାନଙ୍କର କର୍ମ ସାଧନା ମାପିବା ଆମର କ୍ଷମତାର ବାହାରେ । ଆଧ୍ୟାତ୍ମିକ ସାଧନା ଜନିତ ବିଶ୍ୱାସ ବଳରେ ହୁଏତ ଆମେମାନେ ସେମାନଙ୍କର ମହାନତାର କିଛିଟା ଆଭାସ ପାଇ ପାରୁଛୁ । ମହିୟସୀ ଅମ୍ମାଙ୍କର ଐଶ୍ୱରୀକ ଶକ୍ତି ବିଷୟରେ କିଛି ଜ୍ଞାନ ଲାଭ କରୁଅଛୁ । ଏହାର ଦ୍ୱିତୀୟ ଭାଗରେ ଆମେମାନେ ଭକ୍ତ ମାନଙ୍କର ଅମ୍ମାଙ୍କ ସହ ଅନୁଭୂତି ବର୍ଣ୍ଣନା କରିବୁ ।



## ଭକ୍ତ ମାନଙ୍କର ଅନୁଭୂତି
## ତୃତୀୟ ଭାଗ

### ଭକ୍ତ ମାନଙ୍କର ଅନୁଭୂତି

ବମ୍ବେର ଭାବା ପରମାଣୁ ଗବେଷଣା କେନ୍ଦ୍ରର ବୈଜ୍ଞାନିକ ଡାକ୍ତର ଡି.ଏନ୍. ଶ୍ରୀବାସ୍ତବ ଅମ୍ମାଙ୍କର ସହ ତାଙ୍କ ଅନୁଭୂତି ବର୍ଣ୍ଣନା କରିଛନ୍ତି ।

ମୁଁ ଛାତ୍ରାବସ୍ଥାରେ ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କର ଜୀବନୀର ପ୍ରାଣବନ୍ତ ବର୍ଣ୍ଣନା ପଢିଥିଲି । ସେ ଭଗବତ ନାମ ନେଲାବେଳେ ମନେ ହେଉଥିଲା ଯେପରିକି ତାଙ୍କ ଅଧରରୁ ଅମୃତ ଝରି ଆସୁଛି । ତାଙ୍କର ମୁଖ ପଦ୍ମ ଓ ହାବ ଭାବ ସବୁ ହିଁ ଭଗବତ ମୟ ହେଉଥିଲା । ଅନେକ ବର୍ଷ ଧରି ମୁଁ ଠିକ୍ ସେହିପରି ଭକ୍ତି ବ୍ୟାକୁଳତା ଥିବା ଜଣେ ମହାତ୍ମାଙ୍କୁ ଦେଖିବାକୁ ଚାହୁଁଥିଲି । ମୁଁ ଅନେକ ଉଚ୍ଚ ସ୍ତରର ପୂଜ୍ୟ ସାଧୁ ସନ୍ୟାସୀ ମାନଙ୍କୁ ଭେଟିଲି କିନ୍ତୁ ସେପରି ପୂର୍ଣ୍ଣ ତେଜମୟ ଆନନ୍ଦ ମୁଁ ଅନୁଭବ କରି ପାରିନଥିଲି ।

ଯେତେବେଳେ ମୁଁ ମାତା ଅମୃତାନନ୍ଦମୟୀଙ୍କୁ ଭେଟିଲି ଓ ତାଙ୍କ ଗୀତ ଶୁଣିଲି, ସେତେବେଳେ ମୁଁ ଜାଣିଲି ଯେ, ମୁଁ ଯାହା ଖୋଜୁଥିଲି ତାହା ପାଇ ଯାଇଛି । ଖାଲି ତାଙ୍କ ପାଖରେ ବସିଲେ ମଧ୍ୟ ଗଭୀର ତପସ୍ୟାରତ ଥିବା ବେଳର ଐଶ୍ୱରୀକ ଚିନ୍ତନ

ପ୍ରବାହ ଅନୁଭବ କରିହୁଏ । ତାଙ୍କର ବିଭିନ୍ନ ଭଗବତ ନାମ ଉଚ୍ଚାରଣ ଶୈଳୀରୁ ଈଶ୍ୱରଙ୍କର ବିଭିନ୍ନ ଛବି ବିରାଜିତ ହେଲା ପରି ମନେ ହୁଏ । ଅନେକ ଜଟିଳ ପ୍ରଶ୍ନର ଉତ୍ତରକୁ ସରଳ ଭାବରେ ସେ ବୁଝାଇ ଦିଅନ୍ତି । ସେଇଥିରୁ ହିଁ ତାଙ୍କର ଭଗବତ୍ ଜ୍ଞାନର ପ୍ରାଞ୍ଜଳତା ବୁଝାଯାଏ । ତାଙ୍କର ମୁଖ ପଙ୍କଜରୁ ଅନର୍ଗଳ ବାହାରୁଥିବା ସୁଧାବାରି ଚିନ୍ତାଧାରାରେ ଯେପରି ଡେଣା ଲଗାଇ ନିଜକୁ ଯେପରି ପ୍ରଶ୍ନହୀନ, ସନ୍ଦେହ ହୀନ ଅନ୍ତର୍ଜଗତର ସଚ୍ଚିଦାନନ୍ଦ ଆଲୋକ ଆଡକୁ ଆଗେଇ ନେଇଯାଏ ।

ଏହି ଛଳ କପଟ ଭରା କଳିଯୁଗରେ, ମାତା ଅମୃତାନନ୍ଦମୟୀଙ୍କର ବିଶ୍ୱ ପ୍ରେମର ଉଦାହରଣକୁ ଅନୁସରଣ କରି ହଜାର ହଜାର ଭକ୍ତ ନିଜକୁ ମାନବ ସେବାରେ ଉତ୍ସର୍ଗ କରି ଦେଉଛନ୍ତି । ଏହା ଅନ୍ୟ କେଉଁଠି ଦେଖିବା ବିରଳ ।



ସାତ ବର୍ଷ ବୟସର ଲିଜାକୁ ଅମ୍ମା "ଟକଲୀ" ବା ଟମାଟୋ ବୋଲି ଖୁସୀରେ ନାମ ଦେଇଥିଲେ । ଥରେ ସେ ତାର ନିର୍ମଳ କୋମଳ ମନ ଭିତରେ ପ୍ରାର୍ଥନା କଲା "ହେ ଭଗବାନ, ମତେ ଥରେ ଅମ୍ମା କୃଷ୍ଣଭାବ ବେଳେ ପିନ୍ଧୁଥିବା ମକୁଟ ପିନ୍ଧିବାକୁ ମିଳନ୍ତା କି ? ମୁଁ ଭାରି ଖୁସୀ ହୋଇ ଯାଆନ୍ତି" । କିନ୍ତୁ ସେ ଜାଣିଥିଲା ତାର ମନସ୍କାମନା ପୂର୍ଣ୍ଣ ହେବା ଏକ ଅସମ୍ଭବ ଭାବନା ।

ସେହି ବର୍ଷ ଜନ୍ମାଷ୍ଟମୀ ଉତ୍ସବ ପାଳନ ଦିନ ଟକଲି ଆଶ୍ରମରୁ ଆସିଥିଲା । ଅମ୍ମା ନୌକା ଜେଟୀ ପାଖରେ ଅପେକ୍ଷା କରି ରହିଥିଲେ । ସେଠି ଦଳେ ପିଲା ଅନେକ ଆଗରୁ ରଙ୍ଗୀନ ପୋଷାକ ପିନ୍ଧି କୃଷ୍ଣଙ୍କର ବୃନ୍ଦାବନରେ ବାଲ୍ୟଲୀଳାକୁ ସମବେତ ନୃତ୍ୟ ରୂପରେ ପ୍ରସ୍ତୁତି କରୁଥିଲେ । ଅମ୍ମା ଟକଲୀକୁ ମନ୍ଦିର ଭିତରକୁ ନେଇ ସୁନ୍ଦର ବେଶ ପୋଷାକରେ ସଜାଇ ଶେଷରେ ତା ମୁଣ୍ଡରେ କୃଷ୍ଣ ମକୁଟଟି ପିନ୍ଧାଇ ଦେଲେ । ବର୍ତ୍ତମାନ ସେ ପୁରା ବାଳୁତ ଶ୍ରୀକୃଷ୍ଣ ପରି ଦିଶିବାକୁ ଲାଗିଲା । ତାକୁ ମଝିରେ ରଖି ଅମ୍ମା ପିଲାମାନଙ୍କୁ ତା ଚାରିପଟେ ଘେରି ନାଚିବାକୁ କହିଲେ । ଟକଲୀ ନିଜର ଏତେବଡ ସୌଭାଗ୍ୟରେ ଆନନ୍ଦରେ ପୁଲକିତ ହୋଇ ଉଠିଲା । ତାର ସ୍ୱପ୍ନ ସତ୍ୟ ହୋଇଛି । ସେ ଅମ୍ମାଙ୍କୁ ନମାଗି ମଧ୍ୟ ଅମ୍ମା ତାର ମନର ଇଚ୍ଛା ବୁଝି ପାରି ତାହା ପରିପୂର୍ଣ୍ଣ କରି

ପାରିଥିଲେ । ଭଗବାନ ଭକ୍ତର ନିର୍ମଳ ମନର ମନସ୍କାମନାକୁ ସବୁବେଳେ ପରିପୂର୍ଣ୍ଣ କରନ୍ତି ।

ନିମ୍ନିସେରୀ ଭାର୍ଗବୀ ଆମା, ଭଗବାନ ଶ୍ରୀକୃଷ୍ଣଙ୍କର ଭାରି ଭକ୍ତ ଥିଲେ । ଦିନେ ସେ ରାତିରେ ସ୍ୱପ୍ନ ଦେଖିଲେ ଯେ ପ୍ରଭୁ ତାଙ୍କୁ କହୁଛନ୍ତି "ତୁ ମତେ ଜଳେଇ ଦେଉଛୁ" । ସେ ସ୍ୱପ୍ନର ମାନେ କିଛି ବୁଝି ପାରିଲେ ନାହିଁ । ଏହି ସ୍ୱପ୍ନ ଦର୍ଶନର କିଛି ଦିନ ପରେ ସେ ଅମ୍ମାଙ୍କର ଆଶ୍ରମକୁ ଆସିଲେ । କୃଷ୍ଣଭାବ ଦର୍ଶନ ସମୟରେ ଅମ୍ମା ଭାର୍ଗବୀ ଅମ୍ମାଙ୍କୁ କହିଲେ "ତୁମେ ମତେ ଆଲମାରୀରେ ତାଲା ଦେଇ ରଖିଚ, ତେଣୁ ମୁଁ ଗରମରେ ଜଳି ଯାଉଛି" । ଭାର୍ଗବୀ ମାତାଙ୍କ ମୁଖରୁ ସ୍ୱପ୍ନରେ ଶ୍ରୀକୃଷ୍ଣ କହିଥିବା ଏକାକଥା ଶୁଣିପାରି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ସେ ତାପରେ ଶ୍ରୀକୃଷ୍ଣଙ୍କର ସ୍ୱପ୍ନାଦେଶର ମାନେ ବୁଝି ପାରିଥିଲେ । କିଛି ଦିନ ତଳେ ସେ ଯେତେବେଳେ ତାଙ୍କ ଝିଅ ଘରକୁ ଯାଇଥିଲେ ଶ୍ରୀକୃଷ୍ଣଙ୍କ ଫଟୋକୁ ପୋକ କାଟି ଦେବା ଭୟରେ ଆଲମାରୀ ଭିତରେ ବନ୍ଦ କରି ଦେଇ ଯାଇଥିଲେ । ଝିଅ ଘରୁ ଫେରି ଆସିଲାପରେ ଫଟୋକୁ ଆଲମାରୀରୁ ବାହର କରି ପୂଜା କରିବାକୁ ଭୁଲି ଯାଇଥିଲେ । ଫଟୋଟି ଆଲମାରୀରେ ବହୁତ ଦିନ ଧରି ପଡି ରହିଥିଲା । ଏହାଶୁଣି ନିଜର ଭୁଲ ବୁଝି ପାରି ସେ କାନ୍ଦି ଶ୍ରୀକୃଷ୍ଣଙ୍କ ପାଖରୁ କ୍ଷମା ଭିକ୍ଷା କରିଥିଲେ । ବର୍ତମାନ ଭାର୍ଗବୀଙ୍କର ମନରେ ଦୃଢବିଶ୍ୱାସ, ଶ୍ରୀକୃଷ୍ଣ ଓ ଅମ୍ମାଙ୍କ ଭିତରେ କୌଣସି ତଫାତ୍ ନାହିଁ । ଏ ବିଷୟରେ ତିଳେ ମାତ୍ର ସନ୍ଦେହ ନାହିଁ ।



ଅମ୍ମା ସବୁବେଳେ ସାନ ପିଲାମାନଙ୍କୁ ଭଲ ପାଆନ୍ତି ଓ ପ୍ରାୟ ସେମାନଙ୍କ ସହ ସାନ ପିଲା ପରି ଆନନ୍ଦରେ ଖେଳନ୍ତି । ଶ୍ୟାମା ବୋଲି ଛୋଟ ଝିଅଟିଏ ପାଖରେ ରହୁଥିଲା । ତାର ନିଶ୍ୱାସ ନେବାରେ ଅସୁବିଧା ହେଉଥିଲା । ଥରେ ତାର ଶ୍ୱାସ ଏତେ ଜୋରରେ ହେଲା ଯେ ତାର ବୁଢୀମା ତାକୁ ହସପିଟାଲକୁ ନେଇଗଲେ । ଦୁର୍ଭାଗ୍ୟ ବଶତଃ ଡେରି ହୋଇ ଯାଇଥିଲା । ଡାକ୍ତରମାନେ ଯେତେବେଳେ ତାକୁ ମୃତ ବୋଲି କହିଦେଲେ, ତାର ବୁଢୀମା ଅତି ଦୁଃଖରେ ଭାଙ୍ଗି ପଡିଲେ । ଅସମ୍ଭାଳ ଭାବରେ କାନ୍ଦି, ସେ ଝିଅଟିକୁ ଧରି ସେଠୁ ଦଉଡି ଆସି ମନ୍ଦିର ଭିତରେ ଅମ୍ମାଙ୍କର ଦର୍ଶନ

ଆସନ ଉପରେ ଶୁଆଇ ଦେଲେ । ଅମ୍ମା ସେତେବେଳେ ଜଣେ ଗ୍ରାମବାସୀଙ୍କ ଘରେ ଭଜନ ଗାଉଥିଲେ, ସେ ସାଙ୍ଗେ ସାଙ୍ଗେ ବିଚଳିତ ହୋଇ ହଠାତ୍ ଭଜନ ଗାଇବା ବନ୍ଦ କରିଦେଲେ ଓ ସାଙ୍ଗେ ସାଙ୍ଗେ ମନ୍ଦିରକୁ ଫେରି ଆସିଲେ । ସେଠାରେ ଆସି ବୁଢୀମା ଝିଅଟିକୁ ଆସନ ଉପରେ ଶୁଆଇ ଜୋରରେ କାନ୍ଦୁ ଥିବାର ଦେଖିଲେ । "ଅମ୍ମା !, ଦୟାକରି ଏ ଛୁଆଟିକୁ ବଂଚାଅ" କହି ସେ ଅମ୍ମାଙ୍କୁ ଭିକ୍ଷା ମାଗିଲେ । ଅମ୍ମା ତାପରେ ଚଟାଣରେ ବସି ଝିଅଟିକୁ କୋଳରେ ଧରି ଅନେକ ସମୟ ତପସ୍ୟା କରିବାକୁ ଲାଗିଲେ । କିଛି ସମୟ ପରେ ଛୋଟ ଝିଅଟି ଆଖି ଖୋଲିଲା ଓ ଧୀରେ ଧୀରେ ତାର ଜୀବନ ଫେରି ଆସିବାକୁ ଲାଗିଲା । ବୁଢୀମାର ଆଖିରୁ ଆନନ୍ଦାଶ୍ରୁ ଝର ଝର ହୋଇ ବହିବାକୁ ଲାଗିଲା ଓ ସେ ଅମ୍ମାଙ୍କୁ ଅନ୍ତରରୁ କୃତଜ୍ଞତା ସହ ଆଲିଙ୍ଗନ କରିବାକୁ ଲାଗିଲେ ।

୧୪ ବର୍ଷ ଝିଅ ବିନ୍ଦୁ ଓ ତାର ବାପା, ମା ଅମ୍ମାଙ୍କର ଭାରି ଭକ୍ତ ଥିଲେ । ସେମାନେ ବଲ୍ଲିକାଓ୍ୱ ଠାରୁ ସତୁରୀ ମାଇଲ ଦୂରରେ ଥିବା କାଟୁର ବୋଲି ଗୋଟିଏ ଗ୍ରାମରେ ରହୁଥିଲେ । ଥରେ ଜଣେ ଭକ୍ତ ତାକୁ ବହୁତ ବାଧ୍ୟ କଲାପରେ ସେ ତାର ଅମ୍ମାଙ୍କ ସହ ଅନୁଭୂତି ବିଷୟରେ କହିଥିଲା ।

"ମୁଁ ଯେତେବେଳେ ଅମ୍ମାଙ୍କୁ ଡାକେ ସେ ମୋ ପାଖକୁ ଆସନ୍ତି । ଦିନେ ବାପା, ମା ବାଲ୍ଲିକାଓ୍ୱ ଯାଇଥିଲେ । ମୁଁ ଘରେ ଏକୁଟିଆ ଥିଲି । ସେଦିନ ସନ୍ଧ୍ୟା ବେଳେ ମୁଁ ଯେତେବେଳେ ପୂଜାଘରେ ବସି ପ୍ରାର୍ଥନା କରୁଥିଲି, କାନ୍ଦି କାନ୍ଦି କହୁଥିଲି ମୁଁ ଝିଅ ପିଲାବୋଲି ମୋର କୌଣସି ସ୍ୱାଧୀନତା ନାହିଁ ? ମୁଁ ଯଦି ପୁଅ ପିଲା ହୋଇଥାନ୍ତି, ମୁଁ ମୋ ଅମ୍ମାକୁ ନିଜେ ଦେଖିବାକୁ ଚାଲି ଯାଇଥାନ୍ତି, କାହାର ସାହାଯ୍ୟ ଦରକାର ହୋଇ ନଥାନ୍ତା । ଦେଖିଲା ବେଳକୁ ଅମ୍ମା ମୋ ସାମନାରେ ଆସି ଠିଆ ହୋଇଛନ୍ତି । ମୁଁ ତାଙ୍କୁ ରକ୍ତ ମାଂସର ମଣିଷ ରୂପରେ ଏତେ ପାଖରେ ହଠାତ ଆସି ଠିଆ ହେବା ଦେଖି ସ୍ତମ୍ଭୀଭୂତ ହୋଇଗଲି । ଗୋଟିଏ ମାତ୍ର ଶବ୍ଦ ମୋ ପାଟିରୁ ବାହାରିଲା ନାହିଁ । ଏପରିକି ମୁଁ ମୁଣ୍ଡିଆ ମାରିବାକୁ ଭୁଲିଗଲି । ମୁଁ କିଛି କହିବା ଆଗରୁ ସେ ଉଭେଇ ଯାଇଥିଲେ । ମୁଁ ନିଜକୁ ଭାରି ଭାଗ୍ୟବତୀ ବୋଲି ମନେ କରିଥିଲି । ଯଦିବା ମୋ ବାପା ମା ମତେ ଆଶ୍ରମକୁ ନେବାକୁ ଚାହୁଁ ନଥିଲେ, ପରମ ଦୟାଳୁ ଅମ୍ମା ମତେ ଦର୍ଶନ ଦେବାକୁ ଆସିଥିଲେ ।"

ବିନ୍ଦୁର ମା ତାଙ୍କ ନିଜ ଅନୁଭୂତି ବିଷୟରେ କହିଥିଲେ । ଅନେକ ଥର ମୁଁ ହଠାତ୍ ଘରେ ଅମ୍ମାଙ୍କ ଭାବ ଦର୍ଶନ ସମୟରେ ହେଉଥିବା ମନ୍ଦିରର ସୁଗନ୍ଧ ପାଏ । ମୋର ଥରେ ବହୁତ ଚମତ୍କାର ଅନୁଭୂତି ହୋଇଥିଲା । ଶୁଣିଲେ ହୁଏତ କିଏ ବିଶ୍ୱାସ ନ କରି ପାରନ୍ତି, କିନ୍ତୁ ଏହା ଘଟିଥିବା କଥା ପୁରା ସତ୍ୟ । ମୁଁ ମୋ ନିଜ ଆଖିରେ ଦେଖିଛି । ତାଠୁ ବେଶୀ ପ୍ରମାଣ ଆଉ ବା କଣ ଦେଇ ପାରିବି । ସେଦିନ ଦିନ ବେଳରେ ମୁଁ ବାରଣ୍ଡାରେ ଠିଆ ହୋଇଥିଲି । ଦେଖିଲି ଅପ୍ରତ୍ୟାଶିତ ଭାବରେ ଜଣେ ସ୍ତ୍ରୀ ଲୋକ ଧଳା ଲୁଗା ପିନ୍ଧି ଆମ ଘରର ଫାଟକ ପାଖରେ ପହଂଚୁଛନ୍ତି, ତାଙ୍କର ମୁଣ୍ଡରେ ଧଳା ଲୁଗାର ଓଢଣା ଥିଲା । ମୁଁ ଯେତେବେଳେ ଆହୁରି ଭଲ ଭାବରେ ଅନେଇଲି, ଦେଖିଲି ଯେ ଅମ୍ମା ଆମ ଘରକୁ ଆସୁଛନ୍ତି । ମୋ ଦେହ ରୋମାଂଚିତ ହୋଇ ଗଲା ଓ ମୁଁ ସେଠାରୁ ଘୁଂଚି ପାରିଲି ନାହିଁ । ତାଙ୍କ ସହ ଆଉ କିଏ ନଥିଲେ, ସେ ଏକୁଟିଆ ଆସିଥିଲେ । ମୁଁ ତାଙ୍କୁ ପରିଷ୍କାର ଘରର ଦାଣ୍ଡ ପାଖରେ ଦେଖିଲି । ତାପରେ ସେ ଉଭେଇଗଲେ । ମୁଁ ଚାରିଆଡେ ଖୋଜିବାକୁ ଲାଗିଲି କିନ୍ତୁ ପାଇଲି ନାହିଁ ।"

ଅଳ୍ପକ୍ଷଣ ରହି ସେ କହିଲେ "ବିନ୍ଦୁର ପରୀକ୍ଷା ନେବା ସମୟର ଅନୁଭୂତି ଆହୁରି ଚମତ୍କାର" । ଭକ୍ତ ମାନଙ୍କ ଆଗ୍ରହ ବଢି ଗଲା, ସେମାନେ ବିନ୍ଦୁକୁ ତାର ଅନୁଭୂତି କହିବା ପାଇଁ ଅନୁରୋଧ କଲେ । ବିନ୍ଦୁ କହିଲା "ମୋତେ ସବୁ ଦିନ କେମିଷ୍ଟ୍ରୀ ଓ ଫିଜିକ୍ସ ଭାରି କଷ୍ଟ ଲାଗୁଥିଲା । ମୁଁ ବିଜ୍ଞାନ ପରୀକ୍ଷା ହଲରେ ବସି ଅମ୍ମାଙ୍କୁ ସାହାଯ୍ୟ ପାଇଁ ପ୍ରାର୍ଥନା କଲି । ପର ମୁହୂର୍ତ୍ତରେ ମୁଁ ଅମ୍ମାଙ୍କୁ ମୋ ପାଖରେ ବସିଥିବା ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ଭାବିଲି ବୋଧେ ଏ ସବୁ ମୋ ଆଖିର ଭ୍ରମ । ମୁଁ ପୁଣି ଦେଖିଲି, ଅମ୍ମା ସତରେ ମୋ ପାଖରେ ବସିଛନ୍ତି । ମୋର ପରୀକ୍ଷା ହଲରେ ଆଉ କିଏ ତାଙ୍କୁ ଦେଖି ପାରୁଥିବା ପରି ମନେ ହେଲା ନାହିଁ । ପୁଣି ମତେ ଲାଗିଲା ଏହା ବୋଧେ ମୋ ମନର ଭ୍ରମ । ପର ମୁହୂର୍ତ୍ତରେ ମୋ ମନରେ ବିଶ୍ୱାସ କରାଇବା ପାଇଁ ଅମ୍ମା ମୋ ସହିତ କଥା ହେଲେ ଓ ଉତ୍ସାହିତ କଲେ, ଜଟିଳ ପ୍ରଶ୍ନ ଗୁଡିକର ଉତ୍ତର ବୁଝାଇ ବି ଦେଉଥିଲେ । ଯେତେବେଳେ ଫଳ ବାହାରିଲା ମୁଁ ଉତ୍ତୀର୍ଣ୍ଣ ହେବା ଜାଣି ଆଶ୍ଚର୍ଯ୍ୟ ହୋଇଥିଲି । ଏପରିକି ମୁଁ ମୋ ଆଶାଠାରୁ ବେଶୀ ନମ୍ବର ରଖିଥିଲି । ଆଶ୍ରମକୁ

ଫେରି ଭକ୍ତଟି ଅମ୍ମାଙ୍କ ଆଗରେ ବିନ୍ଦୁ ଓ ତାର ମା ଙ୍କର ଅନୁଭୂତି ବର୍ଣ୍ଣନା କରିଥିଲା । ସେ ଆଶ୍ଚର୍ଯ୍ୟ ହୋଇ ଏପରି ଘଟଣା କଣ କେବେ ସମ୍ଭବ ହୋଇପାରେ ବୋଲି ପଚାରିଥିଲେ । ଅମ୍ମା ହସି କହିଥିଲେ "କିଏ ଜାଣେ ? ହୁଏତ ସେହି ଝିଅର ନିଷ୍ପାପ ସରଳ ବିଶ୍ୱାସ !"



ଭଗବାନଙ୍କ ପାଇଁ କିଛି ଅସମ୍ଭବ ନୁହେଁ । ଭଗବାନଙ୍କ କରୁଣା ଥିଲେ ମୁକ କଥା କହିପାରେ, ବଧୀର ଶୁଣିପାରେ ଓ ପଙ୍ଗୁ ପର୍ବତ ଲଘିଂ ପାରେ । କାୟଂକୁଲମର ହେଡ ମାଷ୍ଟର ଶ୍ରୀ ରମଣ କୁଟୀ ଓ ତାଙ୍କ ସ୍ତ୍ରୀ ଶାରଦାମ୍ମାଙ୍କର ଅମ୍ମାଙ୍କ ପ୍ରତି ଅତୁଟ ବିଶ୍ୱାସ ଥିଲା । ସେମାନଙ୍କର ଅନୁଭୂତିରୁ ଅମ୍ମାଙ୍କର ଅନନ୍ତ ଐଶ୍ୱରୀକ ଶକ୍ତି ବିଦିତ ହୁଏ ।

୧୯୮୦ ମସିହାରେ ରମନକୁଟୀଙ୍କ ଜଣେ ଜ୍ଞାତିଙ୍କର ମନ୍ଦିରରେ ଚୋରୀ ହୋଇଥିଲା । ସେମାନେ ଆସି ଅମ୍ମାଙ୍କ ପାଖରେ ଶରଣ ପଶିଲେ । ଅମ୍ମା କହିଲେ କିଛି ଦିନ ଭିତରେ ସବୁ ଚୋରି ହୋଇଥିବା ଜିନିଷ ଫେରି ପାଇବ । ଅମ୍ମାଙ୍କର କଥା ଅନୁସାରେ ଜିନିଷ ଗୁଡିକ ଫେରି ମିଳିଥିଲା । ଏହି ଘଟଣା ଦେଖି ଉତ୍ସାହିତ ହୋଇ ରମଣକୁଟୀ ଓ ତାଙ୍କ ସ୍ତ୍ରୀ ଅମ୍ମାଙ୍କ ପାଖକୁ ଯାଇ ତାଙ୍କର ମୁକ ବଧୀର ଝିଅ ଲେଖା ପାଇଁ ସାହାଯ୍ୟ ଭିକ୍ଷା କରିବେ ବୋଲି ସ୍ଥିର କଲେ । ଅନେକ ଚିକିତ୍ସା ପରେ ମଧ୍ୟ କିଛି ଫଳ ମିଳି ନଥିଲା । ଅମ୍ମା ସେମାନଙ୍କୁ ସ୍ନେହ ସହ ସାନ୍ତ୍ୱନା ଦେଲେ । ଅମ୍ମାଙ୍କୁ ଦର୍ଶନ କରିବାର ମାସକ ପରେ ଲେଖା "ଆମ୍ମା" ଶବ୍ଦ ଉଚ୍ଚାରଣ କରିବାକୁ ଲାଗିଲା ଏବଂ ଧୀରେ ଧୀରେ ତାର କଥା କହିବା ଓ ଶୁଣିବା ଶକ୍ତି ବଢିବାକୁ ଲାଗିଲା । ତାର ଅବସ୍ଥାର ପରିବର୍ତ୍ତନ ଦେଖି ତାର ବାପା ମା ଅମ୍ମାଙ୍କର ପରମ ଭକ୍ତ ହୋଇ ପଡିଥିଲେ ।

ଅମ୍ମାଙ୍କ ପାଖକୁ ଆସିଲା ପରେ ରମନକୁଟୀ ଓ ତାଙ୍କ ସ୍ତ୍ରୀଙ୍କର ଜୀବନରେ ଆହୁରି ଅନେକ ଅଲୌକିକ ଘଟଣା ସବୁ ଘଟିଥିଲା । ୧୯୮୨ ରେ ଅମ୍ମା ଯେତେବେଳେ କନ୍ୟାକୁମାରୀ ଯାତ୍ରା କରିଥିଲେ, ସେତେବେଳେ ସେମାନଙ୍କୁ ତାଙ୍କ ସାଙ୍ଗରେ ଯିବାକୁ କହିଥିଲେ । କୃଷ୍ଣଭାବ ସମୟରେ ରମନକୁଟୀ ସେତେବେଳ ତାଙ୍କ ପିଲା ମାନଙ୍କର ଓ ଘରର ଜଗାରଖା କରିବା ପାଇଁ ଘରେ କେହି ନଥିବେ ଭାବି ଚିନ୍ତିତ

ବୋଲି ଅମ୍ମାକୁ ଜଣାଇଥିଲେ । ଅମ୍ମା ଅଭୟ ଦେଇ କହିଥିଲେ "ଚିନ୍ତା କର ନାହିଁ, ମୁଁ ସବୁ କଥା ବୁଝି ନେବି । ଖାଲି ମତେ ସବୁଦିନ ପୂଜାଘରେ ଦୁଧ କଦଳୀ ଭୋଗ ଦେବ" । ଘର ଛାଡିବା ଆଗରୁ ସେମାନେ ବାଡିରୁ ଗୋଟିଏ କଂଚା କଦଳୀ କାନ୍ଧି କାଟି ତା ଚାରିପଟେ ବସ୍ତା ଗୁଡାଇ ଧୀରେ ଧୀରେ ପାଚିବା ପାଇଁ ଭଣ୍ଡାର ଘର ଛାତରୁ ଝୁଲାଇ ରଖିଲେ ।

ତୀର୍ଥ ଯାତ୍ରା ପରେ ପରେ ସମସ୍ତେ ଆଶ୍ରମକୁ ଫେରି ଆସିଲେ । ସେଦିନ ଭାବ ଦର୍ଶନ ଦିନ ଥିଲା । ସ୍ୱାମୀ ସ୍ତ୍ରୀ ଦୁଇଜଣ ଯାକ ଏକାଥରେ ଦର୍ଶନ ସାରି ଘରକୁ ଫେରିବେ ବୋଲି ସ୍ଥିର କଲେ । ଯେତେବେଳେ ରମନକୁଟୀ କୃଷ୍ଣଭାବ ସମୟରେ ଅମ୍ମାଙ୍କ ପାଖକୁ ଗଲେ, ସେ ହସି ହସି କହିଲେ "ମୁଁ ଗୋଟି ଗୋଟି କରି ସବୁ କଦଳୀ ଚାଖିଛି, ତେଣୁ ପିଲାଙ୍କୁ ମାଡ ଦବ ନାହିଁ । ମୁଁ କିଛିବି ଖାଇନି ଖାଲି ଟିକେ ଟିକେ ଚାଖି ଦେଇଛି" । ଅମ୍ମାଙ୍କ କଥା ବୁଝି ନପାରି ରମନକୁଟୀ କଦଳୀ କାନ୍ଧିକୁ ପାଚିବା ପାଇଁ ଟାଙ୍ଗି ଆସିଥିବା କଥା ଭାବି ଘରକୁ ଫେରିଲେ । ଲୁଚାଇ ରଖିଥିବା ଜାଗାରୁ ଚାବି ନେଇ ଭଣ୍ଡାର ଘର ଖୋଲିଲେ । ଘର ଖୋଲି ଗୋଟିଏ ଆଶ୍ଚର୍ଯ୍ୟ ଜନକ ଘଟଣା ଦେଖିଲେ । କଦଳୀ କାନ୍ଧିକୁ ଘୋଡାଇଥିବା ଅଖାଟି ତଳେ ପଡିଥିଲା । ଆଉ ତା ଚାରିପଟେ କଦଳୀ ସବୁ ଗୋଟି ଗୋଟି ଗୋଲ ହୋଇ ପଡିଥିଲା । ଏହା କିପରି ହେଲା ? ସେ ତ କଦଳୀ କାନ୍ଧିକୁ ଜୋରରେ ଦଉଡି ଦେଇ ବାନ୍ଧିଥିଲେ ! ସେ ଭାବିଲେ ତାଙ୍କ ପିଲାମାନେ କିଛି ଗୋଟେ ଦୁଷ୍ଟାମୀ କରିଛନ୍ତି, ଏହା ଭାବି ସେମାନଙ୍କୁ ଡାକି ପ୍ରଶ୍ନ କଲେ । ସେମାନଙ୍କର କଥା ବିଶ୍ୱାସ ନକରି ସେମାନଙ୍କର ହାତକୁ ପଛଆଡେ ବାନ୍ଧି ପିଟିଲେ । ପରବର୍ତୀ ଦର୍ଶନ ସମୟରେ ଯେତେବେଳେ ରମନକୁଟୀ ମନ୍ଦିର ଭିତରେ ପଶିଲେ, ଅମ୍ମା ସେତେବେଳେ କୃଷ୍ଣଭାବରେ ଠିଆ ହୋଇଥିଲେ । ତାଙ୍କର ମନେ ହେଲା ଯେପରି ଅମ୍ମା ଙ୍କର ହାତ ଦୁଇଟି ପଛରେ ବନ୍ଧୀ ହୋଇଛି ଓ ଅମ୍ମା ତାଙ୍କୁ କହିଲେ "ହଉ ଏଥର ମତେ ମାଡ ମାର, ମୁଁ ସେଥିପାଇଁ ପ୍ରସ୍ତୁତ ଅଛି । ମୁଁ କାନ୍ଧିରୁ କଦଳୀ ସବୁ ଛିଣ୍ଡେଇ ଥିଲି, କାରଣ ପିଲାମାନେ ସବୁଦିନ ମୋତେ ଦୁଧ କଦଳୀ ଭୋଗ ଦେଲେ ନାହିଁ" । ଠିକ୍ ରମନକୁଟୀଙ୍କର ପିଲାମାନେ ମାଡ ଖାଇଲା ବେଳେ ଯେପରି ଠିଆ ହୋଇଥିଲେ, ଅମ୍ମା ଠିକ୍ ସେହିପରି ଭଙ୍ଗୀରେ ଠିଆ ହୋଇଥିଲେ । ସେ ଏବଂ ତାଙ୍କର ସ୍ତ୍ରୀ ଅମ୍ମାଙ୍କୁ ଗୁରୁ, ଭଗବାନ ଓ ମାତା ରୂପରେ ପାଇଥିବା ଯୋଗୁ

ନିଜକୁ ଭାଗ୍ୟବାନ ମନେ କରି ଆନନ୍ଦାଶ୍ରୁ ଝରାଇବାକୁ ଲାଗିଲେ ।



ତାମିଲନାଡୁର ମଦୁରାଇ ସହରରେ ରାମମୂର୍ତ୍ତୀ ବୋଲି ଜଣେ ଟ୍ରକ ଡ୍ରାଇଭର ଥିଲେ । ମଝିରେ ମଝିରେ ସେ କାମରେ କେରଳର ବିଭିନ୍ନ ତୀର୍ଥ ସ୍ଥାନକୁ ଯାଉଥିଲେ । ୧୯୭୫ ମସିହାରେ ଅମ୍ମାଙ୍କର ବିଷୟରେ ଶୁଣି ସେ ଆଶ୍ରମକୁ ଆସିଲେ । ନଅ ବର୍ଷ ଆଗରୁ ତାଙ୍କର ପାଂଚ ବର୍ଷର ଝିଅ ହଠାତ୍ କୁଆଡେ ଉଭାନ୍ ହୋଇ ଯାଇଥିଲା । ତାକୁ ଖୋଜି ପାଇବା ପାଇଁ ସମସ୍ତ ଚେଷ୍ଟା ବୃଥା ହୋଇଥିଲା । ସେ ଅମ୍ମାଙ୍କୁ ଗଭୀର ଦୁଃଖର ସହ ନିଜର ଦୁଃଖ କାହାଣୀ କହି ଦୀର୍ଘନିଶ୍ୱାସ ମାରିଥିଲେ । ଅମ୍ମା କହିଲେ "ଚିନ୍ତାକର ନାହିଁ, ତମର ଝିଅ ତମକୁ ଫେରି ମିଳିବ" । ସେ ଅମ୍ମାଙ୍କର କଥା ବିଶ୍ୱାସ କରିଥିଲେ ଓ ଯେତେବେଳେ ସୁଯୋଗ ମିଳେ ଅମ୍ମାଙ୍କ ଦର୍ଶନ କରିବାକୁ କେବେ ବି ଭୁଲୁ ନଥିଲେ । ଦିନେ ଅମ୍ମା ରାମମୂର୍ତ୍ତୀ ଙ୍କୁ କିଛି ଫୁଲ ଦେଇ କହିଲେ "ମାସକ ଭିତରେ ତୁମେ ଝିଅକୁ ଫେରି ପାଇବ" । ଦିନେ ରାମମୂର୍ତ୍ତୀ ମାଡ୍ରାସ୍‌ର ବଜାରରେ ଟ୍ରକକୁ ଠିଆ କଲେ । ସେ ଦେଖିଲେ କିଛି ଲୋକ, ଗୋଟିଏ ପଇସା ହଜେଇ କାନ୍ଦୁଥିବା ଚଉଦ ବର୍ଷର ଝିଅର ଚାରିପଟେ ଘେରି ରହିଛନ୍ତି । ସେ କିଛି ଜିନିଷ କିଣିବ ବୋଲି ସେଇ ପଇସା ଅନେକ ଦିନ ଧରି ସଂଚୟ କରି ରଖିଥିଲା । କିଛି ଲୋକ ତାଙ୍କୁ ସାନ୍ତ୍ୱନା ଦେଇ ତାକୁ କିଛି ପଇସା ଦେବେ ବୋଲି କହୁଥିଲେ, କିନ୍ତୁ ସେ ସେପରି ପଇସା ନେବ ନାହିଁ ବୋଲି କହୁଥାଏ ଏବଂ କାନ୍ଦି ଚାଲିଥାଏ ।

ରାମମୂର୍ତ୍ତୀ ଅତି ସ୍ନେହରେ ଝିଅଟିକୁ ତା ନାଁ ପଚାରିଲେ । ତା ନାଁ ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କର ହଜିଥିବା ଝିଅର ମଧ୍ୟ ସେଇ ଏକା ନାଁ ଥିଲା । ସେ ଝିଅର ମୁହଁକୁ ଅତି ନିବିଷ୍ଟ ଭାବରେ ଦେଖି ଅତି ଆନନ୍ଦିତ ହୋଇଗଲେ ଯେ ସେ ହିଁ ତାଙ୍କର ହଜିଥିବା ଝିଅ । ସେ କହିଲେ "ଝିଅ, ମୁଁ ତତେ ତୋ ଘରକୁ ନେଇଯିବି । ପଇସା ବିଷୟରେ ଚିନ୍ତା କର ନାହିଁ । ମୁଁ ତୋର ପରିବାରକୁ ପଇସା ହଜିବା କଥା କହିଦେବି !" ଝିଅଟି ରାଜି ହେଲା, ତେଣୁ ରାମମୂର୍ତ୍ତୀ ତାକୁ ତା ଘରକୁ ଗାଡିରେ ନେଇ ଆସିଲେ । ସେ ଘରଟି ଜଣେ ଅତି ବଡ ଜମିଦାରଙ୍କର ଥିଲା । ଅତି ଚିନ୍ତା ଓ ଆଶଙ୍କା ସହ ରାମମୂର୍ତ୍ତୀ ଜମିଦାରଙ୍କୁ ତାଙ୍କର କାହାଣୀ ଶୁଣାଇଲେ । ଏହା ଶୁଣି ଜମିଦାର

ଉତର ଦେଲେ "ଦଶ ବର୍ଷ ତଳେ ମୁଁ ପାଖ ଆଖ ଭ୍ରମଣରୁ ଫେରିଲାବେଳେ ଗୋଟିଏ ଝିଅକୁ ରାସ୍ତା କଡରେ କାନ୍ଦୁଥିବା ଦେଖିଲି, ମୁଁ ତାକୁ ଯେତେ ପଚାରିଲି ସେ କେଉଁଠୁ ଆସିଛି, କିପରି ହଜିଛି, ସେ କୌଣସି ଉତ୍ତର ଦେଲା ନାହିଁ । ସେ ଖାଲି ତାର ନାଁ କହିଲା । ସେଇ ଝିଅଟିକି ଏକୁଟିଆ ଦେଖି ମୁଁ ତାର ଦୁଃଖ ସହି ପାରିଲିନି । ଆମର ବି କୌଣସି ପିଲାଛୁଆ ନଥିଲେ, ମୁଁ ତାକୁ ଘରକୁ ଆଣି ନିଜ ପିଲା ପରି ବଢାଇଲି । ଆମେ ତାକୁ ମଝିରେ ମଝିରେ ବଜାରକୁ ପଠାଉ । ସେହି ବଜାରରେ ହିଁ ତମେ ତାକୁ ପାଇଲ" । ରାମମୂର୍ତ୍ତୀର ମନର ଦୁଃଖ ବୁଝିପାରି ଜମିଦାର ଝିଅକୁ ତାଙ୍କ ସାଙ୍ଗରେ ଯିବା ପାଇଁ ଅନୁମତି ଦେଲେ । ଯଦିଓ ସେ ତାକୁ ହରାଇବାର ଦୁଃଖରେ ଦୁଃଖୀ ହୋଇ ପଡିଥିଲେ, ରାମମୂର୍ତ୍ତୀ ଆନନ୍ଦରେ ଗଦ୍ ଗଦ୍ ହୋଇଯାଇଥିଲେ । ଅମ୍ମାଙ୍କର କଥା ସତ୍ୟ ହେଲା । ସେ ଠିକ୍ ମାସ ପୁରିବା ଆଗରୁ ତାଙ୍କ ଝିଅକୁ ଫେରି ପାଇଲେ । ସେହି ଅପୂର୍ବ ଆଶୀର୍ବାଦ ପାଇବା ଦିନଠାରୁ ଅମ୍ମାଙ୍କ ପ୍ରତି ତାଙ୍କର ବିଶ୍ୱାସ ଦୃଢ ହୋଇଥିଲା ।

ଅମ୍ମାଙ୍କର ଆଶ୍ରମ ଠାରୁ ପଇଁତିରିଶ କିଲୋମିଟର ଦୂର କ୍ୱିଲନ୍‌ରେ ରୁକ୍ମିଣୀ ଆମ୍ମା ନାମରେ ଜଣେ ସ୍ତ୍ରୀ ଲୋକ ରହୁଥିଲେ । ତାଙ୍କର ଦେହର ଡାହାଣ ଭାଗ ରକ୍ତ ଚାପ ରୋଗ ଯୋଗୁଁ ପୁରା ପକ୍ଷାଘାତ ହୋଇ ଯାଇଥିଲା ଏବଂ ସେ ୧୯୭୮ ମସିହାରୁ ଶଯ୍ୟାଶାୟୀ ହୋଇ ପଡିଥିଲେ । ଗତ ତିନିବର୍ଷ ଧରି ସବୁ ରକମର ଡାକ୍ତରୀ ଓ ଆୟୁର୍ବେଦ ଚିକିତ୍ସାରେ ଅନେକ ପଇସା ଖର୍ଚ୍ଚ କରି କୌଣସି ଫଳ ହେଉନଥିଲା । ଶେଷରେ ସେ, ତାଙ୍କର ସ୍ୱାମୀ ଅଚ୍ୟୁତନ ପିଲାଇ ଏବଂ ପୁରା ପରିବାର ଆଶାହୀନ ହୋଇ ପଡିଥିଲେ ।

ଶେଷରେ ସେମାନେ ଅମ୍ମା ଆରୋଗ୍ୟ କରି ଦେଉଥିବାର କଥା ଶୁଣି ରୁକ୍ମିଣୀ ଅମ୍ମାଙ୍କୁ ଆଶ୍ରମକୁ ନେବା ପାଇଁ ଠିକ୍ କଲେ । ତାଙ୍କୁ ଗାଡିରେ ଆଶ୍ରମକୁ ଆଣିଲାପରେ ଦୁଇଜଣ ଟାଣୁଆ ଲୋକ ତାଙ୍କୁ ଚଉକିରେ ବସାଇ ଆଶ୍ରମ ଭିତରକୁ ନେଲେ । ଅମ୍ମା ତାଙ୍କୁ କିଛି ବିଭୂତି ଓ ପ୍ରସାଦ ଦେଲେ, ଏବଂ ତାଙ୍କ ରୋଗ ବିଷୟରେ କିଛି ନ କହି ତାଙ୍କୁ ଆଶୀର୍ବାଦ କରି ଘରକୁ ଫେରାଇ ଦେଲେ । ସ୍ୱାମୀ, ସ୍ତ୍ରୀ ଦୁଃଖରେ ତାଙ୍କର ଯାତ୍ରା ବ୍ୟର୍ଥ ହେଲା ଭାବି ନିରାଶହୋଇ ଘରକୁ ଫେରି ଆସିଲେ । ଗାଡି ଆସି ଘର

ଠାରୁ କିଛି ଦୂରରେ ରହିଲା । ରୁକ୍ମିଣୀଆମ୍ମାଙ୍କୁ ଆଗପରି ଟେକି ଦୁଆର ଯାଏ ଅଣା ହେଲା କିନ୍ତୁ ହଠାତ୍ ଗୋଟିଏ ଅସମ୍ଭବ ଘଟଣା ଘଟିଲା ଯାହାକି ସମସ୍ତ ପରିବାରକୁ ସ୍ତମ୍ଭୀଭୂତ କରିଦେଲା । ରୁକ୍ମିଣୀ ଆମ୍ମା ଠିଆ ହୋଇଗଲେ ଓ ତାଙ୍କୁ ସାହାଯ୍ୟ କରୁଥିବା ଲୋକମାନଙ୍କୁ ଠେଲିଦେଇ ସେ ଘର ଭିତରକୁ ନିଜେ ଚାଲି ଚାଲି ଆସିଲେ । ତାଙ୍କର ସ୍ୱାମୀ ଓ ପରିବାର ବର୍ଗ ନିଜ ଆଖିକୁ ବିଶ୍ୱାସ କରି ପାରୁନଥିଲେ । ସେମାନଙ୍କ ଆନନ୍ଦର ସୀମା ରହିଲାନାହିଁ । ସେମାନେ ସମସ୍ତେ ଅମ୍ମାଙ୍କର ଭକ୍ତ ହୋଇଗଲେ । ରୁକ୍ମିଣୀ ଆମ୍ମାଙ୍କର ଧୀରେ ଧୀରେ ସ୍ୱାସ୍ଥ୍ୟର ଉନ୍ନତି ହେବାକୁ ଲାଗିଲା । ବର୍ତ୍ତମାନ ତାଙ୍କୁ ଦେଖିଲେ ସେ ଯେ ଦିନେ ପକ୍ଷାଘାତ ରୋଗରେ ଶଯ୍ୟାଶାୟୀ ଥିଲେ ଏକଥା ବିଶ୍ୱାସ କରି ହୁଏ ନାହିଁ ।



ନୀଳାମ୍ବର ବୋଲି ଜଣେ ଅତି ଦୟାଳୁ ବ୍ୟକ୍ତି ଅମ୍ମାଙ୍କର ପରମ ଭକ୍ତ ଥିଲେ । ସେ ଅମ୍ମାଙ୍କ ଆଶ୍ରମ ଠାରୁ ଚାରି କିଲୋମିଟର ଦୂରରେ ବଲ୍ଲିକାଓ୍ୱ ଗ୍ରାମରେ ରହନ୍ତି । ଦର୍ଶନ ଦିନରେ ସେ ଆଶ୍ରମକୁ ବାସନା ଫୁଲର ମାଳ ଅମ୍ମାଙ୍କ ପାଇଁ ନେଇ ଆସନ୍ତି । ଯଦିବା ତାଙ୍କର ଅମ୍ମାଙ୍କ ପ୍ରତି ପ୍ରଗାଢ ଭକ୍ତି ଥିଲା, ତାଙ୍କ ସ୍ତ୍ରୀ ଏହାର ବିରୋଧୀ ଥିଲେ । ତାଙ୍କ ସ୍ୱାମୀ ଆଶ୍ରମକୁ ଆସୁଥିବା ଯୋଗୁ ସେ ତାଙ୍କୁ ଭୀଷଣ ଗାଳି ଦେଉଥିଲେ ।

୧୯୭୫ ମସିହାରେ ନୀଳାମ୍ବର କିଛି ଲୋକଙ୍କ ସହ ଜମି ହଳ କରୁଥିଲେ । ସେ ସେମାନଙ୍କୁ ତାଙ୍କ ଦୁଃଖୀ ଦରିଦ୍ର ଓ ନିଅଂଟିଆ ଜୀବନ ବିଷୟରେ କହୁଥିଲେ, "ଆଜି ମୋ ପାଖରେ ଚାଉଳ କିଣିବାକୁ ପଇସାଟିଏ ନାହିଁ" । ତାହା ଶୁଣି ଅନ୍ୟ ଚାଷୀ ମାନେ ତାଙ୍କୁ ଥଟ୍ଟା କରି କହିଲେ "ସେ ବଲ୍ଲିକାଓ୍ୱ ଗାଁର ଝିଅ (ଅମ୍ମା) ତତେ ଟଙ୍କା ଦେବ । ତୁ ତା'ଠୁ ପାଇବା ଯାଏ ଅପେକ୍ଷା କରିଥା" । ସମସ୍ତେ ନୀଳାମ୍ବର ମୁହଁକୁ ଅନେଇ ଠୋ ଠୋ ହସିଲେ । ନୀଳାମ୍ବର କିଛି ନକହି ଚୁପ୍ ରହିଲେ ।

କିଛି ସମୟ ପରେ ଗୋଟିଏ ଛୋଟ ଝିଅ ନୀଳାମ୍ବର ଆଡକୁ ଚାଲି ଚାଲି ଆସିଲା । ତାଙ୍କ ମୁହଁକୁ ହସିହସି ଗୋଟିଏ କୋଡିଏ ଟଙ୍କାର ନୋଟ୍ ବଢାଇ ଦେଲା । କିଛି ନଭାବି ନୀଳାମ୍ବର ଟଙ୍କା ନେଲେ ଓ ଝିଅଟି ତାଙ୍କୁ ଜାଣିଲା ପରି "ହଉ ଦେଖା

ହେବ" ଖାଲି ଏତିକି କହି ଚାଲିଗଲା । ଅନ୍ୟ ମୁଲିଆ ମାନେ ସେ ଝିଅଟି କାହିଁକି ଟଙ୍କା ଆଣିଲା ଭାବିବାକୁ ଲାଗିଲେ । କେତେଜଣ ଭାବିଲେ ବୋଧହୁଏ ସେ କିଛି ଧାର ଶୁଝିଲା, ଆଉ କେତେଜଣ ଭାବିଲେ ବୋଧେ କିଛି ଜିନିଷ ବନ୍ଧା ପକେଇ ଟଙ୍କା ନେଇ ଆସିଥିଲା । ତାପରେ ଆଉ ଗୋଟେ କଥା ହେଲା । ସେ ଝିଅକୁ ଆଗରୁ କେହି ଦେଖି ନଥିଲେ । ଜଣେ ମୁଲିଆ କୌତୁହଳ ବଶତଃ ପଚାରିଲା "ସେ ଝିଅଟା କିଏ ?"

ନୀଳାମ୍ବର କଣ କହିବେ ଜାଣି ପାରିଲେ ନାହିଁ । ସେ ଅବାକ୍ ହୋଇ ସେ ଝିଅ କିଏ ଭାବି ଭାବି ଗୋଟିଏ ହାତରେ ଟଙ୍କା ଧରି ମୂର୍ତ୍ତି ପରି ଠିଆ ହୋଇ ରହିଲେ । ମୂଲିଆ ମାନଙ୍କର ପ୍ରଶ୍ନ ଶୁଣି, ନୀଳାମ୍ବର ସ୍ୱପ୍ନାବେଶରେ ଥିଲା ପରି ଉତ୍ତର ଦେଲେ "ମୁଁ ବି ଭାବୁଛି ସେ ଝିଅଟି କିଏ" । ସେ ଝିଅଟି ସେତେବେଳକୁ ଯାଇ ସାରିଥିଲା । ତାର ପରିଚୟ ନୀଳାମ୍ବର ଓ ତାଙ୍କର ବନ୍ଧୁ ମାନଙ୍କ ପାଇଁ ରହସ୍ୟମୟ ହୋଇ ରହିଲା । ତା ପରଦିନ ଯେତେବେଳେ ନୀଳାମ୍ବର ଅମ୍ମାଙ୍କର ଆଶ୍ରମକୁ ଆସିଲେ, ଅମ୍ମା ସ୍ନେହ ସହ ପଚାରିଲେ "କାଲି ମା ଠାକୁରାଣୀ ତମକୁ କୋଡିଏ ଟଙ୍କାର ନୋଟ ଦେଇଥିଲେ କି ? ମୋ ପୁଅ ! କାଲି ଅମ୍ମା ନିଜେ ଆସି ତମକୁ ଟଙ୍କା ଦେଇଥିଲା" । ନୀଳାମ୍ବରଙ୍କର ହୃଦୟ ଆନନ୍ଦରେ ଭରି ଉଠିଲା, ସେ ଅମ୍ମାଙ୍କର ପାଦ ଦୁଇଟିକୁ ଜାବୁଡି ଧରି ପିଲାଟିଏ ପରି କାନ୍ଦିବାକୁ ଲାଗିଲେ ।



ଫ୍ରାନ୍ସିସ୍ ଡାନିଏଲ ଜଣେ ସହକାରୀ ରେଳଗାଡି ଡ୍ରାଇଭର, ଦକ୍ଷିଣ ଭାରତୀୟ ରେଲ୍ ରୋଡ ପାଇଁ କ୍ୱିଲନ୍‌ରେ କାମ କରୁଥାନ୍ତି । ସେ ଅମ୍ମାଙ୍କୁ ଭେଟିଲା ପରେ ତାଙ୍କର ଅଦ୍ଭୁତ ଅନୁଭୂତି ବିଷୟରେ କହନ୍ତି । "ମାଆ ଅମୃତାନନ୍ଦମୟୀଙ୍କୁ ଭେଟିବା ଆଗରୁ ମୁଁ ପୁରା ନାସ୍ତିକ ଥିଲି । ଅନେକ କୁକର୍ମରେ ଲିପ୍ତ ରହି ବହୁତ ନୀଚସ୍ତରର ଜୀବନ ଯାପନ କରୁଥିଲି । ରେଲ୍ ୟୁନିୟନର ରାଜନୀତିରେ ସଂପୃକ୍ତ ହୋଇ ମୁଁ ସରକାରଙ୍କର ବିରୁଦ୍ଧରେ ଅନେକ ହରତାଳରେ ଭାଗ ନେଇଥିଲି । ଏହାଦ୍ୱାରା ମୋର ଶତ୍ରୁ ବହୁତ ହୋଇ ଯାଇଥିଲେ । ସେମାନେ ବିଭିନ୍ନ ଅବୈଧ କାର୍ଯ୍ୟରେ ସଂପୃକ୍ତ ବୋଲି ଅଭିଯୋଗ କରି ମୋ ନାଁରେ ଜାଲ ପ୍ରମାଣ ଆଣି ମୋତେ ଫସାଇବାକୁ ଚେଷ୍ଟା କରିଥିଲେ । ସେମାନଙ୍କର ପଦବୀ ଓ ରାଜତ୍ୱ କରୁଥିବା ଦଳର ପ୍ରତିପତ୍ତି

ଯୋଗୁ ମୋତେ ୧୯୭୮ ମସିହାରେ ଚାକିରିରୁ ବାହାର କରି ଦିଆଗଲା । "ତା ପରେ ପରେ ମୋର ଖୁବ୍ ଶୀଘ୍ର ଅବନତି ହେବାକୁ ଲାଗିଲା । ମୋର ଚାକିରୀ ଚାଲିଗଲା ଓ ଚାରିଆଡୁ ସବୁ ରକମର ଦୁର୍ଦ୍ଦଶା ଘେରି ଆସିଲା । ମୁଁ ସବୁ ଆଶା ହରାଇଲା ବେଳକୁ ଅମ୍ମାଙ୍କ ବିଷୟରେ ଜଣେ ରେଳ କର୍ମଚାରୀଙ୍କ ପାଖରୁ ଶୁଣିବାକୁ ପାଇଲି । ସେମାନଙ୍କର ଅନେକ ବାଧ ବାଧକତାରେ ମୁଁ ଅମ୍ମାଙ୍କୁ ତାଙ୍କ ବଲ୍ଲିକାଓ୍ୱର ଆଶ୍ରମରେ ଦେଖା କରିବାକୁ ଆସିଲି । ଅମ୍ମାଙ୍କର ପ୍ରଭାମୟ ମୂର୍ତ୍ତି ଦେଖୁ ଦେଖୁ ମୁଁ ତାଙ୍କ ପାଦ ତଳେ ପଡି କାନ୍ଦିବାକୁ ଲାଗିଲି "ହେ ମା ! ମତେ ରକ୍ଷାକର ଓ ଦୟାକରି ଶରଣ ଦିଅ !" ଅତି ସ୍ନେହ ସହ ଅମ୍ମା କହିଲେ "ପୁଅ, ଚିନ୍ତା କର ନାହିଁ, ତୋ ବିରୁଦ୍ଧରେ ଯେତେ ମିଛ ପ୍ରମାଣ ଅଛି ସବୁ ଜଳି ଭସ୍ମ ହୋଇଯିବ ।"

"ଅମ୍ମାଙ୍କର କଥାରେ ପୁରା ବିଶ୍ୱାସ କରି, ମୁଁ ଶାନ୍ତିରେ ଘରେ ବସିଛି । ମୋ କାମ ଫେରି ପାଇବାକୁ ଆଉ କୌଣସି ଚେଷ୍ଟା କରି ନାହିଁ । ମୁଁ ଦେଢ ବର୍ଷ ଯାଏ ଅମ୍ମାଙ୍କୁ ଦର୍ଶନ କରିବାକୁ ମଝିରେ ମଝିରେ ଯାଉଥିଲି । ଦିନେ ସକାଳେ ଖବରକାଗଜରେ ମାଡ୍ରାସ ଆଡକୁ ଯାଉଥିବା ଗୋଟିଏ ଟ୍ରେନ ଦୁର୍ଘଟଣା ଖବର ବାହାରିଲା, ଟ୍ରେନରେ ନିଆଁ ଲାଗି ଅନେକ କିଛି ଜିନିଷ ନଷ୍ଟ ହୋଇ ଯାଇଥିଲା ଏବଂ କିଛି ଯାତ୍ରୀ ମଧ୍ୟ ମରି ଯାଇଥିଲେ । ମୁଁ ଖବର କାଗଜ ପଢିଲା ବେଳେ ଜାଣିନଥିଲି ଯେ ଅମ୍ମା ମୋ ପ୍ରତି ଆଶୀର୍ବାଦ ଦେଖାଇଛନ୍ତି ବୋଲି । "ପରେ ସେ ରେଳ ଦୁର୍ଘଟଣାର ବିସ୍ତୃତ ବିବରଣୀ ପାଇଲି । ସେହି ରେଳରେ ହିଁ ଜଣେ ସରକାରୀ କର୍ମଚାରୀ ମୋ ବିରୁଦ୍ଧରେ ସବୁ କାଗଜ ପତ୍ର ନେଇ ଯାଉଥିଲେ । ସେହି ଦୁର୍ଘଟଣାରେ ସବୁ ମିଥ୍ୟା ପ୍ରମାଣ ମୂଳକ ଜାଲ କାଗଜ ସବୁ ନଷ୍ଟ ହୋଇ ଯାଇଥିଲା । ମୋ ବିରୁଦ୍ଧରେ ମକଦ୍ଦମାକୁ ବରଖାସ୍ତ କରି ଦିଆଗଲା ଓ ମୋତେ ମୋର ଚାକିରୀ ଫେରି ମିଳିଲା । ଏହି ଘଟଣା ମୋ ଜୀବନକୁ ପୁରା ପରିବର୍ତ୍ତନ କରିଦେଲା । ମୋର ଭଗବାନଙ୍କର ଅପରିସୀମ ଶକ୍ତି ପ୍ରତି ପ୍ରବଳ ଭକ୍ତି ଆସିଲା ।"



## କୁଷ୍ଠ ରୋଗୀ ଦତ୍ତାନ

ଅପରିସୀମ କରୁଣାର ଅଧିକାରୀ ହିଁ ଭଗବାନ । ସେ କାହାକୁ ପରିତ୍ୟାଗ କରନ୍ତି ନାହିଁ । ତାଙ୍କର ହୃଦୟ ଏହି ସୀମାହୀନ ଆକାଶ ପରି ଯେଉଁଥିରେ କିଏ ବିଶ୍ୱର ସମସ୍ତ ଜୀବ ଜଗତ ଠୁଳ ହୋଇ ରହିଛନ୍ତି । ତାଙ୍କର ଅନବରତ ଝରୁଥିବା ସ୍ନେହ ଓ କରୁଣା ବାରି ଜୀବ ଜଗତର ସବୁ ଅଣୁ ପରମାଣୁକୁ ଆବୋରି ରଖିଛି । ଅତୀତ ଓ ବର୍ତ୍ତମାନର ସମସ୍ତ ମହାପୁରୁଷ ଓ ମୁନୀମାନେ ଐଶ୍ୱରୀକ ପ୍ରେମ ଓ କରୁଣାର ପ୍ରତୀକ । ଥରେ ମାତା ଅମୃତାନନ୍ଦମୟୀଙ୍କ ସହ ସାକ୍ଷାତ କଲେ ସବୁକିଛିକୁ ପରିବେଷ୍ଟନ ଓ ପରିପୂର୍ଣ୍ଣ କରି ରଖିଥିବା ଭଗବତ୍ ପ୍ରେମର ଅନୁଭୂତି ହୋଇଥାଏ । ଏହି ପରନ୍ତୁ କଥାଟି ଅସୀମ ପ୍ରେମ ଓ ଦୟାର ଜ୍ୱଳନ୍ତ ଉଦାହରଣ ।

ଦତ୍ତାନ କେରଳର କାୟଂକୁଲମ ପାଖ ପେରୁମ୍ପାଲୀ ରେ ଜନ୍ମ ହୋଇ ବଡ ହୋଇଥିଲା । ଅତି କମ୍ ବୟସରେ ସେ ଭୟଙ୍କର କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇଥିଲା । ତାକୁ ତାର ନିଜ ବାପା ମା ଓ ବନ୍ଧୁ ବାନ୍ଧବ ମାନେ ଘରୁ ତଡି ଦେଲେ । କିଛି ରୋଜଗାରର ପନ୍ଥା ନପାଇ ସେ ଭିକାରୀ ହେଲା । ସେ ଦିନ ରାତି ଗୋଟିଏ ମନ୍ଦିରରେ ଭିକ ମାଗି କଟାଉଥିଲା । ରୋଗ ଧୀରେ ଧୀରେ ବଢି ତାର ସାରା ଦେହର ଘାଆ ବିଷାକ୍ତ ହୋଇ ପୂଜ ବାହାରିବାକୁ ଲାଗିଲା । ଦତ୍ତାନ କହିଲା "ମୋର ଆଖିକୁ ପ୍ରାୟ ଦିଶୁ ନଥିଲା । ମୋ ମୁଣ୍ଡରୁ ସବୁ ବାଳ ଝଡି ପଡିଲା । ମତେ କେହି ଖାଇବାକୁ ଦେଲେ ନାହିଁ । ମତେ ବସ୍‌ରେ ଯିବାକୁ ବାରଣ କରାଗଲା । ମୋ ଦେହକୁ ମୁଁ ଖଣ୍ଡିଏ ଲୁଗାରେ ଗୁଡାଇ ଦେଉଥିଲି, ଏବଂ ସେ ଲୁଗା ମୋ ଦେହରେ ଅଠା ଭଳି ଲାଗି ରହୁଥିଲା ଏବଂ ପଚା ଘା' ରୁ ରକ୍ତ ଓ ପୂଜର ଦୁର୍ଗନ୍ଧ ବାହାରୁ ଥିଲା । ଏପରିକି ମୋର ସାଙ୍ଗ ଭିକାରୀ ମାନେ ମୋତେ ସେମାନଙ୍କ ପାଖରେ ବସିବା ଓ ଶୋଇବାକୁ ଦେଉ ନଥିଲେ । ମୋ ଚାରିପଟେ ସବୁବେଳେ ମାଛି ଘେରି ରହି ମୋତେ ବ୍ୟସ୍ତ କରିଦେଉଥିଲେ । ମୋତେ ଦେଖୁ ଦେଖୁ ଲୋକମାନେ ନାକ ବନ୍ଦ କରି ଦୂରକୁ ପଳାଉଥିଲେ । ଅନେକ ବର୍ଷ ଧରି ମୁଁ କାହା ପାଖରୁ ସ୍ନେହ ବୋଳା କଥା କିମ୍ବା ଦୟାଶୀଳ ଚାହାଣୀ ଟିଏ ଦେଖିବାକୁ ପାଇଲି ନାହିଁ । ମତେ ସମସ୍ତେ ଘୃଣା କରି ମୋର କଦର୍ଯ୍ୟ ମୁହଁ ଦେଖି ଛେପ ପକାଉଥିଲେ । ମୁଁ ଭୟଙ୍କର ଦୁଃଖି ଓ ହତାଶ

ଜୀବନ ଯାପନ କରୁଥିଲି । ମୋର ସବୁ ଆଶା ଭରସା ମରି ଯାଇଥିଲା ।

"ତାପରେ ମୁଁ ବଲ୍ଲିକାଓ୍ୱର ଅମ୍ମାଙ୍କ ବିଷୟରେ ଶୁଣି, ତାଙ୍କୁ ଭାବଦର୍ଶନ ଦିନ ଦେଖିବାକୁ ଯାଇଥିଲି । ହେଲେ ମତେ ମନ୍ଦିର ଭିତରକୁ କିଏ ଯିବାକୁ ଅନୁମତି ଦେଲେ ନାହିଁ । ଲୋକମାନେ ଘୃଣାରେ ମତେ କହିଲେ "ଏଠୁ ପଳା, ଏଠୁ ପଳେଇ ଯା" । କାରଣ ମୋର ଦେହର ଦୁର୍ଗନ୍ଧ ଅତୀବ ଅସହନୀୟ ଥିଲା । କିନ୍ତୁ ଅମ୍ମା ମତେ ତାଙ୍କ ନିକଟକୁ ଡାକି ନିଜର ସନ୍ତାନ ପରି ସାନ୍ତ୍ୱନା ଦେଇ ଠିକ୍ ଅନ୍ୟମାନଙ୍କ ପରି ମୋ ସହିତ ସମାନ ବ୍ୟବହାର କଲେ ।"

ଅମ୍ମା ତାର ଦୁଷିତ ଘାଆରୁ ପୂଜ, ରକ୍ତ ନିଜ ଜିଭରେ ଚାଟି ଭଲ କରିବାର ଦୃଶ୍ୟ ଦେଖଣାହାରୀଙ୍କ ମଧ୍ୟରେ ଅଦ୍ଭୁତ ରୋମାଂଚ ସୃଷ୍ଟି କରିଥିଲା । ପ୍ରତ୍ୟେକ ଭାବଦର୍ଶନ ଦିନ ଅମ୍ମା [illegible] ମୁଣ୍ଡରେ ଢାଳ ଢାଳ ପାଣି ଅଜାଡି ଗାଧୋଇ ଦେଉଥିଲେ ଓ ତାକୁ ଅନ୍ୟାନ୍ୟ ଭକ୍ [illegible]ାନଙ୍କ ପରି ସମାନ ପ୍ରେମ, କରୁଣା ବାରି ଢାଳି ଦେଉଥିଲେ । ଅମ୍ମାଙ୍କର ତା ପ୍ରତି [illegible] ଓ ସେବା ଦୃଶ୍ୟ ଦେଖି କେତେକ ଭକ୍ତ ବାନ୍ତି କରି ପକାଇଲେ, କେତେକ ଚେତାଶୂନ୍ [illegible] ହେଲେ, ଆଉ କେତେକ ଅବାକ୍ ହୋଇ ଭକ୍ତି ମୁଗ୍ଧ ଚିତରେ କାନ୍ଦିବାକୁ ଲାଗିଲେ ଓ ବୁଝି ପାରିଲେ ଯେ ସେମାନେ ଈଶ୍ୱରୀ ଭଗବତୀ ଅମ୍ମାଙ୍କ ଆଶ୍ରମରେ ହିଁ ବସିଛନ୍ତି । ତାଙ୍କ ଛଡା ଆଉ କିଏ ବା ଏପରି ପ୍ରେମ ଦେଇ ପାରିବ ? ଅମ୍ମା ଦତ୍ତାନ ବିଷୟରେ କହିଥିଲେ "ତାକୁ ଭଲ ପାଇ ଯତ୍ନ କରିବାକୁ ଆଉ କିଏ ଅଛି ? ଅମ୍ମା ତାର ବାହାରର ଶରୀରକୁ ଦେଖି ପାରୁ ନାହିଁ । ଅମ୍ମା ଖାଲି ତାର ହୃଦୟ ହିଁ ଦେଖୁଛି । ମୁଁ ତାକୁ ତ୍ୟାଗ କରିପାରିବି ନାହିଁ । ମା କଣ କେବେ ତାର ପୁଅକୁ ପରିତ୍ୟାଗ କରିପାରେ !"

ଏଥର ଦତ୍ତାନ ପୁରା ବଦଳି ଗଲା । ତାର ପ୍ରାୟ ସମସ୍ତ ଘା ଭଲ ହୋଇ ଶୁଖିଗଲା । ତାର ଆଖି ଖୋଲି ଯାଇ ସେ ପରିଷ୍କାର ଭାବରେ ଦେଖି ପାରିଲା । ତାର ମୁଣ୍ଡରେ ବାଳ ଉଠି ବଢିବାକୁ ଲାଗିଲା । ସେ ଏଣିକି ବସ୍‌ରେ ଚଢି ବୁଲି ପାରିଲା ଓ ଲୋକମାନେ ତା ସହ କଥା ହୋଇ ଖାଇବାକୁ ଦେଲେ । ଯଦିଓ ତା ଦେହରେ ଭୟଙ୍କର ରୋଗର କ୍ଷତ ଦାଗ ସବୁ ରହିଥିଲା କିନ୍ତୁ ଆଉ ପଚା ଦୁର୍ଗନ୍ଧ ବାହାରୁ ନଥିଲା । ସେ ଖଣ୍ଡେ ଜାମା ବା ଚାଦରରେ ଆରାମରେ ଦେହରେ ଗୁଡେଇ ପାରୁଥିଲା,

ଆଉ ତାହା ଦେହରେ ଲାଗି ରହି ଯନ୍ତ୍ରଣା ଦେଉ ନଥିଲା । ସେ ଅତ୍ୟନ୍ତ ଆନନ୍ଦିତ ଥିଲା, ତାକୁ ଅମ୍ମା ଗୋଟିଏ ନୂଆ ଜୀବନ ଦେଇଥିଲେ । ଅମ୍ମାଙ୍କର ଆଶୀର୍ବାଦ ଫଳରେ ସେ ଜୀବନରେ ଆନନ୍ଦ ଉପଭୋଗ କରି ପାରିଥିଲା ।

କୁଟ୍ଟପନ ନାୟାର ନାମକ ଜଣେ ମୁଖ୍ୟ ପୋଲିସ ଦାରୋଗା ଅମ୍ମାଙ୍କ ସହ ତାଙ୍କର ବିଭିନ୍ନ ଅନୁଭୂତି ବର୍ଣ୍ଣନା କରିଛନ୍ତି । "ମୁଁ ଓ ମୋର ପରିବାର ଗତ ଆଠ ବର୍ଷ ଧରି ଅମ୍ମାଙ୍କର ଭକ୍ତ । ପାଂଚ ବର୍ଷ ତଳେ ଭାବଦର୍ଶନ ରାତିରେ ଅମ୍ମା ମୋତେ ମୋର ଗ୍ରହ ଦୋଷ ଥିବା କଥା କ ହିଲେ । ମୁଁ ଯେତେବେଳେ ଅମ୍ମାଙ୍କୁ ମୋର ଗ୍ରହ ଦୋଷରୁ ରକ୍ଷା ପାଇବାରେ ଉପାୟ ପ ାରିଲି ଅମ୍ମା ମତେ ପ୍ରତି ଶନିବାର ଦିନ ମୌନ ବ୍ରତ କରିବାକୁ ଉପଦେଶ ଦେଲେ । ମୁଁ ଶୁକ୍ରବାର ଦିନ ମୋର ଝିଅକୁ ପ୍ରସୁତି ବିଭାଗରେ ଦେଖିବାକୁ ଯାଇଥିବା ଯୋଗୁଁ ଶନିବାର ଦିନ ମୌନ ବ୍ରତ ଅନୁସରଣ କରି ପାରିଲି ନାହିଁ । ସେଦିନ ମୋର ଗୋଟିଏ କୁକୁଡା କିଛି ରୋଗ ନଥାଇ ହଠାତ୍ ମରିଗଲା । ତା ପର ଶନିବାର ମଧ୍ୟ କିଛି ଗୋଟେ ଅସୁବିଧା ଯୋଗୁ ମୌନ ବ୍ରତ ରଖି ପାରିଲି ନାହିଁ । ସେଦିନ ଆମର ଛୋଟ କୁକୁର ଛୁଆଟି ମରିଗଲା । ମୁଁ ତୃତୀୟ ଶନିବାର ମଧ୍ୟ ମୌନ ବ୍ରତ ରଖି ପାରିଲି ନାହିଁ । ସେଦିନ ଆମର ବାଛୁରୀଟି ହଠାତ୍ ମରିଗଲା । ତା ପରେ ମୋର ଅମ୍ମାଙ୍କର ମୌନ ରହିବାକୁ ଉପଦେଶ କଥା ମନେ ପଡିଲା ।

"ତା ପରଦିନ ମୁଁ ଅମ୍ମାଙ୍କ ଦର୍ଶନ ପାଇଁ ବଲ୍ଲିକାଓ୍ୱ ଗଲି । ମୁଁ ଯେତେବେଳେ ଭାବଦର୍ଶନରେ ସାଷ୍ଟାଙ୍ଗ ପ୍ରଣିପାତ କରୁଥିଲି, ଅମ୍ମା କହିଲେ, ତୁମେ ମୋର ଉପଦେଶ ମାନିନାହଁ, ଯାହାଫଳରେ ତୁମ ଘରେ ତିନୋଟି ଜୀବର ମୃତ୍ୟୁ ହୋଇ ସାରିଲାଣି । ଭବିଷ୍ୟତରେ ତୁମେ ଯଦି ଉପଦେଶ ପାଳନ ନ କରିବ ତେବେ ଆହୁରି ଦୁଃଖମୟ ଦୁର୍ଭାଗ୍ୟ ଘଟିବ । ତାପର ଶନିବାର ଦିନ ଭୋରୁ ଗାଧୋଇ ଘର ପାଖରେ ଥିବା ଦେବୀ ମନ୍ଦିରରେ ଯାଇ ପୂଜା କରି, ଘରକୁ ଆସି ଠାକୁର ଘରେ ଧ୍ୟାନରେ ବସିଲି, ଶନିବାର ଦିନ ସ୍କୁଲ ଛୁଟି, ତେଣୁ ପାଖ ଘରେ ମୋର ନାତି ନାତୁଣୀ ଓ ପୁତୁରା ବସିଥିଲେ । ସେମାନେ ଯେତେବେଳେ କୋଳାହଳ କରିବା ଆରମ୍ଭ କଲେ, ମୁଁ ମୌନ ବ୍ରତ ଭୁଲି ଯାଇ ବିରକ୍ତ ହୋଇ ସେମାନଙ୍କୁ ଗାଳିଦେଲି । ତା ପରେ ମୁଁ ପୁଣି

ମୌନ ବ୍ରତ ଧାରଣ କଲି । ମୁଁ ସାରା ଦିନ ପୂଜାଘରେ ବସି ରହିଲି । ଖାଲି ମଝିରେ ଜଳଖିଆ, ଭାତ, ଚାହା ଓ ରାତିରେ ଖାଇବା ପାଇଁ ଅଳ୍ପ ସମୟ ପାଇଁ ପୂଜା ଘରୁ ବାହାରକୁ ଯାଇଥିଲି । ତା ପରଦିନ ଭାବଦର୍ଶନ ସମୟରେ ଅମ୍ମା ମୋର କାନ ମୋଡି ପଚାରିଲେ, "ତୁମେ କଣ ଏମିତିକା ମୌନ ବ୍ରତ କର?" ମୁଁ କ୍ଷମା ମାଗି କହିଲି, 'ମୁଁ ପିଲାଙ୍କ ଉପରେ ରାଗି ମୋର ମୌନ ବ୍ରତ କଥା ଭୁଲିଗଲି ।' ଅମ୍ମା ମତେ କହିଲେ "ଯେ କୌଣସି ବ୍ରତ ବିନା ଉପାସରେ କରିବାର ମୂଲ୍ୟ ନାହିଁ" । ମୁଁ ପୁଣି କ୍ଷମା ମାଗି କହିଲି ମୁଁ ବ୍ରତ ଉପାସର ନିୟମ କିଛି ଜାଣେ ନାହିଁ । ତା ପରେ ଅମ୍ମା ପୁଣି ମତେ ସକାଳରୁ ସନ୍ଧ୍ୟା ଯାଏ ବ୍ରତ ରଖି କେବଳ ପାଣି, କ୍ଷୀର ବା ପଇଡ ପାଣି ପିଇବାକୁ ଉପଦେଶ ଦେଲେ । ଅତି ଭୋକ ହେଲେ ଫଳ ଖାଇବାକୁ ଆଦେଶ ଦେଇଥିଲେ । ମୁଁ ଯେତେବେଳେ ଅମ୍ମାଙ୍କୁ ମୋର ଭୁଲ ପାଇଁ ଓ ମୋର ସବୁ ବାଧାବିଘ୍ନ ଦୂର କରିବା ପାଇଁ ପ୍ରାର୍ଥନା କଲି, ଅମ୍ମା ମତେ ଗୋଟିଏ ମନ୍ତ୍ର ଦେଲେ । ସେହି ଦିନ ଠାରୁ ସେହି ମନ୍ତ୍ରଟି ଜପ କରିବା ଫଳରେ ମୁଁ ଶନିବାର ଦିନ ବିନା ବାଧାରେ ମୌନ ବ୍ରତ ପାଳନ କରି ପାରିଲି ।

"ତିନି ବର୍ଷ ତଳେ ମଇ ମାସ ଶନିବାର ଦିନ ଏଗାରଟା ବେଳକୁ ମୁଁ ପୂଜା ଘରେ ବସି ଧ୍ୟାନ କରୁଥିଲି । ବାଡି ପାଚିଲା ପଣସକୁ କାଉଟିଏ ଥଂଟ ମାରୁଥିବା ଦେଖି ମୋର ନାତୁଣୀ ଆସି ମତେ ସେଇଟିକୁ ତୋଳିବା ପାଇଁ ଡାକିଲା । ମୁଁ କଟୁରୀ ନେଇ ଗଛ ପାଖକୁ ଗଲି । ମୁଁ ପଣସର ନାଡିକୁ କାଟିଲା ବେଳକୁ ହାତରୁ କଟୁରୀଟି ଖସି ଯାଇ ଗଛରେ ମାଡଖାଇ ମୋର ବାମ ଆଖି ଉପରେ ଚୋଟ ଲାଗିଲା । ମୋର ଆଖିରୁ ଝର ଝର ହୋଇ ରକ୍ତ ବୋହିବାକୁ ଲାଗିଲା, ମୁଁ କ୍ଷତ ସ୍ଥାନକୁ ମୋ ପିନ୍ଧା ଧୋତିରେ ମାଡି ଧରିଲି । ଭାଗ୍ୟବଶତଃ ମୋର ପୁତୁରା ସେଇ ବାଟ ଦେଇ ସାଇକଲେରେ ଯାଉଥିଲା । ସେ ମତେ ସାଇକେଲରେ ଉଠାଇ ହସପିଟାଲକୁ ନେଇଗଲା । ସେଠାରେ ସେମାନେ ମୋର ଘା କୁ ସଫାକରି ପଟି ବାନ୍ଧି ଦେଲେ । ସମସ୍ତ ସମୟ ମୁଁ ମୌନ ବ୍ରତ ଧାରଣ କରି ରହିଥିଲି ।"

ଠିକ୍ ସେହି ସମୟରେ ବଲ୍ଲିକାଓ୍ୱରେ ଅମ୍ମା ମୋର ପୁଅକୁ ଡାକି ଆଦେଶ ଦେଲେ "ଘରକୁ ଜଲଦି ଯା, ବାପାର ଗୋଟିଏ ଛୋଟ ଦୁର୍ଘଟଣା ଘଟିଛି, କିଛି ଚିନ୍ତା କରିବାର

ନାହିଁ । ଅମ୍ମା ଦୁର୍ଘଟଣାରୁ ରକ୍ଷା କରି ଦେଇଛନ୍ତି । ସେଇ କ୍ଷତିଟା ଯଦି ଆଉ ଟିକିଏ ଡାହାଣକୁ ହୋଇଥାନ୍ତା, ତେବେ ଠିକ୍ କପାଳର ମଝିରେ ଚୋଟ ଲାଗିଥାନ୍ତା ।” ମୁଁ ଫେରିଲା ବେଳକୁ ମୋର ପୁଅ ଘରକୁ ଦଉଡି ଆସି ପହଁଚି ପଚାରିଲା “ବାପା କୁଆଡେ ଗଲେ ? ତାଙ୍କର କଣ ହେଲା ? ଆମେ ମାନେ ଯେତେବେଳେ ଭାବିଲୁ ସେ କିପରି ଜାଣିଲା, ସେ ଆମକୁ ଅମ୍ମାଙ୍କ ପାଖରୁ ଶୁଣିବା କଥା ବର୍ଣ୍ଣନା କଲା !”



କ୍ୱିଲନ୍‌ରେ ରହୁଥିବା ଶ୍ରୀ ଆର୍. ରେଡିୟାର ଅମ୍ମାଙ୍କ ସହ ତାଙ୍କର ଅନୁଭୂତିର ବର୍ଣ୍ଣନା କରିଛନ୍ତି । “ଆମର ଗୋଟିଏ ଝିଅ କିଛି ଦିନ ତଳେ ଘର ଛାଡି ପଳେଇଥିଲା । ସାଙ୍ଗ ମାନେ କହିଲେ ଅମ୍ମାଙ୍କ ସହ ଦେଖା କରି ଆମର ଝିଅ ପଳାଇ ଥିବାର ଦୁଃଖ ଉଦ୍‌ବେଗ ତାଙ୍କୁ ଜଣାଇବା ପାଇଁ । ଅମ୍ମା ଆମକୁ ପ୍ରତିଶ୍ରୁତି ଦେଲେ ଯେ ଆମ ଝିଅ ଠିକ୍ ଆଜିଠାରୁ ସାତ ଦିନ ଭିତରେ ଫେରି ଆସିବ । ଆମେ ତାକୁ କେଉଁଠିକି ଖୋଜିବା ପାଇଁ ଯିବା ଦରକାର ନାହିଁ” । ସେ ଆମକୁ ସାତୋଟି ବଳିତା ଦେଇ ନିର୍ଦ୍ଦେଶ ଦେଲେ ପ୍ରତିଦିନ ଗୋଟିଏ ଲେଖାଏ ବଳିତା ଜାଳିବା ପାଇଁ । ତା ପରେ କହିଲେ “ସପ୍ତମ ଦିନ ତୁମେ ଯେତେବେଳେ ଶେଷ ବଳିତାଟି ଜାଳିବ, ତୁମକୁ ଦାରୋଗା ମାନେ ଝିଅର ଠିକଣା ଜଣାଇ ଖବର ଦେବେ” ।

ଅମ୍ମାଙ୍କର କଥାକୁ ବିଶ୍ୱାସ ନକରି ଆମେ ମାନେ ଝିଅକୁ ଖୋଜିବାକୁ ଲାଗିଲୁ କିନ୍ତୁ କେଉଁଠାରୁ ତାର କୌଣସି ସନ୍ଧାନ ପାଇଲୁ ନାହିଁ । ସେ ଗୋଟିଏ ଅସହାୟ ସାନ ଝିଅ ବୋଲି ଆମେ ମାନେ ଚିନ୍ତାରେ ଭାଙ୍ଗି ପଡିଥିଲୁ । ପୁଣି ବିଫଳ ମନୋରଥ ହୋଇ ଆମେ ମାନେ ଅମ୍ମାଙ୍କ ପାଖକୁ ଆସିଲୁ । ଅମ୍ମା ସାଙ୍ଗେ ସାଙ୍ଗେ ପଚାରିଲେ “ତୁମେ ମାନେ ଏତେ ପଇସା ନଷ୍ଟ କଲ କାହିଁକି ? ଅମ୍ମା ତ ତୁମକୁ ଆଗରୁ କହି ସାରିଛି ଯେ ଝିଅଟି ଫେରି ଆସିବ । ତୁମେ ଚିନ୍ତା କର ନାହିଁ, ତୁମର ବିଶ୍ୱାସ ରଖିବା ଦରକାର । ମୁଁ ତୁମକୁ ଆଗରୁ କହିଛି ମାନେ ତାକୁ ନିଶ୍ଚୟ ଫେରି ପାଇବ” । ଛଅ ଦିନ ବିତିଗଲା । ଆମେ ଅମ୍ମାଙ୍କର ନିର୍ଦ୍ଦେଶ ଅନୁସାରେ ଛଅ ଦିନ ସଳିତା ଜଳାଇ ସାରିଥିଲୁ, ସାତଦିନ ଦିନ, ଆମେମାନେ ଗୋଧୂଳି ସମୟରେ ଶେଷ ଦୀପ ଜଳାଇବା ସମୟରେ ଫୋନ ବାଜି ଉଠିଲା । ଜଣେ ପରିବାରର ଲୋକ ଫୋନ୍ ଉତର ଦେଇ,

ଆସିଥିବା ଖବର ଆମକୁ ଜଣାଇଲେ "ତୁମର ଝିଅ ମାଡ୍ରାସ ପୋଲିସର ଦାୟିତ୍ୱରେ ଅଛି । ଝିଅଟି ବଣିଆ ଦୋକାନକୁ ଗୋଟେ ସୁନା ଗହଣା ବିକିବାକୁ ଯାଇଥିଲା, ସନ୍ଦେହ କରି ସେ ବଣିଆଟି ପୋଲିସରେ ଖବର ଦେଲା । ତାପରେ ପୋଲିସ୍ ଆସି ଝିଅଟିକୁ ନାନାଦି ପ୍ରଶ୍ନ ପଚାରିଲେ । ଠିକ୍ ଯେତେବେଳେ ଅମ୍ମା କହିଥିଲେ, ଆମେ ସେତିକିବେଳେ ହିଁ ହଜିଲା ଝିଅର ଖୋଜ ଖବର ପାଇଥିଲୁ ଓ ଆମର ଝିଅକୁ ଫେରି ପାଇଥିଲୁ । ସେହିଦିନ ଠାରୁ ଆମେମାନେ ସବୁ କିଛି ଦେବୀ ମାତାଙ୍କର ପାଦ ପଦ୍ମରେ ଅର୍ପଣ କରିଅଛୁ । ଆମର ପୂର୍ଣ୍ଣ ବିଶ୍ୱାସ ଯେ ଅମ୍ମାହିଁ ଆମର ରକ୍ଷାକାରିଣୀ ।"



କୁଞ୍ଜମା ଅମ୍ମାଙ୍କର ଆଶ୍ରମ ଠାରୁ ବାର ମାଇଲ ଦୂରରେ କାୟଂକୁଲମରେ ରହେ । ପରବର୍ତ୍ତୀ ବର୍ଣ୍ଣିତ ଘଟଣାଟି ତାର ଅମ୍ମାଙ୍କ ପ୍ରତି ବିଶ୍ୱାସ ଦୃଢ କରିଦେଇଥିଲା ।

ସେ ଅମ୍ମାଙ୍କ ପାଖକୁ କିଛି ବର୍ଷ ଆସିବା ପୂର୍ବରୁ ଜ୍ୟୋତିଷଙ୍କର ଭିବଷ୍ୟତ ବାଣୀ ଅନୁସାରେ ତାଙ୍କ ସ୍ୱାମୀଙ୍କ ମୃତ୍ୟୁ ଘଟିବା ପରେ ଅତୀବ ଦୁଃଖରେ ଥିଲେ, ତାଠାରୁ ଆହୁରି ବେଶୀ ନିରାଶ ହୋଇ ପଡିଲେ ଯେତେବେଳ ଜାଣିଲେ ଯେ ଜ୍ୟୋତିଷଙ୍କର ଭବିଷ୍ୟତ ବାଣୀ ଅନୁସାରେ ତାଙ୍କର ପୁଅର ତେଇଶ ବର୍ଷ ବୟସରେ ସାପ କାମୁଡାରେ ମୃତ୍ୟୁ ହେବ । ପୁଅକୁ ଏପରି ଭୟଙ୍କର ଦୁର୍ଭାଗ୍ୟରୁ ବଂଚାଇବା ପାଇଁ କୁଞ୍ଜମା ପାଗଳ ପରି ଉପାୟ ଖୋଜିବାକୁ ଲାଗିଲେ । ଶେଷରେ ଅମ୍ମାଙ୍କର ପାଦ ପଙ୍କଜରେ ଶରଣାଗତ ହେଲେ । "ଚିନ୍ତା କର ନା ଝିଅ" କହି ଅମ୍ମା ତାଙ୍କୁ ସାନ୍ତ୍ୱନା ଦେଲେ, "ଅମ୍ମା ତତେ ପ୍ରତ୍ୟହ ଜପ କରିବା ପାଇଁ ଗୋଟିଏ ମନ୍ତ୍ର ଦେବ, ସପ୍ତାହରେ ଥରେ ତୁ ପୁଅ ପାଇଁ ସଂକଳ୍ପ କରି ବ୍ରତ ରଖିବୁ । ମା ମାନଙ୍କର ପିଲାମାନଙ୍କ ପାଇଁ ସଂକଳ୍ପ କରି ବ୍ରତ ରଖିଲେ ତାହାର ବହୁତ ସୁଫଳ ମିଳେ । ତୋ ପୁଅର ମୃତ୍ୟୁ ଦଣ୍ଡ ତୁମର ଗୋଟିଏ ପରିବାରର ଜନ୍ତୁ ପାଖକୁ ଯିବ । ତେଣୁ ଘରକୁ ଶାନ୍ତିରେ ଯାଅ" ।

କୁଞ୍ଜମା ଅମ୍ମାଙ୍କର କଥା ପୁରା ବିଶ୍ୱାସ କରିଥିଲେ । ପ୍ରତ୍ୟେକ ଦିନ ସେ ସ୍ୱପ୍ନ ଦେଖନ୍ତି ଯେ ତାଙ୍କର ପୁଅ ସାପ କାମୁଡାରେ ମରି ଯାଇଛି । ତାଙ୍କ ସ୍ୱାମୀଙ୍କର ମୃତ୍ୟୁ ପରେ କୁଞ୍ଜମା ଘର ଜଗିବାକୁ ଗୋଟିଏ କୁକୁର ରଖିଥିଲେ । ସେ ଦିନେ ଜୋରରେ କୁକୁର ଭୁକା, ଚିତ୍କାର ଓ ସାପର ଫଁଫଁ ହେବା ଶବ୍ଦ ଶୁଣି କବାଟଟି ଅଳ୍ପ ଖୋଲି

ଦେଖିଲେ ତାଙ୍କ କୁକୁରଟି ସାପ ସାଙ୍ଗରେ ଯୁଦ୍ଧ ଚଳାଇଚି । ସେ ସାଙ୍ଗେ ସାଙ୍ଗେ କବାଟ ବନ୍ଦ କରିଦେଲେ ଓ ବାହାରର କୋଳାହଳ ଥମିଯିବା ଯାଏ ଅପେକ୍ଷା କଲେ । ଡରି ଡରି କୁଞ୍ଜମା କବାଟ ଖୋଲି ଦେଖିଲେ ଯେ କୁକୁର ଓ ସାପ ଦୁହେଁ ମରି ପଡିଛନ୍ତି ।

ଯଦିଓ ସେ କୁକୁରଟି ମରିଯିବା ପାଇଁ ଦୁଃଖ ଅନୁଭବ କଲେ, ସେ ହଠାତ୍ ଅମ୍ମାଙ୍କର କହିଥିବା କଥା ମନେ ପକାଇଲେ "ତୁମର ପୁଅର ମୃତ୍ୟୁ ଦୋଷ, ତୁମର ଘରର ପୋଷା ଜନ୍ତୁ ଉପରେ ଯାଇ ପଡିବ" । ତାଙ୍କର ହୃଦୟ ଅମ୍ମାଙ୍କ ପ୍ରତି କୃତଜ୍ଞତାରେ ଭରି ଉଠିଲା । ଏହି ଘଟଣା ଠିକ୍ ତାଙ୍କ ପୁଅର ଅକାଳ ମୃତ୍ୟୁ ଦୋଷର ଭବିଷ୍ୟତ ବାଣୀ ଘଟଣା ଅନୁସାରେହିଁ ଘଟିଥିଲା । ଶ୍ରଦ୍ଧା ଓ ଭକ୍ତିରେ ଗଦ୍‌ଗଦ୍ ହୋଇ କୁଞ୍ଜମା ଅମ୍ମାଙ୍କୁ ମନେ ମନେ ପ୍ରଣାମ କଲେ । ତାଙ୍କର ଦୟାମୟୀ ଅମ୍ମାଙ୍କ ପ୍ରତି ଭକ୍ତି ଓ ବିଶ୍ୱାସ ଆହୁରି ଘନୀଭୂତ ହେଲା । ତାଙ୍କର ପୁଅ ଏବେ ବି ଅମ୍ମାଙ୍କର ଆଶୀର୍ବାଦ ପ୍ରଭାବ ଫଳରେ ଆନନ୍ଦରେ ଜୀବନ ଯାପନ କରୁଛନ୍ତି ।



ଦିନେ ୧୯୮୦ ମସିହାରେ ଚନ୍ଦ୍ରମତୀ କେନାଲ ଆର ପାଖରୁ ଅମ୍ମାଙ୍କ ଆଶ୍ରମକୁ ଦର୍ଶନ ପାଇଁ ଆସିଥିଲେ । ଅମ୍ମା ସେତେବେଳେ ଗୋଟିଏ ପରେ ଗୋଟିଏ ଭକ୍ତଙ୍କୁ ଦର୍ଶନ ଦେଉଥିଲେ । ହଠାତ୍ ସେ ଆଖି ବନ୍ଦ କରି ଅନେକ ସମୟ ଅଦ୍ଭୁତ ଭାବରେ ବସି ରହିଲେ । । ତାଙ୍କର ଦେହ ଶକ୍ତ ହୋଇ ପଡିଲା । ଭକ୍ତମାନେ ଆଗ୍ରହ ସହକାରେ ଅପେକ୍ଷା କରି ରହିଲେ, କିଛି ମୁହୂର୍ତ୍ତ ପରେ ଅମ୍ମା ତାଙ୍କର ସାଧାରଣ ଅବସ୍ଥାକୁ ଫେରି ଆସିଲେ । ଅମ୍ମା ଚନ୍ଦ୍ରମତୀକୁ ପାଖକୁ ଡାକି କହିଲେ "ତୁମର ନାତୀ ଠିକ୍ ଏଇନେ ମରିଗଲା, କିନ୍ତୁ ତୁମ ଝିଅର ବିକଳ କାନ୍ଦଣା ଶୁଣି ଅମ୍ମା ଏଇନେ ତା ପାଖକୁ ଚାଲି ଯାଇଥିଲା । ତୁମର ନାତୀର ଜୀବନ ଠିକ୍ ଏଇନେ ଫେରି ଆସିଛି" ।

ଚନ୍ଦ୍ରମତୀ ଅମ୍ମାଙ୍କର କଥା ପୁରା ବୁଝି ପାରି ନଥିଲା । ପରେ ଠିକ୍ ସେହି ସମୟରେ ତା ଝିଅ ଘରେ ଦୁର୍ଘଟଣା ବିଷୟରେ ଶୁଣି ସେ ସବୁ ପ୍ରାଞ୍ଜଳ ଭାବରେ ବୁଝି ପାରିଥିଲା । ଚନ୍ଦ୍ରମତୀଙ୍କର ଝିଅ ନଳିନୀ ଅମ୍ମାଙ୍କର ବଡ ଅନୁଗତ ଭକ୍ତ ଥିଲେ । ତାଙ୍କର ଏକମାତ୍ର ପୁଅ ହଠାତ୍ ଅସୁସ୍ଥ ହୋଇ କୌଣସି ରକମର ଚିକିତ୍ସା ଆସି ପହଂଚିବା

ଆଗରୁ ମରିଗଲା । ଘର ଭିତରେ ଚହଳ ପଡିଗଲା । ନଳିନୀ ନିଜର ଛାତି ପିଟି କାନ୍ଦି କାନ୍ଦି କହିଲେ "ହେ ମା, ମୁଁ ତୁମକୁ ଆଜୀବନ ମନ ପ୍ରାଣ ଦେଇ ଧ୍ୟାନ କରି, ମୋର ପ୍ରାର୍ଥନାର ଫଳ କଣ ଏଇୟା ? ମୋର ଏ ପିଲାକୁ କାହିଁକି ନେଲୁ । ମୋର ଗୋଟିଏ ବୋଲି ପୁଅ, ମୋର ଏକମାତ୍ର ପୁଅକୁ କାହିଁକି ନେଲୁ ?" ସାଙ୍ଗେ ସାଙ୍ଗେ ନଳିନୀର ପୁଅ ପାଖରେ ବିଜୁଳି ଚମକି ଗଲା । ତତ୍କ୍ଷଣାତ ସେଇ ପୁଅ ଦେହରେ ଜୀବନ ଫେରି ଆସିଲା, ଯେପରିକି ସେ ଗଭୀର ନିଦରୁ ଉଠି ପଡିଛି ।

ଚନ୍ଦ୍ରମତୀ ତାପରେ ଝିଅକୁ ଅମ୍ମା ମନ୍ଦିରରେ କହିଥିବା ଘଟଣା କହିଲେ । ସେ ବୁଝିପାରିଲେ ଅମ୍ମାଙ୍କର ଆଶୀର୍ବାଦ ଫଳରେ ହିଁ ପିଲାଟି ତାର ଜୀବନ ଫେରି ପାଇଲା । ଦୁଇଜଣ ଯାକ ଆନନ୍ଦାଶ୍ରୁ ଢାଳି ଅମ୍ମାଙ୍କୁ କୃତଜ୍ଞତାର ସହ ପ୍ରଣାମ କଲେ ।

ବଲ୍ଲିକାଓ୍ଵର ଦକ୍ଷିଣରେ କରୁଣାଗାପାଲୀ ନାମକ ଛୋଟ ଗ୍ରାମରେ ସରସାମ୍ମା ତାଙ୍କର ସ୍ୱାମୀ ଓ ପିଲା ମାନଙ୍କ ସହ ରହୁଥିଲେ । ସେମାନେ ସୁଖ ଶାନ୍ତିରେ ଚଳୁଥିଲେ କିନ୍ତୁ ଅକସ୍ମାତ୍ ସେମାନେ ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହେଲେ । ତାଙ୍କୁ ନିଜ ଧନ ସଂପତି ହରାଇ ଅନ୍ୟମାନଙ୍କ ଦୟାରେ ରହିବାକୁ ପଡିଲା । ଅନେକ ଦିନ କଷ୍ଟରେ ରହିଲା ପରେ ସେମାନେ ଅମ୍ମାଙ୍କର ବିଷୟରେ ଶୁଣିଲେ । ସେମାନେ ଯେତେବେଳେ ତାଙ୍କର ପାଦ ତଳେ ଶରଣାଗତ ହେଲେ ତାଙ୍କର ସମସ୍ତ ପ୍ରତିକୂଳ ଅବସ୍ଥା ଧୀରେ ଧୀରେ ଉଭେଇ ଯିବାକୁ ଲାଗିଲା ।

ସରସାମ୍ମାଙ୍କର ଅମ୍ମାଙ୍କ ପ୍ରତି ଅଖଣ୍ଡ ବିଶ୍ୱାସ ଥିଲା । ତାଙ୍କର ଦୃଢ ବିଶ୍ୱାସ ଥିଲା ଯେ ତାଙ୍କ ଘରେ ଯଦି କିଛି ଅଘଟଣ ଘଟିବାର ଥିବ ତେବେ ତାଙ୍କୁ ଅମ୍ମା ନିଶ୍ଚୟ ସାବଧାନ କରାଇ ଦେବେ । ଦୁର୍ଭାଗ୍ୟରୁ ରକ୍ଷା ପାଇବା ପାଇଁ ଅମ୍ମା ତାଙ୍କୁ ଗୋଟିଏ ମନ୍ତ୍ର ଜପ କରିବାକୁ ଦେଇଥିଲେ ଏବଂ ତାଙ୍କୁ ପ୍ରତି ସପ୍ତାହରେ ବିଭିନ୍ନ ବ୍ରତ ରଖି ଜପ କରିବାକୁ କହିଥିଲେ ।

ଦିନେ ଯେତେବେଳେ ସରସାମ୍ମା ଆଶ୍ରମକୁ ଆସିଲେ, ଅମ୍ମା ତାଙ୍କୁ କହିଲେ "ଝିଅ ! ଅମ୍ମା ତୁମ ପରିବାରରେ ମୃତ୍ୟୁ ଦୋଷ ଦେଖି ପାରୁଛି, ତୁମେ ବ୍ରତ ବନ୍ଦ କର ନାହିଁ । ଚିନ୍ତା କର ନାହିଁ, ଅମ୍ମା ସବୁବେଳେ ତୁମ ପାଖରେ ଅଛି" । ଯଦିବା ସରସାମ୍ମା

ଭାରି ଚିନ୍ତିତ ହୋଇ ଯାଉଥିଲେ ତଥାପି ତାଙ୍କର ଅମ୍ମାଙ୍କର ରକ୍ଷାକାରୀ ଶକ୍ତି ପ୍ରତି ଅତୁଟ ବିଶ୍ୱାସ ଥିଲା । ଅମ୍ମାଙ୍କର ସାବଧାନ ବାଣୀର ଠିକ୍ କିଛିଦିନ ପରେ ସରସାମ୍ମାଙ୍କର ବଡ ଝିଅକୁ ସାପ କାମୁଡିଲା । ସେମାନେ ସାଙ୍ଗେ ସାଙ୍ଗେ ସେ ଝିଅକୁ ଅମ୍ମାଙ୍କର ଆଶ୍ରମକୁ ଆଣିଲେ । ସେତେବେଳକୁ ଝିଅଟିର ଦେହ ପୁରା ପୁରି ନୀଳ ହୋଇ ଯାଇଥିଲା । ତାର ମୁହଁରୁ ଅଠାଳିଆ ଲାଳ ବାହାରୁଥିଲା । କେତେକ ଭାବିଲେ ଯେ ଆସନ୍ନ ମୃତ ଅବସ୍ଥାରେ ପଡିଛି ଓ ଆଉ କେତେକ ଭାବୁଥିଲେ ଯେ ସେ ପୁରା ମରି ସାରିଛି ।

ଅନେକ ଭକ୍ତ ଝିଅ ପାଖରେ ସରସାମ୍ମାକୁ ଅସମ୍ଭାଳ କାନ୍ଦୁଥିବାର ଦେଖି ତାଙ୍କୁ ସାନ୍ତ୍ୱନା ଦେବାକୁ ଚେଷ୍ଟା କରୁଥିଲେ । ଦେବୀ ଭାବ ସମୟରେ ଅମ୍ମା ଖବର ପଠାଇଲେ ଯେ ଝିଅଟି ଆଶ୍ରମରେ ସାରା ରାତି ରହିବ, ତେଣୁ ତାକୁ ଆଶ୍ରମର ଉତ୍ତରରେ ଥିବା ଗୋଟିଏ କୋଠାକୁ ନିଆଗଲା ।

ତା ପରଦିନ ସେ ଝିଅର ଅବସ୍ଥାରେ କିଛି ପରିବର୍ତ୍ତନ ହୋଇ ନଥିଲା, ମନେ ହେଉଥିଲା ଯେପରିକି ତା ଦେହରେ କୌଣସି ଜୀବନ ନାହିଁ । ସରସାମ୍ମା ଝିଅ ପାଖରେ ବସିଥିଲେ ଓ ଚାରିପଟେ ଦଳେ ଭକ୍ତ ଘେରି ରହିଥିଲେ । ମନେ ହେଉଥିଲା ସେ ପୁରା ଭାଙ୍ଗି ପଡିଛନ୍ତି, କିନ୍ତୁ ଅମ୍ମାଙ୍କ ଉପରେ ସଂପୂର୍ଣ୍ଣ ବିଶ୍ୱାସ ତାଙ୍କୁ ମାନସିକ ବଳ ଓ ଆଶା ଦେଉଥିଲା ।

ହଠାତ୍ ଗୋଟିଏ ସାପ ଆସି ସେ କୋଠାର ଅଗଣାରେ ପହଂଚିଲା ଓ ସିଧା ସେ ଝିଅ ଶୋଇଥିବା ଖଟ ପାଖକୁ ଗଲା । ସମସ୍ତେ ଡରି ଚିତ୍କାର କଲେ "ସାପ ! ସାପ !" ସେ ଝିଅଟି ଆଖି ଖୋଲିଲା । ସେତେବେଳକୁ ସାପ ଏକଦମ ତା ପାଖରେ ପହଂଚି ଯାଇଥିଲା । ଭୟଙ୍କର ଫଣା ଟେକି ସାପ ଠିଆ ହୋଇଥିବାର ଦେଖି ଝିଅଟି ଭୟରେ ଡରି ଡେଇଁ ପଡିଲା, ଝିଅଟି ଦେହର ସାପ କାମୁଡାର ବିଷାକ୍ତ ଭାବ ଉଭେଇ ଜୀବନ ପାଇବାର ଘଟଣାକୁ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଦେଖୁଥିଲେ । ସାପ ସାଙ୍ଗେ ସାଙ୍ଗେ ସେହି ସ୍ଥାନରୁ ଚାଲିଗଲାପରେ ସରସାମ୍ମା ଏବଂ ତାଙ୍କର ଝିଅ ଅମ୍ମାଙ୍କୁ ସ୍ନେହ ଓ ଭକ୍ତି ସହକାରେ ସାଷ୍ଟାଙ୍ଗ ପ୍ରଣିପାତ କଲେ ।

ପରିବାରବର୍ଗଙ୍କ ବାଧ ବାଧକତାରେ ସରସାମ୍ମା ପରେ ଜଣେ ପ୍ରସିଦ୍ଧ ଜ୍ୟୋତିଷଙ୍କ ପାଖକୁ ଦର୍ଶନ ପାଇଁ ଯାଇଥିଲେ । ସେ ତାଙ୍କୁ କିଛି ଦରକାରୀ ତଥ୍ୟ ଜଣାଇଥିଲେ,

କିନ୍ତୁ ସେ ଯେ ତାଙ୍କ ଝିଅ ବିଷୟରେ କିଛି ଖବର ଜାଣିବାକୁ ଚାହୁଁଛନ୍ତି ସେ କଥା ତାଙ୍କୁ ଜଣାଇ ନଥିଲେ । ସେ ତାଙ୍କୁ ଝିଅର ଭବିଷ୍ୟତ ବିଷୟରେ ପ୍ରଶ୍ନ ପଚାରି ଥିଲେ । ଜ୍ୟୋତିଷ କିଛି ଗଣନା କରି ପୁରାପୁରି ଆତ୍ମ ବିଶ୍ୱାସର ସହ କହିଲେ "ଏ ଝିଅଟି ବିଷ ଜ୍ୱାଳାରେ ମରି ଯାଇଛି" । ସରସାମ୍ମା ଉତ୍ତର ଦେଲେ "ନା ! ଏଇଟି ମୋ ଝିଅର ଜାତକ ଏବଂ ସିଏ ବଂଚିଛି" । ଜ୍ୟୋତିଷ ଙ୍କର ନିଜର ଜ୍ୟୋତିଷୀ ବିଦ୍ୟା, ପରାକ୍ରମ ଉପରେ ପୁର ବିଶ୍ୱାସ ଥିଲା, ତେଣୁ ସେ ସରସାମ୍ମା ଙ୍କର କଥାକୁ ବିଶ୍ୱାସ କରି ପାରିଲେ ନାହିଁ । ସେ କିଛି ସମୟ ଚୁପ୍ ରହି ଭାବିଲେ ଯେ ସେ ତାର ପୁର୍ବନିର୍ଦ୍ଧିଷ୍ଟ ମୃତ୍ୟୁ ସମୟରେ ସାପ ଦ୍ୱାରା ଦଂଶିତ ହୋଇ ଥିଲେ, ଯଦି ସେ ତଥାପି ବଂଚି ରହିଛି, ତେବେ ଏହା ଗୋଟିଏ ଆଶ୍ଚର୍ଯ୍ୟ ଜନକ ଘଟଣା ଓ ଭଗବାନଙ୍କର ଆଶୀର୍ବାଦ !"

ସରସାମ୍ମା କହିଲେ "ପରେ ଜଣା ପଡିଲା ଯେ ତାର ପିଲା ବେଳରେ ଜାତକରେ ତା ଉଣେଇଶ ବର୍ଷ ବୟସରେ ସର୍ପ ଦଂଶନରେ ମୃତ୍ୟୁ ହେବାର କଥା ଲେଖା ହୋଇଥିଲା । ଠିକ୍ ସେହି ବୟସରେ ସେ ସାପ ଦ୍ୱାରା ଦଂଶିତ ହୋଇଥିଲା, କିନ୍ତୁ ଅମ୍ମାଙ୍କର ଅପାର କରୁଣା ଆମ୍ଭ ମାନଙ୍କୁ ରକ୍ଷା କରିଛି" ।

୧୯୮୧ ମସିହାରେ ସରସାମ୍ମାଙ୍କର ଜୀବନରେ ଅମ୍ମାଙ୍କର କରୁଣାର ଆଉ ଗୋଟିଏ ସ୍ମରଣୀୟ ଘଟଣା ଘଟିଥିଲା, ସେ ତାକୁ ଗଭୀର ଭାବର ସହ ବର୍ଣ୍ଣନା କରିଛନ୍ତି ।

"ସେ ସମୟରେ ଅମ୍ମାଙ୍କର ଦର୍ଶନ ପାଇଁ ଆସୁଥିବା ଭକ୍ତ ମାନେ ପ୍ରାୟ ଭୋର ଚାରିଟା ବେଳେ ଆଶ୍ରମ ଛାଡୁଥିଲେ, କାରଣ ସେମାନେ ଘରେ ବଡି ଭୋରରୁ ପହଂଚିବାକୁ ଚାହୁଁଥିଲେ । ସବୁ ଭକ୍ତ ମାନେ ଦଳ ହୋଇ ଅଧମାଇଲ୍ ଦୂରରେ ଥିବା ବସ୍‌ଷ୍ଟାଣ୍ଡକୁ ଯାଉଥିଲେ, ସେଠୁ ନିଜ ନିଜ ସହରକୁ ବସ୍ ନେଇ ଯାଉଥିଲେ । ଯଦିବା ଭୋର ପାଂଚଟା ବାଜିଥିଲା, ତଥାପି ଋରିଆଡେ ବେଶ ଅନ୍ଧାର ଥିଲା, ନିଜର ଘରପାଖ ବସ୍‌ଷ୍ଟପ ଭାବି ମୁଁ ଓହ୍ଲାଇପଡିଲି ଓ ଭାବିଲି ମୋ ପୁଅ ମଧ୍ୟ ଓହ୍ଲାଇପଡିଛି । ଓହ୍ଲାଇପଡୁପଡୁ କଣ୍ଡକ୍‌ଟର ଘଂଟି ବଜାଇଲା ଓ ବସ୍‌ଟି ଅନ୍ଧକାରରେ ଅଦୃଶ୍ୟ ହୋଇଗଲା । ସେତେବେଳେ ଋରିଆଡେ ଅନାଇ ମୋ ପୁଅକୁ ଦେଖିଲିନାହିଁ, ଓ ମୁଁ ଭୁଲ ଜାଗାରେ ଓହ୍ଲାଇପଡିଛି ବୋଲି ଜାଣିପାରିଲି । ଏହି ସ୍ଥାନଟି ମୋ ଘରଠାରୁ ଦୁଇ କିଲୋମିଟର ଦୂରରେ ଏବଂ ଅତ୍ୟନ୍ତ ନିର୍ଜନ ସ୍ଥାନ । ଏପଟେ ମୋ ପୁଅ ମଧ୍ଯୁ, ମତେ ବସ୍‌ରେ ନଦେଖି ହତବୁଦ୍ଧି ହୋଇପଡିଲା, ତେଣୁ ସେ ତା ପରବର୍ତ୍ତୀ ବସ୍‌ଷ୍ଟପରେ ଓହ୍ଲାଇପଡି

ମୋର ଓହ୍ଲାଇଥିବା ସ୍ଥାନ ଆଡେ ଦଉଡିବାକୁ ଆରମ୍ଭ କଲା । ମୁଁ ଦେଖିଲି କେତେଜଣ ଗୁଣ୍ଡା ମୋତେ ଚାରିଆଡୁ ଘେରି ଯାଇ, ଅଭଦ୍ର ଭାଷାରେ ପ୍ରଶ୍ନ ପଚାରିବାକୁ ଲାଗିଲେ । ମୁଁ ଭାବିଲି ସେମାନେ ମତେ ଯେକୌଣସି ମୁହୂର୍ତ୍ତରେ ବଳାତ୍କାର କରି ପାରନ୍ତି, ମୋ ମନ ଭିତରେ ଭୀଷଣ ଭୟ ଓ ଉଦ୍‌ବେଗ ହେଲା ଏବଂ ମୁଁ ମନେ ମନେ ଭାବିଲି ଅମ୍ମାଙ୍କୁ ଦେଖିବାକୁ ଯିବାର ଏହା କଣ ଫଳ ? ଏହା କଣ ମୋର ଆଜୀବନ ଭକ୍ତିର ଫଳ ? ଏହି ପରି ଚିନ୍ତାରେ ମୋର ମନ ଭରିଗଲା । ମୁଁ ସେମାନଙ୍କ କାମୁକ ଭର୍ତ୍ସନା ଶୁଣି ପାରିଲି ନାହିଁ । ଜୋରରେ ଚିତ୍କାର କଲି "ୟେଦି" (ହେ ମା !) ଏ ଚିତ୍କାର ମୋତେ ଘେରିଥିବା ଗୁଣ୍ଡା ମାନଙ୍କୁ ଆଶ୍ଚର୍ଯ୍ୟ କରିଦେଲା ।

"ତାପରେ ଯାହା ଘଟିଲା, ତାହା ବର୍ଣ୍ଣନା କରିବା ଅତୀବ କଠିନ । ସାଙ୍ଗେ ସାଙ୍ଗେ ଅମ୍ମାଙ୍କର ଏକ ବିରାଟ ମୂର୍ତ୍ତି ମୋ ସାମନାରେ ଆସି ଆକାଶରେ ଉଭା ହେଲେ । ତାଙ୍କର ଅନେକ ହାତରେ ବିଭିନ୍ନ ଅସ୍ତ୍ର ଶସ୍ତ୍ର ଥିଲା ଓ ସେ ଗୋଟିଏ ବିରାଟ ପଶୁ ଉପରେ ବସିଥିଲେ । ତାଙ୍କର ମୁହଁ, ବାଳ ଓ ମୁକୁଟ ମାତା ଅମୃତାନନ୍ଦମୟୀଙ୍କର ଦେବୀଭାବ ସମୟର ରୂପ ପରି ଦେଖା ଯାଉଥିଲା । ଦେବୀ ମା ତାଙ୍କର ଭକ୍ତଙ୍କୁ ରକ୍ଷା କରିବା ପାଇଁ କାଳୀ ମୂର୍ତ୍ତି ଧାରଣ କରିଥିଲେ । ଏହା ଦେଖି ମୁଁ ବାହ୍ୟଜ୍ଞାନ ଶୂନ୍ୟ ହୋଇଗଲି । ଅମ୍ମା ମୋ ଆଡେ ତାଙ୍କର ହାତ ବଢାଇଲେ । ମୋର ଆଖି ତାଙ୍କର ଉଜ୍ଜ୍ୱଳ ମୂର୍ତ୍ତି ଉପରେ ଲାଗି ରହି ବଡ ହେବାକୁ ଲାଗିଲା । ମୋର ଜିଭ ମା କାଳୀଙ୍କ ପରି ବାହାରି ଝୁଲିବାକୁ ଲାଗିଲା ଏବଂ ଏକ ଅଦ୍ଭୁତ ଶକ୍ତି ମୋ ଦେହରେ ଅନୁଭବ କରିବାକୁ ଲାଗିଲି । ମୋ ଦେହ ଭିତରୁ ବଡ ପାଟିରେ ଅଟ୍ଟହାସ୍ୟ ବାହାରିବାକୁ ଲାଗିଲା । ସେ କଥା ଭାବିଲେ ମୋର ଏବେବି ରୋମ ଟାଙ୍କୁରି ଉଠୁଛି । ଚାରିଆଡର ପବନ ଯେପରି ମୋ ଅଟ୍ଟହାସ୍ୟରେ ଥରି ଉଠୁଥିଲା । ଗୁଣ୍ଡାମାନେ ମତେ ବଳାତ୍କାର କରିବାକୁ ଯାଉଥିଲା ବେଳେ ମୋର ବଡ ବଡ ଆଖି, ଝୁଲୁଥିବା ନାଲି ଜିଭ, ଅଟ୍ଟହାସ୍ୟ ଓ ସେମାନଙ୍କର ସାମନାରେ ନିର୍ଭୟରେ ଠିଆ ହୋଇଥିବା ଭୟଙ୍କର ରୂପ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ଭାବିଲେ ଯେ ମୁଁ ବୋଧେ ଗୋଟିଏ ଡାହାଣୀ ବା ଚିରୁଗୁଣୀ ଓ ଭୟରେ ଡରି ଟ୍ରକକୁ ଡେଇଁ ପଳାଇଗଲେ । ସେମାନେ ଚାଲିଗଲା ପରେ ମଧ୍ୟ ମୁଁ ସେହିଠାରେ ଘୁଂଚି ନପାରି ଠିଆ ହୋଇ ରହିଲି । ଧୀରେ ଧୀରେ ମୁଁ ସାଧାରଣ

ଅବସ୍ଥାକୁ ଫେରି ଆସିବାକୁ ଲାଗିଲି ଓ ମା କାଳୀଙ୍କର ମୂର୍ତ୍ତି ମଧ୍ୟ ଉଭାଇ ଯିବାକୁ ଆରମ୍ଭ କଲା । ମୋର ସାରା ଦେହ ଜଡବତ ଲାଗିଲା, ଯେପରିକି ପକ୍ଷାଘାତ ହୋଇ ଯାଇଛି । କିଛି ସମୟ ପରେ ମୁଁ ଟିକିଏ ହଲଚଲ ହୋଇପାରିଲି ଏବଂ ମୋର ଲମ୍ବା ହୋଇ ବାହାରିଥିବା ଜିଭ ଧୀରେ ଧୀରେ ପାଟି ଭିତରକୁ ପଶିଗଲା । କିନ୍ତୁ ତଥାପି ମୋର ଡିମା ହୋଇ ବାହାରିଥିବା ଆଖି ଗୋଟିଏ ଜାଗାରେ ସ୍ଥିର ହୋଇ ରହିଥିଲା । ବହୁତ ଆଉଁସିଲା ପରେ ତାହା ସାମାନ୍ୟ ଅବସ୍ଥାକୁ ଫେରି ଆସିଲା । ମୋର ତଂଟି ଏତେ ଜୋରରେ ଅଟ୍ଟହାସ୍ୟ କରିବା ଯୋଗୁଁ ଦରଜ ହୋଇ ଯାଇଥିଲା । ମୋ ହାତରେ ଅମ୍ମାଙ୍କର ପ୍ରସାଦ ଜୋର ମୁଠା ହୋଇ ରହିଥିଲା ।

"କିଛି ସମୟ ପରେ ମୋର ପୁଅ ମଧୁ ମୋ ପାଖକୁ ଦଉଡି ଆସି ପହଂଚିଲା ଓ ପଚାରିଲା "ମା ସେ ଭୟଙ୍କର ଗର୍ଜନ କୋଉଠୁ ଆସୁଥିଲା ? ସେ ଟ୍ରକ୍‌ରେ ବସି ପଳେଇ ଯାଉଥିବା ଲୋକ ଗୁଡାକ କିଏ ? ସେମାନେ ତୋତେ କିଛି ଆଘାତ ଦେଲେ କି ?" "କିନ୍ତୁ ମୁଁ ତାକୁ କିଛି ଉତ୍ତର ଦେଇ ପାରିଲି ନାହିଁ କାରଣ ସେତେବେଳ ଯାଏ ମୋର କହିବାର ଶକ୍ତି ଫେରି ଆସିନଥିଲା । ଏହି ଘଟଣା ୧୯୮୧ ମସିହାରେ ଘଟିଥିଲେ ବି ସରସାମ୍ମା ଯେତେବେଳେ ଏହା ବର୍ଣ୍ଣନା କରନ୍ତି ତାଙ୍କ ଦେହ ଭୟରେ ଥରି ଉଠି ତାଙ୍କର କଣ୍ଠ ରୋଧ ହୁଏ ଏବଂ ଆଖିରୁ ଲୁହ ଧାର ଧାର ହୋଇ ବହିଯାଏ । ଏବଂ ସେ କହିଚାଲନ୍ତି ଅମ୍ମା, ଅମ୍ମା, ଅମ୍ମା.....



କେ.ଏସ୍. ଗଙ୍ଗାଧରନ୍ ବୈଦାର ଜଣେ ପ୍ରସିଦ୍ଧ ଆୟୁର୍ବେଦ ଡାକ୍ତର ବଲ୍ଲିକାଓ୍ୱ ଠାରୁ ୩୫ କିଲୋମିଟର ଦୂରରେ ଆଲୟେ ନାମକ ସହରରେ ରହୁଥିଲେ । ସେ ଏବଂ ତାଙ୍କ ସ୍ତ୍ରୀ ଦୁହେଁ ଅମ୍ମାଙ୍କର ପରମ ଭକ୍ତ ଥିଲେ । ୧୯୮୬ ମସିହାରେ ଗଙ୍ଗାଧରନ୍ ଭୀଷଣ ବେକ ପୀଡା ଭୋଗିବାକୁ ଲାଗିଲେ । ଦିନକୁ ଦିନ କଷ୍ଟ ବଢି ଅସହ୍ୟ ହୋଇପଡିଲା । ସେ କହିଲେ "ମୁଁ ନିଜେ ଅଭିଜ୍ଞ ଆୟୁର୍ବେଦ ଡାକ୍ତର ହୋଇଥିଲେ ବି ମୋର ନିଜର ଯନ୍ତ୍ରଣାର କାରଣ ନିର୍ଣ୍ଣୟ କରିପାରିଲି ନାହିଁ କିମ୍ବା ନିଜକୁ ପୀଡାମୁକ୍ତ କରିପାରିଲି ନାହିଁ । କଷ୍ଟ କମାଇବା ପାଇଁ ମୁଁ ବେକରେ ପଟି ଭିଡିଲି । ଶେଷରେ ମୋର କଷ୍ଟ ଏତେ ବଢିଗଲା ଯେ ମୁଁ ସହ୍ୟ କରିନପାରି ଜଣେ

ଅସ୍ଥି ବିଶେଷଜ୍ଞଙ୍କ ପାଖକୁ ଗଲି । ଚିକିତ୍ସା ଆରମ୍ଭରେ ଡାକ୍ତରଙ୍କୁ ଭେଟିବାର ଦିନକ ଆଗରୁ ମୁଁ ଅମ୍ମାଙ୍କୁ ଦର୍ଶନ କରିବା ପାଇଁ ଆଶ୍ରମକୁ ଗଲି । ସେଦିନ ରବିବାର ଥିଲା ଏବଂ ଆଶ୍ରମରେ ବହୁତ ଗହଳି ଥିଲା । ମୋର ଯେତେବେଳେ ପାଳି ଆସିଲା, ମୁଁ ମନ୍ଦିର ଭିତରେ ପ୍ରବେଶ କରି ଦେଖିଲି ଅମ୍ମା ଦେବୀ ଭାବରେ ବସିଛନ୍ତି । ଅମ୍ମାଙ୍କୁ ମୁଣ୍ଡିଆ ମାରି, ମୁଁ ସଂଶୟାକୁଳ ହୋଇ ବହୁଦିନ ଧରି ଭୋଗୁଥିବା ଭୟାନକ ପୀଡା ବିଷୟରେ ଓ ବିଭିନ୍ନ ଚିକିତ୍ସା ବିଷୟରେ କହିଲି । ଅମ୍ମା ଅତି ସ୍ନେହ ସହ ଦୁଇଥର ମୋର ବେକ ବାମ ହାତରେ ଘଷିଦେଲେ ଓ ମତେ ଆଶ୍ୱାସନା ଦେଲେ । ଅମ୍ମାଙ୍କର ଆଶୀର୍ବାଦ ପାଇ ମୁଁ ଓ ମୋ ସ୍ତ୍ରୀ ଘରକୁ ଫେରିଲୁ । ଅର୍ଦ୍ଧରାତିରେ ଏହି ଭୟଙ୍କର କଷ୍ଟ ବଢି ଚାଲିଲା, କିନ୍ତୁ ମୁଁ ଏତେ କ୍ଳାନ୍ତ ହୋଇପଡିଥିଲି ଯେ ସାଙ୍ଗେ ସାଙ୍ଗେ ଶୋଇପଡିଲି । ତା ପରଦିନ ସକାଳୁ ଉଠି ଅନୁଭବ କଲି ଯେ ମୋର କଷ୍ଟ ସବୁ ଚାଲି ଯାଇଛି । ତାପରେ ଅନେକ ବର୍ଷ ପରେ ମଧ୍ୟ ଆଉ ତାହା ଆସି ନାହିଁ" ।

ଡାକ୍ତର ଗଙ୍ଗାଧରନ୍ କହିଲେ, "ପ୍ରଥମ ୩୫ ବର୍ଷ ଯାଏ ମୁଁ ବେକ ପୀଡା ପାଇଁ ଅନେକ ରକମର ଚିକିତ୍ସା କଲାପରେ ବି କୌଣସି ଉପଶମର ଉପାୟ ପାଇନଥିଲି । ଅମ୍ମା ମାତ୍ର ଛୁଇଁ ଦେଇ ମୋର ପୀଡାକୁ ସବୁଦିନ ପାଇଁ ଦୂର କଲେ" ।

ଡାକ୍ତର ଗଙ୍ଗାଧରନ୍ଙ୍କର ଭଉଣୀ ସୁମତିଙ୍କର ଅନେକ ଦିନ ଧରି ପେଟ ବ୍ୟଥା ରୋଗ ଥିଲା । ତାଙ୍କୁ ୫୭ ବର୍ଷ ହୋଇଥିଲା ଓ ତାଙ୍କର ପାଂଚୋଟି ସନ୍ତାନ ସନ୍ତତି ଥିଲେ । ଅନେକ ପ୍ରସିଦ୍ଧ ଡାକ୍ତର ତାଙ୍କୁ ଚିକିତ୍ସା କରିଥିଲେ । କିନ୍ତୁ କିଛି ଫଳ ମିଳି ନଥିଲା । ଶେଷରେ ତ୍ରିଚୁରର ଗୋଟିଏ ଜଣାଶୁଣା କ୍ୟାନସର ହସ୍ପିଟାଲକୁ ତାଙ୍କୁ ନିଆ ଗଲା । ଡାକ୍ତର ତାଙ୍କୁ ଭଲ ଭାବରେ ପରୀକ୍ଷା କରି କହିଲେ ଯେ ତାଙ୍କୁ ଜରାୟୁର କ୍ୟାନସର ହୋଇଛି । ଏହି ସମୟରେ ଡାକ୍ତର ଗଙ୍ଗାଧରନ ଓ ତାଙ୍କ ସ୍ତ୍ରୀ ଇଉରୋପ ରେ ବନ୍ଧୁ ବାନ୍ଧବଙ୍କ ପାଖକୁ ଯାଇଥିଲେ ଓ ତାଙ୍କର ଭଉଣୀଙ୍କର ବିଷୟରେ ଜାଣି ନଥିଲେ । ସେମାନେ ଇଉରୋପରୁ ଫେରି ସୁମତିର ରୋଗ କଥା ଶୁଣିଲେ । ଡାକ୍ତର ଗଙ୍ଗାଧରନ କହନ୍ତି, "ମୋ ଭଉଣୀର ଦେହ କଥା ଶୁଣି ମୁଁ ଓ ମୋ ସ୍ତ୍ରୀ ହସପିଟାଲକୁ ଦଉଡିଲୁ । ସେ ଆମକୁ ଦେଖି ଶୋକାତୁରା ହୋଇ ପଡିଲା । ତାଙ୍କୁ ସାନ୍ତ୍ୱନା ଦେଇ ଆମେ ଘରକୁ ଫେରିଲୁ ଓ ପୁଣି ସପ୍ତାହକ ପରେ ତାକୁ ଦେଖିବାକୁ ଗଲୁ ।

ସେତେବେଳେକୁ ତାର ଅବସ୍ଥା ଦିନକୁ ଦିନ ଖରାପ ହୋଇ ଚାଲିଥାଏ । ଅସହାୟ ଭାବରେ ଭଉଣୀର ଭୟଙ୍କର କଷ୍ଟ ଦେଖି ତାକୁ ଯେ କଣ ସାନ୍ତ୍ୱନା ଦେବୁ ଭାବି ପାରିଲୁ ନାହିଁ । ଡାକ୍ତର ମାନେ ଭାବିଲେ ଯେ ଜରାୟୁକୁ ବାହାର କରି କୌଣସି ଲାଭ ନାହିଁ କାରଣ କ୍ୟାନ୍‌ସର ଅନେକ ମାଡି ଯାଇଥିଲା ଏବଂ ତାର ସାରା ଦେହକୁ ଆକ୍ରମଣ କରୁଥିଲା । ସେମାନେ ତାକୁ ରେଡିଏସନ୍ ଓ କିମୋଥେରାପୀ ଦ୍ୱାରା ଚିକିତ୍ସା କରିବାକୁ ସ୍ଥିର କଲେ । ସୁମତିର କ୍ୟାନସର ଓ ତାର ମୃତ୍ୟୁ ଆସନ୍ନ ବୋଲି ଖବର ଚାରିଆଡେ ଖେଳିଗଲା । ଚିକିତ୍ସା ପରେ ପରେ ସୁମତିକୁ ମୋ ଘରକୁ ବିଶ୍ରାମ ପାଇଁ ଅଣାଗଲା । ତା ଯନ୍ତ୍ରଣା ସେହିପରି ବଢିଚାଲିଲା । ସେ କୌଣସି ମତେ ଶୋଇ ପାରୁ ନଥାଏ । ସେ ଯେ କେବେହେଲେ ଆଉ ଭଲ ହୋଇ ସାଧାରଣ ଅବସ୍ଥାକୁ ଆସିବ ଆମର ସେ ଆଶା ଚାଲି ଯାଇଥିଲା ।

"ଶେଷରେ ମୋର ସ୍ତ୍ରୀ କହିଲେ ଯେ ଆମେ ଅମ୍ମାଙ୍କର ଶରଣାଗତ ହେବା ଦରକାର, କାରଣ ଅମ୍ମା ହିଁ ସବୁବେଳେ ଆମକୁ ହାତ ବଢାଇ ସବୁ ରକମର ଦୁଃଖ ଦୁର୍ଦ୍ଦଶା ରୁ ଉଦ୍ଧାର କରିଛନ୍ତି । ରବିବାର ଦିନ ଆମେ ସୁମତିକୁ ଅମ୍ମାଙ୍କର ଆଶ୍ରମକୁ ନେଇଗଲୁ । ଅମ୍ମା ତାକୁ ସ୍ନେହରେ କୁଣ୍ଢାଇ ତାର ପେଟ ଆଉଁସି ଦେଲେ । ସୁମତିର ଦେହ ଅମ୍ମାଙ୍କର ଛୁଇଁବା ସାଙ୍ଗେ ସାଙ୍ଗେ ହିଁ ଭଲ ଲାଗିବାକୁ ଆରମ୍ଭ କଲା । ଅମ୍ମା ଆମକୁ କିଛି ତୁଳସୀ ପତ୍ର ରସ କରି ଆଉଥରେ ଆସିଲାବେଳେ ଆଣିବାକୁ କହିଲେ । ତା ପର ଦର୍ଶନ ବେଳକୁ ଆମେମାନେ ଅମ୍ମାଙ୍କର ଉପଦେଶ ଅନୁସାରେ ତୁଳସୀ ପତ୍ର ରସ କରି ନେଲୁ । ଅମ୍ମା ସେହି ରସକୁ ଆଶୀର୍ବାଦ କରି ରୋଗୀ ହାତରେ ଧରାଇ ଦେଲେ ଏବଂ ସବୁଦିନ ସକାଳେ ଓ ସନ୍ଧ୍ୟାରେ ଗୋଟିଏ ଚାମୁଚ ଲେଖାଏଁ ନେବାକୁ କହିଲେ । ସୁମତି ଅମ୍ମାଙ୍କର ଉପଦେଶ ଗ୍ରହଣ କରି ସବୁ କଲା । ଗୋଟିଏ ସପ୍ତାହ ଭିତରେ ତାର ସବୁ ଯନ୍ତ୍ରଣା ଚାଲିଯାଇ ସେ ପୁରା ପୁରି ଭଲ ହୋଇଗଲା । ଏହି ଦୁଇଟିଯାକ ଘଟଣା ମୋର ନିଜର ଅଙ୍ଗେ ନିଭାଇ ଥିବା ଅନୁଭୂତି । ଯଦିବା ଏହି ଅନୁଭୂତି ଗୁଡିକ ମତେ ଆଶ୍ଚର୍ଯ୍ୟ ଜନକ ଲାଗୁଛି ତାହା ଅମ୍ମାଙ୍କ ପାଇଁ କିଛି ନୁହେଁ, କାରଣ ଅମ୍ମା ହେଲେ ସର୍ବଶକ୍ତିମୟୀ । ସେ ଚାହିଁଲେ ସବୁ ରକମର ରୋଗରୁ ମୁକ୍ତ କରିଦେଇ ପାରନ୍ତି ।"

ଶ୍ରୀ ଗୋପ କୁମାର ଆଲେୟର ସାର କାରଖାନାରେ ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ । ସେ ଅମ୍ମାଙ୍କ ସହ ତାଙ୍କର ଅନୁଭୂତି ବର୍ଣ୍ଣନା କରିଛନ୍ତି ।

"ମୋର ଅମ୍ମାଙ୍କ ସହ ଦର୍ଶନ ଅକସ୍ମାତ ଭାବରେ ହୋଇଥିଲା । ଜଣେ ଭକ୍ତ ଅମ୍ମାଙ୍କ ପାଇଁ ଏର୍ଣ୍ଣାକୁଲମର ଗୋଟିଏ ମନ୍ଦିରରେ ସମ୍ବର୍ଦ୍ଧନାର ଆୟୋଜନ କରିଥିଲେ । ଅମ୍ମାଙ୍କର ଭକ୍ତି ଭଜନ ପରେ ପରେ ଅଭ୍ୟର୍ଥନା ମୋ ଉପର ପ୍ରବଳ ପ୍ରଭାବ ପକାଇଥିଲା । ମୁଁ ଖାଲି ତାଙ୍କର ସ୍ନେହମୟ ମୁହଁକୁ ଅନାଇ ରହି, ଭକ୍ତି ମୂଳକ ଜୀବନର ସତ୍ୟତା ଶୁଣିବାକୁ ଲାଗିଲି । ମୋ ଆଖିର ଲୁହ ବାଧା ମାନିଲା ନାହିଁ । ଯେତେବେଳେ ଭଜନ ସରିଗଲା ଅମ୍ମା ଭକ୍ତ ମାନଙ୍କୁ ଗୋଟିଏ ପରେ ଗୋଟିଏ ଦର୍ଶନ ଦେଉଥାନ୍ତି । ମୁଁ ଅନେକ ଲୋକଙ୍କୁ ତାଙ୍କର ଐଶ୍ୱରୀକ ଶକ୍ତି ବିଷୟରେ କଥା ହେଉଥିବାର ଶୁଣିଲି । ଜଣେ ଭକ୍ତ କହିଲେ "ଭଗବାନ ଯାହା କରି ପାରିବେ, ସେ ବି ତାହା କରି ପାରିବେ" । ଅମ୍ମାଙ୍କ ପାଖରୁ ପ୍ରସାଦ ନେଲାବେଳେ ମୁଁ କହିଲି ମୋର ସମସ୍ୟା ଭଗବାନ ବି ସମାଧାନ କରି ପାରିବେ ନାହିଁ । ମୁଁ କହିଲି ଅମ୍ମା, ମୁଁ ଭୀଷଣ ମାନସିକ ବିଷାଦ ଭୋଗୁଛି । ଗତ ପନ୍ଦରବର୍ଷ ଧରି ମୁଁ ରାତିରେ ଘଂଟାଏ ବି ଶୋଇ ପାରିନାହିଁ । ନିଦ ଅଭାବରୁ ମୋର ମୁହଁ କଳା ଓ ତେଜହୀନ ହୋଇ ପଡିଛି ଏବଂ ମତେ ଭାରି ଦୁର୍ବଳ ଲାଗୁଛି । ଅନେକ ରାତିରେ ମୁଁ ଭଗବାନଙ୍କୁ ଧ୍ୟାନ କରି ମତେ ନିଦ୍ରା ଦେବା ପାଇଁ ପ୍ରାର୍ଥନା କରେ, କିନ୍ତୁ ମୋର ପ୍ରାର୍ଥନାର କେବେ କିଛି ଫଳ ମିଳି ନାହିଁ ।" ଅମ୍ମା ମତେ ଚାହିଁ ହସିଲେ ଓ ସ୍ନେହରେ ମୋ କପାଳରେ ବିଭୂତି ବୋଳି ଦେଲେ । ସେ ଗୋଟିଏ ଶବ୍ଦ ପର୍ଯ୍ୟନ୍ତ ଉଚ୍ଚାରଣ କଲେ ନାହିଁ ।

"ମୁଁ ଘରକୁ ଦର୍ଶନ ପରେ ଫେରିଲି । ସେତେବେଳକୁ ରାତି ଅଧିକ ହେଲାଣି । ଭୋଜନ କରି ସାରିଲା ପରେ ଭାରି କ୍ଳାନ୍ତ ଲାଗିଲା । ନିଦ ହେବା କଳ୍ପନାର ବାହାରେ ତେଣୁ ଖାଲି ଖଟରେ ପଡି ରହିଲି । ମୋର ଚାକରର ଡାକ "ବାବୁ ଏମିତି କଣ ଶୋଇଛନ୍ତି ?" ଶୁଣି ମୋ ନିଦ ଭାଙ୍ଗି ଗଲା । ମତେ ଯେତେବେଳେ ଚାକର ପିଲାଟି କହିଲା ସକାଳ ୯ଟା ବାଜିଛି ବୋଲି ମୁଁ ଶୁଣି ପୁରା ଆଶ୍ଚର୍ଯ୍ୟ ହୋଇଗଲି । ସୌଭାଗ୍ୟ ବଶତଃ ସେଦିନ ରବିବାର ଥିଲା, ମୋର କାମକୁ ଯିବାକୁ ଦରକାର ନଥିଲା । ଚାକର ପିଲାଟି ମତେ ଗୋଟିଏ ଗିଲାସ ଭର୍ତ୍ତି ଚାହା ଦେଲା, ତଥାପି ବି ମୁଁ ଆଖି ଖୋଲି

ରଖିବା ପାଇଁ ଅକ୍ଷମ ଥିଲି । ପୁଣିଥରେ ମୁଁ ଶୋଇ ପଡିଲି, ଯେତେବେଳେ ପୁଣି ଉଠିଲି, ଦିନ ଗୋଟାଏ ହୋଇ ସାରିଥିଲା । ବିଛଣାରୁ ଉଠି ଆସି ଦେଖିଲି ମୋ ଜଳଖିଆ ଓ ମଧ୍ୟାହ୍ନ ଭୋଜନ ସବୁ ଟେବୁଲ ଉପରେ ଥୁଆ ହୋଇଛି । ଏ ଘଟଣା ସବୁ ସ୍ୱପ୍ନବତ୍ ଥିଲା । ସାଙ୍ଗେ ସାଙ୍ଗେ ମୁଁ ଜାଣି ପାରିଲି ଗୋଟିଏ ଦୈବୀ ଘଟଣା ମୋ ଜୀବନକୁ ପରିବର୍ତ୍ତନ କରି ଦେଇଛି । ସେହି ଦିନଠାରୁ ମୁଁ ଶାନ୍ତିରେ ଭଲ ଭାବରେ ଶୋଇ ପାରିଲି । ଅମ୍ମାଙ୍କର ଅପାର କୃପା ଓ ଆଶୀର୍ବାଦ ମତେ କର୍ମ ଶକ୍ତି ଓ ସ୍ଫୁର୍ତ୍ତି ଦେଇ ପୁନର୍ଜନ୍ମ ଦେଇଥିଲା ।

ଅଳ୍ପଦିନ ପରେ ମୁଁ ଅମ୍ମାଙ୍କ ଦର୍ଶନ ପାଇଁ ଆଶ୍ରମକୁ ଯାଇଥିଲି । ମୋର ଆହୁରି ଅନେକ ପାରିବାରିକ ଅସୁବିଧା ଥିଲା । ପ୍ରଥମ ଦର୍ଶନରେ ମୁଁ ଅମ୍ମାଙ୍କୁ ସେସବୁ ବିଷୟରେ କିଛି କହି ନଥିଲି । ତାଙ୍କୁ ଦେବୀ ଭାବ ଦର୍ଶନ ପରେ ମୋର ମନେ ହେଲା ଯେପରିକି ମୋର ଦୁର୍ଦ୍ଦଶା କମ ହୋଇ ଯାଇଛି ।

ତିନିବର୍ଷ ପୂର୍ବେ ମୁଁ ମୋର ଶ୍ୱଶୁରଙ୍କୁ ତାଙ୍କର ଅଶୋଭନୀୟ ବ୍ୟବହାର ଯୋଗୁ ତିରସ୍କାର କରିଥିଲି । ତାର ବିରୋଧ କରି ସେ ମୋ ସ୍ତ୍ରୀ କୁ ତାଙ୍କର ରହୁଥିବା ସ୍ଥାନ ତ୍ରିଭେନ୍ଦ୍ରମ୍‌କୁ ବଦଳି ହୋଇ ଯିବା ପାଇଁ ଚାପ ପକାଇଲେ । ଶେଷରେ ସେ ଏତେ ବାଧ୍ୟ କଲେ ଯେ ମୋ ସ୍ତ୍ରୀ ତାଙ୍କ କଥା ଶୁଣିବା ପାଇଁ ବାଧ୍ୟ ହେଲା ଏବଂ ଆମର ଏକମାତ୍ର ପୁଅକୁ ନେଇ ଚାଲିଗଲା । ସେ ଆମ ପରିବାରକୁ ଭାଙ୍ଗି ଦେବାରେ ସଫଳ ହୋଇଥିଲେ । ମୁଁ ମୋର ପରିବାର ଅଲଗା ହୋଇ ଯିବାର ଦୁଃଖରେ ଜର୍ଜରିତ ହୋଇ ପଡିଲି । ମୋ ସ୍ତ୍ରୀ ର ପରିବାର ଆମ ଦୁଇଜଣଙ୍କର ସଂପର୍କ ପୁରା ଭାଙ୍ଗି ଦେବା ପାଇଁ ଚେଷ୍ଟା କରି ମୋ ସ୍ତ୍ରୀ ଓ ପୁଅକୁ ଧୀରେ ଧୀରେ ମୋ ବରୋଧୀ କରାଇ ଦେଲେ । ମୋର ଦ୍ୱିତୀୟ ଥର ଦର୍ଶନରେ ଅମ୍ମାଙ୍କୁ ମତେ ରକ୍ଷା କରିବା ପାଇଁ ଅନୁରୋଧ କଲି । ସେ ମୋତେ ହସି ସାନ୍ତ୍ୱନା ଦେଲେ "ପୁଅ, ଚିନ୍ତା କର ନାହିଁ । ଅମ୍ମା ତାର ଦାୟିତ୍ୱ ନେବ" । ଯଦିଓ ଅମ୍ମା ମତେ କଥା ଦେଇଥିଲେ, ତଥାପି ତାଙ୍କ କଥାରେ ମୋର ପୁରା ବିଶ୍ୱାସ ନଥିଲା ।

ତା ପରଦିନ ସକାଳେ କାମରେ ମୁଁ ଅଦ୍ଭୁତ ଭାବରେ ଶାନ୍ତି ଓ ଆନନ୍ଦ ଅନୁଭବ କଲି, ଓ ସହଜରେ ମୋର କାମ ସବୁ ଦକ୍ଷତାର ସହ କରି ପାରିଲି । ଉପର ବେଳା

ମୁଁ ମୋ ସ୍ତ୍ରୀ ପାଖରୁ ମୋ ପୁଅ ବିଷୟରେ ଗୋଟିଏ ଟେଲିଗ୍ରାମ ପାଇଲି । ବାଲମୁରଲୀର ଦେହ ଭୀଷଣ ଖରାପ, ହସପିଟାଲରେ ଭର୍ତ୍ତି ହୋଇଚି.... ଆମୀନୀ । ଏ ଖବର ପଢ଼ି ସାରିଲା ପରେ ମଧ୍ୟ ମୁଁ କୌଣସି ଦୁଃଖ ଓ ଉଦବେଗ ଅନୁଭବ କଲି ନାହିଁ । ମୁଁ ସାଙ୍ଗେ ସାଙ୍ଗେ କାମ ଛାଡି ଆଉଜଣେ ଅମ୍ମାଙ୍କର ଭକ୍ତକୁ ଏ ଖବର ଜଣାଇବାକୁ ଗଲି । ମୁଁ ଯେତେବେଳେ ତାର ଘରେ ପହଂଚିଲି ସେଠି ଆଉଜଣେ ଅମ୍ମାଙ୍କର ଭକ୍ତଙ୍କୁ ମଧ୍ୟ ଦେଖିଲି । ମୋର ଏବେବି ସେମାନଙ୍କର କଥା ମନେ ଅଛି । "ଗୋପ କୁମାର ! ଚିନ୍ତା କର ନାହିଁ, ଏହା ଖାଲି ଅମ୍ମାଙ୍କର ତୁମ ମାନଙ୍କୁ ଏକାଠି କରାଇବା ଲାଗି ଲୀଳା । ତୁମ ପୁଅର ଅସୁସ୍ଥତା ଖାଲି ତୁମର ସେଠାକୁ ଯିବାର ଗୋଟିଏ କାରଣ ମାତ୍ର ।"

ମୁଁ ତ୍ରିଭେନ୍ଦ୍ରମ୍‌ରେ ରାତି ୧୦ଟାରେ ପହଂଚି ସିଧା ହସପିଟାଲକୁ ଗଲି । ମୁଁ ଯେତେବେଳେ ପୁଅର ଖଟ ପାଖରେ ପହଂଚିଲି, ସେ ହଠାତ୍ ଖଟରୁ ଡେଇଁ ବଡ ପାଟିରେ କହିଲା "ମା, ମୋ ବାପା ଆସି ଯାଇଛନ୍ତି" । ସେ ଭଲ ଥିବା ପରି ଜଣା ପଡୁଥିଲା । ତାପରେ ମୋ ସ୍ତ୍ରୀ ସମସ୍ତ ଘଟଣା ବର୍ଣ୍ଣନା କଲେ । ସକାଳେ ତାର ଜ୍ୱର ୧୦୫ ଡିଗ୍ରୀ ହୋଇଗଲା । ଆମେମାନେ ସମସ୍ତେ ଅତି ବ୍ୟସ୍ତ ହୋଇ ପଡିଲୁ, କିନ୍ତୁ ସନ୍ଧ୍ୟା ବେଳେ ଜ୍ୱର କମିଗଲା ଓ ପୁରା ସାଧାରଣ ଅବସ୍ଥାକୁ ଚାଲି ଆସିଲା । ସେତେବେଳେ ମୋର ସାଙ୍ଗ ମାନଙ୍କ କଥା ମନେ ପଡିଲା ଓ ମୋ ପ୍ରତି ତାଙ୍କର ଅଗାଧ କରୁଣା କଥା ଭାବି ମନେ ମନେ ତାଙ୍କୁ ଧ୍ୟାନ କରି ନତ ମସ୍ତକ ହେଲି । ମୁଁ ମୋର ସ୍ତ୍ରୀ ଓ ପୁଅଙ୍କ ସହ ହସପିଟାଲରେ ଦୁଇଦିନ କଟାଇଲି, ତୃତୀୟ ଦିନ ମୋ ପୁଅ ହସପିଟାଲରୁ ବାହାରି ଆସିଲା ପରେ ମୁଁ ଏର୍ଣ୍ଣାକୁଲମ୍‌କୁ ଫେରି ଆସିଲି ।

"ତା ପରେ ରବିବାର ଦିନ ପୁଣି ନିୟମିତ ଭାବରେ ମୁଁ ବଲ୍ଲିକାଓ୍ୱକୁ ଅମ୍ମାଙ୍କ ଦେବୀଭାବ ଦର୍ଶନ ପାଇଁ ଗଲି । ସେଦିନ ଭାରି ଭିଡଥିଲା, ତେଣୁ ତାଙ୍କୁ ମୋ ସ୍ତ୍ରୀ ଓ ପୁଅ ସହ ଦେଖା ସାକ୍ଷାତ ହୋଇଥିବା କଥା କହିବାକୁ ସୁଯୋଗ ହିଁ ମିଳିଲା ନାହିଁ । ଆଉ ମଧ୍ୟ ମୁଁ ଭାବିଲି ସେ ସବୁ ଜାଣନ୍ତି ଓ କହିବେ, "ମା କୁ ନ କହିଲେ ବି ମା ତାର ପିଲା ମାନଙ୍କର ସମସ୍ୟା ବିଷୟରେ ସବୁ ଜାଣେ । ସେ ସେମାନଙ୍କ ଦୁଃଖ ତପ୍ତ ହୃଦୟକୁ ଦେଖିପାରେ" । ଆଗପରି ଅମ୍ମା ମତେ ଗୋଟିଏ ଧୂପ କାଠି ଓ ବିଭୂତି ପ୍ରସାଦ ଦେଲେ ଏବଂ କହିଲେ "ପୁଅ ! ତୁ ଘରେ ପହଂଚିଲା ବେଳକୁ ତୋର ସବୁ

ଦୁଃଖ ଦୂର ହୋଇ ଯାଇଥିବ" । ସେଦିନ ଘରକୁ ଫେରି ପୁଅକୁ ନିଘୋଡ ନିଦରେ ଶୋଇଥିବାର ଦେଖି ମୋ ଆନନ୍ଦର ସୀମା ରହିଲା ନାହିଁ । ସେମାନଙ୍କୁ ତିନି ବର୍ଷ ମୋଠାରୁ କରାହୋଇ ଅଲଗା ରଖା ଯାଇଥିଲା । ମୁଁ ଅମ୍ମାଙ୍କର ଫଟ ପାଖରେ ଠିଆ ହୋଇ, ଧୂପ କାଠି ଲଗାଇ ଦୁଇ ହାତ ଯୋଡି କହିଲି "ମୋ ମା, ତୁମେ ଯାହା କରିପାର, କୌଣସି ଦେବତା ମଧ୍ୟ କରି ପାରିବେ ନାହିଁ!"



କେ. କେ. ଦାମୋଦରନ୍ ନାୟାରଙ୍କ ଜଣେ ଆତ୍ମୀୟ ଅମ୍ମାଙ୍କର ଭକ୍ତ ଥିଲେ । ସେହି ଲୋକଟି ତାଙ୍କ ପାଖରେ ଚାକିରୀ ଖୋଜିବାକୁ ଆସି ବମ୍ବେରେ ମାସେ ଥିଲେ । ଶ୍ରୀଯୁକ୍ତ ନାୟାର ପ୍ରାୟ ଦେଖନ୍ତି ତାଙ୍କ ଅତିଥି ଧଳା ଶାଢୀ ପିନ୍ଧିଥିବା ଜଣେ ମହିଳାଙ୍କର ଫଟ ସାମନାରେ ବସି ଭଜନ ଗାଇ କାନ୍ଦି କାନ୍ଦି ପୂଜା କରୁଛନ୍ତି । ସେ ଭାବନ୍ତି ଫଟ ସାମନାରେ ବସି କାନ୍ଦି ସମୟ ନଷ୍ଟ କରିବାର ମାନେ କଣ ? ଇଏ ଅମ୍ମା କିଏ ସେ ? ସେ କେବେହେଲେ ତାଙ୍କର ନିଜର ଅବିଶ୍ୱାସ କଥା କାହାକୁ କହୁ ନଥିଲେ କିମ୍ବା ତାଙ୍କର ଆତ୍ମୀୟ ଅତିଥିଙ୍କର ପୂଜାରେ ବାଧା ଦେଉନଥିଲେ । ଏହି ସମୟରେ ଶ୍ରୀଯୁକ୍ତ ନାୟାର ତାଙ୍କ ପରିବାରକୁ ଦେଖାଶୁଣା କରିବା ପାଇଁ ଗାଁକୁ ଗଲେ । ତାଙ୍କ ଗାଁ ଅମ୍ମାଙ୍କର ଆଶ୍ରମଠାରୁ ଶହେ ସତୁରୀ କିଲୋମିଟର ଦୂରରେ । ତାଙ୍କର ଅଶୀ ବର୍ଷର ବାପାଙ୍କୁ ବଗିଚା କାମ କରୁଥିବାର ଦେଖି ସେ କହିଲେ, "ବାପା ତୁମେ ଏତେ ବୁଢା ହୋଇ ଗଲଣି, କାହିଁକି ଏତେ କଠିନ ପରିଶ୍ରମ କରୁଛ ?" ତାଙ୍କର ବାପା ଉତ୍ତର ଦେଲେ "ମୋର ସାରା ଜୀବନ ମୁଁ କଠିନ ଶ୍ରମ କରି ଆସିଛି, ତେଣୁ ମୁଁ କୌଣସି ଶ୍ରମର କଷ୍ଟ ଅନୁଭବ କରୁ ନାହିଁ ।" ତାପରେ ଶ୍ରୀଯୁକ୍ତ ନାୟାର ବମ୍ବେରେ ତାଙ୍କ ଘରେ ରହୁଥିବା ଆତ୍ମୀୟଙ୍କର ଘରକୁ ବୁଲିଗଲେ । ସେ ଆତ୍ମୀୟଙ୍କର ବାପା ମଧ୍ୟ ଅମ୍ମାଙ୍କର ଜଣେ ବଡ ଭକ୍ତ ଥିଲେ । ତାପରେ ସେ ଅମ୍ମାଙ୍କୁ ଦର୍ଶନ କରିବାକୁ ଯିବାକୁ ଠିକ୍ କଲେ । ଶ୍ରୀଯୁକ୍ତ ନାୟାର କୌତୁହଳ ଯୋଗୁ ହିଁ ଦର୍ଶନ କରିବାକୁ ଚାହୁଁଥିଲେ । ସେମାନେ ଅମ୍ମାଙ୍କର କୃଷ୍ଣଭାବ ସମୟରେ ପହଂଚିଲେ । ନାୟାର ମନ୍ଦିରରେ ପହଂଚି ଅମ୍ମାଙ୍କର ଉଜ୍ଜ୍ୱଳ ମୁଖମଣ୍ଡଳ, କୃଷ୍ଣଙ୍କ ପରି ଦୁଷ୍ଟ ହାବଭାବ, ମନ୍ଦହସ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଯେତେବେଳେ ସେ ଦର୍ଶନ ପାଇଁ ଠିଆ ହୋଇଥିଲେ, ସେ ହଠାତ୍ ନାଚିବାକୁ ଲାଗିଲେ ।

ସେ ନିଜକୁ କୌଣସି ମତେ ରୋକି ପାରିଲେ ନାହିଁ । କୃଷ୍ଣ ତାଙ୍କୁ ଥଟ୍ଟା କରି ପଚାରିଲେ "ବର୍ତ୍ତମାନ ତୁମେ ବିଶ୍ୱାସ କରୁଛତ ?" ସେ ଟିକେ ଅପମାନିତ ଓ ଅପ୍ରତିଭ ବୋଧ କଲେ, ତଥାପି ଅମ୍ମାଙ୍କୁ ପୁରା ବିଶ୍ୱାସ କରି ପାରିଲେ ନାହିଁ । ସେ ଉତ୍ତର ଦେଲେ "ମତେ ଗୋଟିଏ ଅନୁଭୁତି ଦିଅ, ତେବେ ଯାଇ ବିଶ୍ୱାସ କରିବି" । ଅମ୍ମା ତାଙ୍କୁ ହସି ହସି ପ୍ରତିଶ୍ରୁତି ଦେଲେ "ତୁମେ ନିଶ୍ଚୟ ତା ପାଇବ" ।

ବମ୍ବେକୁ ଫେରି ଆସି, ନାୟାର ଦିନେ ରାତି ପାଳିରେ କାମ କରୁଥିଲେ ଏବଂ ମଧ୍ୟ ରାତ୍ରିରେ ନିଜ ଟେବୁଲ ଉପରେ ହଠାତ ନିଦ ଆସିବାକୁ ଶୋଇ ପଡିଲେ । ରାତି ଦୁଇଟା ବେଳକୁ ଜଣେ ତାଙ୍କର କାନ୍ଧରେ ହାତ ମାରି ଉଠାଇଲା ପରି ଲାଗିଲା । ଚମକି ଉଠିପଡି ସେ ଦେଖିଲେ ଅମ୍ମା ତାଙ୍କ ସାମନାରେ ଠିଆ ହୋଇ ତାଙ୍କୁ କଣ କହୁଛନ୍ତି । ଅମ୍ମା କହିଲେ "ତୁମେ ଜାଣିଛ ତୁମ ବାପାଙ୍କର ମୃତ୍ୟୁ ହୋଇ ଯାଇଛି ? ଏଇ ଦେଖ ।" ହଠାତ୍ ସେ ଦେଖିଲେ ତାଙ୍କ ବାପାଙ୍କର ଶବକୁ ରଖା ହୋଇଛି । ମୁଣ୍ଡ ଉପରେ ଓ ଗୋଡ ପାଖରେ ଦୀପ ଜଳୁଛି ଏବଂ ଚାରିଆଡେ ବନ୍ଧୁ ବାନ୍ଧବମାନେ ଘେରି ରହି କାନ୍ଦୁଛନ୍ତି । ଅମ୍ମା ତାପରେ ତାଙ୍କୁ ପଚାରିଲେ "ବର୍ତ୍ତମାନ ବିଶ୍ୱାସ କରୁଛ ?" ଶ୍ରୀଯୁକ୍ତ ନାୟାର ଏପରି ଅନୁଭୂତିର ମାନେ କଣ କିଛି ବୁଝି ପାରିଲେ ନାହିଁ । ଏହା କେବେବି ସ୍ୱପ୍ନ ନୁହେଁ, କାରଣ ଅମ୍ମା ତାଙ୍କ ପାଖରେ ହିଁ ଠିଆ ହୋଇ କଥା କହୁଥିଲେ । ସେ ଏହା ନିଜ ଆଖିରେ ଦେଖୁଛନ୍ତି ? ପୁଣି ଏହା ବାସ୍ତବ କେବେବି ହୋଇ ନପାରେ କାରଣ ସେ ମାତ୍ର କିଛିଦିନ ଆଗରୁ ତାଙ୍କ ବାପାଙ୍କୁ ସୁସ୍ଥ ସବଳ ଓ ବଗିଚାରେ କାମ କରୁଥିବା ଦେଖିଥିଲେ । ସେଦିନ କାମ ଶେଷ କରି ସେ ଘରକୁ ଆସି ସେହି ଘଟଣାଟି ତାଙ୍କ ସ୍ତ୍ରୀ ଙ୍କୁ ଜଣାଇଲେ । ସ୍ତ୍ରୀ ଶୁଣି କହିଲେ "ଏହି ସ୍ୱପ୍ନକୁ କିଛି ଗୁରୁତ୍ୱ ଦିଅ ନାହିଁ। ତୁମର ମନର କଳ୍ପନା ବୋଲି ଭାବି, ଶୋଇ ପଡ ।" କେତେ ଘଂଟା ପରେ ଗୋଟିଏ ଟେଲିଗ୍ରାମ ଆସି ପହଂଚିଲା, ସେଥିରେ ଲେଖାଥିଲା "ବାପା ରାତି ଗୋଟାଏରେ ଦେହତ୍ୟାଗ କରିଛନ୍ତି, ଶିଘ୍ର ଆସ" ।

ଏହି ଘଟଣା ପରେ ପରେ ଶ୍ରୀଯୁକ୍ତ ନାୟାରଙ୍କର ଅମ୍ମାଙ୍କ ଉପରେ ପୂର୍ଣ୍ଣ ବିଶ୍ୱାସ ଆସିଗଲା ଏବଂ ସେ ଯେ ସାକ୍ଷାତ ଈଶ୍ୱରୀ, ସେ କଥା ଜାଣି ପାରି ସେ ମଧ୍ୟ ଅମ୍ମାଙ୍କର ଗୋଟିଏ ଭକ୍ତ ହୋଇଗଲେ । ସେ ତାଙ୍କର ବନ୍ଧୁ ଅତିଥିଙ୍କ ପରି ବର୍ତ୍ତମାନ ଅମ୍ମାଙ୍କର

ଫଟୋ ପୂଜା କରୁଛନ୍ତି ।



ପୂବାମ୍ ପୂଜା ସ୍ୱାମୀ କ୍ୱିଲନ୍ ରେ ପ୍ରସିଦ୍ଧ ଥିଲେ । ସେ ଯେତେବେଳେ ଅମ୍ମାଙ୍କର ବିଷୟ ଓ ତାଙ୍କ କୃଷ୍ଣ ଓ ଦେବୀ ଭାବ ବିଷୟରେ ଶୁଣିଲେ, ସ୍ୱାମୀଜୀ ଅମ୍ମାଙ୍କର ଐଶ୍ୱରୀକ ଶକ୍ତିର ପରୀକ୍ଷା ନେବା ପାଇଁ ଇଚ୍ଛା କଲେ । ୧୯୭୬ ମସିହାରେ ସେ ଆଶ୍ରମକୁ ପ୍ରଥମ ଥର ପାଇଁ ଯାଇଥିଲେ । ତା ପରେ ତାଙ୍କର ମାଙ୍କର ମୃତ୍ୟୁ ହେଲା । ସେ ସେଥିପାଇଁ ଅନେକ ଦିନ ଧରି ଆଶ୍ରମକୁ ଯାଇ ପାରି ନଥିଲେ । ସେ ଦ୍ୱିତୀୟଥର ଗଲା ବେଳେ ସ୍ୱାମୀଜୀ ଭାବିଲେ "ତାଙ୍କର ଯଦି ସତରେ କୃଷ୍ଣ ପରି ଶକ୍ତି ଅଛି, ସେ ମୋତେ ଭଗବତ ଗୀତାର ଯେକୌଣସି ଉପଦେଶାମୃତ କୁହନ୍ତୁ, ତା ହେଲେ ହିଁ ମୁଁ ବିଶ୍ୱାସ କରିବି ଯେ ସେ ଅସଲି ।"

କୃଷ୍ଣଭାବ ସମୟରେ ସ୍ୱାମୀଜୀ ମନେ ମନେ ଏପରି ସଂକଳ୍ପ କରି ମନ୍ଦିର ଭିତରେ ପଶିଲେ । ସେ ଅମ୍ମାଙ୍କୁ କହିଲେ, "ମୋ ମାଙ୍କର ମୃତ୍ୟୁ ଯୋଗୁ ମୁଁ ଆଶ୍ରମକୁ ଅନେକ ଦିନ ଧରି ଆସି ପାରି ନାହିଁ" । ଅମ୍ମା ଉତ୍ତର ଦେଲେ "ଆତ୍ମାର କୌଣସି ରୂପ ନାହିଁ, ତାହାର କେବେ ହିଁ ମୃତ୍ୟୁ ନାହିଁ, ଏହି ପରମ ସତ୍ୟ କେବେହେଲେ ଭୁଲି ଯାଅ ନାହିଁ ।" ଏହା ଶୁଣି ସ୍ୱାମୀଜୀ ଆଶ୍ଚର୍ଯ୍ୟ ଓ ଭକ୍ତିରେ ନତ ମସ୍ତକ ହୋଇ ପଡିଲେ । ଅମ୍ମାଙ୍କର ଏହି ଗୀତାଜ୍ଞାନ ଯାହାକୁ ସେ କେବେ ହେଲେ ପଢି ନାହାନ୍ତି, ତାହା ଭଗବତ ଗୀତାର ଦ୍ୱିତୀୟ ଅଧ୍ୟାୟର ୧୬ ପଦାବଳୀର ଅନୁବାଦ ହିଁ ଥିଲା । ଏହା ଶୁଣି ସ୍ୱାମୀଜୀ ଅମ୍ମାଙ୍କର ମହନୀୟ ଐଶ୍ୱରୀକ ଶକ୍ତି ବିଷୟରେ ବୁଝିପାରି ତାଙ୍କର ଅନୁଗତ ଭକ୍ତ ହୋଇଗଲେ ।



କାଲିକଟର ରାଧାବାଈ ସତ୍ୟସାଇ ବାବାଙ୍କର ଭକ୍ତ ଥିଲେ । ୧୯୮୫ ମସିହା ଜାନୁୟାରୀ ୨୩ ତାରିଖରେ ତାଙ୍କର ଗୋଟିଏ ସ୍ୱପ୍ନ ହୋଇଥିଲା । ସ୍ୱପ୍ନରେ ସେ ସତ୍ୟସାଇ ବାବା ଓ ଜଣେ ଧଳା ଶାଢୀ ପିନ୍ଧିଥିବା ପୂଣ୍ୟମୟୀ ସ୍ତ୍ରୀ ଲୋକଙ୍କ ଦର୍ଶନ ପାଇଥିଲେ । ସେ ଦୁଇଜଣ ଗୋଟିଏ ବଡ ଘର ଆଗରେ ଠିଆ ହୋଇଥିଲେ । ସେହି

ସ୍ତ୍ରୀ ଲୋକଙ୍କ ଆଡେ ହାତ ଦେଖାଇ ବାବା ରାଧାବାଈଙ୍କୁ କହିଲେ "ଏହି ମା ଙ୍କୁ ନିଶ୍ଚୟ ଦେଖିବା ପାଇଁ ଯାଅ" । ତାପରେ ଦୁଇଜଣ ଯାକ ଆଉ କିଛି ନକହି ଉଭେଇ ଗଲେ । ତାଙ୍କର ନିଦ ଭାଙ୍ଗିଗଲା । ସେ ଭାବିବାକୁ ଆରମ୍ଭ କଲେ, ଏହି ମାଙ୍କୁ ମୁଁ କୋଉଠି ଦେଖା କରିବାକୁ ଯିବି ? ତାଙ୍କୁ କୋଉଁଠି ପାଇବାକୁ ହେବ ମୁଁ କିପରି ଜାଣିବି ?

ତାପର ଦିନ ରାଧାବାଈ ଜଣେ ପୂଜ୍ୟା ସ୍ତ୍ରୀ ଲୋକଙ୍କର କାଲିକଟରେ ଠିକ୍ ସେଇଦିନ ପହଂଚିବାର ବୃତ୍ତାନ୍ତ ଖବର କାଗଜରେ ପଢିଲେ । ତାଙ୍କର ମୁହଁ ଦେଖି ସେ ସହଜରେ ଚିହ୍ନି ପାରିଥିଲେ କାରଣ ତାଙ୍କୁ ହିଁ ବାବାଙ୍କ ସହ ସେ ସ୍ୱପ୍ନରେ ଦେଖିଥିଲେ । ଖବର କାଗଜରେ ସେ କୋଉଠି ରହୁଛନ୍ତି ତାର ଖବର ବାହାରିଥିଲା । ରାଧାବାଈ ଆନନ୍ଦରେ ଅଧୀର ହୋଇ ଉଠିଲେ ।

ସେହିଦିନ ରାଧାବାଈ ସପରିବାର ଅମ୍ମାଙ୍କର ଦର୍ଶନ ପାଇଁ ଗଲେ । ସେମାନେ ଯେତେବେଳେ ସେ ଘରେ ପହଂଚିଲେ, ରାଧାବାଈ ଆହୁରି ଆଶ୍ଚର୍ଯ୍ୟ ହୋଇଯାଇଥିଲେ ଯେ ସେ ସ୍ୱପ୍ନରେ ସେହି ଘରଟି ହିଁ ଦେଖିଥିଲେ । ସମସ୍ତେ ଅମ୍ମାଙ୍କୁ ସ୍ୱପ୍ନ ବିଷୟରେ କହିଲେ । ଅମ୍ମା ତାହା ଧୀରେ ଶୁଣି ଅଳ୍ପ ହସିଲେ, ମନେ ହେଲା ଯେପରି କି କହୁଛନ୍ତି ଯେ ସେ ସ୍ୱପ୍ନ ବିଷୟରେ ସବୁଜାଣନ୍ତି । ରାଧାବାଈ ଓ ତାଙ୍କର ପରିବାର ଆଶୀର୍ବାଦ ନେଇ ଆନନ୍ଦରେ ଘରକୁ ଫେରିଲେ ।



ଅମ୍ମାଙ୍କର ପ୍ରଥମ ଥର କାଲିକଟ ଯିବା ସମୟରେ ଅନେକ ଭକ୍ତଙ୍କର ରୋମାଂଚକର ଅନୁଭୂତି ହେବାର ସୌଭାଗ୍ୟ ହୋଇଛି । ଶ୍ରୀମତୀ କୁଞ୍ଜୁକୁଟୀ ଙ୍କର ଇଷ୍ଟ ଦେବତା ସର୍ବ ଶକ୍ତିମୟୀ ଦେବୀ ମା ଓ ସେ ବହୁଦିନ ଧରି ମୁକାମ୍ବିକାଙ୍କୁ ଭାରି ଭକ୍ତି କରୁଥିଲେ । ସେ ତାଙ୍କ ପରିବାର ସହ ୧୯୮୫ ମସିହା ଜାନୁୟାରୀ ୨୪ ତାରିଖ ଦିନ ଅମ୍ମାଙ୍କୁ ଦର୍ଶନ କରିବାକୁ ଆସିଲେ । ସେ ଅମ୍ମା ଙ୍କ ସହ ତାଙ୍କର ପ୍ରଥମ ଅନୁଭୂତିର ବ୍ୟାଖ୍ୟାନ କରିଛନ୍ତି । "ମୁଁ ଯେତେବେଳେ ଅମ୍ମାଙ୍କ ପାଖରେ ପହଂଚିଲି ତାଙ୍କର ତୀକ୍ଷ୍ଣ ମର୍ମଭେଦୀ ଚାହାଣୀ ମୋ ଉପରେ ପଡିଲା । ତାଙ୍କର ପ୍ରଥମ ଚାହଣୀ

ରେ ହିଁ ମୋ ସାରା ଦେହରେ ରୋମାଂଚ ସୃଷ୍ଟି ହେଲା । ମୋର ମନେ ହେଲା ଯେପରିକି ମୁଁ ମୋର ସବୁ ଜ୍ଞାନ ହରାଇ ବସୁଛି । ମୁଁ ଅମ୍ମାଙ୍କ ପାଖରେ ଆଣ୍ଠୁ ମାଡି ଠିଆ ହୋଇ ବଡ ପାଟିରେ କହିଲି "ହେ ମା ! ସର୍ବ ବିମୋହିନୀ ! ମୁକାମ୍ବିକା ! ମତେ ରକ୍ଷାକର, ମା ! ମତେ କୋଳେଇ ନିଅ ।" ଅତି ସ୍ନେହରେ ଅମ୍ମା ମୋର ମୁଣ୍ଡକୁ କୋଳରୁ ଉଠାଇ ମୋର ଦୁଇ ଭ୍ରୂଲତା ମଝି କପାଳରେ ବାଁ ହାତର ଆଙ୍ଗୁଳିରେ ବିଭୂତି ବୋଳିଦେଲେ । ଅମ୍ମା ମୋର କପାଳ ଛୁଇଁବା କ୍ଷଣି ମୁଁ ଦେହରେ ବିଦ୍ୟୁତ ପ୍ରବାହ ପରି ଭୟଙ୍କର ଧକ୍‌କା ଅନୁଭବ କଲି । ପର ମୁହୂର୍ତ୍ତରେ ମୁଁ ସ୍ପଷ୍ଟ ଭାବରେ ମୋର ଇଷ୍ଟ ଦେବୀ ମୁକାମ୍ବିକାଙ୍କୁ ସ୍ୱର୍ଣ୍ଣ ଅଳଙ୍କାର ମଣ୍ଡିତା ହୋଇ ପଦ୍ମାସନରେ ଅମ୍ମାଙ୍କର ସ୍ଥାନରେ ବସିଥିବାର ଦେଖିଲି" । ଭଗବତ ପ୍ରେମ ରସରେ ମତୁଆଲା ହୋଇ କୁଞ୍ଜୁକୁଟୀ ନାଚି ନାଚି ଗାଇବାକୁ ଆରମ୍ଭ କଲେ । ମା ପଚାରିଲେ "ଝିଅ ତୁ କଣ ଚାହୁଁ ?" ଠିକ୍ ସେହି ପ୍ରେମ ରସମୟ ଗଳାରେ ସେ କହିଲେ "ମୁଁ କେତେ ଭାଗ୍ୟଶାଳୀ ଏହି ପାଦପଦ୍ମକୁ ହାତରେ ସ୍ପର୍ଶକରି, ମୁଁ ପରାଶକ୍ତିଙ୍କୁ ଦର୍ଶନ କରି ପାରିଲି ।" ସେ ପୁଣି ନାଚୁ ନାଚୁ ଆନନ୍ଦାଶ୍ରୁ ଝରାଇ କହିଲେ - "ହେ ଅମ୍ମା ମତେ ପରିତ୍ୟାଗ କର ନାହିଁ ।" କେତେ ଜଣ ଭକ୍ତ ତାଙ୍କୁ ଟେକି ବାହାରକୁ ନେଇ ଯିବାକୁ ଚେଷ୍ଟା କଲାବେଳେ ଅମ୍ମା କହିଲେ "ଏଇନେ ତାଙ୍କୁ କିଏ ଛୁଇଁବା ଉଚିତ ନୁହଁ, ସେ ଏଇନେ ପରମାନନ୍ଦ ଅନୁଭବ କରୁ ଅଛନ୍ତି ।" କୁଞ୍ଜୁକୁଟୀ ଅମ୍ମା ଏହି ପରି ଆନନ୍ଦମୟ ଭାବ ଆଉ ଅଧ ଘଂଟାଏ ଯାଏ ଅନୁଭବ କଲେ । ତାଙ୍କର ପ୍ରିୟ ଦେବୀଙ୍କର ଶୋଭାମୟ ରୂପ ଦର୍ଶନ କରି ସେ ଆନନ୍ଦମୁଗ୍ଧ ଚିତରେ ଘରକୁ ଫେରିଲେ ।



କୁଞ୍ଜୁରମନ୍ ଜଣେ ହାଇସ୍କୁଲ ଶିକ୍ଷକ । ସେ ଅମ୍ମାଙ୍କ ସହ ତାଙ୍କ ଅନୁଭୂତି ବର୍ଣ୍ଣନା କରିଛନ୍ତି । "ସିଦ୍ଧ ବିଦ୍ୟା ଶିକ୍ଷା କରିବାର ମନ୍ତ୍ର, ସ୍ୱାମୀ ଶିବାନନ୍ଦ ପରମହଂସଙ୍କ ପାଖରୁ ପାଇସାରି ସଂସାରୀ ହୋଇ ମଧ୍ୟ ମୋ ଗୁରୁଙ୍କର ଉପଦେଶକୁ ଯଥା ସାଧ୍ୟ ପାଳନ କରିବାକୁ ଚେଷ୍ଟା କରୁଥିଲି । ମୁଁ ଗତ ବାର ବର୍ଷ ଧରି ସାଧନା କରି ଆସୁଛି । ଭଗବତ ଗୀତାର ଅଧ୍ୟୟନ ଯେପରି ଜଣକୁ ତାର ନିର୍ଦ୍ଦିଷ୍ଟ ଲକ୍ଷ୍ୟକୁ ନେଇଯାଏ, ସେପରି ସିଦ୍ଧବିଦ୍ୟା ଅଧ୍ୟୟନକୁ ମୁଁ ମୋ ଜୀବନର ଲକ୍ଷ୍ୟ କରିଥିଲି ଏବଂ ଆଉ କାହା ପାଖରୁ

କୌଣସି ପରାମର୍ଶ ନେବା ଆବଶ୍ୟକ ମଣିନଥିଲି" ।

"୧୯୮୫ ମସିହାରେ ଜଣେ ଅଧ୍ୟାପକ ବଂଧୁ ତାଙ୍କ ମା ଅମୃତାନନ୍ଦମୟୀଙ୍କ ସହ କାଲିକଟ୍‌ରେ ହୋଇଥିବା ଅନୁଭୂତି ବିଷୟରେ ମୋତେ କହିଥିଲେ । ସେ ଅମ୍ମା ତାଙ୍କୁ ଛୁଇଁବା ବେଳର ଅନୁଭୂତି ବର୍ଣ୍ଣନା କରିଥିଲେ । ସେ ମତେ ଅମ୍ମାଙ୍କର ଉପଦେଶ ଥିବା ବହିଟିଏ ଦେଖାଇଥିଲେ ଓ ଅମ୍ମାଙ୍କର ଭଜନ କ୍ୟାସେଟ୍‌ରେ ଥିବା ଗୀତ 'ମାନସେ ନିନ୍ ସ୍ୱାନ୍ତୁମୟୀ' ଶୁଣାଇଥିଲେ । ମୋର ସ୍ୱାସ୍ଥ୍ୟ ଯଦିଓ ଏତେ ଭଲ ନଥିଲା, ତଥାପି ଯେତେ ଅସୁବିଧା ହେଲେ ମଧ୍ୟ ଅମ୍ମାଙ୍କୁ ଦର୍ଶନ କରିବାକୁ ସ୍ଥିର କଲି । ମୋର ଜଣେ ଅନ୍ତରଙ୍ଗ ବନ୍ଧୁ ଶ୍ରୀଯୁକ୍ତ ଏସ୍. କେ. ନାୟାରଙ୍କୁ ସାଙ୍ଗରେ ଯିବା ପାଇଁ ଅନୁରୋଧ କଲି । ସିଏ ନିୟମିତ ଭାବରେ ଯୋଗ କରୁଥିଲେ । ଆମେ ତାଙ୍କର ଆଶ୍ରମରେ ଅକ୍ଟୋବର କୋଡିଏ ତାରିଖ ଦିନ ଚାରିଟା ବେଳେ ପହଂଚିଲୁ । ଅମ୍ମା କୁଡିଆରେ ଦର୍ଶନ ଦେଉଥିଲେ । ସେ ଅତି ସ୍ନେହରେ ମୋର ନାଁ ଓ ଘର କେଉଁଠି ପଚାରିଲେ ଏବଂ କହିଲେ ଭାବଦର୍ଶନରେ ପୁଣି ତାଙ୍କ ସହ ଦେଖା ହେବ । ଦର୍ଶନ ସମୟରେ ଅମ୍ମା ଜୋରରେ ମୋର କପାଳର ମଝିରେ ଟିପ ମାରି ତାଙ୍କ ପାଖରେ ବସି ଧ୍ୟାନ କରିବାକୁ କହିଲେ ।

ତା ପରଦିନ ଯେତେବେଳେ ଶ୍ରୀ ନାୟାର ଏବଂ ମୁଁ ମନ୍ଦିର ସାମନାରେ ଠିଆ ହୋଇ ଗୋଟିଏ ନିରୋଳା ସ୍ଥାନ ଧ୍ୟାନ କରିବାପାଇଁ ଖୋଜି ପାଉ ନଥିଲୁ, ଅମ୍ମା ଠିକ୍ ସେତିକିବେଳେ ଆମ ଆଗରେ ପହଂଚି କହିଲେ "ପୁଅମାନେ ! ଆସ" । ଏହା କହି ଆମକୁ ଧ୍ୟାନ କୋଠରୀର ଦକ୍ଷିଣ ଆଡକୁ ନେଇଗଲେ । ସେଠାରେ କେତେକ ବ୍ରହ୍ମଚାରୀ ମଧ୍ୟ ବସି ଧ୍ୟାନ କରୁଥିଲେ । ଅମ୍ମା ଆମକୁ ବସାଇ ନିଜେ ବସି ଆମ ସହିତ ଧ୍ୟାନ କରିବା ଆରମ୍ଭ କଲେ । ଆମେମାନେ ଆଶ୍ଚର୍ଯ୍ୟ ହୋଇଗଲୁ । ଆମର ଧ୍ୟାନ କରିବାର ଇଚ୍ଛା ଜାଣିପାରି ଅମ୍ମା ଆଶ୍ରମରୁ ବାହାରି ଆସି ଆମର ଇଚ୍ଛା ପୁରଣ କଲେ । ଏଥିରୁ ଅମ୍ମାଙ୍କର ଉଚ୍ଚ ସ୍ତରର ଐଶ୍ୱରିକ ଶକ୍ତି ବିଷୟରେ ଜାଣିପାରିଲୁ । ଆମର ମନେ ହୁଏ ଏହି ଅନୁଭୂତି ଯୋଗୁହିଁ ଆମେମାନେ ପରେ ଅମ୍ବଲାପରାରେ ଅନେକ ଭକ୍ତଙ୍କୁ ଏକାଠି କରିବାରେ ସଫଳ ହୋଇ ପାରିଥିଲୁ ।

"ସେ ବର୍ଷ ନଭେମ୍ବର ଓ ଡିସେମ୍ବର ମାସରେ ମୋ ନାକରୁ ରକ୍ତ ବାହାରୁଥିଲା ।

ମୁଁ ସବୁବେଳେ ଡାକ୍ତରଙ୍କର ଚିକିତ୍ସାଧୀନ ଥିଲି, ତଥାପି ଏଇ ସମସ୍ୟା ମତେ ଚିନ୍ତିତ କରୁଥିଲା । ଆମେ ଶୁଣିଲୁ ଯେ ଅମ୍ମା ପଲ୍ଲାପୁରମର ରାମକୃଷ୍ଣ ମଠରେ ଜାନୁୟାରୀ ଚାରି ତାରିଖରେ ଦର୍ଶନ ଦେଉଛନ୍ତି । ତେଣୁ ମୋର ସାଙ୍ଗ ଶ୍ରୀ ନାରାୟଣ ନାୟାର ଓ ମୁଁ ମିଶି ଅମ୍ମାଙ୍କୁ ଦର୍ଶନ କରିବା ଓ ତା ସାଙ୍ଗେ ସାଙ୍ଗେ ଆମ୍ବାଲାପାରା ରେ ସତର ତାରିଖରେ ହେବାକୁ ଯାଉଥିବା ଅନୁଷ୍ଠାନ ବିଷୟରେ କଥାବାର୍ତ୍ତା କରି ସବୁ ସ୍ଥିର କରିନେଲୁ । ଅମ୍ମାଙ୍କ ସହ ଦର୍ଶନ ପରେ ହିଁ ମନେ ପଡିଲା ଅମ୍ମାଙ୍କୁ ମୋର ନାକରୁ ରକ୍ତ ପଡିବା କଥା ଜଣାଇ ପାରିଲିନି । ହଠାତ୍ ମୋର ବିଶ୍ୱାସକୁ ଦୃଢୀଭୁତ କରିବା ପାଇଁ ମୁଁ ସବୁ ଔଷଧ ଫିଙ୍ଗିଦେଇ କହିଲି "ଯଦି ଅମ୍ମାଙ୍କର ଇଚ୍ଛା ଥିବ, ତେବେ ମୋର ସବୁ କଷ୍ଟ ଆପେ ଦୂର ହୋଇଯିବ" । ମୋର କଷ୍ଟ ସତକୁ ସତ ଚାଲିଗଲା ଏବଂ ଆଉ କେବେ ତାହା ହେଲା ନାହିଁ ।

"୧୯୮୬ ମସିହାରେ ଯେତେବେଳେ ମା ଆମ୍ବାଲାପାରା ଆସିଲେ, ଆମର ତାଙ୍କୁ ଆମଘରକୁ ଆଣିବାର ସୌଭାଗ୍ୟ ହୋଇଥିଲା । ପାଦ ପୂଜା ସମୟରେ ସେ ଠିଆ ହୋଇଥିବା ପୂଜା ଥାଳିରେ ତାଙ୍କର ପାଦ ଚିହ୍ନ ମନକୁ ମନ ଛପା ହେଲାପରି ରହିଗଲା । ସେହି ଥାଳିଟି ଆଜିବି ଆମର ଧ୍ୟାନ ଘରେ ଥୁଆ ହୋଇଚି, ସେଠି ଆମେ ଓ ଅନ୍ୟାନ୍ୟ ଭକ୍ତ ମାନେ ଆସି ପୂଜା କରୁ । ବର୍ତ୍ତମାନ ସୁଦ୍ଧା ସେ ପାଦ ଚିହ୍ନ ସ୍ପଷ୍ଟ ଦେଖାଯାଉଅଛି ।"



ଶେଷାନ୍ ନାମକ ଜଣେ ଭକ୍ତ ମାଡ୍ରାସର ଇଲେକ୍ଟ୍ରିକାଲ ଇଞ୍ଜିନିୟର । ଚାକିରୀରୁ ଅବସର ନେଲାପରେ ସେ ସାଧୁ ସନ୍ୟାସୀ ମାନଙ୍କୁ ଡାକି ଆଧ୍ୟାତ୍ମିକ ଚର୍ଚ୍ଚା, ବକ୍ତୃତା ଆୟୋଜନ କରନ୍ତି ଓ ତାଙ୍କର ସେବାରେ ଲାଗିଥାନ୍ତି । ଯଦିବା ସେ ଅନେକ ଆଧ୍ୟାତ୍ମିକ କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ, ୧୯୮୪ ମସିହାରେ ଅମ୍ମାଙ୍କୁ ଦେଖା କରିବା ଯାଏ ତାଙ୍କର ମନେ ହେଉଥିଲା ସେ ଯେପରି ଆଧ୍ୟାତ୍ମିକ ମାର୍ଗରେ ବିଶେଷ ଆଗେଇ ପାରୁ ନାହାନ୍ତି । ଅମ୍ମାଙ୍କ ସହ ପ୍ରଥମ ଥର ଦେଖା କରି ସାରିଲା ପରେ ଶେଷାନ୍ ଅମ୍ମାଙ୍କୁ ମନ୍ତ୍ର ଦୀକ୍ଷା ପାଇଁ ନିବେଦନ କରିଥିଲେ । ଅମ୍ମା ତାଙ୍କ ଅନୁରୋଧକୁ ବେଶୀ ଗୁରୁତ୍ୱ ଦେଲେ ନାହିଁ । ଶେଷରେ ଅମ୍ମା ଯେତେବେଳେ ତିରୁଭନ୍ ମଲାଇ ସ୍ଥିତ ରମଣ ମହର୍ଷିଙ୍କ

ସ୍ଥାନକୁ ଯାଇଥିଲେ ଶେଷାନ୍ ସପରିବାର ଅମ୍ମାଙ୍କୁ ଦର୍ଶନ କରିବା ପାଇଁ ଆସିଥିଲେ । ଏଥର ଶେଷାନ୍ ଅମ୍ମାଙ୍କୁ ତାଙ୍କର ଅଭିଳାଷ ବିଷୟରେ କହିଲେ । ଅମ୍ମା କହିଲେ ଯେ ସେ ବଲ୍ଲିକାଓ୍ୱ ଆସିଲେ, ସେଠାରେ ହିଁ ମନ୍ତ୍ର ଦେବେ ।

ଅମ୍ମାଙ୍କ କଥା ମୁତାବକ ଶେଷାନ୍ ଯେତେବେଳେ ବଲ୍ଲିକାଓ୍ୱ ଆଶ୍ରମକୁ ଆସିଲେ ଅମ୍ମା ତାଙ୍କୁ ମନ୍ତ୍ର ଦୀକ୍ଷା ଦେଲେ । ସେଦିନ ଭାବ ଦର୍ଶନ ନଥିଲା । ତେବେ ଠିକ୍ ଦେବୀ ଭାବ ସରିବା ଆଗରୁ ରାତି ଏଗାରଟାରେ ଶେଷାନ୍‌ଙ୍କୁ ଅମ୍ମା ମନ୍ତ୍ର ଦେଲେ । ମନ୍ଦିର ଛାଡିବା ଆଗରୁ ସେ ଭକ୍ତ ମାନଙ୍କୁ ଆଦେଶ ଦେଲେ "ଏହି ପୁଅକୁ କିଏ ଛୁଇଁବ ନାହିଁ କି କଥାବାର୍ତ୍ତା କରିବ ନାହିଁ" ।

ଠିକ୍ ମନ୍ତ୍ର ଦୀକ୍ଷା ପରେ ପରେ, ଶେଷାନ୍ ଗଭୀର ତପସ୍ୟା ରତ ହୋଇ ପଡିଲେ । ତିନିଘଂଟା ବିତିଗଲା, ସେ ଠିକ୍ ସେହିପରି ମନ୍ଦିରରେ ହଲଚଲ ନହୋଇ ବସିଥିଲେ । ଅମ୍ମାଙ୍କର ଆଦେଶ ଅନୁସାରେ ଦୁଇଜଣ ଆଶ୍ରମ ବାସୀ ମନ୍ଦିର ଦ୍ୱାରରେ ଜଗି ବସି ରହିଲେ । ଯେପରି ତାଙ୍କ ଧ୍ୟାନରେ କୌଣସି ବ୍ୟାଘାତ ନହୁଏ । ଠିକ୍ ରାତି ଦୁଇଟା ବେଳକୁ, ଶେଷାନ୍ ଆଖି ଖୋଲି ପଚାରିଲେ "ସମସ୍ତେ କାହାନ୍ତି ? ଅମ୍ମା କୁଆଡେ ଗଲେ ? କାହିଁକି କେହି ଭଜନ ଗାଉ ନାହାନ୍ତି ? ମୁଁ ତ ମାତ୍ର କିଛି ମୁହୂର୍ତ୍ତ ପାଇଁ ଧ୍ୟାନ କରିଛି ! କଣ ହେଲା ?" ଆଶ୍ରମବାସୀମାନେ ଉତ୍ତର ଦେଲେ "କିଛି ମୁହୂର୍ତ୍ତ ! ତିନି ଘଂଟା ବିତି ଗଲାଣି, ଅମ୍ମା ତୁମକୁ ରାତି ଏଗାରଟାରେ ମନ୍ତ୍ର ଦେଲେ ବର୍ତମାନ ରାତି ଦୁଇଟା ବାଜିଛି । ଭାବଦର୍ଶନ ବହୁତ ଆଗରୁ ସରି ଯାଇଛି" ।

ଏହାଶୁଣି ଶେଷାନ୍ ବହୁତ ଆଶ୍ଚର୍ଯ୍ୟ ଓ ଖୁସି ହୋଇଗଲେ । ସେ କହିଲେ "ଅମ୍ମାର ହିଁ ଦୟା !" ଜଣେ ଆଶ୍ରମ ଅଧିବାସୀଙ୍କର କୌତୁହଳ ବଢିଗଲା । ସେ କହିଲେ "ଯଦି ଆପଣ କିଛି ମନେ ନ କରନ୍ତି ତେବେ ଆମକୁ ଆପଣଙ୍କର ଅନୁଭୂତି କହିବେ କି ? ଆମେ ମାନେ ମଧ୍ୟ ସାଧକ, ଆପଣଙ୍କର ଅନୁଭୂତିରୁ ଆମେମାନେ ଉତ୍ସାହିତ ହୋଇ ପାରିବୁ" ।

ଶେଷାନ୍ ଆଗ୍ରହର ସହ ଉତ୍ତର ଦେଲେ "ମୁଁ ବା କିପରି ମୋ ଅନୁଭୂତି ବାକ୍ୟରେ ବର୍ଣ୍ଣନା କରି ପାରିବି ? ମନ୍ତ୍ର ଦେଲା ପରେ ଅମ୍ମା ମୋର କପାଳରେ ଦୁଇ ଭ୍ରୂଲତା ମଧ୍ୟର ସ୍ଥାନରେ ଆଙ୍ଗୁଠିରେ ଛୁଇଁ ଦେଲେ । ତାଙ୍କର ଛୁଇଁବାର ପ୍ରଭାବ ଅତୀବ

ଚମତ୍କାର ଥିଲା । ମୋର ମନେ ହେଲା ଯେପରିକି ମୋ ଦେହରେ ବିଦ୍ୟୁତର ପ୍ରବାହ ଖେଳିଗଲା । ମନ୍ଦିର ଏବଂ ମୋର ଚତୁର୍ଦ୍ଦିଗ ଜୋରରେ ଘୁରି ଘୁରି ଆଖି ଆଗରୁ ଉଭେଇ ଯିବାକୁ ଲାଗିଲା । ତୁମେ ମତେ କହୁଛ ଯେ ମୁଁ ସେଠାରେ ତିନିଘଂଟା ଧ୍ୟାନରେ ବସିଥିଲି । ପ୍ରକୃତରେ ମୋର ମନେ ହେଲା ଯେପରିକି ମାତ୍ର ତିନି ମିନିଟ୍ ବିତି ଯାଇଛି । କେତେ ବଡ ଆଶ୍ଚର୍ଯ୍ୟ, ସେଥିରେ ସ୍ଥାନ କାଳ କିଛି ହିଁ ନଥିଲା" । ଏହା ଶୁଣି ଉକ୍ତ ଆଶ୍ରମବାସୀଙ୍କର ଆଗ୍ରହ ବଢିଲା, ସେ ଟିକିଏ ଭାବି ପୁଣି ପଚାରିଲେ "ମତେ ସେଇ ମନ୍ତ୍ର ଟିକେ କହି ପାରିବେ ? ଯଦି ଠିକ୍ ଭାବୁଥାନ୍ତି ତେବେ ଦୟାକରି ମତେ କୁହନ୍ତୁ, ମୁଁ ଏହା ପଚାରିବାକୁ ସାହସ କରୁଛି କାରଣ ମୁଁ ପରିଷ୍କାର ଭାବରେ ଜାଣି ପାରୁଛି ଯେ ଆପଣ ମନ୍ତ୍ର ନେଲା ପରେ ପରେ ଗୋଟିଏ ନିରାକାର ଅବସ୍ଥାକୁ ଚାଲି ଯାଇଥିଲେ" । ଶେଷାନ୍ ଉତ୍ତର ଦେଲେ "ସାଧକର ଏସବୁ କଥା କାହାକୁ କହିବା ଉଚିତ ନୁହଁ, ମନ୍ତ୍ର ଗୋପନ ରହିବା ଦରକାର, କିନ୍ତୁ ମୁଁ ଆପଣଙ୍କୁ ଏତିକି ମାତ୍ର କହିପାରେ, ଯେ ମୁଁ ଜଣେ ବେଦାନ୍ତ ବାଦୀ, ନିରାକାର ବ୍ରହ୍ମଙ୍କର ଉପାସକ । ଅନେକ ବର୍ଷ ଧରି ମୁଁ ଗୋଟିଏ ମନ୍ତ୍ର ଜପ କରୁଥିଲି କିନ୍ତୁ ମୋର କୌଣସି ଅନୁଭୂତି ହୋଇ ନଥିଲା । ଅମ୍ମା ମତେ ସେହି ମନ୍ତ୍ର ରେ ହିଁ ଦୀକ୍ଷିତ କରାଇଲେ । ଖାଲି ମତେ ଯେ ସେ ମନ୍ତ୍ର ଦେଲେ ତାହାନୁହଁ, ସେ ମତେ ମଧ୍ୟ ଏପରି ଏକ ସୁନ୍ଦର ଅନୁଭୂତି ଦେଲେ ।"

କେରଳର ବଡ ସହର କାଳିକଟରେ ଶ୍ରୀଯୁକ୍ତ ନାରାୟଣ ନାମ୍ବିଆର ତାଙ୍କର ଅନୁଭୂତି ବର୍ଣ୍ଣନା କରିଛନ୍ତି । "ମୁଁ ପିଲା ବେଳୁ କୃଷ୍ଣ ଭକ୍ତ, ତେଣୁ ସବୁବେଳେ ତାଙ୍କର ନାମ ଜପ କରିବା ଓ ତାଙ୍କ ଭଜନ ଗାଇବାରେ ସମୟ କଟାଉଥିଲି । ମତେ ୧୭ ବର୍ଷ ବୟସ ସମୟରେ ମୁଁ ସ୍ୱାମୀ ଶିବାନନ୍ଦ ପରମହଂସଙ୍କର ଜଣେ ପରମ ଭକ୍ତଙ୍କ ଠାରୁ ମନ୍ତ୍ର ଦୀକ୍ଷା ନେଇଥିଲି । ସେହିଦିନ ଠାରୁ ଭଜନ ଗାଇବା ସାଙ୍ଗେ ସାଙ୍ଗେ ମୁଁ ତପ ସାଧନା ମଧ୍ୟ କରୁଥିଲି । ଦିନେ ଭୋର ତିନିଟା ତିରିଶିରେ ମୋର ଗୋଟିଏ ସ୍ୱପ୍ନ ହେଲା । ସ୍ୱପ୍ନରେ ମୁଁ ଗୋଟିଏ ବଡ ହଲ୍ ଓ ତା ସାମନାରେ ବଡ ଅଗଣା ଥିବା ଦେଖିଲି, ଅଗଣାରେ ବିଭିନ୍ନ ରଙ୍ଗର ଗଛ ବଡ ବଡ କୁଣ୍ଡରେ ଓ ମାଟିରେ ଲାଗିଥିଲା । ସେଠି ମୁଁ ଦୁଇଜଣଙ୍କୁ ଠିଆ ହୋଇଥିବାର ଦେଖିଲି । ଜଣେ ପୁରୁଷ ଉଜ୍ୱଳ କମଳା

ରଂଗର ଲମ୍ବା ପୋଷାକ ପିନ୍ଧିଥିଲେ, ତାଙ୍କର ମୁଣ୍ଡରେ ଘଂଚ କୁଂଚୁ କୁଂଚିଆ ବାଳ ଗୋଛାଏ ଥିଲା । ଆଉ ଜଣେ ସ୍ତ୍ରୀ ଲୋକ ଧଳା ଶାଢ଼ୀ ପିନ୍ଧି ଥିଲେ । ସେ ମୋତେ ତାଙ୍କର ଡାହାଣ ପାଖେ ସାଙ୍ଗରେ ଯିବା ପାଇଁ ଇଙ୍ଗିତ କଲେ । ପୁରୁଷ ସାଧୁ ଜଣକ ମତେ ଅନେଇଲେ ନାହିଁ କି କୌଣସି ପ୍ରକାର ଇଙ୍ଗିତ କଲେ ନାହିଁ । ଯଦିବା ମୁଁ ପରେ ଜାଣିଲି ଏହା ଗୋଟିଏ ସ୍ୱପ୍ନ ହିଁ ଥିଲା, କିନ୍ତୁ ମୁଁ ମନ ଭିତରେ ନିଶ୍ଚିତ ଥିଲି ଯେ ଏ ସ୍ୱପ୍ନର କିଛି ନା କିଛି ଗୋଟିଏ ତାତ୍ପର୍ଯ୍ୟ ଅଛି । ମୁଁ ସ୍ୱପ୍ନରେ ଦେଖିଥିବା ସାଧୁ ମହାତ୍ମା ମାନେ ମୋ ମନରେ ସବୁଦିନ ପାଇଁ ଅଙ୍କିତ ହୋଇ ରହିଗଲେ ।

"ଦୁଇବର୍ଷ ପରେ ଆମ ଅଂଚଳରେ ପୁରପଲ୍ଲୀରେ ସେ ସତ୍ୟସାଇ ବାବା ବୋଲି ପରିଚିତ ହେଲେ । ଆଉ କୋଡ଼ିଏ ବର୍ଷ ବିତିଗଲା, ମୁଁ ଜାଣି ପାରିଲି ଯେ ମୋ ସ୍ୱପ୍ନରେ ଦେଖିଥିବା ସାଧ୍ୱୀ ହେଲେ ମାତା ଅମୃତାନନ୍ଦମୟୀ । ଜାନୁୟାରୀ ୧୯୮୫ ମସିହାରେ ମୁଁ ତାଙ୍କୁ ବାସ୍ତବରେ କାଲିକଟର ଜଣେ ଭକ୍ତଙ୍କ ଘରେ ପ୍ରଥମ ଥର ପାଇଁ ଦର୍ଶନ କରିଲି ।

ମୁଁ ଯେତେବେଳେ ଅମ୍ମାଙ୍କୁ ଦର୍ଶନ କଲି, ତାଙ୍କୁ ବିନୀତ ଭାବରେ କହିଲି "ମୁଁ ସତର ବର୍ଷ ବୟସରୁ ତପ ସାଧନା କରୁଅଛି, କିନ୍ତୁ ଆଜିଯାଏ ମୁଁ ସମାଧି ଅନୁଭବ କରିପାରି ନାହିଁ । ଦୟାକରି ସେହି ବର ଦେଇ ଆଶିର୍ବାଦ କରନ୍ତୁ ।" ଅମ୍ମା ମୋର ଆଖିକୁ ଅନେଇ କହିଲେ "ପୁଅ, ଆହୁରି ସାଧନା କରି ଚାଲ" ।

"ଆଉଥରେ ତାଙ୍କର ଆଶୀର୍ବାଦ ପାଇଁ ମୁଁ ଘର ବାହାରେ ଠିଆ ହୋଇଥିଲି । ସାଧ୍ୱୀ ଅମ୍ମା ତାଙ୍କର ଶିଷ୍ୟ ମାନଙ୍କ ସହ ଗୋଟିଏ ମନ୍ଦିରର ପ୍ରାଣ ପ୍ରତିଷ୍ଠା ଉତ୍ସବରେ ଭାଗ ନେବା ପାଇଁ ଯିବାକୁ ପ୍ରସ୍ତୁତ ହେଉଥିଲେ । ମୁଁ ଘରର ଫାଟକର ପାଖା ପାଖି ଠିଆ ହୋଇଥିଲି ଓ ଭାବୁଥିଲି ଯେ ଅମ୍ମାଙ୍କ ଗାଡ଼ି ହତା ଛାଡ଼ି ଚାଲିଗଲା ପରେ ମୁଁ ଚାଲିଯିବି । ଅମ୍ମା ଠିକ୍ ଗାଡ଼ି ଭିତରେ ପଶିବାକୁ ଯାଉଥିଲେ, ହଠାତ୍ ସେ ମତେ ଦେଖିଲେ । ସାଙ୍ଗେ ସାଙ୍ଗେ ସେ ମୋ ଆଡ଼କୁ ଚାଲିଚାଲି ଆସିଲେ । ମୁଁ ହାତ ଯୋଡ଼ି ତାଙ୍କୁ ନତ ମସ୍ତକ ହୋଇ ପ୍ରଣାମ କଲି, ସେ ମୋର ଦୁଇ ଯୋଡ଼ ହସ୍ତକୁ ଧରିଲେ ଏବଂ କହିଲେ 'ପୁଅ, ସେଠାକୁ ଯିବା ପାଇଁ କଥା ଦେଇଛି, କିନ୍ତୁ ଅମ୍ମା ଜଲଦି ଫେରି ଆସିବ ।' ଅମ୍ମାଙ୍କ ଛୁଆଁ ମୋର ଦେହରେ ଯେପରିକି ବିଦ୍ୟୁତ ପ୍ରବାହ ସୃଷ୍ଟିକଲା ।

ମୋର ଗୋଡରୁ ମୁଣ୍ଡ ଯାଏ ପୁରା ଦେହ ଯେପରି ସେ ଧକ୍କାରେ ଥରି ଉଠିଲା । ମୋର ଆଖି ବନ୍ଦ ହୋଇ ଲୁହ ଭରି ଉଠିଲା । ଚାରି, ପାଂଚ ସେକେଣ୍ଡ ଅତିବାହିତ ହୋଇଗଲା । ମୁଁ ପୁଣି ଯେତେବେଳେ ଆଖି ଖୋଲିଲି, ଅମ୍ମା ସେତେବେଳକୁ ଗାଡିରେ ବସି ସାରିଥିଲେ ଏବଂ ଗାଡି ଛାଡି ଦେଉଥିଲା । ମୁଁ ସେହିଠାରେ ଅମ୍ମା ଫେରିଲା ଯାଏ ଜଡବତ୍ ଠିଆ ହୋଇ ରହିଲି । ଅମ୍ମାଙ୍କର ସ୍ପର୍ଶ ମୋ ଉପରେ ପ୍ରଚଣ୍ଡ ପ୍ରଭାବ ପକାଇଥିଲା । ମୋର ସାଧନା ଆହୁରି ସବଳ ହୋଇ ଯାଇଛି ଏବଂ ତା ସହିତ ମୋର ଏକାଗ୍ରତା ମଧ୍ୟ ଅନେକ ବଢି ଯାଇଛି । ସବୁଠାରୁ ବଡକଥା ହେଲା ମୋର ସାଂସାରିକ ବିଷୟବସ୍ତୁର ଆନନ୍ଦ ଓ ଆକାଂକ୍ଷା, ଯାହାକି ମୋ ସାଧନାରେ ସବୁବେଳେ ବାଧା ଆଣୁଥିଲା, ଧୀରେ ଧୀରେ ବିନା ଚେଷ୍ଟାରେ ଚାଲିଗଲା । ସେହି ମନୋଭାବ ମୋର ଆଜି ଯାଏ ରହିଛି ।"

"୧୯୮୫ ଏପ୍ରିଲ ଅମ୍ମାଙ୍କର ଆଶ୍ରମରେ ସାତଦିନ ଧରି ଆଧ୍ୟାତ୍ମିକ ଶିକ୍ଷା ଶିବିରରେ ଭାଗ ନେଇଥିଲା ବେଳେ ମୁଁ ଆମ୍ମାଙ୍କୁ ପଚାରିଲି "ଅମ୍ମା ! ମୁଁ ଅନେକ ଆଧ୍ୟାତ୍ମିକ ପୁସ୍ତକରେ ପଢିଛି, ଯଦି ଜଣେ ଏ ଜନ୍ମରେ ତାର ପୂର୍ବ ଜନ୍ମର ଆଧ୍ୟାତ୍ମିକ ଗୁରୁଙ୍କୁ ପାଇ ପାରିବ, ସେ ଅତିଶିଘ୍ର ଆଧ୍ୟାତ୍ମିକ ଦିଗରେ ଉନ୍ନତି କରି ଆଗେଇ ପାରିବ । ଅମ୍ମା ! ଆପଣ କଣ ମୋର ପୂର୍ବ ଜନ୍ମର ଗୁରୁ ଥିଲେ ?" ଅମ୍ମା ହସି ହସି ସମ୍ମତ ପ୍ରଦାନ କଲେ, 'ହଁ, ପୁଅ' । ମୁଁ ବିନୀତ ଭାବରେ ପଚାରିଲି 'ମା ଏହା ଯଦି ସତ୍ୟ, ତେବେ ମତେ ମନ୍ତ୍ର ଦିଅନ୍ତୁ' । ମା ସ୍ନେହରେ ଉତର ଦେଲେ 'ତୁମର ଆସନ୍ତା ଦର୍ଶନବେଳେ ମା ତୁମକୁ ମନ୍ତ୍ରରେ ଦୀକ୍ଷିତ କରିବ' ।"

"ଅମ୍ମା ତାଙ୍କର ପ୍ରତିଜ୍ଞା ଅନୁସାରେ ମୋତେ ୧୯୮୫ ମେ ୧୨ ତାରିଖ ଦିନ ଦେବୀଭାବ ଦର୍ଶନର ଶେଷ ଭାଗରେ ମନ୍ତ୍ର ଦୀକ୍ଷା ଦେଲେ । ଅମ୍ମା ମୋ ହାତରେ ତ୍ରୀଶୁଳ ଦେଇ ମତେ ଯେତେ ସମୟ ଇଚ୍ଛା ତପ କରିବାକୁ କହିଲେ । ସେ ମୋ ହାତରେ ତ୍ରିଶୁଳ ଧରାଇବା ପର ଠାରୁ ଶେଷ ଯାଏ, ତ୍ରୀଶୂଳ ଜୋରରେ କଂପିବାକୁ ଆରମ୍ଭ କଲା, ମନେ ହେଲା ଯେପରିକି ବିଦ୍ୟୁତର ପ୍ରବାହ ହେଉଛି । ମୁଁ ନିଜକୁ ନିଜେ ବିଶ୍ୱାସ କରି ପାରିଲି ନାହିଁ । ତେଣୁ ମୁଁ ଗୋଟିଏ ହାତରୁ ତ୍ରୀଶୂଳ ନେଇ ଆର ହାତରେ ଧରିଲି, ଏପରି ଅନେକ ଥର କଲାପରେ ମଧ୍ୟ କଂପନ କମିଲା ନାହିଁ ।

ତେଣୁ ମୁଁ ଜାଣିଲି ଯେ ପ୍ରକୃତରେ ଏହିପରି ହେଉଛି । ଏହିପରି ଦେଢ ଘଂଟା ଧରି ତ୍ରୀଶୂଳଟି କଂପି ଚାଲିଥାଏ । ଶେଷରେ ମୁଁ ତ୍ରୀଶୂଳଟିକୁ ତାର ପୂର୍ବ ସ୍ଥାନରେ ରଖିଦେଲି । ବର୍ତ୍ତମାନ ମୁଁ ହୃଦ୍‌ବୋଧ କଲି ଯେ ଅମ୍ମା ହିଁ ପ୍ରକୃତରେ ସଦ୍‌ଗୁରୁ, ଏବଂ ସେ ତାଙ୍କର ଶକ୍ତିକୁ ଯେକୌଣସି ନିଷ୍କ୍ରିୟ ଜିନିଷ ମଧ୍ୟରେ ଭରି ଦେଇ ପାରନ୍ତି । ଏହି ଅନୁଭୂତି ମୋର ଅମ୍ମାଙ୍କ ଉପରେ ବିଶ୍ୱାସ ଦୃଢୀଭୂତ କରିଥିଲା । ବର୍ତ୍ତମାନ ମୁଁ ମୋର ସଂପୂର୍ଣ୍ଣ ଜୀବନ ତାଙ୍କର ପାଦପଦ୍ମ ତଳେ ସମର୍ପଣ କରି ସାରିଛି ।”



# ସଂକଳ୍ପ ଦ୍ୱାରା ସନ୍ତାନ

ଅମ୍ମା ଅନେକ ବର୍ଷ ଧରି ସନ୍ତାନହୀନ ଦମ୍ପତିଙ୍କୁ ଐଶ୍ୱରୀକ ସଂକଳ୍ପ ଦ୍ୱାରା ସନ୍ତାନ ଦାନ କରିଛନ୍ତି । ଏହିପରି ଦମ୍ପତି ମାନେ ଅମ୍ମାଙ୍କର ପାଦ ପଦ୍ମରେ ସର୍ବଦା ଶରଣାଗତ ହେଇଥାନ୍ତି । ସଦାସର୍ବଦା ନିଷ୍ଠାମୟ ପ୍ରାର୍ଥନା ଓ ଅଟଳ ବିଶ୍ୱାସ ହିଁ ଆଜୀବନ ବାଞ୍ଛିତ ଫଳ ପ୍ରଦାନ କରିଥାଏ । ସେମାନଙ୍କର ଆତ୍ମ ବିଶ୍ୱାସ, ବଳ ଓ ଭକ୍ତିଭାବ ଦ୍ୱାରା ସେମାନେ ଗର୍ଭଧାରଣ ସମ୍ମୁଖୀନ ହେଉଥିବା ପ୍ରତିବନ୍ଧକକୁ ସହଜରେ ପାରି ହୋଇ ପାରିଥାନ୍ତି । ଅମ୍ମା ସମସ୍ତଙ୍କ ପାଇଁ ସହଜରେ ଐଶ୍ୱରିକ ସଂକଳ୍ପ କରିଦିଅନ୍ତି ନାହିଁ । ଦୁର୍ଲଭ ଉପହାର ଦେବା ପାଇଁ ଅମ୍ମା ଭକ୍ତଙ୍କୁ କଠିନ ପରୀକ୍ଷା କରି ବାଛି ଦିଅନ୍ତି । ତାଙ୍କର ଏହି ସବୁ ବିଷୟରେ ସିଦ୍ଧାନ୍ତ ବୁଝିବା ସାଧାରଣ ମନୁଷ୍ୟର ବୁଦ୍ଧିର ବାହାରେ । ଏଠାରେ ଏହିପରି ଅମୂଲ୍ୟ ଆଶୀର୍ବାଦ ପାଇଥିବା ଚାରୋଟି ଦମ୍ପତିଙ୍କର କାହାଣୀ ବର୍ଣ୍ଣିତ ହୋଇଅଛି ।

**ଶକ୍ତିପ୍ରସାଦ - ୧**

ବଲ୍ଲିକାଓ୍ୱର ବିଦ୍ୟାଧରନ ଏବଂ ଓମାନା ନଅ ବର୍ଷର ବିଭାଘର ପରେ ମଧ୍ୟ ସନ୍ତାନ ସନ୍ତତି ନଥିବା ଯୋଗୁ ଭାରୀ ଦୁଃଖରେ ଥିଲେ । ସେମାନେ ଗୋଟିଏ ସନ୍ତାନ ବହୁତ ଚାହୁଁଥିଲେ ଓ ଭାବୁଥିଲେ ସେମାନଙ୍କ ଜୀବନରେ ମିଠା ହସ ଓ ଛୋଟ ଛୁଆର କଅଁଳ କଥା ଶୁଣିବାର ଭାଗ୍ୟ କେବେ ହେଲେ ଆସିବ ନାହିଁ । ମୋନାର ବଡ ଭଉଣୀ ସରସାମା ଆମ୍ମାଙ୍କର ବଡ ଅନୁଗତ ଭକ୍ତ ଥିଲେ । ସେ ସେମାନଙ୍କୁ ଅମ୍ମାଙ୍କ ପାଖକୁ ଯାଇ ନିଜର ଦୁଃଖ ଜଣାଇବାକୁ ଉପଦେଶ ଦେଲେ ।

୧୯୭୭ ମସିହାରେ ସେମାନେ ଅମ୍ମାଙ୍କର ଆଶ୍ରମକୁ ଆସି ଦର୍ଶନ ସମୟରେ ଅମ୍ମାଙ୍କ ପାଖକୁ ଗଲେ । ସେ ନିଜର ଦୁରାବସ୍ଥା କହିବା ଆରମ୍ଭ କରିବା ଆଗରୁ ଅମ୍ମା ତାକୁ ସାନ୍ତ୍ୱନା ଦେଇ କହିଲେ "ଝିଅ, ତୁ ମୋ ପାଖକୁ ଛୁଆଟିଏ ମାଗିବାକୁ ଆସିଛୁ । ଅମ୍ମା ତୋର ଦୁଃଖ ଦୂର କରିବ । ଚାରି ମାସ ଭିତରେ ତୋର ଗର୍ଭବାସ ହେବ ।"

ଅମ୍ମାଙ୍କ କଥାରେ ପୂର୍ଣ୍ଣ ବିଶ୍ୱାସ କରି ଓମାନା ଖୁସୀ ହୋଇ ଘରକୁ ଫେରିଲା । ଅମ୍ମାଙ୍କର ପ୍ରତିଶ୍ରୁତି ସତ୍ୟ ହେଲା । ଚାରିମାସ ଭିତରେ ଗର୍ଭବାସର ସମସ୍ତ ଲକ୍ଷଣ ଦେଖା ଦେବାକୁ ଲାଗିଲା । ବିଦ୍ୟାଧରନ୍ ଏବଂ ଓମାନା ଅତି ଆନନ୍ଦିତ ହୋଇଗଲେ । ଗତ ନଅ ବର୍ଷ ଧରି ସେମାନେ କେତେ ପ୍ରାର୍ଥନା କରିଛନ୍ତି ଓ ଛୁଆଟିଏ ହବାର ସୁଖ ସ୍ୱପ୍ନ ଦେଖିଛନ୍ତି, ବର୍ତ୍ତମାନ ତାଙ୍କର ସ୍ୱପ୍ନ ସଫଳ ହେବାକୁ ଯାଉଛି ।

ସେହି ସମୟରେ ଓମାନା କାଜୁବାଦାମ ଫ୍ୟାକ୍ଟରୀରେ କାମ କରୁଥିଲେ । ସେ ଯେତେବେଳେ ଚାରିମାସ ଗର୍ଭବତୀ ହୋଇଥିଲେ, ସେତେବେଳେ ଡାକ୍ତର ଦେଖାଇଲେ ଓ ଡାକ୍ତର ତାଙ୍କର ଭ୍ରୁଣର ସ୍ୱାସ୍ଥ୍ୟ ଭଲ ଓ ସବୁ ଠିକ ଅଛି ବୋଲି ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ନଅ ମାସ ଗର୍ଭାବାସ ପରେ ଆଉଥରେ ଗର୍ଭ ପରୀକ୍ଷା କରାହୋଇ ଡାକ୍ତର ଜଣାଇଲେ ଯେ ସେ ଗର୍ଭବତୀ ନୁହନ୍ତି । ସବୁଠାରୁ ଆଶ୍ଚର୍ଯ୍ୟ କଥା ହେଲା ଯେ ତାଙ୍କର ପେଟ ବହୁତ ବଡ ହୋଇଯାଇଥିଲା । ଓମାନା ଓ ତାଙ୍କର ସ୍ୱାମୀ ଏବଂ ପରିବାର ବର୍ଗ ତାଙ୍କ ପାଇଁ ବହୁତ ଚିନ୍ତିତ ହୋଇ ପଡିଥିଲେ । ତାଙ୍କୁ ଆଉ ଗୋଟିଏ ହସ୍‌ପିଟାଲକୁ ନିଆ ଗଲା ଓ ଅନେକ ପ୍ରସୁତି ବିଦ୍ୟା ବିଷାରଦ ପରୀକ୍ଷା କରି ଦେଖିଲେ ଯେ ତାଙ୍କ ଗର୍ଭରେ ସନ୍ତାନ ଥିବାର ଲକ୍ଷଣ ହିଁ ନାହିଁ । ଏପରି ଆଶ୍ଚର୍ଯ୍ୟ ଘଟଣା ଦେଖି ଡାକ୍ତର ମାନେ ହତଭମ୍ଭ ହୋଇ ପଡିଲେ । ଏଣେ ତାଙ୍କର ଗର୍ଭବାସର ସମସ୍ତ ଲକ୍ଷଣ ରହିଛି, ତେଣେ ଭିତରେ ସନ୍ତାନ ଥିବାର ଚିହ୍ନବର୍ଣ୍ଣ ମଧ୍ୟ ନାହିଁ । ଶେଷରେ ଜଣେ ପ୍ରସୁତି ବିଶେଷଜ୍ଞ ଓମାନାର ପେଟର ଏକ୍ସରେ ନେଇ ପେଟ ଭିତରେ ଛୁଆ ବଦଳରେ ଗାଢ ଧୂଆଁ ଦେଖିବାକୁ ପାଇଲେ । ସେମାନେ ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଠିକ୍ ରହସ୍ୟ ଜାଣିବା ପାଇଁ କୌତୁହଳୀ ହୋଇ ପଡିଥିଲେ । ବିଚଳିତ ହୋଇ ପରିବାରର ଲୋକମାନେ ଓମାନାକୁ କ୍ଲିନକ୍‌ର ଆଉ ଗୋଟିଏ ହସପିଟାଲ୍‌କୁ ନେଇ ଯାଇଥିଲେ । ପୁଣି ଆଉଥରେ ସବୁ ତନ୍ନ ତନ୍ନ କରି ପରୀକ୍ଷା କରାଯାଇଥିଲା । ତଥାପି

ପେଟରେ ଛୁଆ ଥିବାର କୌଣସି ଲକ୍ଷଣ ନଥିଲା । ଓମାନାର ବନ୍ଧୁ ବାନ୍ଧବ ମାନେ ଅତ୍ୟନ୍ତ ହତୋତ୍ସାହ ହୋଇ ପଡିଥିଲେ । କିନ୍ତୁ ଓମାନାର ଅମ୍ମାଙ୍କର ଉପରେ ସଂପୂର୍ଣ୍ଣ ବିଶ୍ୱାସ ଥିଲା । ତେଣୁ ସେ ପୁରା ଆଶାବାଦୀ ରହିଥିଲେ । ସେ ଯେତେବେଳେ ଅମ୍ମାଙ୍କୁ ଡାକ୍ତରଙ୍କର ବିବୃତି, ଏକ୍ସରେର ଫଳାଫଳ ବିଷୟରେ କହିଲେ, ଅମ୍ମା ସରଳ ଭାବରେ ହସି କହିଲେ "ଝିଅ ! ସାହସ ଧର, ସେ ଛୁଆଟି ଭଗବାନଙ୍କର ଦତ୍ତ ପୁଅ, ଖାଲି ସାଧାରଣ ପିଲା ନୁହଁ, ସେମାନେ ତାର ଛବି କୌଣସି ମତେ ନେଇ ପାରିବେ ନାହିଁ" । ଓମାନା ଅମ୍ମାଙ୍କର କଥା ଅକ୍ଷରେ ଅକ୍ଷରେ ବିଶ୍ୱାସ କଲେ ।

ଐଶ୍ୱରୀକ ଲୀଳା ଆହୁରି ସରି ନଥିଲା । ଓମାନାଙ୍କର ଗର୍ଭାବାସର ଦଶମାସ ପୂରଣ ହେଲା, ତଥାପି ସେ ପ୍ରସବ କରି ନଥିଲେ । ଦିନ ପରେ ଦିନ, ମାସ ପରେ ମାସ ବିତିବାକୁ ଆରମ୍ଭ ହେଲା । କିଛି ବଦଳିଲା ନାହିଁ । ଓମାନାଙ୍କର ଗର୍ଭାବାସର ତେର ମାସ ପୂରଣ ହେଲା । ଗ୍ରାମବାସୀ ମାନେ ତାକୁ ଦୁର୍ବ୍ୟବହାର କରି ଚିଡାଇବାକୁ ଆରମ୍ଭ କଲେ ଓ ଅମ୍ମାଙ୍କୁ ଥଟ୍ଟା କରି କହିଲେ, ଶେଷରେ କହିଲେ ସେ ଗୋଟିଏ ହାତୀ ଛୁଆ ଜନ୍ମ କରିବ । ଆଉ କେତେଜଣ ବ୍ୟଙ୍ଗ କରି କହିଲେ "ଓ ! ସେ ମାଛ ବାଲି ତାକୁ ଗୋଟେ ବଢିଆ ଛୁଆ ଦେଇଛି, ବୋଧେ ସେଇଟା ଗୋଟଏ ସାପ !" ଓମାନା ଓ ତାର ସ୍ୱାମୀ ସାରାଦିନ ପ୍ରାର୍ଥନା ଓ ଧ୍ୟାନରେ କଟାଇବାକୁ ଆରମ୍ଭ କଲେ । ତାଙ୍କର ଏକମାତ୍ର ସମ୍ବଳ ଓ ସମର୍ଥନକାରିଣୀ ଥିଲେ ଦେବୀ ମା । ଏପରି ପରୀକ୍ଷା ସେ ଦୁଇଜଣଙ୍କ ପାଇଁ ଅତୀବ କଠିନ ଥିଲା । ଷୋହଳ ମାସ ବିତିଗଲା, ତଥାପି ଓମାନାର ସନ୍ତାନ ପ୍ରସବ ହେଲା ନାହିଁ । ଗ୍ରାମବାସୀ ମାନେ ତାଙ୍କର ଅଭଦ୍ର ବ୍ୟବହାର ଓ ଲାଞ୍ଛନା ଚାଲୁ ରଖିଲେ । ଅମ୍ମାଙ୍କ ପାଦ ପଦ୍ମରେ ସବୁ ସମର୍ପଣ କରି, ବିଶ୍ୱାସ ରଖି ସେ ଦୁହେଁ କଠିନ ବ୍ରତ ଉପାସନାରେ ରତ ରହିଲେ ।

ଶେଷରେ ତାଙ୍କର ଷୋହଳ ମାସ ଗର୍ଭବାସରେ ଅମ୍ମା ତାଙ୍କର ପରିବାର ବର୍ଗଙ୍କୁ ଡାକି ତାଙ୍କୁ ହସପିଟାଲକୁ ନେବା ପାଇଁ ଉପଦେଶ ଦେଲେ । ଅମ୍ମାଙ୍କର ଉପଦେଶ ଅନୁସାରେ ଓମାନା କ୍ୱିଲନ୍‌ର ଭିକ୍ଟୋରିଆ ହସପିଟାଲରେ ଭର୍ତ୍ତି ହୋଇଥିଲେ । ଏହି ଅସାଧାରଣ ପ୍ରସୁତିର ଖବର ଜାଣିବା ପାଇଁ ଲୋକ ଜମା ହେବାକୁ ଲାଗିଲେ । ପରିବାରବର୍ଗଙ୍କ ପାଖରୁ ସେ ଷୋହଳ ମାସ ଗର୍ଭବତୀ ବୋଲି ଜାଣି ଡାକ୍ତର ମାନେ

ପୁଣି ତାଙ୍କୁ ତନ୍ନ ତନ୍ନ ଭାବରେ ପୁଣି ପରୀକ୍ଷା କରି କହିଲେ ଯେ ପେଟ ଭିତରେ ଛୁଆ ନାହିଁ, ଯଦିବା ତାଙ୍କର ଗର୍ଭାବସ୍ଥାର ସମସ୍ତ ଲକ୍ଷଣ ରହିଛି ସେମାନେ ମଧ୍ୟ ବିରାଟ ଦ୍ୱନ୍ଦରେ ପଡିଛନ୍ତି ବୋଲି ମତ ଦେଲେ । ବହୁତ ଯୁକ୍ତି ତର୍କ ପରେ ସେମାନେ ଅସ୍ତ୍ରୋପଚାର କରିବାକୁ ସିଦ୍ଧାନ୍ତ କଲେ । ସି-ସେକ୍ସନ କଲାପରେ ଗୋଟିଏ ପୁରା ହୃଷ୍ଟପୁଷ୍ଟ ଛୁଆ ପେଟ ଭିତରେ ଥିବା ଦେଖାଗଲା । ଷୋହଳ ମାସ ଗର୍ଭବାସ ପରେ ଛୁଆଟି ପୃଥିବୀକୁ ଆସିଲା । ଅମ୍ମା ତାଙ୍କୁ ପରମ ଶକ୍ତିମୟୀଙ୍କର ତେଜରୁ ଜନ୍ମ ହୋଇଥିବା ଯୋଗୁ ଶକ୍ତି ପ୍ରସାଦ ନାମ କରଣ କରିଥିଲେ ।

ସେ ତିନିବର୍ଷ ବୟସରୁ ଧ୍ୟାନ ଓ ମନ୍ତ୍ର ଜପ କରିବା ଆରମ୍ଭ କରି ଦେଇଥିଲେ । ଅମ୍ମା ତାଙ୍କୁ ଗୋଟିଏ ରୁଦ୍ରାକ୍ଷ ମାଳ ଓ ଚଟି ଆସନ ଟିଏ ଦେଇଥିଲେ । ତା ଉପରେ ପୁରା ଯୋଗୀଙ୍କ ପରି ଉପବେଶନ ଭଙ୍ଗୀରେ ବସି ପବିତ୍ର 'ଓମ୍ ନମଃ ଶିବାୟ' ଓ 'ଓମ୍' ମନ୍ତ୍ର ଉଚ୍ଚାରଣ କରୁଥିଲେ । ସେ ଯେତେବେଳେ ଆଶ୍ରମକୁ ଆସନ୍ତି, ସେ ସାଙ୍ଗେ ସାଙ୍ଗେ ନିଜେ ଅମ୍ମାଙ୍କୁ ହିଁ ଖୋଜନ୍ତି । କିଛି ଫୁଲ ପାଖୁଡା ନେଇ ସେ ଅମ୍ମାଙ୍କର ପାଦ ପଦ୍ମରେ ଅର୍ପଣ କରନ୍ତି । ଅମ୍ମା ସବୁବେଳେ କହନ୍ତି "ତାର ଆଖି ଦୁଇଟି ଯୋଗୀଙ୍କର ଆଖିପରି । ଦୁଷ୍ଟ କିମ୍ବା ଚଂଚଳ ନୁହେଁ ।" ସ୍କୁଲରେ ସେ ଅନ୍ୟାନ୍ୟ ବିଦ୍ୟାର୍ଥୀ ମାନଙ୍କୁ କହନ୍ତି "ତୁମେ ମାନେ ଅମ୍ମାଙ୍କୁ ଧ୍ୟାନ କର, ନହେଲେ ରୋଗୀଣା ହୋଇଯିବ" ।



## ଶକ୍ତି ପ୍ରସ୍ରସାଦ - ୨

ରତ୍ନାଆମ୍ମା ଏବଂ ତାଙ୍କର ସ୍ୱାମୀ କୃଷ୍ଣ ଆଉ ଗୋଟିଏ ଭାଗ୍ୟବାନ ଦମ୍ପତି ଯିଏକି ଅମ୍ମାଙ୍କର ଆଶୀର୍ବାଦରୁ ଶୁଭ ଲକ୍ଷଣ ଯୁକ୍ତ ପୁତ୍ର ସନ୍ତାନ ଲାଭ କରିଥିଲେ । ଜଣେ ସାଙ୍ଗଙ୍କର ଭଲ ହୋଇ ଯିବାର ଖବର ପାଇ ରତ୍ନା ଅମ୍ମା ୧ ୯ ୭ ୬ ମସିହାରେ ଆଶ୍ରମକୁ ଆସିଥିଲେ । ତାଙ୍କର ଖ୍ରିଷ୍ଟୀୟାନ ପଡୋଶୀ ରୀନା ସବୁବେଳେ ଛାତିରେ ଭୀଷଣ ଯନ୍ତ୍ରଣା ଭୋଗୁଥିଲେ । ଅମ୍ମାଙ୍କ ବିଷୟରେ ଶୁଣି ରୀନା ଅମ୍ମାଙ୍କୁ ଦର୍ଶନ କରିବାକୁ ଯାଇଥିଲେ । ଅମ୍ମା ତାଙ୍କୁ ପବିତ୍ର ପାଦୁକ ପାଣି ଓ ବିଭୂତି ଦେଇଥିଲେ ଏବଂ ତାକୁ ସେବନ କରି ରୀନା ପୁରାପୁରି ଯନ୍ତ୍ରଣା ମୁକ୍ତ ହୋଇ ଯାଇଥିଲେ । ତାଙ୍କ ପଡୋଶୀର ଅନୁଭୂତି ରତ୍ନାକୁ ଅମ୍ମାଙ୍କ ପାଖକୁ ଆସିବା ପାଇଁ ଉତ୍ସାହିତ କରିଥିଲା । ରତ୍ନା କିଛି ବର୍ଷ

ଧରି ଭୟଙ୍କର ପେଟ ମୋଡ଼ା ଯନ୍ତ୍ରଣା ଭୋଗୁଥିଲେ । ସେ ଯେତେବେଳେ ବଲ୍ଲିକାଓ୍ୱ ଆସିଲେ, ଅମ୍ମା ସେତେବେଳେ ଭାବଦର୍ଶନ ରେ ବସିଥିଲେ । ସେ ତାଙ୍କୁ ଗୋଟିଏ କଦଳୀ ଖାଇବାକୁ ଯାଚିଲେ । ରତ୍ନାଙ୍କର ଭୟଙ୍କର ପେଟର ଯନ୍ତ୍ରଣା ସାଙ୍ଗେ ସାଙ୍ଗେ ବନ୍ଦ ହୋଇ ଯାଇଥିଲା ।

୧୯୭୧ ମସିହାରେ ରତ୍ନା କୃଷ୍ଣଙ୍କୁ ବିବାହ କରିଥିଲେ । ବିବାହର ପାଂଚ ବର୍ଷ ପରେ ମଧ ପିଲା ଛୁଆ ହେଉନଥିବା ଯୋଗୁଁ ସେମାନେ ଭାରି ଦୁଃଖରେ ଥିଲେ । ରତ୍ନା କେବେହେଲେ ଅମ୍ମାଙ୍କୁ ଛୁଆଟିଏ ପାଇଁ ଅଭିଳାଷ ଜଣାଇ ନଥିଲେ । ଦିନେ ଅମ୍ମା ତାଙ୍କୁ ମଧୁର ଭାବରେ ପଚାରିଲେ "ତୁମର କଣ ପୁଅଟିଏ ହବା ପାଇଁ ମନ ଡାକେ ନାହିଁ ? ଅମ୍ମା ତୁମର ପ୍ରାର୍ଥନା ପରିପୁରଣ କରିବ, ଆଉ ଦଶମାସ ପରେ ତୁମର ପୁତ୍ର ସନ୍ତାନଟିଏ ଜନ୍ମ ହେ‌ । ଅମ୍ମାଙ୍କର ବଚନ ଅନୁସାରେ ରତ୍ନା ପୁରା ନିଶ୍ଚିତ ଥିଲେ ଯେ ନିଶ୍ଚୟ ଗର୍ଭବତ ହେ‌ଇଛନ୍ତି । ଡାକ୍ତର ମାନେ ଏକ୍ସରେ ଦେଖି କହିଲେ ଯେ ସେ ଗର୍ଭବତୀ ନୁହ‌ ଏଣୁ କୃଷ୍ଣନ୍ ଡାକ୍ତର ମାନଙ୍କ କଥା ବିଶ୍ୱାସ କରି ଛୁଆ ଜନ୍ମ ନହେଲା ଯାଏ ରତ୍ନା‌ ବଲ୍ଲିକାଓ୍ୱ ଯିବାକୁ ବାରଣ କଲେ । ଏହି ସମୟରେ ଗଭୀର ପ୍ରାର୍ଥନା ଫଳରେ ରତ୍ନା ଅମ୍ମାଙ୍କର ଦର୍ଶନ ପାଇବାକୁ ଲାଗିଲେ ।

ଶେଷରେ ତାଙ୍କର ବିଶ୍ୱାସର ପୁରସ୍କାର ତାଙ୍କୁ ମିଳିଥିଲା । ଅମ୍ମାଙ୍କର ଭବିଷ୍ୟତ ବାଣୀର ନିର୍ଦ୍ଦିଷ୍ଟ ଦିନ ଅନୁସାରେ ଗୋଟିଏ ପୁତ୍ର ସନ୍ତାନ ଜନ୍ମ ହୋଇଥିଲା । ଅତି କମ୍ ବୟସରେ ସେ ପିଲାଟି ନିଜର ମାତୃ ଭାଷା 'ମାଲାୟାଲମ' କହିବାକୁ ଆରମ୍ଭ କରି ଦେଇଥିଲା ଏବଂ ସେ ରଚନା କଲା ଯେ ତାର ପ୍ରକୃତ ପିତା କୃଷ୍ଣନ୍ ନୁହଁ, ସ୍ୱୟଂ ଭଗବାନ୍ ହିଁ ତାର ପିତା । ମାଛ ଧରାଳୀ ଗ୍ରାମରେ ଜନ୍ମ ଓ ପାଳିତ ହୋଇ ବି ସେ କେବେହେଲେ ମାଛ ବା ମାଂସ ଖାଏ ନାହିଁ । ପ୍ରତ୍ୟହ ସକାଳେ ସନ୍ଧ୍ୟାରେ ସେ ଧ୍ୟାନରେ ବସିବାକୁ କେବେ ଭୁଲେ ନାହିଁ । ବେଳେ ବେଳେ ସେ ଅଧ ଘଂଟାରୁ ବେଶୀ ସମୟ ଧ୍ୟାନରେ ବସେ । ମଝିରେ ମଝିରେ ତାକୁ କିଏ ଜଣେ ଧ୍ୟାନରୁ ଉଠାଇ ଦିଅନ୍ତି । ଶୈଶବରୁ ଶକ୍ତିପ୍ରସାଦ ଅମ୍ମାଙ୍କର ମନ୍ଦିର ଗଢି ତା ଭିତରେ ଶିବ ଓ ପାର୍ବତୀଙ୍କୁ ପୂଜା କରେ ।

ଦିନେ ଜଣେ ଅଜଣା ଲୋକ ଶକ୍ତିପ୍ରସାଦଙ୍କ ଘରକୁ ବୁଲି ଆସିଲେ, ସେଦିନ

କୃଷ୍ଣନ୍ ସହର ବାହାରକୁ ଯାଇଥିଲେ । ରତ୍ନା ଅତିଥିଙ୍କୁ ବାରଣ୍ଡାରେ ବସିବାକୁ ନିମନ୍ତ୍ରଣ କରି କପେ କଫି ପିଇବାକୁ ଦେଲେ । ହଠାତ୍ ସାତ ବର୍ଷର ଶକ୍ତିପ୍ରସାଦ ତାଙ୍କୁ ଗୋଟେ ଚାପୁଡା ମାରିଲା । ରତ୍ନାଆମ୍ମା ତାଙ୍କୁ ସାଙ୍ଗେ ସାଙ୍ଗେ ଭିଡି ଆଣିଲା । ଶକ୍ତି ମାଙ୍କୁ ପ୍ରତିବାଦ କରି କହିଲେ "ମା ! ସେ ଗୋଟିଏ ଚୋର, ତାକୁ ସେଠି ବସାଅ ନାହିଁ, ତାକୁ କଫି ପିଇବାକୁ ଦିଅନାହିଁ" । ଆଶ୍ଚର୍ଯ୍ୟ ହୋଇ ରତ୍ନାଆମ୍ମା ପଚାରିଲେ 'କିପରି ଜାଣିଲୁ ସେ ଚୋର ବୋଲି ?' ଶକ୍ତି କହିଲେ "ତା ମୁହଁ କୁ ଦେଖି" । ଏକଥା ଶୁଣି ସାଙ୍ଗେ ସାଙ୍ଗେ ଚୋର ସେଠୁ ଉଠି ଦଉଡି ପଳାଇ ଗଲା ।

ବେଳେ ବେଳେ ଶକ୍ତିପ୍ରସାଦ ତାଙ୍କ ମା ଙ୍କୁ କହୁଥିଲେ "ତୁମେ ମୋର ମା ନୁହଁ, ମୋର ମା ବଲ୍ଲିକାଓ୍ଵରେ ଅଛି" (ଅମ୍ମା) । ଯଦି ପଡୋଶୀ କିମ୍ବା ପରିବାର ଲୋକ କିଏ ଅସୁସ୍ଥ ହୋଇ ପଡନ୍ତି, ଶକ୍ତି ତୁଳସୀ ପତ୍ର, ପାଦୁକ ପାଣୀ ଓ ବିଭୂତି ନେଇ ତାଙ୍କ ପାଖକୁ ଯାଆନ୍ତି । ସେ ପାଦୁକ ପାଣି ସିଂଚି ଦେଲାପରେ ରୋଗ ଭଲ ହୋଇଯାଏ । ନିଜ ଭିତରୁ ଆଜ୍ଞା ପାଇଲେ ଶକ୍ତି ଯାଇ ବଳେ ବଳେ ସବୁ କରନ୍ତି । ଅନେକ ସମୟରେ ଯେତେ ଡାକିଲେ ବି ସେ କିଛି କରନ୍ତି ନାହିଁ ।

ଦିନେ ଶକ୍ତି ପଡୋଶୀ ଘରକୁ ବୁଲି ଯାଇଥିଲା ବେଳେ, ଅକସ୍ମାତ ହାତ ବାଜି ଟେବୁଲ ଉପରେ ଥିବା କେକ୍ ଟି ତଳେ ପଡି ନଷ୍ଟ ହୋଇଗଲା । ତାଙ୍କ ଘରର ଝିଅ ରାଗି ତାଙ୍କୁ ଗୋଟିଏ ଚାପୁଡା ମାରିଲା ତା ପରଦିନ ସେ ଝିଅ ଓ ତାର ମା ଶକ୍ତିଙ୍କର ଘରକୁ ଆସିଲେ । ଯେଉଁ ଡାହାଣ ହାତରେ ସେ ଶକ୍ତିଙ୍କୁ ମାରିଥିଲା, ସେ ହାତଟି ଫୁଲି ଭୀଷଣ ପୀଡା ଦେଉଥିଲା । ସେ ହାତଟି ହଲାଇ ପାରୁନଥିଲା । ଶକ୍ତିକୁ ଚାପୁଡା ମାରିଥିବା ଯୋଗୁ ଏପରି ଶାସ୍ତି ନିଶ୍ଚିତ ମିଳିଲା ବୋଲି ଭାବି ସେମାନେ କ୍ଷମା ମାଗିବାକୁ ଆସିଲେ । ରତ୍ନାଆମ୍ମା, ଅମ୍ମାଙ୍କ ପାଖକୁ ଯାଇ ପ୍ରାର୍ଥନା ମାଗିବାକୁ ଉପଦେଶ ଦେଲେ । ତା ପରଦିନ ସେମାନେ ଭକ୍ତି ସହ ଅମ୍ମାଙ୍କୁ କ୍ଷମା ପ୍ରାର୍ଥନା କଲେ, ଠିକ୍ ତାପରେ ପରେ ସେ ଝିଅଟିର ହାତ ଭଲ ହୋଇ ପୂର୍ବାବସ୍ଥାକୁ ଫେରି ଆସିଥିଲା ।

ପିଲାବେଳୁ ଶକ୍ତିପ୍ରସାଦ ଅନ୍ୟମାନଙ୍କ ପ୍ରତି ଦୟାଳୁ ଭାବ ଦେଖାଉଥିଲେ । ଯଦି ପାଖ ପଡିଶା ସାହିରେ କିଏ ଭୋକ ଉପାସରେ ଥାଆନ୍ତି, ସେ ଆଣି ଘରେ ଖାଇବାକୁ ଦିଅନ୍ତି । ତାଙ୍କର ଦୟାଳୁ ଭାବ ଓ ଉଦାରତା ପିତାମାତାଙ୍କୁ ସମୟ ସମୟରେ

ଚିନ୍ତିତ କରୁଥିଲା, କାରଣ ସେମାନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥିଲା । ଯଦି ତାଙ୍କର ଭୋକିଲା ଲୋକଙ୍କୁ ବାପା ମା ଖାଦ୍ୟ ଦେବାକୁ କୁଣ୍ଠିତ ବୋଧ କରୁଥିଲେ, ଶକ୍ତି ସେମାନଙ୍କୁ ନିଜର ଖାଦ୍ୟ ଦେଇ ଉପାସରେ ରହୁଥିଲେ । ରତ୍ନାଆମ୍ମା ନିଜକୁ ଶକ୍ତିଙ୍କର ପାଳିତ ମା ବୋଲି ଭାବୁଥିଲେ । ସେ ଅମ୍ମାଙ୍କର ତରଫରୁ ତାଙ୍କୁ ଲାଳନ ପାଳନ କରି ଅମ୍ମାଙ୍କୁ ହିଁ ଶକ୍ତିର ନିଜ ମା ବୋଲି ଭାବୁଥିଲେ ।



## ଉନ୍ନି କାନନ୍ (ଶକ୍ତି ପ୍ରସାଦ - ୩)

ସରସାନ୍ ଓ ତାଙ୍କ ସ୍ତ୍ରୀ ତାନକମ୍ ଅମ୍ମାଙ୍କର ଆଶ୍ରମ ନିକଟରେ ରହୁଥିଲେ । ତାଙ୍କର ବିବାହର ଅନେକ ବର୍ଷ ବିତି ଯାଇଥିଲେବି ଛୁଆଟିଏ ନଥିଲା ବୋଲି ସେମାନେ ଭାରି ଦୁଃଖୀ ଥିଲେ । ସେମାନଙ୍କୁ ଜଣେ ଅମ୍ମାଙ୍କର ଦୈବୀ ଶକ୍ତି ବିଷୟରେ ବିଶେଷ ଭାବରେ କହିଲା । ଫଳରେ ସେ ଦୁହେଁ ଅମ୍ମାଙ୍କର ଶରଣାଗତ ହୋଇ ନିଷ୍ଠାସହ ଅମ୍ମାଙ୍କୁ ମନୋବାଞ୍ଛା ପୂରଣ ପାଇଁ ଭିକ୍ଷା ମାଗିଲେ । ଦିନେ ଭାବଦର୍ଶନ ସମୟରେ ଅମ୍ମା ତାନକମ୍‌ଙ୍କୁ କହିଲେ ଯେ ସେ ଅତିଶିଘ୍ର ଗର୍ଭବତୀ ହେବେ ଏବଂ କିଛିଦିନ ଭିତରେ ତାନକମ୍ ସତକୁ ସତ ଗର୍ଭବତୀ ହେଲେ । ତିନିମାସ ଗର୍ଭାବସ୍ଥାରେ ତାଙ୍କର ଭୀଷଣ ପେଟ ବ୍ୟଥା ହୋଇ ରକ୍ତ ଝରିବାକୁ ଲାଗିଲା । ସେଠାରେ ଆଖପାଖରେ ହସପିଟାଲ ବା ଡାକ୍ତର ନଥିଲେ । ପରିବାରବର୍ଗ କଣ କରିବେ ଉପାୟ ନପାଇ ଭାଙ୍ଗି ପଡିଲେ । ତାନକମ୍ କଷ୍ଟ ସହି ନପାରି ଜୋରରେ ଚିତ୍କାର କରିବାକୁ ଲାଗିଲା । ଠିକ୍ ସେହି ମୁହୂର୍ତ୍ତରେ ଆଶ୍ଚର୍ଯ୍ୟ ଜନକ ଭାବରେ ଅମ୍ମା ଆସି ସେହି ଘରେ ଉପସ୍ଥିତ ହେଲେ । ସେ ତୁଳସୀ ପତ୍ର ରସ ତିଆରି କରି ତାନକମ୍‌କୁ ପିଇବାକୁ ଦେଲେ । ଅମ୍ମା କିପରି ତାଙ୍କ ଘରକୁ ହଠାତ୍ ଏପରି ଏତେ ରାତିରେ ଆସିଲେ ? ଅମ୍ମା ସେତେବେଳେ ଆଉ କିଛି ଭକ୍ତଙ୍କର ସହ ସେହି ଦ୍ୱୀପର ଆଉ ଗୋଟିଏ ଜାଗାକୁ ଆସୁଥିଲେ । ଡଙ୍ଗା ତାନକମ୍‌ର ଘର ପାଖାପାଖି ହେଲା ବେଳକୁ ଅମ୍ମାଙ୍କର ହଠାତ୍ ଭାବର ପରିବର୍ତ୍ତନ ହେଲା ଓ ସେ ଭାରି ଅସ୍ଥିର ହୋଇ ପଡିଲେ । ଠିକ୍ ତା ପରମୁହୂର୍ତ୍ତରେ ସେ ତାନକମ୍ ଘରକୁ ଯିବା ପାଇଁ ଜିଦ୍ କଲେ । ଯେହେତୁ ସେମାନଙ୍କର ସେଦିନ ଅନ୍ଧାର ରାତିରେ ଆହୁରି ଦୂରବାଟକୁ ଯିବାର ଥିଲା, ଅନ୍ୟାନ୍ୟ ଭକ୍ତମାନେ ତାଙ୍କୁ ତାନକମ୍‌ର ଘରକୁ

ଯିବା ପାଇଁ ନିବୃତ କରାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ ଅମ୍ମା ତାଙ୍କର ଇଚ୍ଛାରେ ଅଟଳ ରହି, ଡଙ୍ଗାକୁ ତାନକମ୍‌ର ଘର ପାଖରେ ଲଙ୍ଗର ପକାଇ ଅଟକାଇଲେ । ଥରେ ଗର୍ଭାବସ୍ଥାରେ ତାନକମ୍ ଯେତେବେଳେ ଅମ୍ମାଙ୍କୁ ଦର୍ଶନ କରିବାକୁ ଆସିଥିଲେ, ଅମ୍ମା ତାଙ୍କୁ କହିଲେ "ତୁମର ଗୋଟାଏ ଭୀଷଣ ଘଡ ଘଡି, ଚଡ ଚଡି ମାରୁଥିବା ପ୍ରବଳ ବର୍ଷା ଝଡ ରାତିରେ ପ୍ରସବ ହେବ" । ଠିକ୍ ଅମ୍ମାଙ୍କର ଭବିଷ୍ୟତ ବାଣୀ ଅନୁସାରେ ତାନକମ୍‌ଙ୍କର ଅଲେପୀରେ ମେଡିକାଲ କଲେଜର ହସପିଟାଲ୍‌ରେ ଅନ୍ଧାର ଝଡ ବାତ୍ୟା ଭରା ଘୋର ବର୍ଷା ରାତିରେ ସୁନ୍ଦର ପୁତ୍ର ସନ୍ତାନ ଟିଏ ଜନ୍ମ ହୋଇଥିଲା । ହସପିଟାଲ୍‌ରେ ବିଦ୍ୟୁତ ଶକ୍ତି ଚାଲିଯାଇଥିଲା । ପୁରା କୋଠାଟି ଅନ୍ଧାରରେ ବୁଡି ଯାଇଥିଲା । ଶିଶୁ ପାଖରେ ଥିବା ଲୋକମାନେ ଗୋଟିଏ ଅଦ୍ଭୁତ ଘଟଣା ପରିଦର୍ଶନ କରିଥିଲେ । ପିଲାଟିର ଆଖି ଏତେ ଅନ୍ଧାର ଭିତରେ ବି ଉଜ୍ଜ୍ୱଳ ଚକ୍ ଚକ୍ ହୋଇ ଉଦ୍‌ଭାସିତ ହେଉଥିଲା । ଅମ୍ମା ତାକୁ ଉନ୍ନିକାନନ୍ ବୋଲି ନାମ ଦେଇଥିଲେ । ସେ ଗୋଟିଏ ଅସାଧାରଣ ପିଲା ପରି ବଢିବାକୁ ଲାଗିଲା । ସେ ବହୁତ ବୁଦ୍ଧିମାନ ଓ ତାର ମୁଖ ମଣ୍ଡଳ ତେଜସ୍ୱୀତାରେ ଉଜ୍ଜ୍ୱଳ ଦିଶୁଥାଏ । ଯଦିଓ ସେ ଧୀବର ପରିବାର ରେ ଜନ୍ମ ହୋଇଥିଲା, ସେ ମାଛ ମାଂସ ଖାଏନାହିଁ । ବେଳେବେଳେ ସେ ବିଭିନ୍ନ ପୂଜା ପଦ୍ଧତି ଓ ଅନ୍ୟାନ୍ୟ ଧର୍ମ ବିଷୟରେ ଜାଣିବା ପାଇଁ ଅନେକ ପ୍ରଶ୍ନ ପଚାରେ । ସେ ସବୁବେଳେ ନିଜର ଦୂରଦୃଷ୍ଟି ଅନୁସାରେ କାର୍ଯ୍ୟ କରେ । ଯେତେ ଦୁଷ୍ଟାମୀ କଲେ ମଧ ତାକୁ କିଏ ଗାଳି ବା ମାଡ ଦିଅନ୍ତି ନାହିଁ । କଦବା କ୍ୱଚିତ ତାକୁ କିଏ ଦୁଷ୍ଟାମୀ ଯୋଗୁ ଯଦି ମାରନ୍ତି ବା ଗାଳି ଦିଅନ୍ତି, କୌଣସି ଗୋଟିଏ ବିଚିତ୍ର ଅଜଣା କାରଣରୁ ସେମାନେ ରାତିରେ ଶୋଇ ପାରନ୍ତି ନାହିଁ । ଅମ୍ମା ଥରେ କହିଥିଲେ "ସେ ଯାହା ମାଗିବ, ମୁଁ ତାକୁ ତାହା ଦେବି" । ଉନ୍ନିକାନନ୍‌ର ବାପା ମା ଙ୍କର ଗଭୀର ବିଶ୍ୱାସ ଯେ ପ୍ରତି ପଦେ ପଦେ ଅମ୍ମା ତାର ସୁରକ୍ଷା କରିବେ ।



## ଶକ୍ତି ପ୍ରସାଦ - ୪

ହାସନ କୁଂଜୁ, ଷୋହଳ ବର୍ଷ ବୟସୀ ସୁବିଦାକୁ ବିବାହ କରିଥିଲେ । ସୁବିଦାକୁ ଆସି ବତିଶ ବର୍ଷ ହେଲା, ତଥାପି ତାର ପିଲା ପିଲି ହୋଇ ନଥିଲେ । ତାର ସ୍ୱାମୀ ୧୯୭୭ ମସିହାରେ ଅନେକ ଅପରେସନ୍ ପରେ ବିଫଳ ହୋଇ ଗୋଟିଏ ଶୁଖୁ ନଥିବା ଗୋଡ ଘାଆ ନେଇ ଅମ୍ମାଙ୍କୁ ଦର୍ଶନ କରିବାକୁ ଯାଇଥିଲେ । ଯେତେବେଳେ ଏହି ଘାଆଟି ଅମ୍ମାଙ୍କର କରୁଣାରୁ ସଂପୂର୍ଣ୍ଣ ରୂପରେ ଭଲ ହୋଇଗଲା, ସୁବିଦା ଓ ତାର ସ୍ୱାମୀ ଅମ୍ମାଙ୍କର ଭକ୍ତ ହୋଇଗଲେ ।

ଛୁଆଟିଏ ହେବାର ସମସ୍ତ ଆଶା ହରାଇ ସୁଦ୍ଧା ସୁବିଦା କେବେହେଲେ ଅମ୍ମାଙ୍କୁ ହୃଦୟ ଖୋଲି କିଛି କହିନଥିଲେ । ଡାକ୍ତର ମାନେ ଭାବୁଥିଲେ ବିନା ଅସ୍ତ୍ରୋପଚାରରେ ତାଙ୍କର ସନ୍ତାନ ହେବାର ସମ୍ଭାବନା ନାହିଁ । ଦିନେ ସୁବିଦାର ହୃଦୟର ଦୁଃଖ ବୁଝିପାରି ଅମ୍ମା ତାଙ୍କୁ କହିଲେ "ତୋର ମନରେ ଭାରି ଦୁଃଖ ଏତେ ଦିନ ଯାଏ ସନ୍ତାନ ଟିଏ ନାହିଁ ବୋଲି, ଅମ୍ମା ତତେ ସନ୍ତାନଟିଏ ଦେବ" । ଖୁବ୍ କମ୍ ଦିନ ଭିତରେ ସୁବିଦା ଗର୍ଭବତୀ ହେଲେ । ଏହିପରି ସୁବିଦା ଷୋହଳ ବର୍ଷ ବିବାହ ପରେ ବତ୍ରିଶବର୍ଷ ବୟସରେ ୧୯୭୮ ମସିହାରେ ଗର୍ଭବତୀ ହେଲେ । ସୁବିଦା ଓ ତାଙ୍କ ବନ୍ଧୁବାନ୍ଧବ ମାନଙ୍କ ପାଇଁ ଏହା ଅତୀବ ଅସାଧାରଣ ଘଟଣା ଥିଲା । ମୁସଲମାନ ସଂପ୍ରଦାୟରୁ ଉପହାସ ଓ ଲାଞ୍ଛନା ଶୁଣିବା ଭୟରେ ସୁବିଦା ଓ ତାଙ୍କର ସ୍ୱାମୀ ଏ ଘଟଣା ଅମ୍ମାଙ୍କ ସଂପୃକ୍ତ ଥିବା କଥାକୁ ସମ୍ପୂର୍ଣ୍ଣ ଗୋପନ ରଖିଲେ ।

୧୯୭୯ ମସିହାରେ ସୁବିଦା ଗୋଟିଏ ଅତି ସୁନ୍ଦର ପୁତ୍ର ସନ୍ତାନ ଜନ୍ମ ଦେଲେ । ବାପା ମା ତାକୁ ନାମ ରଖିଲେ ଅନସିମ୍ । ପାଖ ପଡୋଶୀ ମାନେ ତାକୁ ମଣିକାନ୍ତନ୍ ବୋଲି ଡାକୁଥିଲେ । ଅମ୍ମା ତାଙ୍କୁ ଶକ୍ତି ପ୍ରସାଦ ନାମ ଦେଲେ । ସେ ଗୋଟିଏ ଅସାଧାରଣ ବୁଦ୍ଧିମାନ ସମ୍ପର୍ଣ୍ଣ ଉଲ୍ଲେଖ ଯୋଗ୍ୟ ତେଜସ୍ୱୀ ବାଳକ ଥିଲେ । ସମସ୍ତେ ଏହି ବାଳକଟି ପ୍ରତି ଆକର୍ଷଣ ଅନୁଭବ କରନ୍ତି । କେବଳ ଅମ୍ମା ହିଁ ଏହି ବାଳକଟିର ଭବିଷ୍ୟତ ବିଷୟ ପଚାରିଲେ କହନ୍ତି "ମୁଁ ଧ୍ୟାନରେ ବସିଥିବା ବେଳେ ମୋ ଦେହରୁ ଶକ୍ତି ବାହାରି ଭବିଷ୍ୟତରେ ଗର୍ଭବତୀ ମା'ର ଗର୍ଭରେ ପ୍ରବେଶ କରନ୍ତି ଏବଂ ସେ ଗର୍ଭଧାରଣ କରେ, ଏହି ପିଲାମାନଙ୍କ ଭିତରୁ ଅନେକେ ଆଦର୍ଶ ସନ୍ୟାସୀ ହେବେ ଓ

ଆଉ କେତେଜଣ ଗୃହସ୍ଥ ଜୀବନ ଯାପନ କରିବେ । ସେମାନେ ଯେଉଁଠାରେ ଥାଆନ୍ତୁ ନା କାହିଁକି ସେମାନେ ଐଶ୍ୱରୀୟ ମାର୍ଗ ଅନୁସରଣ କରିବେ ।" ଏହି ସତ୍ୟ ବାଣୀ ଶୁଣି ଏପରି କେତେକଙ୍କ ମା ମାନେ ଚିନ୍ତିତ ହୋଇ ଯାଇଥିଲେ ଯେ ପରେ ସେମାନେ ତାଙ୍କର ପିଲାମାନଙ୍କୁ ସାଂସାରିକ ଜୀବନରୁ ହରାଇ ବସିବେ । ସେଥିପାଇଁ ଅମ୍ମା ସେମାନଙ୍କୁ ଆଉ ଗୋଟିଏ ସନ୍ତାନ ଦିଅନ୍ତି ଓ ତାଙ୍କ ବାପା ମା ଙ୍କର ସନ୍ତାନକୁ ବିବାହ ଦେଇ ତାର ଘର ସଂସାର ଦେଖିବାର ଆଶାକୁ ପୂରଣ କରନ୍ତି । ପରବର୍ତ୍ତୀ କିଛି ବର୍ଷରେ ଏଇ ମା ମାନେ ଆଉ ଗୋଟିଏ ସନ୍ତାନ ଲାଭ କରନ୍ତି ।



# ଆଧ୍ୟାତ୍ମିକ ଜ୍ଞାନାଭିଳାଷୀ ଶିଷ୍ୟ ମାନଙ୍କ ଅନୁଭୂତି

ଉନ୍ନିକୃଷ୍ଣଙ୍କୁ ପ୍ରଥମେ ଆମ୍ମାଙ୍କ ପାଖରେ ଶିଷ୍ୟ ଭାବେ ବହୁଦିନ ରହିବା ପାଇଁ ସୁଯୋଗ ମିଳିଥିଲା । ସେ ଷଷ୍ଠ ଶ୍ରେଣୀ ପରେ ଆଉ ପାଠ ପଢି ନଥିଲେ । ତାଙ୍କ ଭିତରେ ଅମ୍ମାଙ୍କର ଉଦାରତା ଓ ଆଶୀର୍ବାଦର ଉଦାହରଣ ଦେଖିବାକୁ ମିଳେ । ଗୁରୁଙ୍କ ଦୟା ଥିଲେ ଜଣେ ଦରପାଠୁଆ ବାଳକ ମଧ୍ୟ ମର୍ମସ୍ପର୍ଶୀ କବି ହୋଇ ପାରିବ । ଉନ୍ନିକୃଷ୍ଣ ଅଳ୍ପ ଦିନ ପାଇଁ ସ୍କୁଲ ଯାଇ, ତାପରେ ସବୁ ଛାଡି ଏଣେ ତେଣେ ବିଭିନ୍ନ କାମ କରିବାକୁ ଲାଗିଲେ । ୧୯୭୬ ମସିହାରେ, କୋଡିଏ ବର୍ଷ ବୟସରେ ସେ ଆମ୍ମାଙ୍କ ବିଷୟରେ ଶୁଣିଥିଲେ ଏବଂ ଆମ୍ମାଙ୍କ ଦର୍ଶନ କରିବା ପାଇଁ ଆସିଥିଲେ । ସେ ପ୍ରଥମ ଦେଖାରୁ ହିଁ ଅମ୍ମାଙ୍କ ପ୍ରତି ଅଗାଧ ଭକ୍ତି ଓ ବିଶ୍ୱାସ ଅନୁଭବ କରିଥିଲେ । ତା ପରଠାରୁ ସେ ତାଙ୍କୁ ପ୍ରାୟ ଦେଖା କରୁଥିଲେ ଏବଂ ଉପଦେଶ ଭିକ୍ଷା କରୁଥିଲେ । ଗୋଟିଏ ବର୍ଷ ଚାଲିଗଲା, ଅମ୍ମା ତାଙ୍କୁ ଦିନେ ତାଙ୍କ ପାଖରେ ରହି ଦୈନିକ ମନ୍ଦିର ପୂଜା କାର୍ଯ୍ୟ ସଂପାଦନ କରିବାକୁ କହିଲେ । ସେ ତାଙ୍କୁ ପ୍ରତିଦିନ ଲଳିତା ସହସ୍ରନାମାବଳୀ ପଢିବାକୁ କହିଲେ ।

ସେହିଦିନ ଠାରୁ ତାଙ୍କର ଜୀବନ ନାଟକ ସଦୃଶ ବଦଳିବାକୁ ଲାଗିଲା । କେବଳ ଅମ୍ମାଙ୍କର ସାନ୍ନିଧ୍ୟରେ ହିଁ ତାଙ୍କର ସତ୍ୟ ଉପଲବ୍ଧି କରିବାର ସ୍ପୃହା ବଢି ଯାଇଥିଲା ତାଙ୍କର ସାରା ଦିନ କାଷ୍ଠା ନିୟମ ଆଚରଣ, ପୂଜା ସମ୍ବନ୍ଧୀୟ ଧର୍ମଶାସ୍ତ୍ର ପଢିବା, ଅମ୍ମାଙ୍କ ସହ କଥୋପ କଥନ ଓ ଅନ୍ୟାନ୍ୟ ଧାର୍ମିକ କାର୍ଯ୍ୟ ନିର୍ବାହରେ କଟୁଥିଲା । ତାଙ୍କର ଏହି କଠୋର ଶୃଙ୍ଖଳିତ ଜୀବନରେ ସେ ଧୀରେ ଧୀରେ ଅନୁଭବ କରିବାକୁ

ଆରମ୍ଭ କଲେ ଯେ ଭାବ ଦର୍ଶନ ସମୟର ଅମ୍ମା ଏବଂ ମଧୁର ମୂର୍ତ୍ତିମୟୀ ପ୍ରତିଦିନର ଅମ୍ମା, କେବଳ ଜଣେ, ଗୋଟିଏ ଅପରିସୀମ ଶକ୍ତିର ଦୁଇଟି ଅଂଶ ବା ଦୁଇଟି ମୁଖ ଜନ କଲ୍ୟାଣ ପାଇଁ ହିଁ ତାହାର ସୃଷ୍ଟି । ଏହି ଅନ୍ତର୍ଦୃଷ୍ଟି ତାଙ୍କୁ ସାଧନାରତ ହେବା ପାଇଁ ଅତ୍ୟନ୍ତ ପ୍ରେରଣା ଯୋଗାଇଲା । ସେ ନିଜକୁ ସଂପୂର୍ଣ୍ଣ ଭାବରେ ଅମ୍ମାଙ୍କର ପାଦପଦ୍ମରେ ସମର୍ପଣ କରି, ତାଙ୍କୁ ଜୀବନର ଆଧାର ବୋଲି ମାନି ନେଲେ । ଯେପରି ସମୟ ଅତିବାହିତ ହେବାକୁ ଲାଗିଲା, ସେ କମ୍ ଖାଇବା, ଶୋଇବା ଓ କଥା କହିବାକୁ ଆରମ୍ଭ କଲେ । ବେଳେବେଳେ ସେ ଅନେକ ସପ୍ତାହ ଧରି ଉପବାସ ବ୍ରତ ପାଳନ କରିବାକୁ ଲାଗିଲେ । ସେ ଖାଲି ମାଟିରେ ଶୀତ ଓ ବର୍ଷା ଦିନରେ ଶୋଇ ରହୁଥିଲେ, ଗୋଟିଏ କମ୍ବଳ ମଧ୍ୟ ଘୋଡାଇ ହେଉନଥିଲେ । ସେ ତୀର୍ଥ ଯାତ୍ରାରେ ଗଲାବେଳେ ଖାଲି ପାଦରେ ଚାଲି ଯାଉଥିଲେ । କେବେହେଲେ କୌଣସି ରକମ ଗାଡି ବା ବାହନର ସହାୟତା ନେଉନଥିଲେ ।

ଦିନେ ଲୁହ ଭରା ଆଖି ଓ ଆବେଗଭରା ହୃଦୟରେ ସେ ଅମ୍ମାଙ୍କୁ ପଚାରିଲେ "ମୋର ପ୍ରକୃତ ମା କିଏ ସେ ?" ଅମ୍ମା କୋମଳ ହୃଦୟରେ, ତାଙ୍କର ମୁଣ୍ଡକୁ କୋଳରେ ଧରି ଉତର ଦେଲେ "ମୋର ସନ୍ତାନ! ତୁ ହିଁ ମୋର ପୁଅ ଏବଂ ମୁଁ ତୋର ମା" । ଉନ୍ନିକୃଷ୍ଣ ଅନ୍ତରରେ ଅବର୍ଣ୍ଣନୀୟ ଆନନ୍ଦ ଅନୁଭବ କରି ବିହ୍ୱଳ ହୋଇ ପଡିଲେ । ସେ ଅମ୍ମାଙ୍କର ଉଜ୍ଜ୍ୱଳ ମୁଖ ମଣ୍ଡଳକୁ ଅପଲକ ଦୃଷ୍ଟିରେ ଅନାଇ ରହି ଆନନ୍ଦାଶ୍ରୁ ଝରାଇବାରେ ଲାଗିଲେ ।

ଅମ୍ମାଙ୍କର ଅସୀମ ଦୟାରୁ ଉନ୍ନିକୃଷ୍ଣ ଜଣେ ବିଖ୍ୟାତ କବି ହୋଇ ଉଠିଲେ । ତାଙ୍କର ଲେଖା ଦାର୍ଶନିକ ଭାବ ସଂପନ୍ନ ଓ ଭକ୍ତି ରସାମୃତରେ ଭରପୁର । ଥରେ ଯେତେବେଳେ ତାଙ୍କର ବାପା ତାଙ୍କୁ ଫେରାଇ ଆଣିବା ପାଇଁ କିଛି ବନ୍ଧୁ ବାନ୍ଧବଙ୍କୁ ପଠାଇଲେ, ସେ ଏହି ମର୍ମସ୍ପର୍ଶୀ କବିତାରେ ତାର ଉତ୍ତର ଦେଇଥିଲେ –

ବହୁଦିନ ଧରି ଛାଡି ଆସିଛି ମୁଁ ଘର
ଏବେ ଯଦି କରିବି ସଂସାର
କି ଲାଭ ମିଳିବ ମୋତେ
ଆନନ୍ଦ କି କେବେହେଲେ ମିଳିଥାଏ

ଅନାଦି କାଳରୁ ସଂସାରୀ ଜୀବନେ
ଦିବାନିଶି ଖାଲି ଚିନ୍ତା ଥାଏ ଘାରି
ମୁଁ ଯେବେ ଚାହୁଁଚି ମୁକ୍ତ ହେବି ବୋଲି
ସଂସାରର ମିଛ ଜଞ୍ଜାଳରୁ
ତୁମେ କିଆଁ ରଖୁଚ ମୋ ଲାଗି
ନିର୍ବୋଧଙ୍କ ଯୋଗ୍ୟ ସଳଖ ରାସ୍ତାଟିଏ
ପିଠି ନୋଇଁ ବର୍ତ୍ତିବାକୁ ଭିକାରୀଟି ପରି
ମୁଁ କି କେବେ ମାନି ନେଇପାରେ
ଏପରି ଭାଗ୍ୟଟିଏ !

ଉନ୍ନିକୃଷ୍ଣ ଅମ୍ମାଙ୍କ ସହ ତାଙ୍କର ପ୍ରଥମ ଦର୍ଶନକୁ ଅତ୍ୟନ୍ତ ଭାବପୂର୍ଣ୍ଣ ଭାବରେ ଲେଖିଛନ୍ତି-

ଦୂର ସେ ମନ୍ଦିରରେ ପ୍ରଭାକିରଣ ଏକ
ମଙ୍ଗଳ ଶିଖା ଜାଳିଥାଏ ।
ଅନ୍ଧକାରରେ ପଥ ଦେଖାଏ ପଥିକଙ୍କୁ
ଦିବ୍ୟକରୁଣା ମୂର୍ତ୍ତି ସିଏ ॥
ସେହି ପଥରେ ଦିନେ ଭୁଲା ବାଟୋଇ ଥିଲି
ପ୍ରଭାମୟୀ ମୋତେ ଡାକିଲେ ।
ମନ୍ଦିର ଦ୍ୱାର ଖୋଲି ଚନ୍ଦନ ଲେପ ଦେଇ
ଟୀକା ଲଗାଇ ଦେଲେ ଭାଲେ ॥
ହରିଭଜନ୍ ଗୀତ ପ୍ରେମରେ ଅବିରତ
ଗାଇ ପବିତ୍ର ମଧୁ ସ୍ୱରେ ।
ଥକା ବାଟୋଇ ଜାଣି ଶରଣ ଦେଲେ ପୁଣି
ରଖି ପବିତ୍ର କରତଳେ ॥
ଏ କେଉଁ ସ୍ୱପ୍ନ ଆସେ ମିଳଇ ମୋର ପାଶେ
କହଇ ସତ୍ୟ ଏକ ବାଣୀ ।

ଅଶ୍ରୁ ଆଉ କିପାଇଁ ଅଖିଳେଶ୍ୱରୀ ସେହି
ରଖିଲେ ଶ୍ରୀଚରଣେ ଆଣଇ ॥
ତହୁଁ ଦୀର୍ଘ ନିଶ୍ୱାସେ ଆହା ନିର୍ମଳ ଦିଶେ
ମୁଖମଣ୍ଡଳ ସ୍ପଷ୍ଟତର ।
ଶ୍ୱାସ ପ୍ରଶ୍ୱାସେ ପ୍ରତି ବିଭୋର ହୁଏ ଅତି
ସନ୍ତାନ ଦର୍ଶନ ଆତୁର ॥

ଥରେ ଉନ୍ନିକୃଷ୍ଣ ମନ ଭିତରେ କୌଣସି ଏକ କାରଣରୁ ଅନଶନ ବ୍ରତ କଲେ । ଯେତେବେଳେ ଅମ୍ମା ଏ ବିଷୟରେ ଶୁଣିଲେ, ସେ ମଧ୍ୟ ଖାଇବା ପିଇବା ଛାଡିଦେଲେ । ଉନ୍ନି ଏହା ନଜାଣି ପାରି ତାଙ୍କର ଅନଶନ ଚାଲୁ ରଖିଲେ । କିଛିଦିନ ପରେ ଅମ୍ମାଙ୍କର ବାପା ତାଙ୍କୁ ଅନଶନ କରୁଥିବା ଯୋଗୁଁ ଗାଳି ଦେଲେ, ଏବଂ କହିଲେ ସେଥିପାଇଁ ଅମ୍ମା ମଧ୍ୟ ଅନଶନ କରି ରହିଛନ୍ତି । ପୂଜା ସରିଲା ପରେ ପରେ ସେ ଅମ୍ମାଙ୍କର କୁଡିଆ ଦୁଆରରେ ଦୁଃଖ ଭରା ହୃଦୟ ଓ ଲୁହଭରା ଆଖିରେ ଆସି ପହଂଚିଲେ । ଅମ୍ମା ତାଙ୍କୁ ପାଖକୁ ଡାକି ସ୍ନେହରେ ଆଲିଙ୍ଗନ କରି ତାଙ୍କର ଥରୁଥିବା ଦେହକୁ ଦେଖି କହିଲେ "ଉନ୍ନି, ମୋ ପୁଅ, ତୁ ଯଦି କିଛି ମନ ଭିତରେ ଦ୍ୱନ୍ଦ ଅନୁଭବ କରୁଛୁ, ତୁ ମା ପାଖକୁ ଆସି ତାହା ଜଣାଇବା ଉଚିତ । ତୁ ଏପରି ନିଜର ଦେହକୁ ଯନ୍ତ୍ରଣା ଦେ ନାହିଁ । ତପ କରିବାକୁ ହେଲେ ଆମର ଏହି ଦେହ ହିଁ ଦରକାର । ଦେହକୁ ବଂଚାଇ ରଖିବାକୁ ହେଲେ ଖାଇବା ଦରକାର, ଖାଲି ଦେହଟିକୁ ରଖିବା ପାଇଁ ଖାଆ" । ଏହା କହି ସେ ଗୋଟିଏ ଥାଳି ଭାତ ଆଣିବାକୁ କହିଲେ ଏବଂ ଉନ୍ନିଙ୍କୁ ନିଜ ହାତରେ ଖୁଆଇଲେ ଏବଂ ନିଜେ ମଧ୍ୟ ସେହି ଥାଳିରୁ ଖାଇଲେ । ସବୁବେଳେ ଯାଯାବର ସାଧୁ ପରି ବୁଲିବାକୁ ଚାହୁଁଥିବା ଉନ୍ନି ଆଶ୍ରମରେ କିଛି ଦିନ ରହିଗଲା ପରେ ଆଉ ସେଠାରେ ନ ରହିବାକୁ ସ୍ଥିର କଲେ । କାହାକୁ କିଛି ନକହି ପଳାଇ ଯିବାକୁ ବସିଲେ । ସେ ଦିନେ ଦର୍ଶନ ରାତିରେ ଚାଲି ଯିବାକୁ ସ୍ଥିର କରିଥିଲା ବେଳେ ଜଣେ ଲୋକ ତାଙ୍କ ପାଖକୁ ହଠାତ୍ ଆସି କହିଲେ "ଅମ୍ମା କହୁଛନ୍ତି, ତୁମେ ଏଇନେ ଚାଲିଯିବା ପାଇଁ ବାହାରିଛ କିନ୍ତୁ ତୁମର ଯିବା ଉଚିତ ନୁହଁ" । ଆମ୍ମାଙ୍କର କଥାରେ ଅବାଧ ନ ହୋଇ

ସେ ଯିବାର ଯୋଜନା ତ୍ୟାଗ କଲେ । କିଛି ଦିନ ପରେ ସେ ପୁଣି ଯିବାକୁ ଚେଷ୍ଟା କଲେ । ପୁଣି ସେଇଆ ହେଲା । ଶେଷରେ ସେ ଯିବାରେ ସଫଳ ହୋଇଥିଲେ, କିନ୍ତୁ ମାତ୍ର ଦୁଇଦିନ ପରେ ପୁଣି ଫେରି ଆସିଲେ । ତେଣୁ ସେ ଏହି ସିଦ୍ଧାନ୍ତ ରେ ପହଂଚିଲେ ଯେ ଅମ୍ମାଙ୍କୁ ନ ଜଣାଇ କିମ୍ବା ତାଙ୍କର ଆଶୀର୍ବାଦ ନ ପାଇ ସେ କିଛି ପାରିବେ ନାହିଁ ।

ଅମ୍ମା ଥରେ କହିଲେ "ଉନ୍ନିର କବିତା ସବୁ ସେ ଧ୍ୟାନ ସମୟରେ ହିଁ ପାଇଥାଏ" । ଏହାଠୁ ବଳି ମାନ ମର୍ଯ୍ୟାଦା ଆଉ କଣ ବା ହୋଇ ପାରେ! ଆଉ ଦୁଇଟି ଗୀତର ଅନୁବାଦ ଦିଆ ଗଲା....

ମୁଁ ବୁଲିଛି କେତେ ଦୂର ଦେଶ
ବୋହି ବୋହି ଦୁଃଖର ପସରା
ଶେଷେ ତୁମ ପାଶେ ଆସି
ସମର୍ପିଲି ନିଜକୁ ମୁଁ ପାଦ ପଦ୍ମେ ମା ଗୋ !
ଦୟାକରି ଧୋଇଦିଅ ମୋର ସବୁ ଲୁହ ଓ ଯନ୍ତ୍ରଣା
ତୁମ ଅପାର ପ୍ରେମର ଜଳରେ ।
ଏ ଦୀନକୁ ଭାବନାହିଁ ପାପୀ
ଦୁନିଆରେ କେହି ନାହିଁ ମୋର
ସାହା କି ଭରସା
ଆହେ କରୁଣା ସାଗରୀ
ତୁମ ଦିବ୍ୟ ଦୃଷ୍ଟିର ପୁଲକିତ ଜୋଛନାରେ
ମତେ ଟାଣିନିଅ କୋଳେ ।



ହେ ଦେବୀ ମା,
ମୋର ଓଜନିଆ ଭାବନାର ବୋଝ ଫିଙ୍ଗି
ଖାଲି ଟିକେ ତୁମ ପାଶେ ବସି ଯାଏଁ

ଲୀନ ହୁଏ ଗଭୀର ଧ୍ୟାନ ରେ ।
ତୁମ ବର୍ଣ୍ଣନା ଗୋ ଦେବୀ, ବେଦ ବେଦାନ୍ତରେ
ତୁମେ ଅଟ ମାତା ସର୍ବ ଦେବା ଦେବୀଙ୍କର
ଅଭିଳାଷ ମୋର କରିବନି କି ପୂରଣ ?
ଅନୁଭବ କରିବାକୁ ପରଂବ୍ରହ୍ମ ?
ହେ ମା ! କେବେ ଆସିବ ସେ ସୁମୁହୂର୍ତ୍ତ
ଛାଡି ସବୁ କାମନା ବାସନା
ମିଶିଯିବି ତୁମର ଚରଣ କମଳେ ?

ବାଲୁ (ସ୍ୱାମୀ ଅମୃତସ୍ୱରୂପାନନ୍ଦ) ଅମ୍ମାଙ୍କ ସହ ତାଙ୍କର ଅନୁଭୂତି ବର୍ଣ୍ଣନା କରିଛନ୍ତି । "ମୋର ଯେବେ ବି.ଏ. ଶେଷ ପରୀକ୍ଷା ସରିଲା, ଗୋଟିଏ ଝିଅର ଅନେକ ଅଲୌକିକ ଶକ୍ତି ଥିବା କଥା ଏବଂ ସେ ଦେବୀ ଓ କୃଷ୍ଣ ରୂପରେ ଦର୍ଶନ ଦେଉଥିବା କଥା ଶୁଣିଥିଲି । ମୋର ଭଗବାନଙ୍କର ଅସ୍ତିତ୍ୱ ବିଷୟରେ ଗଭୀର ବିଶ୍ୱାସ ଥିଲା, ତେବେ ମୋର ସେ ଝିଅକୁ ଦେଖିବାକୁ ଟିକିଏ ହେଲେ ଇଚ୍ଛା ନଥିଲା । ମୋର କିଛି ବନ୍ଧୁ ବାନ୍ଧବ ଯେଉଁମାନେ କି ତାଙ୍କୁ ଦେଖିଥିଲେ, ତାଙ୍କର ଭୁରି ଭୁରି ପ୍ରଶଂସା କରୁଥିଲେ ଏବଂ ମତେ ଥରେ ତାଙ୍କୁ ଯାଇ ଦେଖିବା ପାଇଁ ଚାପ ଦେଉଥିଲେ । ଶେଷରେ ଦିନେ ସନ୍ଧ୍ୟାରେ ମୁଁ ମୋର ମାମୁଁଙ୍କ ସହ ଆଶ୍ରମକୁ ଆସିଲି । ଯେତେବେଳେ ଆଶ୍ରମ ପାଖା ପାଖି ହେଲି, ସୁମଧୁର ଭଜନ ମୋ ମନକୁ ଆକୃଷ୍ଟ କଲା । ଛୋଟ ମନ୍ଦିରଟି ପାଖରେ ପହଂଚି ଦେଖିଲି ଗୋଟିଏ ଝିଅ ଧଳା ଶାଢୀ ପିନ୍ଧି ହୃଦୟସ୍ପର୍ଶୀ ଭଜନ ପ୍ରେମ ଓ ଭକ୍ତି ସହ ଗାଉଅଛନ୍ତି । ତାଙ୍କର ଭଜନ ଶୁଣି ମନେ ହେଲା ଯେ ତାଙ୍କର ହୃଦୟ ଐଶ୍ୱରୀକ ଆନନ୍ଦ ଓ ପ୍ରେମରେ ଉଛୁଳି ଉଠୁଛି । ତାଙ୍କର ଭଜନ ର ସ୍ପନ୍ଦନ ମୋ ହୃଦୟ ଛୁଇଁ ମୋର କୋମଳ ଭାବାବେଗକୁ ଉଦ୍ଦୀପିତ କଲା ।"

"ମୋର ପାଳି ଆସିଲା ସମୟରେ ମୁଁ ମନ୍ଦିର ଭିତରେ ପଶିଲି । ସେତେବେଳେ ଅମ୍ମା ଗୋଟିଏ ପୀଠ ବା କାଠର ଷ୍ଟୁଲ ଉପରେ ବସିଥିଲେ ମୁଁ ତାଙ୍କ ସାମନାରେ ପ୍ରଣାମ କଲି ଏବଂ ଯେତେବେଳେ ଉଠି ଠିଆ ହେଲି ସେ ମୋ ହାତ ଧରି ମୋ

ଆଖିକୁ ଅନେଇଲେ । ତାଙ୍କର ଆଖି ଦୁଇଟି ପୂର୍ଣ୍ଣମୀର ଜହ୍ନ ପରି ଉଜ୍ଜ୍ୱଳତାରେ ମୃଦୁ ହାସ୍ୟମୟ ଦିଶୁଥିଲା । ସେ ଚାହାଣୀ ମୋ ଦେହକୁ ବିଦ୍ଧ କଲାପରି ମନେ ହେଲା, ଏବଂ ସେ ହସ ମତେ ବାନ୍ଧି ରଖି ଜଡବତ୍ କରିଦେଲା । ସେ ଧୀରେ ଧୀରେ ମୋର ମୁଣ୍ଡକୁ ନେଇ ତାଙ୍କ କାନ୍ଧ ଉପରେ ରଖିଲେ ଓ ଧୀର ସ୍ୱରରେ କିନ୍ତୁ ଜୋର ଦେଇ କହିଲେ 'ପୁଅ, ମୁଁ ହିଁ ତୋର ମା ଓ ତୁ ମୋର ପୁଅ' । ସେହି ମିଠା ସ୍ୱର ମୋ ହୃଦୟ ସ୍ପର୍ଶକଲା ଓ ମୁଁ ଅବର୍ଣ୍ଣନୀୟ ଆନନ୍ଦରେ ବିହ୍ୱଳ ହୋଇଗଲି । ମୁଁ ତ ଏଇୟା ହିଁ ଖୋଜୁଥିଲି । ମୁଁ କାନ୍ଦି ପକାଇଲି । ପବିତ୍ର ଅବିମିଶ୍ରିତ ପ୍ରେମ ଏବଂ ବିଶ୍ୱ ମାତୃତ୍ୱ ମିଶି ରୂପ ନେଇ ଧରାଧାମକୁ ଆସିଛନ୍ତି । ଏହି ଅନୁଭୂତିରେ ମୁଗ୍ଧ ହୋଇ ମୁଁ ସାରା ରାତି ଅମ୍ମାଙ୍କ ପାଖରେ ବସି ରହିଲି ।

"ତା ପରଦିନ ମୁଁ ଯେତେବେଳେ ଘରେ ପହଂଚିଲି ମୁଁ ବୁଝି ପାରିଲି ଯେ ମୋର କିଛି ଗୋଟିଏ ପରିବର୍ତ୍ତନ ହେଇଛି । ମୋର ଦୈନନ୍ଦିନ କାର୍ଯ୍ୟକଳାପ ପ୍ରତି ଅନାସକ୍ତି ଆସିଗଲା । ତାଙ୍କୁ ଦେଖିବାର ଇଚ୍ଛା ଆହୁରି ଦୃଢୀଭୂତ ହେଲା । ମୋର ସମସ୍ତ ଭାବନା ତାଙ୍କରି ପାଖରେ ହିଁ ଠୁଳ ହେବାକୁ ଲାଗିଲା । ସେଦିନ ରାତିରେ ମୁଁ ଶୋଇ ପାରିଲି ନାହିଁ । ମୁଁ ଯେତେବେଳେ ଆଖି ବନ୍ଦ କଲି, ଅମ୍ମା ମୋ ଆଗରେ ଆସି ଠିଆ ହେବା ପରି ଲାଗିଲା । ତା ପରିଦିନ ମୁଁ ଆଶ୍ରମକୁ ଫେରିଲି । ଅମ୍ମାଙ୍କ ସହ ଦ୍ୱିତୀୟ ଥର ଦର୍ଶନ ପରେ ବିଷୟୀ ସଂସାର ସହ ସଂପର୍କ କଟାଇବାର ଇଚ୍ଛା ଆହୁରି ପ୍ରବଳ ହୋଇ ଉଠିଲା । ଅମ୍ମାଙ୍କ କଥା ଭାବି ଭାବି ପୁରା ପାଗଳ ପରି ହୋଇ ଉଠିଲି । ମୁଁ ଖାଇବା, ଶୋଇବା ଓ ଗାଧୋଇବା ଇତ୍ୟାଦି ନିତ୍ୟକର୍ମ ସଂପାଦନା କରିବା କଥା ଭୁଲିଗଲି । ମୋର ସୌଖୀନ ପୋଷାକ ପତ୍ର ପିନ୍ଧିବା ଓ ମୁଣ୍ଡ କୁଣ୍ଡେଇବା ସବୁ ବନ୍ଦ ହୋଇଗଲା । ମୋର ପିତା ମାତା ଓ ଅନ୍ୟାନ୍ୟ ପରିବାରର ଲୋକମାନେ ମୋର ହଠାତ୍ ଏପରି ପରିବର୍ତ୍ତନ ଦେଖି ଚିନ୍ତିତ ହୋଇ ପଡିଲେ ଓ ମତେ ବଲ୍ଲିକାଓ୍ୱ ଯିବାପାଇଁ ବାରଣ କଲେ ।

"ତା ପରଦିନ ଭଜନ ଗାଇବାରେ ଭାଗନେଇ ସାରିଲା ପରେ ମୁଁ ମନ୍ଦିରରେ ପ୍ରତିଜ୍ଞା କରି ପଶିଲି 'ମା ! ମୁଁ ଯଦି ତୁମର ସନ୍ତାନ, ତେବେ ମତେ ଦୟାକରି ଗ୍ରହଣ କର' । ମୋର ମୁଣ୍ଡକୁ ତାଙ୍କ କାନ୍ଧ ଉପରେ ରଖି ଅମ୍ମା ସ୍ନେହବୋଳା କଣ୍ଠରେ

କହିଲେ 'ପୁଅ ! ମା ଯେତେବେଳେ ତୋର ଭଜନ ଗାଇବା ଶୁଣିଲା, ସେ ବୁଝି ପାରିଥିଲା ଏ ସ୍ୱର କେବଳ ଭଗବାନଙ୍କ ସାଙ୍ଗରେ ଲୀନ ହେବା ପାଇଁ ସୃଷ୍ଟି ହୋଇଛି । ସେହି ସମୟରେ ମା ତୋ ପାଖକୁ ଆସି ତୋତେ ତା ସହିତ ଲୀନ କରାଇ ଦେଇଛି । ତୁ ମୋର ଅତୀବ ପ୍ରିୟ, ଅତି ଆପଣାରେ' ।

"ଦିନେ ରାତିରେ ଅଧା ନିଦ ଲାଗିଥିବା ଅବସ୍ଥାରେ ମୁଁ ମୋ କୋଠରୀରେ ଗୋଟିଏ ଅଦ୍ଭୁତ ବାସ୍ନା ଭରି ଥିବାର ଆଭାସ ପାଇଲି । ମୋର ଆଖି ଖୋଲିଗଲା ଏବଂ ଜାଣିପାରିଲି ଯେ ସେ ବାସ୍ନାଟି ପ୍ରକୃତରେ ସତ୍ୟ, ମୋର ମନର କଳ୍ପନା ନୁହଁ କିମ୍ବା ସ୍ୱପ୍ନ ନୁହଁ । ହଠାତ୍ ମୁଁ ଅନୁଭବ କଲି ଜଣକର ହାତ ମୋ କପାଳକୁ ଆଉଁସି ଦେଉଛି । ମୁଁ ଉପରକୁ ଅନାଇ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଅମ୍ମା ମୋ ଖଟ ନିକଟରେ ମୋ ମୁଣ୍ଡ ପାଖରେ ଠିଆ ହୋଇଛନ୍ତି । ମୁଁ ମୋର ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ସେ ମତେ ହସି ହସି କହିଲେ 'ପୁଅ, ମା ସବୁବେଳେ ତୋ ପାଖରେ ଅଛି, ଚିନ୍ତାକର ନାହିଁ' । ଏହା କହି ସେ ଉଭେଇ ଗଲେ ।

"ତା ପରଦିନ ମୁଁ ବଲ୍ଲିକାଓ୍ୱ ଯାଇ ପହଂଚିଲି । ସେଠାରେ ଅମ୍ମା ନଥିଲେ, ସେଦିନ ଚାରିଟା ବେଳେ ସେ ଫେରିଲେ । କିଛି ନକହି ସେ ଶିଘ୍ର ଘର ଭିତରକୁ ଯାଇ ଥାଳିଏ ଭାତ ଆଣି ନିଜ ହାତରେ ମା ଯେପରି ପୁଅକୁ ଖୁଆଇ ଦିଏ ସେପରି ଖୁଆଇ ଦେଲେ । ସେ ଯେତେବେଳେ ମତେ ଖୁଆଉଥିଲେ, କହିଲେ କାଲି ରାତିରେ ଅମ୍ମା ତୋ ପାଖକୁ ଆସିଥିଲା । ଖୁସୀରେ ବିହ୍ୱଳ ହୋଇ ମୁଁ ସାନ ପିଲାପରି କାନ୍ଦିବାକୁ ଲାଗିଲି । ସେ ଦିନସାରା ପ୍ରକୃତରେ ମୁଁ କିଛି ହେଲେ ଖାଇ ନଥିଲି ।

"ଅମ୍ମା ମତେ ମନ୍ତ୍ର ଦୀକ୍ଷା ଦେଲାପରେ, ମୁଁ ଆଉ ଘରେ ରହିପାରିଲି ନାହିଁ । ତାଙ୍କ ପାଖରେ ରହି ତାଙ୍କ ପାଖରୁ ଶିକ୍ଷା ପାଇବାର ଇଚ୍ଛା ଦିନକୁ ଦିନ ଦୃଢ଼ୀଭୂତ ହେବାକୁ ଲାଗିଲା । ମୋର ବନ୍ଧୁ ବାନ୍ଧବ ମାନେ ଅନେକ ପ୍ରକାର ବାଧାବିଘ୍ନ ଉପସ୍ଥିତ କରିବା ସତ୍ତ୍ୱେ ମୁଁ ଘରଛାଡି ଆସି ଆଶ୍ରମର ଅନ୍ୟାନ୍ୟ ଅଧିବାସୀ ମାନଙ୍କ ସହ ଯୋଗ ଦେଲି ।

"ଦୁଇବର୍ଷ ପରେ, ଥରେ ଜଣେ ଭକ୍ତଙ୍କର ଘରେ ବସିଥିଲା ବେଳେ, ଅମ୍ମା ହଠାତ କହି ଉଠିଲେ "ମୋ ପୁଅ ବାଲୁ, ତୋତେ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ଡିଗ୍ରୀ କରିବାକୁ ପଡିବ ।" ମୁଁ ଆଗରୁ ଅମ୍ମାଙ୍କୁ କହିଥିଲି ମୁଁ ଆଉ ପାଠ ପଢିବାକୁ ଚାହୁଁ

ନାହିଁ । ଖାଲି ସାରାଦିନ ରାତି ତାଙ୍କରି କଥା ହିଁ ଭାବିବାକୁ ଚାହୁଁଛି । ବର୍ତ୍ତମାନ ଦୁଇବର୍ଷ ପରେ ସେ ପୁଣି ମତେ ପାଠ ପଢ଼ିବାକୁ କହୁଛନ୍ତି । ମୁଁ ମୋ ଅନୁଭୂତିରୁ ଜାଣିଛି ସେ ବିନା କାରଣରେ କିଛି କୁହନ୍ତି ନାହିଁ, ତେଣୁ ମୁଁ ସ୍ନାତକୋତର ଶିକ୍ଷାରେ ନାମ ଲେଖାଇ ଦେଲି । ବର୍ତ୍ତମାନ ଅସୁବିଧା ଆରମ୍ଭ ହେଲା । ମତେ ପଢ଼ାଇବ କିଏ ଯେ ? ମତେ ଦଶଟି ବିଷୟବସ୍ତୁର ପେପର ପାଇଁ ପ୍ରସ୍ତୁତି କରିବାକୁ ପଡିବ । ଚାରୋଟି ଭାରତୀୟ ଦର୍ଶନ ଶାସ୍ତ୍ର ଯାହା ବିଷୟରେ ମୁଁ ଅଳ୍ପ କିଛି ଜାଣିଥିଲି ଏବଂ ବାକି ଚାରୋଟି ବିଷୟବସ୍ତୁର ପେପର ହେଲା ପାଶ୍ଚାତ୍ୟ ଦର୍ଶନ ଶାସ୍ତ୍ର ଯାହାକି ମୋ ପାଇଁ ସମ୍ପୂର୍ଣ୍ଣ ଭାବରେ ନୂଆ । ମୁଁ ଅମ୍ମାଙ୍କୁ ପଚାରିଲି, ମତେ ପଢ଼ାଇବାକୁ ଶିକ୍ଷକ ଜଣେ ମୁଁ କେଉଁଠୁ ଯୋଗାଡ଼ କରିବି ?

"ଅମ୍ମା ଉତର ଦେଲେ 'ସେ ବିଷୟରେ ଚିନ୍ତା କର ନାହିଁ, ଏଠିକି ଜଣେ କିଏ ତୋତେ ପଢ଼ାଇବାକୁ ଆସିବେ' । କିନ୍ତୁ ମୁଁ ଅସ୍ୱସ୍ତି ଅନୁଭବ କରି ତାଙ୍କୁ ସେଇ ଗୋଟିଏ ପ୍ରଶ୍ନ ପଚାରି ବିରକ୍ତ କଲି । ଗୋଟିଏ ସପ୍ତାହ ପରେ ଜଣେ ଭକ୍ତ ମତେ ଜଣେ ଦର୍ଶନ ଶାସ୍ତ୍ରର ଅଧ୍ୟାପକଙ୍କ ବିଷୟରେ କହିଲେ । ମୁଁ ତାଙ୍କୁ ଦେଖାକରି ମୋର ସମସ୍ୟା ବିଷୟରେ କହିଲି । ସେ ମତେ ପଢ଼ାଇବାକୁ ରାଜି ହେଲେ କିନ୍ତୁ ଆଶ୍ରମକୁ ଆସିବା ପାଇଁ ପୁରାପୁରି ମନା କରି ଦେଲେ । ମୁଁ ତାଙ୍କୁ ମୋର ଆଶ୍ରମ ଛାଡି ଆସିବାର ଅସୁବିଧା ବିଷୟରେ ବୁଝାଇ କହିଲି । ଶେଷରେ ସେ କହିଲେ 'ମୁଁ ସେଠାରେ ରହି ପାରିବି ନାହିଁ କିମ୍ବା ମୁଁ ପାଠ ପଢ଼ାଇ ପାରିବି ନାହିଁ । ଯଦି ତୁମେ ପଢ଼ିବାକୁ ଚାହଁ ତେବେ ତୁମକୁ ମୋ ଘରକୁ ଆସିବାକୁ ପଡିବ । ଯଦି ତାହା ନହେଇ ପାରିବ ତେବେ ଏକଥା ଏତିକିରେ ବନ୍ଦ ହେଉ ।' ମୁଁ ଭାବିଲି ମୋର ଆଉ କୌଣସି ଉପାୟ ହିଁ ନାହିଁ । ତେବେ କିଛି ନ ହେଲେ ସେ ଥରେ ଆସି ଆଶ୍ରମ ବୁଲି ଅମ୍ମାଙ୍କୁ ଦର୍ଶନ କରି ଯାଆନ୍ତୁ ।

"ତା ପର ଗୁରୁବାର ଦିନ ମୁଁ ତାଙ୍କୁ ତାଙ୍କ ଘରୁ ଆଣିବାକୁ ଗଲି । ଆମେ ଦୁହେଁ ଯେତେବେଳେ ଆଶ୍ରମରେ ପହଂଚିଲୁ, ମୁଁ ତାଙ୍କୁ ଅମ୍ମାଙ୍କୁ ଦର୍ଶନ କରିବାକୁ ନିମନ୍ତ୍ରଣ ଦେଲି, କିନ୍ତୁ ସେ ମନା କଲେ । ଯେତେବେଳେ ଅମ୍ମା ଭାବଦର୍ଶନ ଆଗରୁ ଭଜନ ଗାଇବା ପାଇଁ ବସିଲେ, ସେ ଦୂରରୁ ବସି ଦେଖୁଥିଲେ । ଦର୍ଶନ ଆରମ୍ଭ ହେଲା ପରେ ମଧ୍ୟ ସେ ଦୂରରୁ ବସି ସେମିତି ଦେଖୁଥିଲେ । ମୁଁ ତାଙ୍କୁ ଯାଇ କହିଲି ସେ ଯଦି ଚାହାନ୍ତି, ତେବେ ମନ୍ଦିର ଭିତରକୁ ଯାଇ ଅମ୍ମାଙ୍କର ଦର୍ଶନ ପାଇ ପାରିବେ । ସେ

ଉତର ଦେଲେ 'ନା, ମୁଁ କେବେହେଲେ କାହା ଆଗରେ ନତଶିର ହୋଇ ନାହିଁ, ଏବଂ ହେବାକୁ ମଧ୍ୟ ଚାହେଁ ନାହିଁ ।' ମୁଁ ତାଙ୍କୁ ଏକୁଟିଆ ଛାଡି ଭଜନ ଗାଇବାକୁ ବସିଲି । କିଛି ସମୟ ପରେ ମୁଁ ତାଙ୍କୁ ମନ୍ଦିର ଭିତରକୁ ପଶିବାର ଦେଖିଲି ଓ ଜୋରରେ କାନ୍ଦଣା ଶୁଣିବାକୁ ପାଇଲି । ସେ ଅମ୍ମାଙ୍କ ପାଦତଳେ ସାଷ୍ଟାଙ୍ଗ ହୋଇ ପ୍ରଣିପାତ କରି ସାନ ପିଲାପରି କାନ୍ଦୁ ଅଛନ୍ତି । ପ୍ରାୟ ଘଂଟାଏ, ଦୁଇଘଂଟା କଟିଗଲା । ମନ୍ଦିରରୁ ବାହାରକୁ ଆସି ସେ ମତେ ଡାକି କହିଲେ 'ସେ ଜଣେ ମହାତ୍ମା ! ମୁଁ ପ୍ରତି ସପ୍ତାହରେ ଆସି ତୁମକୁ ଏଠି ପଢାଇବି ।' ଏହିପରି ଅମ୍ମା ମୋ ପାଇଁ ଗୋଟିଏ ଶିକ୍ଷକ ଯୋଗାଡ କରିଥିଲେ ।

"ଏହି ଅଧ୍ୟାପକ ଅନେକ ବହିର ନାଁ କହି ମତେ ଗୁଡିଏ କଥା ଲେଖିବାକୁ କହିଲେ, କିନ୍ତୁ କିଛି ବୁଝାଇଲେ ନାହିଁ । ଦୁର୍ଭାଗ୍ୟ ବଶତଃ ବିଭିନ୍ନ କାରଣ ଯୋଗୁ ନିୟମିତ ଭାବରେ ଆମର ପଢା ହୋଇ ପାରିଲା ନାହିଁ ଏବଂ ପାଶ୍ଚାତ୍ୟ ଦର୍ଶନ ଶାସ୍ତ୍ର ବିଷୟରେ ମୁଁ ଆଦୌ ଅବଗତ ନଥିଲି । ପରୀକ୍ଷା ପାଇଁ ମାତ୍ର ତିନିମାସ ସମୟ ବାକି ରହିଲା । ଅଧ୍ୟାପକ ମତେ ଆଉ କିଛି ବିଷୟବସ୍ତୁ ଶ୍ରୁତଲିଖନ କରାଇ ସମସ୍ତ ବିଷୟର ସାରାଂଶ କହିଲେ । ଆଶ୍ରମର କାର୍ଯ୍ୟକ୍ରମ ସହିତ ଅମ୍ମାଙ୍କ ସହ ସବୁବେଳେ ଭ୍ରମଣ କରିବା ଫଳରେ ମୁଁ କୌଣସି ପାଠ ଭଲ ଭାବରେ ପଢି ପାରିଲି ନାହିଁ । ବର୍ତମାନ ଠିକ୍ ପରୀକ୍ଷା ଆଗରୁ ଗୋଟିଏ ମାସ ବାକି ରହିଲା । ଅମ୍ମା ମତେ ପୁରା ଆଠୋଟି ଯାକ ପେପର ଏକା ସଙ୍ଗରେ ପରୀକ୍ଷା ଦେବା ପାଇଁ କହିଲେ । ମୁଁ ପ୍ରକୃତରେ ବହୁତ ଚିନ୍ତିତ ହୋଇଗଲି, କିପରି ପ୍ରଥମ ଠାରୁ ଶେଷ ପେପର ଯାଏଁ ଏକା ସାଙ୍ଗରେ ଦେବି ବୁଝି ପାରିଲି ନାହିଁ । ମୁଁ ମୋର ପୁରା ପରୀକ୍ଷାଟି ହିଁ ଅମ୍ମାଙ୍କର ପାଦ ତଳେ ସମର୍ପଣ କରି ଦେଲି ଏବଂ ପଢିବାକୁ ଆରମ୍ଭ କଲି । ଆଶ୍ରମ ଠାରୁ ସାତ ସହ ମାଇଲ ଦୂର ତିରୁପତିକୁ ଯିବାକୁ ପସ୍ତୁତ ହେଲି, କାରଣ ସେଠାକାର ବିଶ୍ୱ ବିଦ୍ୟାଳୟ ଦର୍ଶନ ବିଭାଗରେ ହିଁ ମୋର ନାମ ଲେଖା ଯାଇଥିଲା ।

"ଖରାବେଳେ ମୁଁ ମୋ ଜିନିଷ ବନ୍ଧା ବନ୍ଧି କରିବାକୁ ଯାଉଥିଲି, ହଠାତ୍ ଅମ୍ମା ମତେ ତାଙ୍କର ଘରକୁ ଡାକିଲେ । ମୁଁ ଦଉଡି ଯାଇ ଦେଖିଲି ସେ ମଧ୍ୟ ବ୍ୟାଗରେ କିଛି ଜିନିଷ ରଖୁଛନ୍ତି । ସେ ଶେଷ ଜିନିଷ ରଖି ବନ୍ଦ କଲେ । ଆଉ ଗୋଟିଏ ବଡ ବ୍ୟାଗ ତାଙ୍କର ଟେବୁଲ ଉପରେ ଥୁଆ ହୋଇଥିଲା । ଅତି ସ୍ନେହରେ ସେ କହିଲେ "ପୁଅ !

ତୁ ଯିବା ପାଇଁ ମୁଁ ସମସ୍ତ ଜିନିଷ ଆୟୋଜନ କରି ବାନ୍ଧି ଦେଇଛି । ଟେବୁଲ ଉପରେ ଥିବା ବ୍ୟାଗରେ ଜୋତା, ସାର୍ଟ, ତଉଲିଆ, ଦୁଇଟି କମ୍ବଳ ଏବଂ ଆଉ କିଛି ଲୁଗା । ଆରଟିରେ ନଡିଆ ତେଲ, ସାବୁନ୍, ଆଇନା, ପାନିଆ ଏବଂ ଗରମ ପାନୀୟ ତିଆରି କରିବାର ଜିନିଷ ଓ ଆଉ କିଛି ଦରକାରୀ ଜିନଷ ରଖିଛି । ମୁଁ ଏସବୁ ଯୋଗାଡ କରି ରଖିଛି, ତାହେଲେ ତତେ ପଢିବାକୁ ଆହୁରି ସମୟ ମିଳିବ ।" ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ଖାଲି ତାଙ୍କର ମମତାମୟ ମୁହଁକୁ ଅନାଇ ରହିଲି । ମୋ ହୃଦୟ ଆନନ୍ଦରେ ଭରିଗଲା । ମୋ ଆଖି ଅଶ୍ରୁପୂର୍ଣ୍ଣ ହେଲା ଓ ମୁଁ ଭୋ ଭୋ ହୋଇ କାନ୍ଦିବାକୁ ଲାଗିଲି ।

"ମୁଁ ପ୍ରଥମ ଥର ପାଇଁ ତାଙ୍କ ପାଖରୁ ପ୍ରାୟ ମାସେ ଦୂରରେ ରହିବି । ମୋର ହୃଦୟ ଦୁଃଖରେ ଭାରୀ ହୋଇ ଯାଇଥିଲା । ରେଲ ଗାଡିରେ ମୁଁ ଗୋଟିଏ କୋଣରେ ଆଖି ଲୁହକୁ ଲୁଚାଇ ବସି ରହିଲି । ସବୁ ଯାତ୍ରୀମାନେ ଆନନ୍ଦରେ କଥା ହେଉଥାନ୍ତି କିନ୍ତୁ ମୋ ହୃଦୟ ଅମ୍ମାଙ୍କ ଠାରୁ ଦୂରରେ ରହିବାର ଦୁଃଖରେ ଭାରୀ ହୋଇ ପଡିଥାଏ । ବାଟ ସାରା ମୁଁ ଖାଲି ତାଙ୍କର କଥା ହିଁ ଭାବୁଥିଲି । ପରଦିନ ସକାଳେ ମୁଁ ତିରୁପତିରେ ପହଂଚିଲି । ଅମ୍ମାଙ୍କ ଠାରୁ ଅଲଗା ହୋବାର ଭୟାନକ ଦୁଃଖର ଜ୍ୱାଳାରେ ମୋର ସାରା ଦିନ କଟୁଥିଲା । ମୋର ମନେ ହେଲା ଯେପରିକି ମୁଁ ଜଳ ବିହୁନେ ମୀନ । ପାଠରେ ମନ ଦେବା ପାଇଁ ଚେଷ୍ଟା କଲି କିନ୍ତୁ କିଛି ଫଳ ହେଲା ନାହିଁ । ପ୍ରତ୍ୟେକଟି ମୁହୂର୍ତ୍ତ କଇଁଚ ପରି ଧୀର ମନ୍ଥର ଗତିରେ ବିତିବାକୁ ଲାଗିଲା । ଏପରିକି ମୁଁ ଅମ୍ମାଙ୍କର ଛବି ଆଡେ ଅନେଇବାକୁ ଅକ୍ଷମ ହୋଇ ପଡିଲି, ଆଶ୍ରମରୁ ଆଣିଥିବା ପ୍ରତ୍ୟେକ ଜିନିଷ ମତେ ଅମ୍ମାଙ୍କର ଦୟାମୟୀ ମୂର୍ତ୍ତିକୁ ମନେ ପକାଇଲା । ମୁଁ ଖାଇବା ଶୋଇବା ଭୁଲିଗଲି । ପ୍ରତ୍ୟେକଟି ଦିନ ମଝିମଝିରେ ମୁଁ ଅଚେତ ହୋଇ ଯାଉଥିଲି । ଅଲଗା ରହିବାର କଷ୍ଟ ସହି ନପାରି ମୁଁ କାନ୍ଦି ପକାଉଥିଲି । ତେବେ କୌଣସି ପ୍ରକାରେ ପରୀକ୍ଷା ଦେବା ପାଇଁ ସକ୍ଷମ ହୋଇଥିଲି । ମୋ ଦୁଃଖରେ ଭାଗ ନେବା ପାଇଁ କେହି ହେଲେ ନଥିଲେ ।

"ସେହି ସମୟରେ ମୁଁ ଅମ୍ମାଙ୍କ ପାଖରୁ ଗୋଟିଏ ଚିଠି ପାଇଲି, ଅନେକ ଥର ସେ ଚିଠିକୁ ବାରମ୍ବାର ପଢିଲି । ମୋ ଆଖି ଲୁହରେ ସେ ଚିଠି ଓଦା ହୋଇଗଲା । ଅମ୍ମାଙ୍କର ଚିଠିରେ ଲେଖା ଥିଲା "ପ୍ରିୟ ପୁଅ, ତୋ ଅମ୍ମା ସବୁବେଳେ ତୋ ପାଖରେ ଅଛି । ଅମ୍ମା ମନେ କରେ ନାହିଁ ଯେ ତୁ ତା'ଠାରୁ ଦୂରରେ ଅଛୁ । ମୋ ପୁଅ ! ଅମ୍ମା

ତୋର ଆକୁଳ ଆକାଂକ୍ଷା ଭାର ହୃଦୟକୁ ଦେଖି ପାରୁଛି । ଅମ୍ମା ତୋର କାନ୍ଦଣା ସବୁ ଶୁଣି ପାରୁଛି । ପୁଅ ! ଏ ପୃଥିବୀଟି ଭାରୀ ସୁନ୍ଦର । ନାନାଦି ଫୁଲ, ବିଶାଳ ମହାସାଗର, ପକ୍ଷୀଙ୍କର କାକଳୀ, ଅନନ୍ତ ଆକାଶ, ଗଛ, ବୁଦା, ପାହାଡ ଓ ଉପତ୍ୟକା ସବୁ ଏଇଠି ଅଛି । ଭଗବାନ ଏ ପୃଥିବୀକୁ ସୌନ୍ଦର୍ଯ୍ୟରେ ଭରି ଦେଇଛନ୍ତି । ତାଙ୍କୁ ସବୁ ସୃଷ୍ଟି ଭିତରେ ଦେଖିବାକୁ ଚେଷ୍ଟା କର । ସମସ୍ତଙ୍କ ଭିତର ଦେଇ ତାଙ୍କଠି ହିଁ ମନକୁ ଲଗାଇବାକୁ ଚେଷ୍ଟାକର । ଭଗବାନ ଓ ତୋ ମଧ୍ୟରେ ଥିବା ବନ୍ଧନକୁ କାଟି ରାସ୍ତା ଖୋଲି ଦେ । ପୁଅ ! ଏ ପୃଥିବୀରେ କିଛି ଖରାପ ନୁହଁ । ସବୁହିଁ ଭଲ । ଖାଲି ପୂଣ୍ୟ ଓ ସୁଗୁଣ ହିଁ ସବୁରି ଭିତରେ ଦେଖ । ମନର ଫୁଲ ଫୁଟି ଚାରିଆଡେ ତାହାର ବାସନା ମହକାଇ ଦେଉ ।

"ସେଦିନ ରାତିରେ ମୋର କୋଠରୀ ବାହାରେ ବସି ମୁଁ ଗଛଲତା ଧୀର ପବନରେ ନାଚୁ ଥିବାର ଦେଖିଲି । ଆକାଶରେ ତାରା ମାନେ ଚକମକ୍ ହୋଇ ଚମକୁ ଥିଲେ ଏବଂ ଚନ୍ଦ୍ରର ରୂପେଲୀ କିରଣ ପୃଥିବୀକୁ ପ୍ରାଚୁର୍ଯ୍ୟରେ ପ୍ଲାବିତ କରୁଥିଲା । ମୁଁ ଭାବିଲି, ଏ ପବନ ହୁଏତ ମୋ ଅମ୍ମା ପାଖକୁ ବହି ଯିବ । ପବନର ଯଦି ସୌଭାଗ୍ୟ ଥିବ ତେବେ ସେ ମୋ ଅମ୍ମାକୁ ଯାଇ ଆଲିଙ୍ଗନ କରିବ । ଠିକ୍ ଏହି ପବନ ହିଁ ମୋ ଅମ୍ମାର ପବିତ୍ର ସୁଗନ୍ଧ ବୋହି ନେଉଛି । ମୋର ଯଦି ଡେଣା ଥାଆନ୍ତା, ମୁଁ ତାଙ୍କ ପାଖକୁ ଉଡି ଚାଲି ଯାଆନ୍ତି । ଏହି ଗୀତଟି ସେହି ଦିନ ରାତିରେ ଲେଖା ହୋଇଥିଲା-

ହେ ତାରା ମାନେ !<br>
ଥରେ ତଳକୁ ହୋଇ ଆସନ୍ତନି ?<br>
ଅମ୍ମା ଯେ ଏଇଠି ଅଛି<br>
ତୁମ ପାଇଁ ଗାଇବାକୁ ଲୋରୀ<br>
ଅସରନ୍ତି ପ୍ରେମର ଝରଣା ସେ<br>
ଜିଜ୍ଞାସୁ ମନ ପାଇଁ ଛାଇ ଭରା ଗଛ ।<br>
ହେ ଶୀତଳ ପବନ !<br>
ଆସ ତୁମେ ଗୁଣୁ ଗୁଣୁ ଗୀତ ଗାଇ<br>
ନୀରବ ସଂଗୀତ ଭରା ନିଶୀଥରେ

କଣ କହିଲ ଟିକେ ଚପ୍ ଚୁପ୍ କରି -
ମିଠା କଥା ମୋ କାନରେ ?
ମୋ ମାଆର ମଧୁର କାହାଣୀ ?
ସବୁଦିନ ନୀଳ ଆକାଶରେ -
ତୁମର କି ଇଚ୍ଛା ନାହିଁ ଦେଖିବାକୁ
ମୋ ମାଆକୁ -
ଯିଏ ଦେଲା ତୁମକୁ ଏ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ?
ଗଛ ଓ ଲତା ବଢ଼େ ଘଂଚ ହୋଇ
ନୀରବ ଉପତ୍ୟକା ଓ ପାହାଡ଼ର ପାଦ ଭୂମି ପରେ
କଅଁଳିଆ ଡାଳ ମାନେ ଦିଅନ୍ତି ସାନ୍ତ୍ୱନା ମତେ
ନାଚି ନାଚି ଧୀର ପବନରେ -

"ମୁଁ ଗୋଟିଏ ଅତି ତୀବ୍ର ଅଦ୍ଭୁତ ମନୋଭାବରେ ଥିଲି । ପାଗଳ ପରି ଖାଲି ଏ ପାଖରୁ ସେ ପାଖ ଚଟାଣ ଉପରେ ଚାଲୁଥିଲି । କୌଣସି ମତେ ମୁଁ ନିଜକୁ ସଂଯତ କରି ତା ପରଦିନ ଚାଲି ଯିବାକୁ ସ୍ଥିର କଲି । ମୋର ଆଉ ଗୋଟିଏ ପେପର ପରୀକ୍ଷା ଦେଖିବାକୁ ଥିଲା । ମୁଁ ପ୍ରଥମ ବର୍ଷର ପରୀକ୍ଷା ନ ଦେବା ପାଇଁ ଠିକ୍ କଲି । ମୁଁ ଭାବିଲି, ଅମ୍ମା ମତେ ଯଦିଓ କହିଛନ୍ତି ସବୁ ପରୀକ୍ଷା ଦେବା ପାଇଁ, କିନ୍ତୁ ଏଥର ମୁଁ ତାଙ୍କର ଉପଦେଶ ବିରୁଦ୍ଧରେ ହିଁ ଯିବି ।"

"ଶେଷରେ ଗୋଟିଏ ବିଶେଷ ଉପାୟରେ ମୁଁ ଅମ୍ମାଙ୍କର ଅନୁମତି ମାଗିଲି । ମୁଁ ଏକାମାପର ତିନୋଟି ଟୁକୁରା ଛୋଟ କାଗଜ ନେଲି । ପ୍ରଥମ ଟୁକୁରାରେ ଲେଖିଲି 'ପୁଅ ! ତୁ ଫେରି ଆସ, ଦ୍ୱିତୀୟ ଟୁକୁରାରେ ଲେଖିଲି 'ତୁ ସବୁ ପେପର ଦେଇ ସାରି ଆସ' ଏବଂ ତୃତୀୟ ଟୁକୁରାରେ ଲେଖିଲି 'ମୋ ପୁଅର ଯାହା ଇଚ୍ଛା' । ଏହି କାଗଜ ଗୁଡ଼ିକୁ ମୁଁ ଏକା ପରି ମୋଡ଼ିଲି ଓ ସବୁକୁ ଏକାଠି ମିଶାଇ ହଲାଇଲି ଏବଂ ତାପରେ ମାଙ୍କ ଛବିକୁ ଥଳୀ ଭିତରୁ ବାହାର କଲି । ତାପରେ ପ୍ରାର୍ଥନା କରି ବିନୀତ ଭାବରେ

କାଗଜ ଗୁଡିକ ତାଙ୍କୁ ଅର୍ପଣ କଲି, "ମା ! ମୁଁ ଏ ଭିତରୁ ଗୋଟିଏ କାଗଜ ଉଠାଇବି, ଯାହା ହେଉ ପଛେ ମତେ ଜଣାଅ ତମର କଅଣ ଇଚ୍ଛା" । ଆଖି ବନ୍ଦ କରି ମୁଁ ଗୋଟିଏ କାଗଜ ଥର ଥର ହାତରେ ଉଠାଇଲି । ସେହିଟିକୁ ଖୋଲିଲି । ଆହା ! ସେଥିରେ ଲେଖାଥିଲା ମୁଁ ଯାହା ଲେଖିଥିଲି "ତୁ ସବୁ ପେପର ଲେଖି ସାରି ଆସ" । ପ୍ରଥମେ ଥର ଚେଷ୍ଟାରେ ସନ୍ତୁଷ୍ଟ ନ ହୋଇ, ସେହି ତିନୋଟି ଟୁକୁରା କାଗଜ ନେଇ ମୁଁ ପୁଣି ଆଉଥରେ ଚେଷ୍ଟାକଲି । ପୁଣି ସେହି ଏକା କଥା ଉଠିଲା । ତଥାପି ମୋର ମନ ଅମ୍ମାଙ୍କୁ ଦେଖିବାକୁ ଏପରି ବ୍ୟାକୁଳ ହୋଇ ଯାଇଥିଲା ଯେ ମୁଁ ପରଦିନ ଛାଡି ଆସିବାକୁ ସ୍ଥିର କଲି ।

"ତା ପରଦିନ ପରୀକ୍ଷାଟି ଶେଷ କରି ମୁଁ ଆସି ମୋର ଜିନିଷ ପତ୍ର ଏକାଠି କରି ବାହାରୁ ଥିଲି । ହଠାତ୍ ମୋର କୋଠରୀ କୋଣରେ ଗୋଟିଏ କଣ ପଡିଥିବାର ଦେଖିଲି । ମୁଁ ଆଶ୍ରମରୁ ଆସିଲା ବେଳେ କିଛି ଜିନିଷ ଗୁଡାଇ ଆଣିଥିବାର ପୁରୁଣା ଖବର କାଗଜ ଏବଂ ଗୋଟିଏ ସାବୁନ ଡ଼ବାର ଭଙ୍ଗା ଅଂଶ ଟିଏ । ମୁଁ ଭାବିଲି, ମୁଁ ଯେତେବେଳେ ଅମ୍ମାଙ୍କ ପାଖରୁ ଅଲଗା ହୋଇ ଆସିଲି ମୋର ବ୍ୟାକୁଳତା କେତେ ତୀବ୍ର ଥିଲା । ବୋଧହୁଏ ଏଇ ଜିନିଷ ମାନେ ମଧ୍ୟ ସେହି ଯନ୍ତ୍ରଣା ଅନୁଭବ କରିଛନ୍ତି । ମୁଁ ଯଦି ସେମାନଙ୍କୁ ଏଠି ଛାଡି ଦିଏ ତାହା ହେଲେ ପାପ ହେବ । ମୁଁ ସାବଧାନରେ ସେହି ଜିନିଷ ସବୁ ନେଇ ମୋର ବ୍ୟାଗ ସଜାଡିଲି ।

"ତା ପରଦିନ ମୁଁ ଆଶ୍ରମରେ ପହଂଚିଲି । ଅମ୍ମାଙ୍କର କୋଠରୀକୁ ଯିବା ବାଟରେ ମୋ ଭାଇ ବେଣୁଙ୍କୁ ଦେଖିଲି । ସେ ଆଶ୍ଚର୍ଯ୍ୟ ହୋଇ କହିଲା 'କାଲି ରାତିରେ ଅମ୍ମା ମତେ କହିଲେ ତୁମେ ଅତିରିକ୍ତ ଅଧୈର୍ଯ୍ୟ ହୋଇ ପଡିଛ ଓ ଆଜି ଆସି ପହଂଚିବ' । ମୁଁ ଅମ୍ମାଙ୍କ କୋଠରୀରେ ପହଂଚି ତାଙ୍କ ପାଦ ତଳେ ପଡି କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲି । ଅମ୍ମା ମତେ ଉଠେଇ ସାନ୍ତ୍ୱନା ଦେଲେ "ପୁଅ ! ମୁଁ ତୋର ହୃଦୟରେ ଦୁଃଖ ବୁଝି ପାରିଛି । ଏପରି ପ୍ରେମ ଭଲ କିନ୍ତୁ ମନରେ ଦମ୍ଭ ଧରିବାକୁ ଚେଷ୍ଟା କର । ସାଧକର ମନ ଫୁଲ ପରି କୋମଳ ହେବା ଦରକାର, ଆଉ ହୀରା ପରି କଠିନ ହେବା ଦରକାର । ତୁ ଫେରି ଯାଇ ବାକି ତକ ପେପର ଲେଖି ପରୀକ୍ଷା ଶେଷ କର । ତୁ ଫେଲ୍ ହେଲେ ମଧ୍ୟ ଅମ୍ମା ମନ ଖରାପ କରିବ ନାହିଁ । କାଲି ଫେରି ଯାଆ ଓ ପରୀକ୍ଷା ସାରିଲା ପରେ ଫେରି ଆସିବୁ ।"

"ତା ପରଦିନ ମୁଁ ତିରୁପତିକୁ ଫେରିଗଲି । ସପ୍ତାହକ ପରେ ଶେଷ ପରୀକ୍ଷା ଦେଇ ମୁଁ ଆଶ୍ରମକୁ ଫେରି ଆସିଲି । ମୁଁ ପରୀକ୍ଷାରେ ଦେଇଥିବା ଉତରରେ ସନ୍ତୁଷ୍ଟ ନଥିଲି, ଏବଂ ଭାବୁଥିଲି ହୁଏତ ଫେଲ ହୋଇ ଯାଇ ପାରେ । ଅମ୍ମା ଶାନ୍ତ ମନରେ କହିଲେ 'ସେ ବିଷୟରେ ଭୁଲିଯା । ମନ ଭିତରେ ସନ୍ଦେହ ରଖ ନାହିଁ । ତୁ ନିଶ୍ଚୟ ସଫଳ ହେବୁ ।' ଯେତେବେଳେ ପରୀକ୍ଷାର ଫଳ ବାହାରିଲା ମୁଁ ଉଚ୍ଚ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା ଦେଖି ନିଜେ ଆଶ୍ଚର୍ଯ୍ୟ ହେଲି ।

"ଅମ୍ମାଙ୍କ ସାମନାରେ ଖାଲି ସେମିତି ରହିବା ହିଁ ଗୋଟିଏ ତପସ୍ୟା । ସବୁବେଳେ କିଛି ନାଁ କିଛି ନୂଆ ସତେଜ ଶିକ୍ଷାର ବାତାବରଣ ଥାଏ, ଏଣୁ ପ୍ରତ୍ୟେକ ମୁହୂର୍ତ୍ତରେ ଜ୍ଞାନଭରା ଅନ୍ତର୍ଦୃଷ୍ଟି ମିଳି ପାରିବ । ଫଳରେ ଭକ୍ତ ମାନେ ଆଧ୍ୟାତ୍ମର ବିଭିନ୍ନ ସ୍ତର ଦେଇ ଗତି କରିପାରିବେ, ଏବଂ ଗୋଟିଏ ସ୍ତରରୁ ଆଉ ଗୋଟିଏ ସ୍ତରକୁ ଯାଇ ପାରିବେ । ମୋର ଆଧ୍ୟାତ୍ମିକ ଜୀବନର ପ୍ରଥମ ସ୍ତରରେ ଭାବୁଥିଲି ଯେ ମୁଁ ଅମ୍ମାଙ୍କୁ ପୁରାପୁରି ବୁଝି ଯାଇଛି । ପରେ ଜାଣିଲି ଯେ ମୁଁ ତାଙ୍କୁ ଜମାରୁ ବୁଝି ପାରି ନାହିଁ....."

ବେଣୁ (ବର୍ତ୍ତମାନ ସ୍ୱାମୀ ପ୍ରଣବାମୃତାନନ୍ଦ) ହେଉଛନ୍ତି ବାଲୁଙ୍କର ଭାଇ। ସେମାନେ ଦୁଇଜଣ ସାନଥିଲା ବେଳେ ତାଙ୍କ ମା ଙ୍କ ମୃତ୍ୟୁ ହୋଇଥିଲା । ତାପରେ ବାଲୁ ବାପାଙ୍କ ପାଖରେ ରହି ବଡ ହୋଇଥିଲେ ଏବଂ ବେଣୁ ଜଣେ ମାଉସୀ ସରସ୍ୱତୀ ଆମ୍ମାଙ୍କ ପାଖରେ ଧାର୍ମିକ ଓ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ରହି ବଡ ହୋଇଥିଲେ । ବେଣୁ ପରିବାରରେ ସମସ୍ତଙ୍କର ପ୍ରିୟ ଥିଲେ ଏବଂ କେବେହେଲେ ମାର ସ୍ନେହ ମମତା କୁ ଝୁରି ନଥିଲେ । ପନ୍ଦର ବର୍ଷ ବୟସରେ ହାଇସ୍କୁଲ ପାସ କରି ସାରିବା ପରେ ବାପାଙ୍କ ପାଖକୁ ଯାଇ ସ୍ଥାନୀୟ କଲେଜରେ ଯୋଗ ଦେଇଥିଲେ । ଯଦିଓ ସେ ପିଲାବେଳେ ଆଧ୍ୟାତ୍ମ ପ୍ରତି ଆଗ୍ରହ ଦେଖାଇଥିଲେ, କଲେଜ ପଢୁଥିବା ସମୟରେ ସେ ବୈଷୟିକ ଜୀବନ ଯାପନ କରିଥିଲେ । ତେବେ ସେ ଯେତେବେଳେ ଭକ୍ତିଭାବ ପୂର୍ଣ୍ଣ ସିନେମା ଦେଖୁଥିଲେ, ତାଙ୍କ ମନ ଭିତରେ ଥିବା ପ୍ରଚ୍ଛନ୍ନ ଆଧ୍ୟାତ୍ମ ଭାବ ଟିକିଏ ଜାଗି ଉଠୁଥିଲା ।

ବେଣୁ କଲେଜରେ ଥିଲାବେଳେ, ତାଙ୍କ ଭାଇ ବାଲୁ ଅମ୍ମାଙ୍କୁ ଦେଖା କରି ନିଜକୁ ଐଶ୍ୱରୀକ ମାର୍ଗରେ ଉତ୍ସର୍ଗ କରି ସାରିଥିଲେ । ବାଲୁ ତାଙ୍କୁ ବହୁତ ଥର

ଅମ୍ମାଙ୍କ ବିଷୟରେ କହିଥିଲେ ବି, ବେଣୁ ଜମା ସେ କଥାକୁ କାନ ଦେଇ ନଥିଲେ । ଖୋଲା ଖୋଲି ଭାବରେ ଅମ୍ମାଙ୍କ ବିଷୟରେ ଅବଜ୍ଞା ସୂଚକ ଭାବରେ କହୁଥିଲେ "ମୁଁ ସେ ମାଛବାଲୀ ଝିଅ ପାଖକୁ ଭୁଲରେ ବି ଯିବି ନାହିଁ" । ଏଣେ ବେଣୁ ସହ ସାକ୍ଷାତ ହେବା ଆଗରୁ ଅମ୍ମା ବାଲୁ ଙ୍କୁ ଭବିଷ୍ୟତ ଜଣାଇଥିଲେ, "ତୁମର ଭାଇ ମଧ୍ୟ ମୋର ପୁଅ, ସେ ମଧ୍ୟ ଏଠାକୁ ଆସିବ ।" ଏହାଶୁଣି ବାଲୁ ଭାରୀ ଚିନ୍ତିତ ହୋଇ ଯାଇଥିଲେ । କାରଣ ତାଙ୍କର ସଂସାର ତ୍ୟାଗ କରିବା ଯୋଗୁ ଘରେ ଆଲୋଡନ ଖେଳି ଯାଇଛି । ଯଦି ବେଣୁ ପୁଣି ତାଙ୍କୁ ଅନୁସରଣ କରିବ ତେବେ କଣ ହେବ ? ଯାହା ହେଉ, ଭଗବାନଙ୍କର ଇଛା ହିଁ ସବୁଠାରୁ ବଡ । ସାଧାରଣ ମଣିଷର ବୁଝିବା ବା ଯୁକ୍ତି ତର୍କର ବାହାରେ । ଯାହା ଭାଗ୍ୟରେ ଥିବ ତାହା ନିଶ୍ଚୟ ହିଁ ଫଳିବ ।

ବେଣୁ ବି.ଏ ଶେଷ ବର୍ଷରେ ପଢୁଥିଲା ବେଳେ ଦିନେ ଅମ୍ମା ତାଙ୍କର ମାଉସୀଙ୍କ ଘରକୁ ଯାଇଥିଲେ । ବେଣୁ ସେଦିନ ସେଠି ପହଂଚିଲା ବେଳକୁ ଅମ୍ମା ବାରଣ୍ଡା ଉପରେ ଠିଆ ହୋଇଥାନ୍ତି । ତାଙ୍କ ଆଡେ ଦୃଷ୍ଟି ପାତ ମଧ୍ୟ ନକରି ବେଣୁ ସିଧା ତାଙ୍କ ସାମ୍ନା ଦେଇ ନିଜ କୋଠରୀକୁ ଚାଲିଗଲା, ସେଠରେ ଶ୍ରୀକୁମାର, ପାଇ ଏବଂ ଆଉ କିଛି ଆଶ୍ରମ ବାସୀ ବସିଥାନ୍ତି ।

ହଠାତ୍ ଆଶାତୀତ ଭାବରେ ଅମ୍ମା ଆସି ବେଣୁ ପାଖରେ ପହଂଚି ତା ହାତକୁ ସ୍ନେହମୟୀ ମା ପରି ଧରି ପକାଇଲେ ଓ ପଚାରିଲେ "ତୁମେ କଣ ମୋ ପୁଅ ବାଲୁର ଭାଇ ନୁହଁ ? ମା ତୁମକୁ ଦେଖିବା ପାଇଁ ବହୁ ଆକୁଳ ଥିଲା" । ବେଣୁର ହୃଦୟ ତରଳି ଗଲା ଏବଂ ସାଙ୍ଗେ ସାଙ୍ଗେ ସେ ଅନୁଭବ କଲା ଯେ ଅମ୍ମା ଜଣେ ସାଧାରଣ ମହିଳା ନୁହନ୍ତି, ସେ ମାତ୍ର ପ୍ରେମ ଓ କୋମଳତାର ଝରଣା । ଲୁହାର ଚୁମ୍ବକ ପ୍ରତି ଆକର୍ଷଣ ପରି ବେଣୁ ଅମ୍ମାଙ୍କ ଆକର୍ଷଣ ଅନୁଭବ କଲା । ଦ୍ୱିପହରେ ଅମ୍ମା ଯେତେବେଳେ ସମସ୍ତଙ୍କୁ ଖୁଆଇଲେ ବେଣୁ ମଧ୍ୟ ଗୋଟିଏ ଗୁଣ୍ଡା ଭାତ ତାଙ୍କ ହାତରୁ ଖାଇଲା । ସେ ତାଙ୍କର ଅପରିସୀମ ପ୍ରେମ, ସମଭାବତା ଏବଂ ପିଲାଙ୍କ ପରି ବିଶ୍ୱାସ ଭାବ ଦେଖି ଭୀଷଣ ଭାବରେ ପ୍ରଭାବିତ ହୋଇ ପଡିଥିଲା । ଅମ୍ମା କେତେ ପ୍ରାଞ୍ଜଳ ଭାବେ କଠିନ ଐଶ୍ୱରୀକ ତତ୍ତ୍ୱ ସବୁ ବୁଝାଇ ପାରୁଥିଲେ । ସର୍ବୋପରି ତାଙ୍କର ଏକାନ୍ତ ବିନମ୍ରତା ତାଙ୍କ ପ୍ରତି ଗଭୀର ଶ୍ରଦ୍ଧା ଆଣିଥିଲା । ଖୁବ୍ ଅଳ୍ପ ସମୟ ଭିତରେ ବେଣୁ

ଅମ୍ମାଙ୍କ ପ୍ରତି ସଂପୂର୍ଣ୍ଣ ଭାବରେ ଆକୃଷ୍ଟ ହୋଇ ପଡିଥିଲା । ଏପରିକି ଅମ୍ମା ଯେତେବେଳେ ଅନ୍ୟ ମାନଙ୍କ ସହ କଥା ହେଉଥିଲେ, ମନେହେଉଥିଲା ସେ ବେଣୁଙ୍କ ମନ ଭିତରେ ଜାଗି ଉଠୁଥିବା ଅନେକ ପ୍ରଶ୍ନର ସଂଦେହ ମୋଚନ କରୁଛନ୍ତି ।

ଅମ୍ମାଙ୍କ ସହ ପ୍ରଥମ ଦେଖା ବେଣୁଙ୍କ ମନରେ ଗଭୀର ଭାବୋଦ୍ଦୀପନା ଜାଗୃତ କରିଥିଲା ଏବଂ ଅମ୍ମାଙ୍କ ସମ୍ବନ୍ଧରେ ଓ ଆଧ୍ୟାତ୍ମିକ ଜୀବନ ଯାପନ ପ୍ରତି ଥିବା ପ୍ରତିକୂଳ ଭାବ ମଧ୍ୟ ଦୂର ହୋଇ ଯାଇଥିଲା । ପ୍ରତିଦିନ ତାର ଅମ୍ମାଙ୍କୁ ଦର୍ଶନ କରିବାର ଇଚ୍ଛା ବଢିବାରେ ଲାଗିଲା । ଶେଷରେ ଫେବୃୟାରୀ ୧୯୮୦ ମସିହାରେ ସେ ବଲ୍ଲିକାଓ୍ୱ ଆସିଲେ । ବେଣୁ ଅମ୍ମାଙ୍କୁ ଦେଖିଲା କ୍ଷଣି ଭୋ ଭୋ ହୋଇ କାନ୍ଦି ଉଠିଲେ । ଅମ୍ମା ତାଙ୍କୁ ଧରି ପାଖରେ ବସାଇଲେ । ସେଦିନ ରାତିରେ ବେଣୁ ଯେତେବେଳେ ମନ୍ଦିର ଭିତରକୁ କୃଷ୍ଣଭାବ ସମୟରେ ଗଲେ, ସେ ମନେ କଲେ ଯେପରିକି ସ୍ୱୟଂ କୃଷ୍ଣଙ୍କ ଆଗରେ ହିଁ ସେ ଠିଆ ହୋଇଛନ୍ତି । ତାଙ୍କ ମନ ଆନନ୍ଦରେ ଗଦ୍‌ଗଦ ହୋଇ ଉଠିଲା । ସେ ନା କାନ୍ଦି ପାରିଲେ, ନା ହସି ପାରିଲେ । ସେ ଅମ୍ମାଙ୍କୁ ଶୁଦ୍ଧ ଭକ୍ତି ଓ ଜ୍ଞାନପାଇଁ ପ୍ରାର୍ଥନା କଲେ । ଅମ୍ମା କହିଲେ "ପୁଅ ତୁ ଯାହା ଖୋଜୁଛୁ, ତାହା ହିଁ ପାଇବୁ" । ଅମ୍ମା ତାଙ୍କୁ ଖଣ୍ଡିଏ କାଗଜରେ ମନ୍ତ୍ର ଲେଖି ଦେଲେ ଓ ତା ସହିତ ଗୋଟିଏ ତୁଳସୀର ମାଳ ମଧ୍ୟ ଦେଲେ ।

ଅମ୍ମାଙ୍କ ସହ ପ୍ରଥମ ଦେଖା ପରେ ବେଣୁ ପାଠ ପଢିବାର ସମସ୍ତ ଇଚ୍ଛା ପରିତ୍ୟାଗ କଲା । ଆଧ୍ୟାତ୍ମିକ ଜୀବନ ଯାପନ କରିବା ହିଁ ତାର ଏକମାତ୍ର ଇଚ୍ଛାଥିଲା । ଅମ୍ମାଙ୍କର ବାଧ୍ୟ ବାଧ୍ୟକତାରେ ସେ ପରୀକ୍ଷାର ମାତ୍ର ମାସକ ଆଗରୁ ପଢାପଢି ଆରମ୍ଭ କରିଥିଲା । ଅଧ୍ୟାପକ ଓ ଛାତ୍ର ମାନେ ବେଣୁକୁ ପୁରା ଲଣ୍ଡା ହୋଇ କପାଳରେ ବିଭୂତି ଲଗାଇ ଆସିବାରେ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେମାନେ ଭାବିଲେ ଯେ ସେ ପୁରା ପାଗଳ ହୋଇ ଯାଇଛି । ତାର ମନ ସବୁବେଳେ ଅମ୍ମାଙ୍କର ଚିନ୍ତାରେ ହିଁ ମଗ୍ନ ରହୁଥିଲା । ଏପରିକି ଥରେ ତାର ମନ ଅମ୍ମାଙ୍କ ଧ୍ୟାନରେ ଏପରି ମଗ୍ନ ହୋଇ ଯାଇଥିଲା ଯେ ଅଜାଣତରେ ସେଦିନର ପରୀକ୍ଷା ପାଇଁ ପ୍ରସ୍ତୁତି ନକରି ତା ପରଦିନ ପରୀକ୍ଷା ପାଇଁ ପ୍ରସ୍ତୁତି କରି ଦେଇଥିଲା । କୌଣସି ମତେ ସେ ସବୁ ପରୀକ୍ଷା ଦେଇ ୧୯୮୦ ମସିହାରୁ ବଲ୍ଲିକାଓ୍ୱରେ ଆସି ରହିବାକୁ ଆରମ୍ଭ କଲା ।

ଦିନେ ମନ୍ଦିରରେ କୌଣସି ଉତ୍ସବ ଉପଲକ୍ଷେ ଆଶ୍ରମରେ ଖିରୀ ତିଆରି ହୋଇଥିଲା । ଆଗ ଠାକୁରଙ୍କ ପାଖରେ ଭୋଗ ଲାଗିବା ପରେ ହିଁ ଭକ୍ତ ମାନଙ୍କ ମଧ୍ୟରେ ବିତରଣ କରା ହେବାର ନିୟମ ଅଛି । ବେଣୁ ଗୋଟିଏ ଛୋଟ ଢାଳରେ ଆଗରୁ କିଛି ବାହାର କରିନେଇ ଛୋଟ ପୂଜା ଘରେ ରଖିଦେଇଥିଲା । ଖୋଲା ଥିବା ଯୋଗୁଁ ସେ ତାପରେ ଅମ୍ମା ଆଖ ପାଖରେ ନ ଥିଲାବେଳେ କେହି ନ ଦେଖିଲାଭଳି ତୁନିକରି ମନ୍ଦିର ପାଖରେ ବଢ଼ିଥିବା ଗୋଟିଏ ଛୋଟିଆ ଗଛରୁ କଅଁଳ ପତ୍ରଟିଏ ଛିଣ୍ଡାଇ ଆଣି ଢାଳ ଟିକୁ ଘୋଡାଇ ଦେଲା । ଅମ୍ମା ଦୂରରେ ରହି ପୁରା ଘଟଣାଟି ଦେଖୁଥିଲେ । ତାକୁ ଜୋରରେ ଡାକିଲେ "ହେ ବେଣୁ!" ଅମ୍ମାଙ୍କର ସ୍ୱରଶୁଣି ସେ କଅଁଳିଆ ପତ୍ରଟି ଲୁଚାଇବାକୁ ଚେଷ୍ଟା କଲା ବେଳକୁ ତରତରରେ ହାତ ବାଜି ଖିରୀ ଢାଳଟି ଲେଉଟିଯାଇ ବାଲି ଉପରେ ସବୁ ଖିରୀ ଅଜାଡି ହୋଇଗଲା । ଏତେ ବେଳକୁ ବେଣୁ ପୁରା ଛାନିଆ ହୋଇ ତରତରରେ ବାଲିରୁ ଖିରୀତକ ଉଠାଇ ନେଇ ପୁଣି ଢାଳ ଭିତରେ ଭର୍ତ୍ତି କରି ଦେଇ, ଭୁଲ କାମ ଜାଣି ସୁଦ୍ଧା ତାକୁ ପୁଣି ସାନ ମନ୍ଦିର ଭିତରେ ରଖିଦେଲା । ମା ଦୂରରୁ ପୁରା ଘଟଣା ଟି ଦେଖୁଥିଲେ ଓ ତା ପାଖରେ ପହଂଚି ଗମ୍ଭୀର ସ୍ୱରରେ କହିଲେ "ପୁଅ, ଯାକୁ ତ କୁକୁର ବି ଖାଇବନି, ମଣିଷ କଥା ତ ଛାଡ । ଏହାକୁ କିପରି ଭଗବାନଙ୍କୁ ଭୋଗ ଲଗାଇବୁ? ପୁଅ, ତୁ ତାକୁ ଖାଇବୁ କି? ଏହା ଗୋଟିଏ ବିରାଟ ପାପ । ଭଗବାନଙ୍କୁ ଯାହା ବି ସ୍ନେହ, ଶ୍ରଦ୍ଧାରେ ଦେଲେ ସେ ଗ୍ରହଣ କରିବେ, କାରଣ ସେ ଖାଲି ଭକ୍ତର ହିଁ ଗ୍ରହଣ କରନ୍ତି । ତୁ ଏଇ ଭୁଲ୍ କାମଟି କରି, ପୁଣି ସେହି ଛୋଟ ଗଛଟିରୁ କଅଁଳିଆ ପତ୍ର ତୋଳି ଆହୁରି ଗୋଟିଏ ଭୁଲ କର୍ମ କରିଛୁ ! ପୁଅ ! ତୁ ଯଦିଓ ତାର କଷ୍ଟ ଅନୁଭବ କରି ପାରୁ ନାହୁଁ, ଅମ୍ମା କରି ପାରୁଛି" ।

ବେଣୁ ନିଜର ଭୁଲ ବୁଝିପାରି ଅନୁତାପ କରିଥିଲେ । ସେ କ୍ଷମା ପ୍ରାର୍ଥନା କରିଥିଲେ । ଅମ୍ମା କହିଲେ "ତୁ ଯାହା ଭୁଲ କଲେ ମଧ୍ୟ ମୁଁ କିଛିଟା ମୋର ଭୁଲ ବୋଲି ମାନି ନେଉଛି । ଅମ୍ମା ତୋ ଉପରେ ଜମା ରାଗି ନାହିଁ, କିନ୍ତୁ ତୋତେ ସିଧା ସିଦ୍ଧି ପଥରେ ନବାକୁ ହେଲେ ଅମ୍ମାକୁ ରାଗ ଦେଖାଇବାକୁ ହିଁ ପଡିବ" ।

ବେଣୁ କହନ୍ତି "ଅମ୍ମାଙ୍କ ପାଖରୁ କୌଣସି ଜିନିଷ ଲୁଚି ରହିପାରେ ନାହିଁ । ଅମ୍ମା ସବୁ ଜାଣନ୍ତି । ପାଂଚ ବର୍ଷ ତଳେ ମୋର ଏହି ବିଷୟରେ ଗୋଟିଏ ଅନୁଭୂତି

ହୋଇଥିଲା । ଦିନେ ରାତିରେ ସମସ୍ତେ କାଞ୍ଜି ଖାଉଥିଲେ (ପେଜୁଆ ଭାତ), ମୋର ହଠାତ୍ ତା ସହିତ ଟିକିଏ ଆମ୍ବ ଆଚାର ଖାଇବାକୁ ଇଚ୍ଛା ହେଲା । ମୁଁ ସେଦିନ ସକାଳେ ଆଶ୍ରମର ରନ୍ଧା ଘରେ ମୂଳିଆ ଓ ଅତିଥି ଭକ୍ତ ମାନଙ୍କ ପାଇଁ ଆଚାର ରଖା ହେବାର ଦେଖିଥିଲି । ଆଶ୍ରମ ବାସୀଙ୍କ ପାଇଁ ତାହା ଖାଇବା ନିଷେଧ ଥିଲା ଏବଂ ଅମ୍ମା କହିବାନୁସାରେ ସାଧକ ମାନଙ୍କର ମସଲା, ମିଠା, ଖଟା, ଲୁଣିଆ ଇତ୍ୟାଦି ଖାଦ୍ୟ ଖାଇବାରେ ବାରଣ ଥାଏ । ସେ ମଝି ମଝିରେ ରୋଷେଇ ଘରକୁ ଅପ୍ରତ୍ୟାଶିତ ଭାବରେ ଆସି ଠିକ ଭାବରେ ନିୟମ ଲାଗୁ ହେଉଛି କି ନାହିଁ ଦେଖୁଥିଲେ । ମୁଁ ଯଦିବା ସବୁ ଜାଣିଥିଲି, ଆଚାର ଖାଇବାର ଲୋଭକୁ ସମ୍ବରଣ କରି ପାରିଲି ନାହିଁ ।

"କିଛି ଶବ୍ଦ ନକରି ମୁଁ ଧୀରେ ଧୀରେ ରୋଷେଇ ଘରେ ପହଂଚି ଦୁଇଟି ବଡ ଆମ୍ବ ଆଚାର ଆଣିଲି । ମୁଁ ଠିକ୍ ବାହାରି ଯାଉଛି, ହଠାତ ଅମ୍ମାଙ୍କର ସ୍ୱର ଶୁଣିଲି "ବେଣୁ ! ତୁ ହାତରେ କଣ ଧରିଛୁ ଦେଖେ ।" ମୁଁ ପୁରା ସ୍ତବ୍ଧ ହୋଇଗଲି, ଧରା ପଡିବା ଭୟରେ ମୁଁ ଆମ୍ବ ଆଚାରକୁ ଫିଙ୍ଗି ଦେଲି । ଅମ୍ମା ଖୋଜି ଆଚାର ଦୁଇଖଣ୍ଡ ପାଇଲେ । ତାପରେ ମତେ ଧରି, ମୋ ଦୁଇହାତକୁ ଗୋଟିଏ ଖୁଂଟରେ ବାନ୍ଧିଦେଲେ । ମୁଁ ଲଜ୍ଜିତ ଓ ଭୟଭୀତ ହୋଇ ପଡିଲି । ମୋର ପିଲାଳିଆ ଭୟ ଓ ନିର୍ଦ୍ଦୋଷତା ଦେଖି ଅମ୍ମା ଜୋରରେ ହସି ଉଠିଲେ । ପ୍ରକୃତରେ ଅମ୍ମା ମତେ କୃଷ୍ଣ ବେଶରେ ଦହି ହାଣ୍ଡି ପାଖରେ ବନ୍ଧା ହେବା ଦୃଶ୍ୟ ହିଁ ଉପଭୋଗ କରୁଥିଲେ । ଗୋପୀ ମାନଙ୍କ ଘରୁ କୃଷ୍ଣକୁ ଲହୁଣୀ ଓ ଦୁଧ ଚୋରାଇ ଥିବା ଯୋଗୁଁ ଯଶୋଦା ତାଙ୍କୁ ଦହି ହାଣ୍ଡିର ପାଖ ଖୁଂଟିରେ ହିଁ ବାନ୍ଧି ଦଉଥିଲେ । କିଛି ସମୟପରେ ଅମ୍ମା ମୋର ହାତ ଖୋଲି ଦେଇ, ସ୍ନେହରେ କିଛି ଆମ୍ବ ଆଚାର ଖାଇବାକୁ ଦେଲେ । ସେ କହିଲେ "ପୁଅ, ଯଦି ଜିଭର ସ୍ୱାଦକୁ ନିୟନ୍ତ୍ରଣ କରାଯାଇପାରେ, ତାହେଲେ ହିଁ ଜଣେ ହୃଦୟର ଆନନ୍ଦ ଅନୁଭବ କରିପାରିବ" ।

ଅମ୍ମା ତାଙ୍କର ନିଜ ଉପାୟରେ ତାଙ୍କ ପିଲା ମାନଙ୍କର ଦୁର୍ଗୁଣ ସବୁକୁ ଦୂରେଇ ଦିଅନ୍ତି । ବେଳେବେଳେ ସେ କୁହନ୍ତି "ମୁଁ ଗୋଟିଏ ପାଗଳୀ ଝିଅ, ମୁଁ କିଛି ଜାଣେ ନାହିଁ" । ସେ ନିଜକୁ ଅଜ୍ଞାନୀ, ଗାଉଁଲୀ ଝିଅ ବୋଲି ଦେଖାନ୍ତି, କିନ୍ତୁ ତାଙ୍କର ଆଖି ସମସ୍ତ ସତ୍ୟ କୁ ତନ୍ନ ତନ୍ନ କରି ଦେଖିପାରେ । ଥରେ ଭୁଲ କୁ ନିରୂପଣ କରିଲା

ପରେ ହିଁ ସଦଗୁରୁ ଜାଗ୍ରତ ହୁଅନ୍ତି ଓ ଅମ୍ମାର କୋମଳ ଭାବ ଗୋପନ କରି ଶିଷ୍ୟ ମାନଙ୍କୁ ଉପଯୁକ୍ତ ଉପଦେଶ ଦିଅନ୍ତି ।

ଶ୍ରୀ କୁମାର (ବର୍ତ୍ତମାନ ସ୍ୱାମୀ ପୂର୍ଣ୍ଣମୃତା ନନ୍ଦ) ଅମ୍ମାଙ୍କ ଆଶ୍ରମରେ ଜଣେ ଅଧିବାସୀ । ଅମ୍ମାଙ୍କ ପାଖକୁ ଆସିବା ଆଗରୁ ସେ ଜଣେ ଇଲେକଟ୍ରୋନିକ ଇଞ୍ଜିନିୟର ଥିଲେ । ସେ ଯେତେବେଳେ ୧୯୭୯ ମସିହାରେ ବି.ଏ. ପଢୁଥିଲେ, ସେ ଜଣେ ସ୍ତ୍ରୀ ଲୋକଙ୍କର ଭାବଦର୍ଶନ ଦେବା ଓ ସମସ୍ତଙ୍କୁ ମନର ଅଭିଳାଷ ପୂରଣ ଲାଗି ଆଶୀର୍ବାଦ କରିବା କଥା ଶୁଣିଥିଲେ । ଭଗବାନ ଯେ ଦର୍ଶନ ଦେଇପାରନ୍ତି ସେ ବିଷୟରେ ତାଙ୍କର ସନ୍ଦେହ ଥିଲା । ପୃଥିବୀର ମାତ୍ର ଅଳ୍ପ ଲୋକଙ୍କୁ ସୁଖୀ ଓ ବେଶୀ ଭାଗଙ୍କୁ ଦୁଃଖି ଦେଖି ତାଙ୍କର ସର୍ବ ମଙ୍ଗଳମୟ ଭଗବାନଙ୍କ ପ୍ରତି ଆସ୍ଥା କମି ଆସୁଥିଲା । ଶେଷରେ ଅମ୍ମାଙ୍କୁ ନିଜ ଆଖିରେ ଦେଖି, ସେ ପ୍ରକୃତରେ ଐଶ୍ୱରୀକ ଶକ୍ତି ସଂପନ୍ନା ବୋଲି ଅନୁଭବ କରିବା ପାଇଁ ଠିକ୍ କଲେ ।

୧୯୭୯ ମସିହା ମାର୍ଚ୍ଚ ମାସରେ ମନ ଭିତରେ ସନ୍ଦେହ ଭରି ସେ ଅମ୍ମାଙ୍କ ମନ୍ଦିରରେ ପ୍ରବେଶ କଲେ । ଅମ୍ମାଙ୍କ ପାଖରେ ପହଂଚିବା ପରେ ତାଙ୍କର ସ୍ନେହ ଓ କରୁଣା ଭରା ଦୃଷ୍ଟି ଶ୍ରୀ କୁମାରଙ୍କର ହୃଦୟକୁ ଗଭୀର ଭାବରେ ଛୁଇଁଗଲା । ତାଙ୍କର ଉପସ୍ଥିତିରେ ଖାଲି ଭଗବାନଙ୍କ ପବିତ୍ର ନାମ ଉଚ୍ଚାରଣ ଛଡା ସମସ୍ତ ପରିବେଶକୁ ସେ ଭୁଲିଗଲେ । ଏହି ଅନୁଭୂତି ତାଙ୍କୁ ଅମ୍ମାଙ୍କ ସହ ବାନ୍ଧି ଦେଲା ଓ ତାଙ୍କ ମନ ଖାଲି ଅମ୍ମାଙ୍କର ଚିନ୍ତାରେ ହିଁ ପୁରି ଗଲା । ତାଙ୍କର ଅମ୍ମାଙ୍କ ସହ ଦ୍ୱିତୀୟ ଦର୍ଶନ ବିଷୟରେ ଶ୍ରୀ କୁମାର କହନ୍ତି, "ମୁଁ ଶୁଣିଲି କିଛି ଲୋକ ତାଙ୍କୁ 'ଛୁଆ' ବା (କୁଞ୍ଜୁ) ବୋଲି ଡାକୁଛନ୍ତି ଓ ଆଉ କିଛି ଲୋକ ତାଙ୍କୁ ମା (ଅମ୍ମା) ବୋଲି ଡାକୁଛନ୍ତି । ଭାବଦର୍ଶନ୍ ପରେ ସେ ଭକ୍ତ ମାନଙ୍କ ସହ କଥାବାର୍ତ୍ତା କଲେ । ହଠାତ୍ ସେ ଗୋଟିଏ ଛୋଟ, ନିଷ୍କପଟ ପିଲା ପରି ବ୍ୟବହାର କରନ୍ତି । ଭକ୍ତ ମାନଙ୍କ ସହ ଖେଳିବାକୁ ଆରମ୍ଭ କରନ୍ତି ଓ ତାଙ୍କର ପିଲାଳିଆମି ଦେଖି ଭକ୍ତମାନେ ସବୁ ଭୁଲି ତାଙ୍କ ସହ ଖେଳିବାକୁ ଆରମ୍ଭ କରନ୍ତି । ବେଳେ ବେଳେ ସେ ଗୀତ ଗାଇ, ନାଚନ୍ତି ପୁଣି ପର ମୁହୂର୍ତ୍ତରେ ଗୀତ ଶୁଣୁ ଶୁଣୁ ସେ କାନ୍ଦି, ଅଚେତ ହୋଇ ବାହ୍ୟଜ୍ଞାନ ହରାଇ ବସନ୍ତି । କେତେକ ତାଙ୍କ ଆଗରେ ନତ ମସ୍ତକ ହୋଇ ଯାଆନ୍ତି ଆଉ କେତେକ ତାଙ୍କର ହାତକୁ ଚୁମ୍ବନ

କରନ୍ତି, ଆଉ କେତେକ ଭଜନ ଗାଆନ୍ତି । ତାପରେ ପାଗଳଙ୍କ ପରି ସେ ମାଟିରେ ଲୋଟି ଗଡି ଗଡି କାନ୍ଦନ୍ତି । ପ୍ରଥମେ ଶ୍ରୀ କୁମାରଙ୍କର ମନେ ହେଇଥିଲା ଅମ୍ମା ଅଳ୍ପ ସମୟ ପାଇଁ ବେଳେ ବେଳେ ମା କାଳୀଙ୍କ ଦ୍ୱାରା ଓ କୃଷ୍ଣଙ୍କ ଦ୍ୱାରା ବଶୀଭୂତ ହୋଇ ଯାଉଛନ୍ତି । କିନ୍ତୁ ଧୀରେ ଧୀରେ ଅମ୍ମାଙ୍କ ସହ ଘନିଷ୍ଠ ହେଲା ପରେ ସେ ଜାଣି ପାରିଲେ ଯେ ପ୍ରକୃତରେ ଅମ୍ମା ନିଜ ଭିତରେ ଥିବା ଅନନ୍ତ ଚୈତନ୍ୟ ବ୍ରହ୍ମଙ୍କୁ ହିଁ ପ୍ରଦର୍ଶିତ କରାଉଛନ୍ତି ।

ଶ୍ରୀ କୁମାରଙ୍କର ଅମ୍ମାଙ୍କ ସହ ସମ୍ବନ୍ଧ ଦିନକୁ ଦିନ ଘନିଷ୍ଠ ହେବାକୁ ଲାଗିଲା । ଅମ୍ମାଙ୍କ ଠାରୁ ଦୂରରେ ରହିବା ତାଙ୍କ ପାଇଁ କଠିନ ହୋଇ ପଡିଲା । ଯେତେବେଳେ ସମୟ ମିଳୁଥିଲା, ଅମ୍ମା ତାଙ୍କୁ ନିଜ ହାତରେ ଖୁଆଉଥିଲେ ଏବଂ ତା ସାଙ୍ଗେ ସାଙ୍ଗେ ଆଧ୍ୟାତ୍ମିକ ଉପଦେଶ ପ୍ରଦାନ କରୁଥିଲେ । ଅମ୍ମା ଦିନେ ପଚାରିଲେ "ଅମ୍ମା ତତେ ଜପିବା ପାଇଁ ମନ୍ତ୍ର ଦୀକ୍ଷା ଦେଇଛି ?" ସେ କହିଲେ "ହିଁ, ଗୋଟିଏ ଛୋଟ କାଗଜରେ ଲେଖା ହୋଇ ମୋର ପାଠ ପଢା ଭଲ ହେବା ପାଇଁ ଦିଆ ଯାଇଥିଲା" । ଅମ୍ମା ତାଙ୍କୁ କହିଲେ "ପୁଅ ! ଦେବୀଭାବ ସମୟରେ ଅମ୍ମା ମନ୍ତ୍ର ଦେବ" । ସେଇଦିନଠାରୁ ସେ ସାରା ଜୀବନକୁ ଅମ୍ମାଙ୍କର ତତ୍ତ୍ୱବଧାନରେ ଆଧ୍ୟାତ୍ମିକ ଉପାସନାରେ ହିଁ କଟାଇବାକୁ ସ୍ଥିର କଲେ ।

ଯଦିଓ ଶ୍ରୀ କୁମାରଙ୍କର ବାପା, ମା ଅମ୍ମାଙ୍କ ଭକ୍ତ ଥିଲେ, ସେମାନେ ତାଙ୍କୁ ସନ୍ୟାସ ନେବାକୁ ଅନୁମୋଦ ଦେଇ ନଥିଲେ । ସେମାନଙ୍କର ବିରୋଧର କାରଣ ଥିଲା । ତାଙ୍କ ବାପା ଚାକିରୀରୁ ଅବସର ନେଇ ଯାଇଥିଲେ ଓ ଭଉଣୀଙ୍କର ବିବାହ ହୋଇ ନଥିଲା । ସେଥିପାଇଁ ସେମାନେ ତାଙ୍କ ପାଇଁ ବଲ୍ଲିକାୱୁ ଠାରୁ ଛଅ ଶହ କିଲୋମିଟର ଦୂର ବାଙ୍ଗାଲୋରରେ ଚାକିରୀର ବନ୍ଦୋବସ୍ତ କରିଥିଲେ । ଯେଉଁଦିନ ତାଙ୍କର ହୃଦୟ ବ୍ୟଥାରେ ଭାଙ୍ଗିପଡୁ ଥିଲା, ସେ ଅମ୍ମାଙ୍କର ରୂପର ଦର୍ଶନ ପାଉଥିଲେ । ତାଙ୍କୁ ସାନ୍ତ୍ୱନା ଦେବା ପାଇଁ ଅମ୍ମା ମଝି ମଝିରେ ଚିଠି ପଠାଉଥିଲେ । ସେହି ସମୟରେ ସେ ଏହି ଗୀତ ରଚନା କରିଥିଲେ ।

ଆଗୋ ମା !

ତୁମେ ଅଛ ମୋର ପାଶେ

ତଥାପି ତୁମକୁ ନ ଚିହ୍ନି ମୁଁ ବୁଲୁଥାଏ
ମୋର ଆଖି ଅଛି
ହେଲେ ନ ଦେଖି ତୁମକୁ ମୁଁ ଖୋଜୁଥାଏ
ତୁମେ କି ସେ ସୁନ୍ଦର ଜହ୍ନ
ଯିଏ ଉଏଁ ନୀଳ ଶୀତୁଆ ରାତିରେ ?
ମୁଁ ସେଇ ଲହରୀ
ଯିଏ ଆକାଶକୁ ଛୁଇଁ ପାରେ ନାହିଁ
ଖାଲି ମଥା ପିଟେ ତୀର ଭୂମି ଧାରେ ।
ଚିରନ୍ତନ ଯେବେ ସତ୍ୟ ଉପଲବ୍ଧି କରେ
ମୋତେ ଦୁନିଆର ସବୁ ଭୋଗ ଲାଗେ ମୂଲ୍ୟହୀନ ।
ମୁଁ ଚାହେଁ ତୁମକୁ ହିଁ ଜାଣିବାକୁ
ରାତି ଦିନ ଲୁହ ଢାଳି ଢାଳି ।
ଆସନ୍ତନି ତମେ ଥରେ ସାନ୍ତ୍ୱନା ଦେବାକୁ ମତେ ?
ଦୁଃଖର ବୋଝରେ ମୁଁ ଭାରାକ୍ରାନ୍ତ
ଆଶା ବହି ବସିଅଛି,
ତୁମେ ଆସିବ
ଚାହିଁ ରହିଥିବି ତୁମ ଆସିଲା ବାଟକୁ ।

ବାଙ୍ଗାଲୋରରେ ଗୋଟିଏ ମାସ ନ ପୁରୁଣୁ ଶ୍ରୀକୁମାରଙ୍କର ଅମ୍ମାଙ୍କୁ ଦେଖିବା ପାଇଁ ଆକାଂକ୍ଷା ଏତେ ତୀବ୍ର ହୋଇ ଉଠିଲା ଯେ ସେ ନ ରହିପାରି ଘରକୁ ଫେରି ଆସିଲେ । ଘରକୁ ଫେରୁ ଫେରୁ ପ୍ରବଳ ଜ୍ୱର ହେବାରୁ ସେ ସାଙ୍ଗେ ସାଙ୍ଗେ ହସପିଟାଲରେ ଭର୍ତ୍ତି ହୋଇଥିଲେ । ତାଙ୍କର ଅମ୍ମାଙ୍କୁ ଦର୍ଶନ କରିବାର ଇଚ୍ଛା ବଢ଼ି ଚାଲିଲା । ଦିନେ ସକାଳ ୯ଟାରେ ତାଙ୍କର ଏହି ସୁନ୍ଦର ଅନୁଭୂତି ହେଇଥିଲା । “ମୋ ବାପା ବାହାରକୁ ମୋ ପାଇଁ କଫି ଆଣିବା ପାଇଁ ଯାଇଥିଲେ । ମୁଁ ଏକୁଟିଆ

ସେଇ କୋଠରୀରେ ଥିଲି, ହଠାତ୍ ମୋର ମନେ ହେଲା ଯେପରି ମୋ ହାତ ଗୋଡ ଅବସନ୍ନ ହୋଇ ପଡିଛି । ଶୀତଳ ପବନ ଧୀରେ ଧୀରେ ବହୁଥିଲା, ଅମ୍ମା କୋଠରୀ ଭିତରେ ପ୍ରବେଶ କଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଥିଲି । ସେ ଅନାବିଳ ହସ ହସି ମୋ ଆଡକୁ ଆସୁଥିଲେ । ମୁଁ ସାନ ପିଲାପରି କାନ୍ଦିବାକୁ ଆରମ୍ଭ କଲି, ସେ ମୋ ପାଖରେ ବସି ମୋ ମୁଣ୍ଡ ତାଙ୍କ କୋଳରେ ରଖିଲେ । କିଛି କହିଲେ ନାହିଁ । ମୋର ହୃଦୟ ଆବେଗରେ ଉଛୁଳି ଉଠୁଥିଲା । କଣ୍ଠ ବାଷ୍ପରୁଦ୍ଧ ହେଉଥିଲା । ଅମ୍ମାଙ୍କର ଦେହରୁ ଏକ ଉଜ୍ଜ୍ୱଳ ଆଲୋକ ବାହାରି କୋଠରୀ ଆଲୋକିତ କଲା ଓ ତାଙ୍କ ଚାରିଆଡେ ସ୍ୱର୍ଗୀୟ ଆଭା ଘେରି ହୋଇ ଥିଲା । ଠିକ୍ ସେହି ସମୟରେ କବାଟ ଖୋଲିଲା ଏବଂ ମୋର ବାପା ପ୍ରବେଶ କଲେ । ସାଙ୍ଗେ ସାଙ୍ଗେ ଅମ୍ମା ଉଭେଇ ଗଲେ” ।

କିଛିଦିନ ପରେ ଦିନେ ସକାଳେ ଅମ୍ମା ଶ୍ରୀକୁମାରଙ୍କର ଘରକୁ ଆସିଥିଲେ । ସେ ଘରର ବାହାରେ ବସି କିଛି ପିଲା ମାନଙ୍କ ସହ ଖେଳୁଥିଲେ । ହଠାତ୍ ସେ ଉଠି ପଡିଲେ, ହାତରେ ମୁଦ୍ରା କରି ପୂର୍ବ ଦିଗରେ ଥିବା ପଡିଆ ଆଡେ ଗତି କଲେ । କିଛିବାଟ ଗଲାପରେ ସେ ଗୋଟିଏ ଜଙ୍ଗଲ ଭିତରେ ପଶିଲେ । ସେଠାରେ ଗୋଟିଏ ପରିବାର ସାପ ମାନଙ୍କୁ ପୂଜା କରି ଆସୁଥିଲେ । ଅର୍ଦ୍ଧ ଜାଗ୍ରତ ଅବସ୍ଥା ଓ ଅଧା ଖୋଲା ଆଖିରେ, ସେ ସେଠାରେ ପହଂଚି ମୁଗ୍ଧ କାରିଣୀ ହସ ହସି ସାପ ପୂଜା କରୁଥିବା ପୂଜାଘରେ ଯାଇ ବସିଲେ । ଅନେକ ଲୋକ ଏହି ଅଲୌକିକ ଘଟଣା ଦେଖିବା ପାଇଁ ଏକତ୍ରିତ ହେଲେ । ଅନେକ ଲୋକ ଏହି ଜଙ୍ଗଲର ବିଷାକ୍ତ ସାପକୁ ଡରି ଜଙ୍ଗଲ ଭିତରେ ପ୍ରବେଶ କଲେ ନାହିଁ । ଏହା ଶୁଣି ଏଇ ଜଙ୍ଗଲ ତୋଟାର ମାଲିକ ଆସି ସେଠି ଅମ୍ମାଙ୍କ ଆଗରେ ଯୋଡ ହସ୍ତ ହୋଇ ଠିଆ ହେଲେ ।

ସେମାନେ ପଚାରିଲେ, “ଅମ୍ମା, ଆମେମାନେ ଏହି ପୂଜା ସବୁବେଳେ କରୁଛୁ, କେବେହେଲେ ବ୍ରତ ଭାଙ୍ଗି ନାହୁଁ । ଏଣିକି ଆମର କଣ କରିବା ଦରକାର ?” ଅମ୍ମା ଉତ୍ତର ଦେଲେ “ଗୋଟିଏ ଗିଲାସ ପାଣି ସବୁଦିନେ ଏଠି ରଖିଦେବ, ସେତିକି ଯଥେଷ୍ଟ” । ତାପରେ ଅମ୍ମା ପୁଣି ଆମ ଘରକୁ ଫେରି ଆସିଲେ ଓ ପରିବାର ବର୍ଗ ପଚାରିଲେ । “ଅମ୍ମା ତୁମେ କାହିଁକି ସେଠାକୁ ଯାଇଥିଲ ?” ସେ ଉତ୍ତର ଦେଲେ “ସେଠାରେ ସାପ ପୂଜା ବହୁତ ଦିନ ଧରି ଚାଲିଛି । ଅମ୍ମା ଜଙ୍ଗଲକୁ ଉପସ୍ଥିତ

ଦେବାଦେବୀଙ୍କ ଇଚ୍ଛା ପୂରଣ କରିବା ପାଇଁ ଯାଇଥିଲା । ମୁଁ ଏଠାକୁ ଆସିଲାବେଳରୁ ମୋର ମନେ ହେଉଥିଲା, ଯେପରିକି ସେମାନେ ମତେ ଡାକୁଛନ୍ତି" ।

ଠିକ୍ ତା ପରେ ପରେ ଶ୍ରୀକୁମାରଙ୍କ ବାପା ମା ତାଙ୍କ ପାଇଁ ବମ୍ବେରେ ଆଉ ଗୋଟିଏ ଚାକିରୀ ଯୋଗାଡ କରିଦେଲେ । ସେମାନେ ଏତେ ବେଶୀ ବାଧ୍ୟ କଲେ ଯେ ତାଙ୍କର ନଯାଇ ଆଉ ଉପାୟ ନଥିଲା । ବହୁତ ନିରୁପାୟ ହୋଇ ସେ ବମ୍ବେ ଗଲେ । ପୁଣିଥରେ ଅମ୍ମାଙ୍କ ପାଖରୁ ଅଲଗା ହୋଇଗଲେ । ଯେତେବେଳେ ସେ ରେଳରେ ଯାତ୍ରା କରୁଥିଲେ, ଅମ୍ମାଙ୍କର ଉପସ୍ଥିତି ସେ ପୁରାପୁରି ଅନୁଭବ କରିଥିଲେ । ଅଧା ଶୋଇବା ଓ ଅଧା ଚାହିଁବା ଅବସ୍ଥାରେ ସେ ଅମ୍ମାଙ୍କର ଉପସ୍ଥିତି କୁ ଉପଭୋଗ କରିଥିଲେ । ଶେଷରେ ଆଠ ମାସ ପରେ ସେ ଅମ୍ମାଙ୍କର ଅନୁପସ୍ଥିତି ପୁରାପୁରି ଅନୁଭବ କରିଥିଲେ । ଅଧା ଶୋଇବା ଓ ଅଧା ଚେଇଁବା ଅବସ୍ଥାରେ ସେ ଅମ୍ମାଙ୍କର ଉପସ୍ଥିତି ଆଉ ସହି ପାରିଲେ ନାହିଁ ଓ ଶେଷରେ ତାଙ୍କ ମାଲିକଙ୍କୁ ଇସ୍ତଫା ପତ୍ର ଦେଇଥିଲେ । ବମ୍ବେରେ ରହିଥିବା ସମୟରେ, ଶ୍ରୀ କୁମାର ଏହି କବିତା ଲେଖି ନିଜର ହୃଦୟ ଦୁଃଖ ଜଣାଇଥିଲେ -

ସୂର୍ଯ୍ୟ ଏବେ ଅସ୍ତ ଗଲେ ପଶ୍ଚିମ ସମୁଦ୍ରେ
ଦିନ ଆରମ୍ଭିଲା ତାର ବିଷର୍ଣ୍ଣ ଗୀତିକା
ଏହାହିଁ ତ ବିଧାତାର ଲୀଳା ଖେଳା !
ବୁଜି ଯାଉଥିବା ପଦ୍ମ ଫୁଲ
ତୁମେ କିଆଁ ଉଦାସୀନ ହୁଅ !
ଏ ପୃଥିବୀ ଭରିଛି ଦୁଃଖ ଯନ୍ତ୍ରଣାରେ
ଏହା ହିଁ ତ ପ୍ରଭୁଙ୍କର ସ୍ୱର୍ଗୀୟ ନାଟକ
ମୁଁ ତାର ନୀରବ ଦର୍ଶକ ।
ମୁଁ ତାଙ୍କ ହାତରେ ଏକ କାଠର କଣ୍ଢେଇ
ଲୁହ ନାହିଁ ଆଉ ଢାଳିବାକୁ
ବହ୍ନି ଶିଖା ପରି ମୋର ମନ ଜଳେ

ତୁମଠୁ ଅଲଗା ହୋଇ
ଏ ଦୁଃଖ ସାଗରେ
ମୁଁ ଖାଲି ଭାସି ଏଠି ସେଠି
ଉବୁ ଟୁବୁ ହୁଏ
ତୀର ଯେ ପାଏନା କେଉଁଠି ।

ଅମ୍ମାଙ୍କ ପାଖକୁ ଆସି ଆଧ୍ୟାତ୍ମିକ ଜୀବନ ଗ୍ରହଣ କରିବାର ଅନେକ ଆଗରୁ ଶ୍ରୀକୁମାରଙ୍କ ଅନେକ ଅନୁଭୂତି ହୋଇସାରିଥିଲା । ଶୋଇଲା ବେଳେ ମନେ ହେଉଥିଲା ତାଙ୍କର ଆତ୍ମା ମର ଦେହରୁ ବାହାରି ଚାରିଆଡେ ବୁଲୁଛି । ଏହିପରି ସମୟରେ ତାଙ୍କର ଆଖି ବନ୍ଦ ଥିଲେ ମଧ୍ୟ ସେ ଅନେକ ଜିନିଷ ସ୍ପଷ୍ଟ ଭାବରେ ଦେଖି ପାରୁଥିଲେ । ବମ୍ବେରେ ରହିଥିବା ସମୟରେ ତାଙ୍କର ଗୋଟିଏ ଅଦ୍ଭୁତ ଅନୁଭୂତି ହୋଇଥିଲା । ଦିନ ବେଳେ ସେ ଆଖି ବୁଜି ଧ୍ୟାନରେ ବସିଥିଲେ । ହଠାତ୍ ତାଙ୍କର ଦେହ କାଠ ପରି ଟାଣ ହୋଇଗଲା । ସେ ଅନୁଭବ କଲେ ତାଙ୍କର ଆତ୍ମାଟା ତାଙ୍କର ରକ୍ତ ମାଂସର ଦେହରୁ ଅଲଗା ହୋଇ ଯାଉଛି । ହଠାତ୍ ସେ ଘଡଘଡି ପରି ବିରାଟ ଶବ୍ଦ ଶୁଣିଲେ । ଦେଖିଲେ ଯେ ଚାରିଆଡ ବହଳିଆ ଧୂଆଁରେ ଭରି ଯାଇଛି, ଏବଂ ତା ମଝିରେ ଅମ୍ମା ସୁନ୍ଦର ଦେବୀଭାବ ସମୟର ଲୁଗା ପିନ୍ଧି ଠିଆ ହୋଇଛନ୍ତି । କିଛି ମୁହୂର୍ତ୍ତ କଟିଗଲା । ସେ ଏହି ଦୃଶ୍ୟ ଦେଖି ରହିଗଲେ ଏବଂ ଆଖି ଫେରେଇ ପାରିଲେ ନାହିଁ ।

୧୯୮୦ ମସିହା ୨୮ ଜାନୁୟାରୀ ଦିନ ଶ୍ରୀକୁମାର ତାଙ୍କ ବାପା ମାଙ୍କୁ ଦେଖିବା ପାଇଁ ଘରକୁ ଯିବାକୁ ବସିଥିଲା ବେଳେ ଅମ୍ମା ତାଙ୍କୁ ଅଟକାଇ କହିଲେ "ଏଇଠି ରୁହ ! ଆଜି କୁଆଡେ ଯାଅ ନାହିଁ" । ସେ କହନ୍ତି, "ମୁଁ ଅମ୍ମାଙ୍କର କଥା ଶୁଣି ଖୁସି ହୋଇ ଯାଇଥିଲି ଏବଂ ମୋର ସବୁ ବାହାରକୁ ଯିବାର ପରିକଳ୍ପନା ବନ୍ଦ କରି ଦେଲି । ସେଦିନ ସନ୍ଧ୍ୟା ଛଟା ବେଳେ ମୁଁ ବାହାରେ ଠିଆ ହୋଇ କିଛି ଲୋକଙ୍କ ସହ କଥା ହେଲାବେଳେ, ହଠାତ୍ ମୋ ଗୋଡକୁ ଜଣ ଗୋଟିଏ କାମୁଡିଲା ଓ ମୁଁ ଯନ୍ତ୍ରଣାରେ କାନ୍ଦି ଉଠିଲି, ଅମ୍ମା ତାହା ଶୁଣି ଠିକ ସେହି ସ୍ଥାନକୁ ଦଉଡି ଚାଲି ଆସିଲେ । ସାଙ୍ଗେ ସାଙ୍ଗେ କ୍ଷତ ସ୍ଥାନ ଖୋଜି ପାଇ ଅମ୍ମା ସେ ଜାଗାକୁ ଜୋରରେ ଶୋଷି ରକ୍ତ ଓ ବିଷ

ପାଟି ଭରି ବାହାର କରି ଫିଙ୍ଗିଲେ । ତା ସତ୍ତ୍ୱେ ମୋର କଷ୍ଟ ଅତି ବେଶୀ ଅସହ୍ୟ ହେବାକୁ ଲାଗିଲା । ମତେ ମାଟିରେ ଅସହ୍ୟ ଯନ୍ତ୍ରଣାରେ ଗଡିବାର ଦେଖି ଅମ୍ମା ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ । ଶେଷରେ ସମସ୍ତେ ବାଧ୍ୟ କଲା ଫଳରେ ସେ ମତେ ସାପ କାମୁଡା ବିଶେଷଜ୍ଞ ଡାକ୍ତର ପାଖକୁ ନେଇ ଯିବାକୁ ଅନୁମତି ଦେଲେ । ଡାକ୍ତର କହିଲେ "ତୁମକୁ କାମୁଡିଥିବା ସାପ ଅତୀବ ବିଷାକ୍ତ, କିନ୍ତୁ କିଛି ଗୋଟିଏ ଅଦ୍ଭୁତ କାରଣରୁ ତୁମର ରକ୍ତ ଧାରା କିମ୍ବା ଦେହରେ କୌଣସି ପ୍ରତିକ୍ରିୟା ସୃଷ୍ଟି କରି ନାହିଁ" । ମାଙ୍କର ସ୍ନେହ ବୋଳା ଯତ୍ନ ସେବା ଫଳରେ ମୁଁ ଶେଷରେ ରାତି ତିନିଟା ବେଳେ ଶୋଇ ପଡିଲି, ତାପରେ ଯାଇ ଅମ୍ମା ବିଶ୍ରାମ ନେବାକୁ ଗଲେ ।

ତା ପରଦିନ ସକାଳେ ଅମ୍ମା ମତେ କହିଲେ "ପୁଅ ! ତୁ ଯେଉଁଠି ଥାଉ ନା କାହିଁକି, ତୋର କାଲି ସର୍ପ ଦଂଶନର ଯୋଗ ଥିଲା । ଯାହାହେଉ ଅମ୍ମାର ଉପସ୍ଥିତି ଯୋଗୁଁ ତୋର କୌଣସି ପ୍ରକାର କ୍ଷତି ହୋଇ ନାହିଁ । ସେଥିପାଇଁ କାଲି ତୋତେ ଏଠାରୁ ଛାଡିଯିବା ପାଇଁ ଅମ୍ମା ବାରଣ କରିଥିଲା ।" ପରେ ମୁଁ ଘରେ ପହଂଚି ମୋର ଜାତକ ଦେଖି ଆଶ୍ଚର୍ଯ୍ୟ ହୋଇଗଲି ଯେ ସେଥିରେ ମୃତ୍ୟୁ ମୁଖରେ ପହଂଚିବାର ସମ୍ଭାବନା ଥିବାର ବର୍ଣ୍ଣନା କରାଯାଇଥିଲା । ସେଥିରେ ଲେଖାଯାଇ ଥିଲା ଯେ "ବାଇଶି ବର୍ଷ ବୟସରେ ବିଷ ଦ୍ୱାରା କ୍ଷତି ହବାର ଘାଟି ଅଛି, ସେଥିପାଇଁ ମନ୍ଦିରରେ ଭଲ ସ୍ୱାସ୍ଥ୍ୟ ପାଇଁ ପୂଜା କରିବା ଦରକାର" ।

ଅମ୍ମାଙ୍କର ଦୟାରୁ ଶ୍ରୀକୁମାରଙ୍କର ଅନେକ ଐଶ୍ୱରୀକ ଅନୁଭୂତି ହୋଇଥିଲା ଏବଂ ତାହା ସାଧନାର ଆଗ୍ରହ ବଢାଇବା ପାଇଁ ପ୍ରଚୁର ପ୍ରେରଣା ଯୋଗାଇଥିଲା । ବାପା, ମା ଓ ଭଉଣୀ ସବୁଦିନ ପାଇଁ ଆଶ୍ରମରେ ରହିବାକୁ ଆସିଥିଲେ ।



ପାଈ (ସ୍ୱାମୀ ଅମୃତମୟାନନ୍ଦ) ଏବଂ ରାଓ (ସ୍ୱାମୀ ଅମୃତାତ୍ମାନନ୍ଦ) ଦୁହେଁ ବନ୍ଧୁ ବାନ୍ଧବ ଓ ଘନିଷ୍ଠ ମିତ୍ର ମଧ୍ୟ ଥିଲେ । ସେମାନେ ଯେପରି ଗୋଟିଏ ଆତ୍ମା କିନ୍ତୁ ଦୁଇଟି ଦେହ । ପାଈ ମା କାଳୀଙ୍କର ଭକ୍ତ ଥିଲେ । ତାଙ୍କ ବନ୍ଧୁ ରାଓଙ୍କ ପାଖରୁ ଅମ୍ମାଙ୍କ ବିଷୟରେ ଶୁଣି ୧୯୭୯ ମସିହାରେ ସେ ଅମ୍ମାଙ୍କୁ ଦେଖିବାକୁ ଆସିଲେ । ସେତେବେଳେ ତାଙ୍କର ବୟସ ୨୧ ବର୍ଷ ହୋଇଥିଲା । ନିକଟବର୍ତ୍ତୀ ବସ୍ ଷ୍ଟାଣ୍ଡରେ

ଓହ୍ଲାଇ ସେ ଜଣେ ଲୋକଙ୍କୁ ଆଶ୍ରମକୁ ବାଟ ପଚାରିଲେ । ପାଈଙ୍କର ପ୍ରଶ୍ନର ଉତ୍ତର ନ ଦେଇ ସେ ଲୋକ ଅମ୍ମାଙ୍କ ବିଷୟରେ ନିନ୍ଦା କରି କହିଲେ "ସେଠାକୁ ଯାଅ ନାହିଁ, ସେ ଜାଗାରେ ସବୁ ରକମର ପାପ କର୍ମ ଚାଲିଛି" । ପାଈ ଉତ୍ତର ଦେଲେ "ମୁଁ ନିଜେ ଯାଇ ସ୍ୱଚକ୍ଷୁରେ ଦେଖେ" । ଏହା କହି ମନ୍ଦିର ଆଡେ ଆଗେଇ ଚାଲିଗଲେ ।

ସେଦିନ ଭାବଦର୍ଶନ ଦିନଥିଲା ଓ ଅନେକ ଲୋକ ଦର୍ଶନ ପାଇଁ ଆଶ୍ରମକୁ ଆସିଥିଲେ । ଅମ୍ମାଙ୍କର ସୁଲଳିତ ଭଜନର ସ୍ୱର ତାଙ୍କୁ ସ୍ୱାଗତ ଜଣାଇଥିଲା । ଅମ୍ମା ଗାଉଥିଲେ "ଆଗୋ ମା, ତୁମେ ହିଁ ଆଦି, ମଧ୍ୟ ଓ ଅନ୍ତ ଏହି ସୃଷ୍ଟିର, ହେ ଶାଶ୍ୱତ ଈଶ୍ୱରୀ" । ଭଜନ ପରେ ପରେ, ଅମ୍ମା ନିଜେ ହିଁ ଯେ ଜଗତ ଜନନୀ, ତାହା ଭାବଦର୍ଶନ ମାଧ୍ୟମରେ ଦେଖାଇଲେ । ଯେତେବେଳେ ପାଈଙ୍କର ପାଳି ଆସିଲା, ସେ ମନ୍ଦିର ଭିତରେ ପଶି ଅମ୍ମାଙ୍କର ଦର୍ଶନ ଲାଭ କଲେ । ଅମ୍ମା ଯେତେବେଳେ ତାଙ୍କ ମୁହଁକୁ ମାତୃତ୍ୱଚ ିହ ବୋଳା ଦୃଷ୍ଟିରେ ଦେଖିଲେ, ପାଈ କାନ୍ଦି ପକାଇଲେ, ସେ ଲୁହକୁ ରୋକିବା ଯାଇ ବିଫଳ ହେଲେ । ତାଙ୍କର ହୃଦୟ ଆନନ୍ଦରେ ଭରି ଯାଇଥିଲା । କିଛି ମୁହୂର୍ତ୍ତ ଭିତରେ ସେ ଦୁର୍ଲଭ ଶାନ୍ତି ଅନୁଭବ କଲେ । ଅମ୍ମା ତା ପରେ ତାଙ୍କୁ କହିଲେ ପୁଅ, ମୁଁ ତୋର ମା" । ଅମ୍ମା ଏହା କହିବା ସାଙ୍ଗେ ସାଙ୍ଗେ ପାଈ ପୁଣି ବଡ ପାଟିରେ ସାନ ପିଲାପରି କାନ୍ଦିବାକୁ ଲାଗିଲେ । ବାସ୍ତବରେ ପାଈ ଗୋଟିଏ ଅନାଥ ପିଲା ଥିଲେ କହିଲେ ଚଳେ । ଯଦିଓ ତାଙ୍କର ବାପା, ମା ବଂଚିଥିଲେ, ସେମାନେ ବହୁଦିନଧରି ଅଲଗା ହୋଇ ଯାଇଥିଲେ । ତାଙ୍କର ସେମାନଙ୍କ ସହ କୌଣସି ସଂପର୍କ ନଥିଲା । ସେ ନିଜର ଜେଜେବାପା, ଜେଜେମାଙ୍କ ପାଖରେ ରହି ବଢୁଥିଲେ । ତାଙ୍କ ଜୀବନରେ ପ୍ରଥମଥର ପାଇଁ ସେ ପ୍ରକୃତ ମାଙ୍କର ସ୍ନେହ ବୋଳା କଥା ଶୁଣି ପାରିଲେ । ମନର ଗଭୀରତା ରେ ସେ ଉପଲବ୍ଧି କରିଥିଲେ ଅମ୍ମାଙ୍କ ସହ ତାଙ୍କର ସଂପର୍କ ନୂଆ ନୁହଁ, ଯେପରିକି ଅନେକ ଯୁଗଧରି ଏହି ସଂପର୍କ ରହି ଆସିଛି ।

ଅମ୍ମାଙ୍କ ସହ ଏଇ ପ୍ରଥମ ଦର୍ଶନ ପାଈଙ୍କ ମନରେ ବଡ ଶକ୍ତିଶାଳୀ ପ୍ରଭାବ ପକାଇଥିଲା । ଅମ୍ମାଙ୍କର ରୂପ ତାଙ୍କ ମନ ଭିତରେ ଚିରଦିନ ପାଇଁ ଛାପି ହୋଇ ରହି ଯାଇଥିଲା । ଅନେକ ଜିନିଷ ତାଙ୍କୁ ଅମ୍ମାଙ୍କର ସ୍ମୃତି ମନେ ପକାଇ ଦେଉଥିଲା । ରାସ୍ତାରେ ଚାଲିଲା ବେଳେ ଯଦି ସେ ପାଉଁଜିର ଝୁମ୍ ଝୁମ୍ ଶବ୍ଦ ଶୁଣନ୍ତି, ସେ ବୁଲି

ଅନାଇ ଦେଖନ୍ତି, ସତେ ଯେପରି ଅମ୍ମା ତାଙ୍କର ପଛେ ପଛେ ଆସୁଛନ୍ତି (ଅମ୍ମା ସେତେବେଳ ଗୋଡରେ ଛୋଟ ଛୋଟ ଘୁଂଘୁର ଥିବା ପାଉଁଜି ପିନ୍ଧୁଥିଲେ) । ଯଦି ସେ ଗୋଟିଏ ନାକ ଫୁଲ ପିନ୍ଧିବାର ଝିଅ ଦେଖୁଥିଲେ, ଭାବୁଥିଲେ ସେ ହିଁ ଅମ୍ମା ।

ଦିନ ଗଡି ଚାଲିବା ସଙ୍ଗେ ସଙ୍ଗେ ତାଙ୍କର ଶ୍ରଦ୍ଧା ଭକ୍ତି ବଢିବାକୁ ଲାଗିଲା । ତାଙ୍କର ସ୍ନେହ ମମତାର ସୀମା ରହିଲା ନାହିଁ । ସେ ସେତେବେଳେ ଗୋଟିଏ ଦୋକାନରେ କାମ କରୁଥିଲେ । କାମରେ ମନ ଦେଇ ନପାରି ଶେଷରେ ଇସ୍ତଫା ଦେଲେ, କିନ୍ତୁ ଆ[illegible]ମରେ ସୁବିଧା ନଥିବା ଯୋଗୁ ସେ ସେଠାରେ ରହିପାରିଲେ ନାହିଁ । ତାପରେ ବା[illegible]ହୋଇ ଆଉ ଗୋଟିଏ ଦୋକାନରେ କିରାଣୀ କାମ କଲେ, କିନ୍ତୁ ବାତାବରଣ [illegible] ପାଇଁ ଅନୁକୂଳ ନଥିବା ଯୋଗୁ ଛଅ ମାସ ପରେ ସେ ଇସ୍ତଫା ଦେଲେ । ସେ ଜାଗାରେ ଜଣେ ଅତି ସହଜରେ ମଦ ଓ ସ୍ତ୍ରୀ ଲୋକଙ୍କ ସହିତ ସଂପୃକ୍ତ ହୋଇଯାଇ ପାରିବ । ଅମ୍ମାଙ୍କ ସହ ଦେଖାହେଲା ପରେ ପାଇଙ୍କର ତାମସିକ ସଂସାରର ସୁଖ ସଂଭୋଗ ପ୍ରତି ତୀବ୍ର ଘୃଣା ଜାତ ହୋଇଥିଲା ।

ପାଇଙ୍କର ନୂତନ ଜୀବନ ଧାରା ତାଙ୍କର ବନ୍ଧୁବାନ୍ଧବ, କିମ୍ବା ଗ୍ରାମ ଲୋକଙ୍କୁ ଭଲ ଲାଗିଲା ନାହିଁ । କେତେକ ତାଙ୍କୁ ଅମ୍ମାଙ୍କ ପାଖକୁ ଯିବା ବିରୁଦ୍ଧରେ କହିଲେ, କିନ୍ତୁ ସେ ସେମାନଙ୍କ ଉପଦେଶକୁ ପୁରା ପୁରି ଅଗ୍ରାହ୍ୟ କଲେ । ସେମାନେ ପାଈ ନାମରେ ଗୁଜବ ଉଠାଇଲେ ଯେ ପାଈ, ରାଓକୁ ମଧ୍ୟ ଅମ୍ମାଙ୍କ ପାଖକୁ ନେଇ ତାଙ୍କର ମତି ଗତି ବଦଳେଇ ଦେଇଛନ୍ତି । ଏହାଶୁଣି ରାଓଙ୍କର ବାପା ମା ପାଈଙ୍କ ଉପରେ ଭାରି ରାଗି ଗଲେ । ରାଓଙ୍କର ସାଙ୍ଗମାନେ ମଧ୍ୟ ସେମାନଙ୍କ ସହ ଯୋଗ ଦେଲେ । ସେମାନେ ପାଈଙ୍କୁ ଧମକେଇ କହିଲେ ସେ ଯଦି ହରିପଦ ଗ୍ରାମରେ ପାଦ ଦେବେ ତେବେ ସେମାନେ ତାଙ୍କର ଗୋଡ କାଟି ଦେବେ । ତାଙ୍କର ଅମ୍ମାଙ୍କ ପ୍ରତି ଅତୁଟ ଭକ୍ତି ଏପରି ସମସ୍ୟାର ସମ୍ମୁଖୀନ ହେବା ପାଇଁ ସାହାସ ଓ ମାନସିକ ବଳ ଦେଲା ।

ସେହି ସମୟରେ ଅମ୍ମାଙ୍କର ବାପା ମା ଅମ୍ମାଙ୍କର ଆଧ୍ୟାତ୍ମିକ ସାଧକ ସନ୍ତାନ ମାନଙ୍କୁ ଭାବଦର୍ଶନ ଦିନ ଛଡା ଅନ୍ୟ ଦିନ ଆସିବାକୁ ଅନୁମତି ଦେଉ ନଥିଲେ । ବନ୍ଧୁ ବାନ୍ଧବ ଓ ଘର ଛାଡି ପାଈ ରାତିରେ ଦୋକାନ ବାରଣ୍ଡା, ବସ୍ ଷ୍ଟେସନ ଓ ମନ୍ଦିର ପ୍ରାଙ୍ଗଣରେ କଟାଉଥିଲେ । ସେ ଚାରିଆଡେ ଅସହାୟ ପରି ଘୁରି ବୁଲୁଥିଲେ । ବେଳେ

ବେଳେ ସେ କିଛି ଖାଇବାକୁ ପାଉଥିଲେ ଓ ଅନ୍ୟ ସମୟରେ ଦିନ ଦିନ ଧରି ଭୋକରେ କଟାଉଥିଲେ । ଯେଉଁ ବ୍ୟକ୍ତି ଭଗବତ ସହ ଏକାନ୍ତ ମିଳନର ଅଭିଳାଷରେ ତୃଷ୍ଣାତୁର ହୋଇଯାଏ ସେ ଏସବୁ ଅସୁବିଧା ବିଷୟରେ ଚିନ୍ତା ମାତ୍ର କରେ ନାହିଁ। ଦିନ, ସପ୍ତାହ, ମାସ ମାସ ବିତିଗଲା । ତଥାପି ପାଈ ପ୍ରତ୍ୟେକଟି ଭାବ ଦର୍ଶନ ସମୟରେ ଅମ୍ମାଙ୍କ ଦର୍ଶନ କରୁଥିଲେ ।

ଶେଷରେ ଯେତେବେଳେ ଆଶ୍ରମ ତିଆରି ହେଲା, ପାଈ ଆସି ସେଠାରେ ଅମ୍ମାଙ୍କ ସହ ରହିଲେ । ଅମ୍ମାଙ୍କ ଉପଦେଶ ଅନୁସାରେ ପାଈ ତାଙ୍କ ସାଧନାରେ ସଂଯୁକ୍ତ ରହିଲେ । ପାଈ ସବୁବେଳେ ଅମ୍ମାଙ୍କର ଗୋଟିଏ ଭଙ୍ଗୀର ରୂପକୁ ଧ୍ୟାନ କରୁଥିଲେ । ସେ ସେହି ଭଙ୍ଗୀର ଫଟୋଟିଏ ରଖିବାକୁ ଚାହୁଁ ଥିଲେ କିନ୍ତୁ ସେ ବିଷୟରେ ଅମ୍ମାଙ୍କୁ ପଚାରିବାକୁ ସାହସ ପାଉ ନଥିଲେ । ସେ ବା କିପରି ଅମ୍ମାଙ୍କୁ ସେହି ଭଙ୍ଗୀରେ ଫଟୋ ପାଇଁ ଠିଆ ହେବାକୁ କହିବେ ? ସେ କାହାକୁ ଏ ବିଷୟରେ ହୃଦୟ ଖୋଲି କହିନଥିଲେ । ଦିନେ ପାଈ ଏ ବିଷୟ ଭାବି ଅତ୍ୟନ୍ତ ଦୁଃଖ କରି ଅନେକ ସମୟ ଧରି କାନ୍ଦିବାକୁ ଲାଗିଲେ । ହଠାତ୍ ଅମ୍ମା ତାଙ୍କ ଆଡକୁ ଚାଲି ଚାଲି ଆସି କହିଲେ "ଅମ୍ମା ତୋର ଇଚ୍ଛା ଜାଣେ । ଅମ୍ମା ତୋର ଇଚ୍ଛା ପୂରଣ କରିବ" । କିଛିଦିନ ପରେ ପାଈକୁ ଡକାଇ ଅମ୍ମା ନିଜେ ମନ୍ଦିର ଭିତରକୁ ଗଲେ । ସେ ଯାଇ ଦେବୀଭାବ ସମୟରେ ବସୁଥିବା ପୀଠମ୍ ବା (ଷ୍ଟୁଲ) ଉପରେ ବସିଲେ, ଓ ବସୁ ବସୁ ଅମ୍ମା ସମାଧୀସ୍ଥ ହୋଇଗଲେ । ଏହି ଭଙ୍ଗୀଟି ହିଁ ସବୁବେଳେ ପାଈଙ୍କର ପ୍ରିୟ ଥିଲା । ଶ୍ରୀ କୁମାର ଗୋଟିଏ କ୍ୟାମେରା ନେଇ ଆସି ଫଟୋ ଉଠେଇଲେ । ପାଈଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ସାଧକ ଶାସ୍ତ୍ର ଶିକ୍ଷାରେ ନିପୁଣତା ଲାଭ କରି ନଥିଲେବି ଗୁରୁଙ୍କ ଦୟାରୁ ସେ ଗୋଟିଏ ଦକ୍ଷ ବକ୍ତା ହୋଇ ପାରିବ । ପାଈଙ୍କର ଅନୁଭୂତି ଏହି ସତ୍ୟର ଯଥାର୍ଥତା ପ୍ରତିପାଦନ କରେ ।

ଥରେ ଜଣେ ଭକ୍ତ ତ୍ରିଭେନ୍ଦ୍ରମରୁ ଅମ୍ମାଙ୍କ ଦର୍ଶନ କରିବାକୁ ଆସିଥିଲେ । ସେ ଅମ୍ମାଙ୍କର ଜଣେ ସାଧକ ସନ୍ତାନଙ୍କୁ ସାତଦିନ ପାଇଁ ଶ୍ରୀମଦ୍ ରାମାୟଣରେ ବ୍ୟାଖ୍ୟାନ ଦେବାପାଇଁ ଅନୁରୋଧ କରିବାକୁ ଚାହୁଁଥିଲେ । ସେ ଅମ୍ମାଙ୍କୁ ସେଥିପାଇଁ ପାର୍ଥନା

କରିଥିଲେ । ଅମ୍ମା ତାଙ୍କୁ ଉତ୍ତର ଦେଲେ "କୌଣସି ପିଲାମାନେ ରାମାୟଣ ପଢି ନାହାନ୍ତି, ତେଣୁ ତମର ଅନୁରୋଧ ପୂର୍ଣ୍ଣ କରିବା ସମ୍ଭବ ନୁହଁ ।" ଭକ୍ତ ଜଣକ ଉତର ଦେଲେ "ଅମ୍ମା ! ଦୟାକରି ସେପରି କୁହନ୍ତୁ ନାହିଁ । ମୁଁ ସେଠି ଲୋକଙ୍କୁ କଥା ଦେଇ ଆସିଛି ଯେ ମୁଁ ଜଣକୁ ହେଲେ ନେଇ ଆସିବି । ଦୟାକରି ମତେ ରକ୍ଷା କରନ୍ତୁ !" ଶେଷରେ ଅମ୍ମା ନିଶ୍ଚୟ କଲେ ଯେ ପାଇ ହିଁ ଏହି ବ୍ୟାଖ୍ୟାନ ଦେବେ । ସେ ଯେତେବେଳେ ଅମ୍ମାଙ୍କର ଏଇ ପ୍ରସ୍ତାବ ବିଷୟରେ ଶୁଣିଲେ ପୁରା ହତଭମ୍ଭ ହୋଇ ପଡିଲେ । ସେ ଭାବିଲେ ରାମାୟଣ ନ ପଢି, ନ ଶିଖି ମୁଁ ବା କିପରି ପ୍ରବଚନ ଦେଇ ପାରିବି ?

ଅମ୍ମା, ପାଇକୁ ଡାକି ପାଠାଗାର ରୁ ରାମାୟଣ ଆଣିବାକୁ କହିଲେ । ସେଥିରୁ ସୁନ୍ଦରକାଣ୍ଡଟି ବାଛି ସେଇଟି ପାଇକୁ ପଢିବାକୁ କହିଲେ । ସେ ଦଶଟି ଧାଡି ପଢିଛନ୍ତି କି ନାହିଁ, ଅମ୍ମା କହିଲେ "ଥାଉ ଠିକ ଅଛି, ତୁମେ ଏଥର ଯାଅ" । ଅମ୍ମାଙ୍କର ବାକ୍ୟ ଉପରେ ପୂର୍ଣ୍ଣ ବିଶ୍ୱାସ ରଖି ପାଇ ତ୍ରିଭେନ୍ଦ୍ରମ ଗଲେ । ସେ ସେଠାରେ ସାତଦିନ ରହି ସାତଦିନ ଧରି ରାମୟଣକୁ ନେଇ ବକ୍ତୃତା ଦେଲେ । ଏହି କାର୍ଯ୍ୟକ୍ରମଟି ଭାରି ସଫଳ ହୋଇଥିଲା । ସମସ୍ତେ ପାଇଙ୍କର ବିଷୟ ବସ୍ତୁ ପ୍ରତି ଅନ୍ତର୍ଦୃଷ୍ଟି ଦେଖି ପ୍ରୀତ ହୋଇଥିଲେ । ସାତଦିନ ପରେ ପାଇ ସମସ୍ତଙ୍କୁ ଖୋଲି ସତ୍ୟ କହିଲେ ଯେ ସେ କେବେହେଲେ ରାମାୟଣ ପଢି ନାହାନ୍ତି ଏବଂ ସବୁ ଅମ୍ମାଙ୍କ ଦୟାରୁ ହିଁ ସମ୍ଭବ ହୋଇ ପାରିଛି । ତାଙ୍କୁ କେହି ବିଶ୍ୱାସ କଲେ ନାହିଁ । ପୃଥିବୀର କୌଣସି ଜିନିଷ ସର୍ବଗୁଣସମ୍ପନ୍ନ ଗୁରୁଙ୍କର ଅଶେଷ ଦୟା ଓ ଆଶୀର୍ବାଦର ସମକକ୍ଷ ହେବା ସମ୍ଭବ ନୁହେଁ । ସେହି ଆଶୀର୍ବାଦ ହିଁ ମଣିଷକୁ ଭଗବାନରେ ପରିଣତ କରି ପାରେ ।



ରାମକୃଷ୍ଣ (ସ୍ୱାମୀ ରାମକୃଷ୍ଣାନନ୍ଦ) କେରଳର ପାଲଘାଟ ସହରରେ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇଥିଲେ । ୧୯୭୮ ମସିହାରେ ସେ ତ୍ରାଭାଙ୍କୁର ର ଷ୍ଟେଟ ବ୍ୟାଙ୍କରେ କାମ କରୁଥିଲାବେଳେ ଜଣେ ବନ୍ଧୁଙ୍କ ପାଖରୁ ଅମ୍ମାଙ୍କ ବିଷୟରେ ଶୁଣିଲେ । ଦିନେ ସନ୍ଧ୍ୟାରେ ସେ ଓ ତାଙ୍କ ବନ୍ଧୁ ଅମ୍ମାଙ୍କୁ ଦେଖିବାକୁ ଆସିଲେ । ଯଦିଓ ରାମକୃଷ୍ଣ ସ୍ୱାମୀ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ବଢିଥିଲେ, ସେ କଲେଜରେ ଖରାପ ପିଲାଙ୍କ

ସାଙ୍ଗରେ ପଡି କୁ ପଥରେ ଗତି କରିବାକୁ ଆରମ୍ଭ କରିଥିଲେ । ସେ ଯେତେବେଳେ ଅମ୍ମାଙ୍କୁ ଦେଖିଲେ, ସେହିକ୍ଷଣି କାନ୍ଦି ପକାଇଲେ । ତାଙ୍କର ଭିତରର କର୍କଶତା ତରଳି, ନରମ ହୋଇ ଆଖିର ଲୁହରେ ସବୁ ଧୋଇ ପବିତ୍ର ହୋଇଗଲା । ତାହାପରେ ସେ ପ୍ରାୟ ସବୁଥର ଅମ୍ମାଙ୍କର ଭାବଦର୍ଶନ ଦେଖିବାକୁ ଆସିଲେ । ସେ ଅମ୍ମାଙ୍କ ପାଖରେ ସାନ ପିଲାଟିପରି କାନ୍ଦି, ତାଙ୍କର ଇଷ୍ଟ ଠାକୁରାଣୀ ମଦୁରାଇର ମୀନାକ୍ଷୀ ଙ୍କର ଦର୍ଶନ ପାଇବା ପାଇଁ ଭିକ୍ଷା କଲେ । ସେ ଅତି ଦୁଃଖରେ ଠାକୁରାଣୀଙ୍କର ଦର୍ଶନ ପାଇଁ କେତେଦିନ ଧରି ଉପବାସ ବି କଲେ । ତାଙ୍କର ଉପବାସ ଦିନ ଜାଣି ମଧ୍ୟ ଅମ୍ମା ତାଙ୍କୁ ଖିରୀ ଖୁଆଇଥିଲେ । ଭାବଦର୍ଶନ ବେଳେ ଅମ୍ମାଙ୍କର କୋଳରେ ରହି କାନ୍ଦି କାନ୍ଦି ପଚାରୁଥିଲେ "ଅମ୍ମା, ତୁମେ ମୋ ପାଖକୁ କାଲି ଆସିବ ? ମତେ ଖାଲି ଟିକେ ତୁମର ପାଉଁଜିର ଶବ୍ଦ ଶୁଣିବାକୁ ଦିଅ" । ଅମ୍ମା ତାଙ୍କର ଇଚ୍ଛା ପୂରଣ କରିଥିଲେ । ଦିନେ ଦିନେ ସେ ପାଉଁଜି ଶବ୍ଦ ଶୁଣି ଅନେଇ ଦେଖିଲା ବେଳକୁ ଅମ୍ମା ଠିଆ ହୋଇଛନ୍ତି । ଆଉ ଅନେକ ସମୟରେ ସେ ଚାରିଆଡେ ସୁନ୍ଦର ସୁଗନ୍ଧ ବାରି ପାରୁଥିଲେ ।

ଜୀବନର ଦୁଇଟି ଉଲେଖଯୋଗ୍ୟ ଘଟଣା ରାମକୃଷ୍ଣଙ୍କୁ ସଂସାର ତ୍ୟାଗ କରି, ବ୍ରହ୍ମଚର୍ଯ୍ୟ ଓ ସାଧନାର ଜୀବନ ପାଇଁ ଅନୁପ୍ରାଣିତ କରିଥିଲା । ପ୍ରଥମଟି ହେଲା ଅମ୍ମାଙ୍କ ପାଖରୁ ମନ୍ତ୍ର ଦୀକ୍ଷା ନେବା ବନ୍ଦ । ସେ ପୂଣ୍ୟମୟ ଦିନରେ ସେ ଅମ୍ମାଙ୍କ ପାଖରୁ ଅନେକ ଶକ୍ତି ବାହାରି ତାଙ୍କ ଦେହରେ ମିଶିଲା ପରି ଅନୁଭବ କଲେ । ତାହା ତାଙ୍କର ଜୀବନର ଲକ୍ଷ୍ୟର ଚିନ୍ତାଧାରା କୁ ସଂପୂର୍ଣ୍ଣ ଭାବରେ ବଦଳେଇ ଦେଲା । ଆଉ ଦ୍ୱିତୀୟ ଘଟଣାଟି ହେଲା ଅମ୍ମା ଦିନେ ଶ୍ରୀରାମକୃଷ୍ଣ ପରମହଂସଙ୍କର ଫଟୋ ରାମକୃଷ୍ଣଙ୍କୁ ଦେଖାଇ କହିଲେ "ତୁମ ଦୁଇଜଣଙ୍କର ନାମ ଏକା, ତଥାପି ତୁମେ ଏପରି ହୋଇଛ !" ଅମ୍ମାଙ୍କର ଏହି କଥା ତାଙ୍କ ହୃଦୟର ନିଭୃତ କୋଣରେ ବଜ୍ରାଘାତ ପରି ଲାଗିଲା ଏବଂ ତାଙ୍କ ପ୍ରକୃତ ସାଧକ ହେବାର ଇଚ୍ଛା ଦୃଢ଼ୀଭୂତ ହୋଇପଡିଲା ।

ଥରେ ଖରାଦିନ ସନ୍ଧ୍ୟାରେ ରାମକୃଷ୍ଣନ୍ ଅମ୍ମାଙ୍କର ଦେବୀଭାବ ଦର୍ଶନ କରିବାକୁ ଆସିଲେ । ମନ୍ଦିର ଭିତରେ ଅମ୍ମା ବସିଥିବା ଜାଗାରେ ଭୀଷଣ ଗରମ ହେଉଥିଲା, ଅମ୍ମା ତାଙ୍କୁ ବିଂଚିବାକୁ କହିଲେ । ସେ ଟିକେ ଦ୍ୱିଧା ବୋଧ କଲେ । କାରଣ ଠିକ ମନ୍ଦିର ବାହାରେ ଦଳେ ଝିଅ ଠିଆ ହୋଇଥିଲେ । ସେ ମନେ ମନେ ଭାବିଲେ "ମୁଁ

ଗୋଟିଏ ଷ୍ଟେଟ ବ୍ୟାଙ୍କର ଅଫିସର ଓ ଯୁବକ, ମୁଁ ଯଦି ଜଣେ ସ୍ତ୍ରୀ ଲୋକଙ୍କୁ ପଙ୍ଖା କରେ, ତେବେ ସେମାନେ ମତେ ଦେଖି ହସି ପାରନ୍ତି" । ଏହାଭାବି ସେ ଅମ୍ମାଙ୍କୁ ପଙ୍ଖା କଲେ ନାହିଁ । କିନ୍ତୁ ଦର୍ଶନ ପରେ ବାହାରକୁ ଆସିଲାବେଳେ କବାଟର କାଠ ଚୌକାଠରେ ଜୋରରେ ମୁଣ୍ଡ ପିଟି ହୋଇଗଲା । ତାଙ୍କର ଅସାବଧାନତା ଦେଖି ଠିଆ ହୋଇଥିବା ଝିଅମାନେ ଆହୁରି ଜୋରରେ ହସିଲେ । ରାମକୃଷ୍ଣ ଲଜ୍ଜାରେ ଲାଲ୍ ପଡିଗଲେ । ତା ପରଦିନ ରାମକୃଷ୍ଣନ୍ ଯେତେବେଳେ ଦର୍ଶନ ପାଇଁ ଗଲେ, ଅମ୍ମା ତାଙ୍କୁ ଡାକି କହିଲେ "କାଲି ମୁଁ ତୁମକୁ ପଙ୍ଖା କରିବାକୁ କହିଥିଲି, କିନ୍ତୁ ତୁମେ ମତେ ପଙ୍ଖା କରି ନଥିଲ, ସେଥିପାଇଁ ମୁଁ ଭାବିଲି ଯେ ତୁମକୁ ସେହି ଡରୁଥିବା ଝିଅ ଦଳକ ସାମନାରେ ହିଁ ହାସ୍ୟାସ୍ପଦ କରାଇଲେ ହିଁ ତୁମର ଶିକ୍ଷା ହେବ" । ତା ପର ଦର୍ଶନ ଠାରୁ ରାମକୃଷ୍ଣନ୍ ନିୟମିତ ଭାବରେ ପଙ୍ଖା କଲେ ।

ଥରେ ରାମକୃଷ୍ଣନ୍ ଆଶ୍ରମ ଠାରୁ ଶହେ କିଲୋମିଟର ଦୂରରେ ଆଉ ଗୋଟିଏ ଶାଖା ଅଫିସକୁ ବଦଳି ହୋଇଗଲେ । ତାଙ୍କର କାମ ଥିଲା ଆଲମାରୀ ଚାବି ରଖି ପ୍ରତିଦିନ ସକାଳ ଦଶଟାରେ କାମରେ ପହଂଚିବା । ରବିବାର ରାତିର ଦର୍ଶନ ପରେ ଆଶ୍ରମ ଛାଡି ରାମକୃଷ୍ଣ ବସ୍ ନେଇ ଫେରିବା ବାଟରେ ତାଙ୍କ ଅଫିସରୁ ପ୍ରାୟ ତେର କିଲୋମିଟର ଦୂର ବସ୍ ଷ୍ଟାଣ୍ଡରେ ବସ ଅଟକିଲା । ଆଉ ଗୋଟିଏ ବସ୍ କଥା ବୁଝି ଜାଣିଲେ ଯେ ଦିନ ଦଶଟା ଆଗରୁ ସେ ଜାଗାକୁ ଯିବାପାଇଁ ଆଉ ବସ ନାହିଁ । ତାପରେ ସେ ଟାକ୍ସି ଯୋଗାଡ କରିବାକୁ ଯାଇ ବିଫଳ ହେଲେ । ଚିନ୍ତିତ ଓ ଦୁଃଖିତ ହୋଇ ସେ ଡାକିଲେ "ଅମ୍ମା !" କିଛି ମୁହୂର୍ତ୍ତ ଭିତରେ ହିଁ ଗୋଟିଏ ଲୋକ ମଟର ସାଇକଲରେ ତାଙ୍କ ଆଗରେ ଠିଆ ହେଲା । ସେ ଜଣେ ସମ୍ପୂର୍ଣ୍ଣ ଅପରିଚିତ ବ୍ୟକ୍ତି ଥିଲେ । ସେ ରାମକୃଷ୍ଣନ୍ କହିଲେ "ମୁଁ ପମ୍ପାକୁଦା ଗ୍ରାମକୁ ଯାଉଛି (ସେହି ଗ୍ରାମର ହିଁ ରାମକୃଷ୍ଣନ୍ କାମ କରନ୍ତି) ଦଶଟା ଆଗରୁ ଆଉ କୌଣସି ବସ ନାହିଁ । ତେଣୁ ତୁମେ ଯଦି ଚାହଁ, ମୁଁ ତୁମକୁ ସେଠାରେ ଛାଡି ଦେବି" । ରାମକୃଷ୍ଣନ୍ କୃତଜ୍ଞତାର ସହ ମଟର ସାଇକଲର ପଛ ସିଟ୍ ଉପର ବସି, ଗ୍ରାମରେ ପହଂଚି ଠିକ୍ ଦଶଟା ବେଳକୁ ବ୍ୟାଙ୍କ ଭିତରକୁ ପଶିଲେ । ରାମକୃଷ୍ଣନ୍‌ଙ୍କର ପ୍ରଶ୍ନର ଉତ୍ତରରେ ଅମ୍ମା କହିଥିଲେ "ହୃଦୟରୁ ସବୁ ମନ ଧ୍ୟାନ ଦେଇ ଯଦି ଥରେ ମାତ୍ର ଡାକ, ତେବେ ଭଗବାନ ନିଶ୍ଚୟ ଶୁଣିବେ" ।

୧୯୮୧ ମସିହାରେ ରାମକୃଷ୍ଣନ୍ ଗୋଟିଏ ଘଟଣାରୁ ଗୁରୁଙ୍କ ଅଜ୍ଞାନୁବର୍ତ୍ତୀତା ବିଷୟରେ ଉପଯୁକ୍ତ ଶିକ୍ଷା ପାଇଥିଲେ । ବହୁତ ଦିନ ଆଶ୍ରମରେ ରହିଲେ କାଳେ ରାମକୃଷ୍ଣନ୍ ସନ୍ୟାସ ଗ୍ରହଣ କରି ନେବେ, ସେଇ ଭୟରେ ତାଙ୍କର ବାପା, ମା ତାଙ୍କୁ ଘର ପାଖରେ ଗୋଟିଏ ଶାଖା ବ୍ୟାଙ୍କ ଅଫିସକୁ ବଦଳି ହୋଇ ଆସିବାକୁ ଚାପ ପକାଇଲେ । ସେମାନଙ୍କର ବାଧ୍ୟବାଧକତାରେ ଶେଷରେ ରାମକୃଷ୍ଣନ୍ ଅମ୍ମାଙ୍କର ଉପଦେଶ ବା ଆଦେଶ ନ ନେଇ ବଦଳି ପାଇଁ ଦରଖାସ୍ତ ପକାଇଲେ । କିଛିଦିନ ପରେ ସେ ନିଜର ଇଚ୍ଛା ପରିବର୍ତ୍ତନ କରି, ପୁଣି ବ୍ୟାଙ୍କର ଉପରସ୍ଥ ଅଫିସରଙ୍କୁ ସେହି ଚିଠିକୁ ଗୁରୁତ୍ୱ ନଦେବା ପାଇଁ ଆଉ ଗୋଟିଏ ଚିଠି ଲେଖିଲେ ।

ଦିନେ ଅମ୍ମା ତାଙ୍କୁ କହିଲେ "ତୁମେ ବ୍ୟାଙ୍କକୁ ପଠେଇଥିବା ଦ୍ୱିତୀୟ ଚିଠିଟି ବିଷୟରେ ବୁଝାବୁଝି କର । ସେ ଚିଠି ବ୍ୟାଙ୍କରେ ପହଂଚି ନାହିଁ" । ରାମକୃଷ୍ଣନ୍ ଉତର ଦେଲେ "ତାହା ଦରକାର ନାହିଁ ଅମ୍ମା ! ସେମାନେ ନିଶ୍ଚୟ ପାଇ ସବୁ ଠିକ୍ କରି ଦେଇଛନ୍ତି" ।'ଅମ୍ମା ପୁଣି ଯୋର ଦେଇ ସେଇ ଦ୍ୱିତୀୟ ଚିଠି ବିଷୟ ବୁଝିବାକୁ କହିଲେ, କିନ୍ତୁ ରାମକୃଷ୍ଣନ୍ ସେହି କଥାକୁ ଏତେ ଜରୁରୀ ବୋଲି ମନେ କରି ନଥିଲେ ।

ଅଳ୍ପଦିନ ପରେ ରାମକୃଷ୍ଣନ୍, ତ୍ରିଭେନ୍ଦ୍ରମ ବଡ ଅଫିସରୁ ଅଫିସର ମାନଙ୍କ ପାଖରୁ ବଦଳିର ଆଦେଶ ପାଇଲେ । ସେ ଶିଘ୍ର ଯାଇ ଦାୟିତ୍ୱରେ ଥିବା ଅଫିସର ମାନଙ୍କ ସହ କଥା ହେଲେ, କିନ୍ତୁ ଖୁବ୍ ଡେରି ହୋଇ ଯାଇଥିଲା । ଅମ୍ମାଙ୍କର କହିବା କଥା ଠିକ୍ ହେଲା, ସେମାନେ ପ୍ରଥମ ବଦଳି ଅନୁରୋଧର ଚିଠିକୁ ଗୁରୁତ୍ୱ ନ ଦେବା ପାଇଁ ଅନୁରୋଧ କରିଥିବା ଦ୍ୱିତୀୟ ଦରଖାସ୍ତକୁ ଜମାରୁ ପାଇ ନଥିଲେ । ସେହି ଦ୍ୱିତୀୟ ଚିଠିଟି ହଜି ଯାଇଥିଲା । ଏପରି ଭାବରେ ରାମକୃଷ୍ଣନ୍ ଗୋଟିଏ ତିକ୍ତ ଶିକ୍ଷା ପାଇଲେ । ଯେ ଗୁରୁଙ୍କର ବାକ୍ୟ ଗୁରୁତ୍ୱପୂର୍ଣ୍ଣ ମନେ ନ ହେଲେ ମଧ୍ୟ କେବେହେଲେ ଅବହେଳା କରା ଯାଇ ନପାରେ ।

ଦିନେ ସମସ୍ତେ କଥା ହେଉଥିବା ବେଳେ ଅମ୍ମା ରାମକୃଷ୍ଣଙ୍କୁ ଅନେଇ ଗମ୍ଭୀର ମୁହଁରେ କହିଲେ "କେତେଜଣ ଅଛନ୍ତି, ଯେଉଁ ମାନେ ବ୍ରହ୍ମଚର୍ଯ୍ୟ ଗ୍ରହଣ କଲା ପରେ ମଧ୍ୟ ଝିଅ ମାନଙ୍କ ଆଡେ ଅନାଉଛନ୍ତି । ରାମକୃଷ୍ଣନ୍ ପଚାରିଲେ "କିଏ ଏପରି କରୁଛି ମା !" ଅମ୍ମା ଉତର ଦେଲେ "ତୁମେ !", ରାମକୃଷ୍ଣନ୍ ପୁରା ଧକ୍କା ଖାଇଲା

ପରି ହୋଇଗଲେ । "କଣ, ମୁଁ? କେବେହେଲେ ଝିଅ ମାନଙ୍କ ଆଡେ ଅନାଏ ନାହିଁ ! ଅମ୍ମା ମତେ ବିନା କାରଣରେ ଗାଳି ଦେଉଛନ୍ତି" ।

ପରମୁହୂର୍ତ୍ତରେ ଅମ୍ମା ସେହି ସ୍ତ୍ରୀ ଲୋକଙ୍କର ନାମ କହିଲେ । ରମକୃଷ୍ଣନ୍ ତାଙ୍କୁ ଭଲ ଭାବରେ ଜାଣିଥିଲେ ଏବଂ ଅମ୍ମା ସବୁକଥା ଖୋଲି କହିଲେ । ତାଙ୍କର ସ୍ୱାମୀଙ୍କ ନାଁ, ପିଲାମାନଙ୍କର ନାଁ ଓ ତାଙ୍କ ଅନ୍ୟାନ୍ୟ ପରିବାରବର୍ଗଙ୍କର ନାଁ ଇତ୍ୟାଦି ଇତ୍ୟାଦି । ରମକୃଷ୍ଣ ପାଟି ଆଁ କରି ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇ ରହିଲେ । ସେ ସ୍ତ୍ରୀ ଲୋକଙ୍କର ବାସସ୍ଥାନ ଓ ସବୁ ବିଷୟରେ ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା, ଅମ୍ମାଙ୍କୁ କିପରି ସେକଥା ଅବଗତ ହେଲା, ପୁଣି ଅମ୍ମାଙ୍କର କଥା ଜାଣିବାର ଉପାୟ ହିଁ ନାହିଁ, ଏହା ଭାବି ଗୋଲକ ଧନ୍ଧାରେ ପଡି ରାମୃଷ୍ଣନ୍ ବାକ୍‌ଶୂନ୍ୟ ହୋଇଗଲେ । ଅମ୍ମା ପୁଣି ପଚାରିଲେ "ରାମକୃଷ୍ଣ, ସତ କହ ! ତୁମେ ସବୁଦିନେ ତାଙ୍କ ଆଡେ ଚାହଁ ନାହିଁ ?"

ରାମକୃଷ୍ଣ ପୁରା ଚୁପ୍ ରହିଲେ । ସେ ସବୁଦିନ ସେଇ ସ୍ତ୍ରୀ ଲୋକଙ୍କ ଆଡେ ଦେଖନ୍ତି, କିନ୍ତୁ କାହିଁକି ? ସେହି ସ୍ତ୍ରୀ ଲୋକର ବ୍ୟବହାର ଓ ଚେହେରା ସହ ଅମ୍ମାଙ୍କର ଚେହେରାର ଅନେକ ସାମଞ୍ଜସ୍ୟ ଅଛି । ତାଙ୍କୁ ଦେଖିଲେ ରାମକୃଷ୍ଣଙ୍କର ମନେ ହେଉଥିଲା ସେ ଯେପରି ଅମ୍ମାଙ୍କୁ ହିଁ ଦେଖୁଛନ୍ତି । ଅମ୍ମା ଯେତେବେଳେ ତାଙ୍କୁ ନିରୁତ୍ତର, ନତମସ୍ତକ ହୋଇ ଠିଆ ହେବାର ଦେଖିଲେ, ଅମ୍ମା ହସି ହସି ଗଡିଗଲେ । କହିବା ବହୁଲ୍ୟ, ରାମକୃଷ୍ଣନ୍ କେବେହେଲେ ସେ ସ୍ତ୍ରୀ ଲୋକ ଆଡେ ଚାହିଁ ଦେଖି ନଥିଲେ । ଏହି ଘଟଣାବଳୀରୁ ସ୍ପଷ୍ଟ ଜଣାଯାଏ ସେ ଅମ୍ମା ତାଙ୍କର ସାଧକ ସନ୍ତାନ ମାନଙ୍କର ବାହ୍ୟ ଚାଲିଚଳଣ ଓ ଅନ୍ତରର ଭାବନା ସବୁ ନିରୀକ୍ଷଣ କରନ୍ତି ଏବଂ ସେହି ଅନୁସାରେ ଶିକ୍ଷା ଉପଦେଶ ଦିଅନ୍ତି ।

ଆଶ୍ରମ ଉପଯୁକ୍ତ କର୍ତ୍ତୃପକ୍ଷଙ୍କ ଦ୍ୱାରା ସମର୍ଥୀତ ହେବା ଆଗରୁ ଅଳ୍ପ କିଛିଲୋକ ସେଠାରେ ରହିବାକୁ ଅନୁମତି ପାଇଥିଲେ । ଏତେ ଗୁଡିଏ ଲୋକଙ୍କର ଦେଖା ଚାହାଁ କରିବା ପିଇବା ପାଣି ବିନା ଦୁଷ୍କର ହୋଇ ପଡିଥିଲା । କେତେକ ଚାକିରୀ ଛାଡି ଚାଲିଆସିଥିବା ବ୍ରହ୍ମଚାରୀ ରାମକୃଷ୍ଣନ୍‌ଙ୍କ ଉପରେ ଖାଦ୍ୟ ଓ ବସ୍ତ୍ର ପାଇଁ ନିର୍ଭର କରୁଥିଲେ । ଯେହେତୁ ସେ କାମ କରୁଥିଲେ, ସେ ନମାଗିଲେ ମଧ୍ୟ ସେମାନଙ୍କର ଦରକାରୀ ଜିନିଷର ଅଭାବ ପରିପୂରଣ କରୁଥିଲେ ।

ରାମକୃଷ୍ଣନ୍‌ଙ୍କର ଅମ୍ମାଙ୍କ ପ୍ରତି ବିଶ୍ୱାସ ବଢ଼ି ଚାଲିଲା ଏବଂ ତାଙ୍କର ମନ ସବୁବେଳେ ଅମ୍ମାଙ୍କର ରୂପ ଓ ନାମରେ ଧ୍ୟାନରତ ହେଲା । ଏହା ଫଳରେ ତାଙ୍କର କାମରେ ଅନେକ ବାଧା ସୃଷ୍ଟି ହୋଇଥିଲା । ବେଳେ ବେଳେ ସେ ପଇସା ଗଣିଲା ବେଳେ ଭୁଲ କରିବା ଆରମ୍ଭ କଲେ ଓ ବ୍ୟାଙ୍କରେ ହିସାବ କିତାବରେ ମଧ୍ୟ ଭୁଲ ବାହାରିଲା । ୧୯୮୨ ରେ ସେ ଆଶ୍ରମରେ ରହିବାକୁ ସ୍ଥିର କରି ଚାଲି ଆସିଲେ ଏବଂ ସେହି ସମୟରେ ସେ କୌଣସି ମତେ ଅଫିସ କାମ ମଧ୍ୟ ଚାଲୁ ରଖିଲେ । ଶେଷରେ ୧୯୮୪ ରେ ସେ ଚାକିରୀରୁ ଇସ୍ତଫା ଦେଇ ଆଶ୍ରମରେ ସବୁଦିନ ପାଇଁ ରହିବାକୁ ଠିକ୍ କଲେ ।



କେରଳର ହରିପଦ ନାମକ ଗ୍ରାମରେ ରମେଶ ରାଓ ଗୋଟିଏ ଧନୀ ବ୍ରାହ୍ମଣ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ଆଧୁନିକ ଯୁବକ ଭାବେ ସେ ସବୁ ରକମର ସାଂସାରିକ ଆନନ୍ଦ ଉପଭୋଗ କରି ସଂଗଦୋଷରୁ କୁପଥରେ ଯାଉଥିଲେ । ଯଦିଓ ନିତିଦିନିଆ ସାଂସାରିକ ଜୀବନ ଯାପନ କରୁଥିଲେ, ମଝିରେ ମଝିରେ ନିକଟସ୍ଥ ଦେବୀ ମନ୍ଦିରକୁ ଯାଇ ସେ ନିଜର ବିଶୃଙ୍ଖଳିତ ଜୀବନ ପାଇଁ ପ୍ରାର୍ଥନା ଓ ଅନୁତାପ ବୋଧ କରୁଥିଲେ । ଯେକୌଣସି ଭଲ ବା ମନ୍ଦ କର୍ମ କରିବା ଆଗରୁ ସେ ମନ୍ଦିରକୁ ଯାଇ ଦେବୀ ଅମ୍ମାଙ୍କ ପାଖରୁ ଆଶୀର୍ବାଦ ଭିକ୍ଷା କରୁଥିଲେ ।

ଥରେ ରମେଶଙ୍କର ଜଣେ ବନ୍ଧୁ ତାଙ୍କୁ ଅମ୍ମାଙ୍କର ଆଶ୍ରମକୁ ଯିବା ପାଇଁ ଡାକିଲା, କିନ୍ତୁ ସେ ନାହିଁ କରିଦେଲେ । ତାଙ୍କର ଯେତେବେଳେ ବିଦେଶକୁ ଚାକିରୀ ପାଇ ଯିବାର ଠିକ ହେଲା, ଅମ୍ମାଙ୍କର ଭବିଷ୍ୟତ ବାଣୀ କହିବାର ଶକ୍ତି ବିଷୟରେ ଶୁଣିଥିବା ଯୋଗୁଁ ଥରେ ଯାଇ ତାଙ୍କୁ ଦର୍ଶନ କରି ନିଜର ଭବିଷ୍ୟତ ବିଷୟରେ ଜାଣିବା ପାଇଁ ଆଗ୍ରହୀ ହେଲେ । ଏହିପରି ୧୯୭୯ ମସିହା ଜୁନ ମାସରେ ସେ କୃଷ୍ଣଭାବ ସମୟରେ ମନ୍ଦିରରେ ପ୍ରବେଶ କଲେ । ସେ କିଛି କହିବା ଆଗରୁ ଅମ୍ମା କହିଲେ "ପୁଅ, ତୁମେ ସମୁଦ୍ର ପାର ହୋଇ ଯିବାକୁ ଚାହୁଁଚ, ତମେ ଯଦି ଚାହଁ ଅମ୍ମା ତାହା ସମ୍ଭବ କରିପାରିବେ, ଚିନ୍ତା କର ନାହିଁ" ।

ପ୍ରଥମ ଦର୍ଶନରେ ହିଁ ଅମ୍ମାଙ୍କର ଐଶ୍ୱରୀକ ଶକ୍ତି ବିଷୟରେ ରମେଶର ପୁରା ବିଶ୍ୱାସ ଆସି ଯାଇଥିଲା ଏବଂ ସେ ଅମ୍ମାଙ୍କ ସହ ପବିତ୍ର ପ୍ରେମର ସଂଯୋଗ ଅନୁଭବ କରିଥିଲେ । ଘରକୁ ଆସି ସେ ଆଉ ବାପାଙ୍କ ଠାରୁ ଉତ୍ତରାଧିକାରୀ ସୂତ୍ରରେ ପ୍ରାପ୍ତ ଟେକ୍ସଟାଇଲ ବ୍ୟବସାୟରେ ନିଜର ମନକୁ ଲଗାଇ ପାରିଲେ ନାହିଁ । ତାଙ୍କ ମନ ଅମ୍ମାଙ୍କ ଚିନ୍ତାରେ ହିଁ ଭରି ରହିଲା । ଦିନେ ଦିନେ ତାଙ୍କର ଅମ୍ମାଙ୍କୁ ଦର୍ଶନ କରିବାର ଇଚ୍ଛା ଏତେ ପ୍ରବଳ ହୋଇ ଉଠେ ଯେ, ସେ ଦୋକାନ ବନ୍ଦକରି ଆଶ୍ରମକୁ ଦଉଡନ୍ତି । ଦିନେ ଅମ୍ମାଙ୍କ ପାଖରୁ ବିଦାୟ ନେଇ ଘରକୁ ଫେରିଲା ବେଳେ ଅମ୍ମା କହିଲେ "ପୁଅ, ତୁମେ କୁଆଡେ ଯାଉଛ ? ତୁମର ଯେ ଏଇଠି ହିଁ ରହିବାର କଥା" ।

ଦିନେ ରାତିରେ ରମେଶର ବିଶ୍ୱ ପ୍ରଳୟର ସ୍ୱପ୍ନ ହୋଇଥିଲା । ଚାରିଆଡେ ନିଆଁ ହୁଳାର ବର୍ଷା ହେଉଥିଲା । ସମୁଦ୍ରର ଲହରି ଗଗନଚୁମ୍ବୀ ହୋଇ ଉଠି ପୃଥିବୀକୁ ବୁଡାଇ ଦେବ ବୋଲି ମନେ ହେଉଥିଲା । ନିଜର ସବୁ ବଳ ଏକାଠି କରି ରମେଶ ଚିତ୍କାର କରି ଉଠିଲେ, 'ଅମ୍ମା !' ସାଙ୍ଗେ ସାଙ୍ଗେ ସମୁଦ୍ରରୁ ଗୋଟିଏ ଉଜ୍ଜ୍ୱଳ ଜ୍ୟୋତି ଉଠି ଚାରିଆଡେ ବ୍ୟାପିବାକୁ ଆରମ୍ଭ କଲା । ସେହି ଉଜ୍ଜ୍ୱଳ ଜ୍ୟୋତିରୁ ଦୁର୍ଗା ଧୀରେ ଧୀରେ ଆବିର୍ଭୁତ ହେଲେ । ସେ ରକ୍ତ ବର୍ଣ୍ଣର ଶାଢୀ ପିନ୍ଧି, ଭୟଙ୍କର ସିଂହ ଉପରେ ବସିଥିଲେ । ଆଠୋଟି ହାତରେ ଗୋଟିଏ ଗୋଟିଏ ବିଭିନ୍ନ ଅସ୍ତ୍ର ଧରିଥିଲେ । ରମେଶ ଦେଖିଲେ ସେହି ଦେବୀଙ୍କର କରୁଣାମୟୀ ମୁହଁ ଅମ୍ମାଙ୍କର ହିଁ ମୁହଁ । ତାହା ଦେଖି ସେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଅମ୍ମା ତାଙ୍କୁ ସାନ୍ତ୍ୱନା ଦେଇ କହିଲେ "ମୁଁ ଏଠାରେ ଅଛି, ତୁମର ଭୟର କାରଣ ନାହିଁ, ତୁମେ ମୋର ପୁଅ, ଚିନ୍ତା କର ନାହିଁ" । ତାପରେ ରମେଶଙ୍କର ଅମ୍ମାଙ୍କ ସହ ଅନେକ ଥର ସ୍ୱପ୍ନ ଦର୍ଶନ ହୋଇଥିଲା ।

ଅମ୍ମାଙ୍କ ସହ ଘନିଷ୍ଠତା ବଢିବା ଫଳରେ ରମେଶର ମନ ଭିତରେ ଭଗବତ ପ୍ରାପ୍ତିର ଇଚ୍ଛା ବଢିବାକୁ ଲାଗିଲା ଓ ସେ ଅମ୍ମାଙ୍କର ଉପସ୍ଥିତିରେ ସର୍ବଦା ରହିବାକୁ ଚାହିଁଲେ । ଦିନେ ଅମ୍ମାଙ୍କ ଆଗରେ ବସିଥିଲା ବେଳେ ତାଙ୍କର ଗୋଟିଏ ଅନୁଭୁତି ଏହି ଇଚ୍ଛାକୁ ଦୃଢୀଭୂତ କରିଥିଲା । ସେଦିନ ଚାରିଟା ବାଜିଥାଏ । ରମେଶ ସବୁଦିନ ପରି ଅମ୍ମା ମନ୍ଦିରରେ ବସିଥିବା ବେଳେ ଦର୍ଶନ କରିବାକୁ ଆସିଥିଲେ । ଅମ୍ମାଙ୍କୁ ପ୍ରଣାମ କରି ତାଙ୍କ ପାଖରେ ବସିଥିଲେ । ଅମ୍ମାଙ୍କ ଉଜ୍ଜ୍ୱଳ ମୁଖ ମଣ୍ଡଳକୁ ଅନେଇ

ରହିଥିବା ବେଳେ ହଠାତ୍ ମନ୍ଦିରର ବାତାବରଣ ବଦଳି ଗଲା, ଆଉସବୁ କିଏ କୁଆଡେ ରହିଲେ ନାହିଁ, କେବଳ ଅମ୍ମାହିଁ ତାଙ୍କ ଆଗରେ ଥିଲେ । ସେ ଦେଖିଲେ ଅମ୍ମା ହିଁ ତାଙ୍କର ନିଜ ମା ଏବଂ ସେ ନିଜେ ଦୁଇବର୍ଷ ଛୁଆ ହୋଇ ଯାଇଛନ୍ତି । ପରମାନନ୍ଦ ଅନୁଭବ କରି ରମେଶ ଦୁନିଆକୁ ଭୁଲଗଲେ । ଏପରି ଅବସ୍ଥାରେ ତାଙ୍କ ମୁଣ୍ଡକୁ ନିଜ କୋଳରେ ଧରି ରଖିଲେ ଓ ତାପରେ ଧୀରେ କରି ତାଙ୍କର ମୁଣ୍ଡକୁ ଉଠାଇ ଧରିଲେ ଓ କେତେକ ଭକ୍ତ ତାଙ୍କୁ ଟେକି ମନ୍ଦିରର ଚଟାଣରେ ଶୁଆଇ ଦେଲେ । ରାତି ନଅଟା ବେଳେ ଅମ୍ମା ପୁଣି ମନ୍ଦିରକୁ ଫେରିଲେ, ତାଙ୍କୁ ଠିକ ସେହି ଅବସ୍ଥାରେ ପଡିଥିବାର ଦେଖିଲେ । କେବଳ ଅମ୍ମାଙ୍କର ଡାକ "ପୁଅ" ଶୁଣି ସେ ସାଧାରଣ ଅବସ୍ଥାକୁ ଫେରିଲେ । ଏହି ଘଟଣା ପରେ ରମେଶଙ୍କର ଜୀବନ ନାଟକ ପରି ପରିବର୍ତ୍ତନ ହୋଇଥିଲା । ତାଙ୍କର ଅମ୍ମାଙ୍କୁ ଦର୍ଶନ କରିବାର ଇଚ୍ଛା ବଢି ଚାଲିଲା । ସେ କୌଣସି ସାଂସାରିକ ଜିନିଷ ପ୍ରତି ଧ୍ୟାନ ଦେଲେ ନାହିଁ । ଦୋକାନକୁ ଯିବା ବନ୍ଦ କରିଦେଲେ । ଅମ୍ମାଙ୍କୁ ଆହୁରି ବେଶୀ ଥର ଦର୍ଶନ କରିବାକୁ ଗଲେ । ସେ ଅମ୍ମାଙ୍କର ଆଶ୍ରମରେ ଅନେକ ସପ୍ତାହ ଧରି ରହିବାକୁ ଆରମ୍ଭ କଲେ । ରମେଶଙ୍କର ଏହି ହଠାତ୍ ପରିବର୍ତ୍ତନ ତାଙ୍କର ପରିବାର ବର୍ଗଙ୍କ ମଧ୍ୟରେ ଆଲୋଡନ ସୃଷ୍ଟି କଲା । ତାଙ୍କର ବାପା, ମା, ବନ୍ଧୁ ବାନ୍ଧବ ତାଙ୍କୁ ବିବାହ କରାଇ, ସାଂସାରିକ ଜୀବନ ଭିତରକୁ ଟାଣି ଆଣିବାକୁ ବହୁତ ଚେଷ୍ଟା କଲେ, କିନ୍ତୁ ସେମାନଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଥିଲା । ଦିନେ ଅମ୍ମା ରମେଶଙ୍କୁ କହିଲେ "ପୁଅ, ତୁମର ବାପା, ମା ତୁମକୁ ଦେଖିବାକୁ ଚାହୁଁଛନ୍ତି । ଘରକୁ ଯାଇ ସେମାନଙ୍କର ଅନୁମତି ନେଇ ଏଠାରେ ରହିବାକୁ ଆସ" । ରମେଶ କହିଲେ "ଅମ୍ମା, ତୁମେ କଣ ମତେ ପରିତ୍ୟାଗ କରୁଛ ? ସେମାନେ ମତେ ଭୀଷଣ ହଇରାଣ କରିବେ" । ଅମ୍ମା ଉତର ଦେଲେ "ସାହସୀ ମନୁଷ୍ୟ ସମସ୍ତ ଅସୁବିଧାକୁ ଅତିକ୍ରମ କରିପାରିବ" ।

ଅମ୍ମା ରାଓଙ୍କୁ ଆଉଜଣେ ଆଶ୍ରମ ଅଧିବାସୀଙ୍କ ସହ ଘରକୁ ପଠାଇ ଦେଲେ । ପରିବାରର ଲୋକେ ରମେଶଙ୍କୁ ଜୋର ଜବରଦସ୍ତ କରି ଘରେ ରଖିବାକୁ ଚେଷ୍ଟା କଲେ । ସେମାନେ ଭାବିଲେ ଅମ୍ମା କିଛି ଗୋଟିଏ ଯାଦୁକରୀ ଶକ୍ତି ପ୍ରୟୋଗ କରି ତାଙ୍କୁ ପ୍ରଭାବିତ କରିଛନ୍ତି । ବାପା ମା ରମେଶଙ୍କୁ ସାଂସାରିକ ଜୀବନକୁ ଫେରାଇ

ଆଣିବା ପାଇଁ ବିଶେଷ ପୂଜା କ୍ରିୟା ପଦ୍ଧତି ଅନୁସରଣ କରିଥିଲେ । ଜଣେ ପଣ୍ଡିତ ରମେଶ ଆଶ୍ରମ ଛାଡି ସଂସାରୀ ହେବାପାଇଁ ଗୋଟିଏ ବିଶେଷ ମନ୍ତ୍ର ପୂଜା କରି ଘିଅ ତିଆରି କରିଥିଲେ ଓ ରମେଶଙ୍କର ବାପା ମା ତାଙ୍କୁ ଏହି ଘିଅ ଖାଇବା ପାଇଁ ବାଧ୍ୟ କରିଥିଲେ । ରମେଶ ଅମ୍ମାଙ୍କୁ ଏ ବିଷୟରେ ଉପଦେଶ ମାଗିଥିଲେ । ଅମ୍ମା ଉତ୍ତର ଦେଲେ "ପୁଅ, ଖାଇଦିଅ, ଯଦି ତା ଭିତରେ କିଛି ଖରାପ ହେବାର ଥାଏ ତେବେ ହେଉ । ତୁମର ଆଧ୍ୟାତ୍ମିକ ଆଗ୍ରହ ଯୋଗୁ ହିଁ ତୁମେ ମୋ ପାଖକୁ ଆସିଛ, ତେଣୁ ଘିଅ ଖାଇଲେ ବି କିଛି ହେବ ନାହିଁ" ।

ଅମ୍ମାଙ୍କର କଥା ଶୁଣି ରମେଶ ଘିଅ ଖାଇଲେ, କିନ୍ତୁ କିଛି କ୍ଷତି ହେଲା ନାହିଁ । ତାଙ୍କର ଐଶ୍ୱରୀକ ଜୀବନ ଯାପନର ଇଚ୍ଛା ଦୁର୍ବଳ ହେଲା ନାହିଁ । ବର୍ତ୍ତମାନ ପରିବାରବର୍ଗ ତାଙ୍କର ବ୍ୟବହାର ବଦଳାଇ ଆହୁରି କର୍କଶ ଓ କଠୋର ହେବାକୁ ଲାଗିଲେ । ତାଙ୍କର ପୁଅର ମାନସିକ ପରିବର୍ତ୍ତନ ଓ ହାବଭାବକୁ ପସନ୍ଦ କରୁନଥିବା କିଛି ସାଙ୍ଗଙ୍କ ସହ ତାଙ୍କୁ ଜବରଦସ୍ତି ଚିକିତ୍ସକଙ୍କ ପାଖକୁ ନିଆଗଲା ।

ରମେଶ ଡାକ୍ତରଙ୍କୁ କହିଲେ "ମୁଁ ପାଗଳ ନୁହଁ । ମୁଁ ମୋର ଗୁରୁଙ୍କର ଆଦେଶକୁ ହିଁ ନିଷ୍ଠା ସହ ଗ୍ରହଣ କରିବି । ଆପଣ ହିଁ ପାଗଳ ଏ ଦୁନିଆରେ, ସେଥିପାଇଁ ଆପଣ ନିଜର ପାଗଳାମୀ ଅନ୍ୟମାନଙ୍କ ଉପରେ ବାଧ୍ୟ କରି ପକାଇବାକୁ ଚାହୁଁଛନ୍ତି ।" ବନ୍ଧୁବାନ୍ଧବ ଓ ପରିବାରବର୍ଗଙ୍କର ବାଧ୍ୟ ବାଧ୍ୟକତାରେ ସେ ରାଓଙ୍କୁ ଦଶଦିନ ଯାଏ ଚିକିତ୍ସା କଲେ । ସେମାନଙ୍କର ପ୍ରକୃତ ଲକ୍ଷ୍ୟ ଥିଲା ତାଙ୍କର ପୁଅର ମନକୁ ସାଂସାରିକ ମାୟା ଆଡେ ଟାଣି ଆଣିବାକୁ । ମନସ୍ତାତ୍ତ୍ୱିକ ଚିକିତ୍ସା ପରେ ସେମାନେ ତାଙ୍କୁ ଭିଲାଇରେ ଥିବା ଜଣେ ଆତ୍ମୀୟଙ୍କ ଘରକୁ ପଠାଇ ଦେଲେ । ସେମାନେ ଭାବୁଥିଲେ ଯେ ବାତାବରଣ ବଦଳିଗଲେ ହୁଏତ ତାଙ୍କର ପୁରୁଣା ଜୀବନ ଧାରଣ ରାସ୍ତାକୁ ସେ ବଳେ ଫେରି ଆସିବେ । ତା ସଙ୍ଗେ ସେମାନେ ରମେଶଙ୍କ ପାଇଁ ଜଣେ ଉପଯୁକ୍ତ ପାତ୍ରୀ ଖୋଜିବାକୁ ଲାଗିଲେ ।

ମାନସିକ ଦ୍ୱନ୍ଦରେ ପଡି ରମେଶ ଅମ୍ମାଙ୍କୁ ଚିଠି ଦେଲେ "ମା, ବର୍ତ୍ତମାନ ଯାଏ ମୁଁ ସେମାନଙ୍କର କ୍ଷଣିକ ମାୟାକୁ ସ୍ଥାନ ଦେଇ ନାହିଁ । ବର୍ତ୍ତମାନ, ଯଦି ଅମ୍ମା ମୋତେ ରକ୍ଷା ନକରନ୍ତି ତେବେ ମୁଁ ଅମ୍ମାଙ୍କ ସହ ସେପାରିରେ ମିଶିବି, ମୁଁ ଆତ୍ମହତ୍ୟା କରିବି" ।

ଭିଲାଇରେ ମାସେ ରହିଲାପରେ, ରାଓଙ୍କୁ ଘରକୁ ଅଣା ହେଲା । ତାଙ୍କର ପରିବାରବର୍ଗ ନିଶ୍ଚିତ ଥିଲେ ଯେ ବର୍ତ୍ତମାନ ସେ ସନ୍ୟାସ ନେବାର ବିଚାର ଛାଡି ଦେଇଛନ୍ତି । ସେମାନେ ତାଙ୍କୁ ସେଇ ଲୁଗା ବ୍ୟବସାୟରେ ମନ ଦେବାକୁ କହିଲେ । ଦିନେ ସମସ୍ତଙ୍କର ଅଜାଣାତରେ ସେ ଅମ୍ମାଙ୍କୁ ଦର୍ଶନ କରିବାକୁ ଗଲେ ଏବଂ ଅମ୍ମାଙ୍କୁ କହିଲେ "ଅମ୍ମା, ତୁମେ ଯଦି ମତେ ପରିତ୍ୟାଗ କର ତେବେ ମୁଁ ମରିଯିବି" । ଅମ୍ମାଙ୍କର ଉତ୍ତରକୁ ଅପେକ୍ଷା ନ କରି ରମେଶ ଆଶ୍ରମରେ ରହିବାକୁ ଆରମ୍ଭ କଲେ । ଆଶ୍ରମରେ ମାତ୍ର ତିନିଦିନ ରହିଲା ପରେ ଅମ୍ମା ତାଙ୍କୁ ଚେତାବନୀ ଶୁଣାଇଥିଲେ ଯେ ଆତ୍ମୀୟ ସ୍ୱଜନ ତାଙ୍କର ସନ୍ୟାସ ପଥରେ ବାଧା ବିଘ୍ନ ଘଟାଇବେ । ଏପରିକି ସେ ତାଙ୍କୁ ଫେରି ଯାଇ ଘର ଲୋକଙ୍କର ଅନୁମତି ନେଲା ପରେ ସନ୍ୟାସ ଗ୍ରହଣ କରିବା ପାଇଁ ଉପଦେଶ ଦେଲେ । ରାଓ କିଛି ନଶୁଣି କହିଲେ "ଯଦି ମୁଁ ଘରକୁ ଫେରେ ତେବେ ସେମାନେ ମତେ ମୋର ଐଶ୍ୱରୀକ ସାଧନା କରିବା ପାଇଁ ଅନୁମତି ଦେବେ ନାହିଁ" ।

ଏତେବେଳକୁ ରାଓଙ୍କର ବାପା ଅମ୍ମାଙ୍କ ବିରୁଦ୍ଧରେ ପୋଲିସ କେସ ଦାଖଲ କରି ଦେଇଥିଲେ । ସେ ପୋଲିସକୁ ହସ୍ତକ୍ଷେପ କରିବାକୁ ଅନୁରୋଧ କରିଥିଲେ କାରଣ ସେ ଭାବିଥିଲେ ଯେ ତାଙ୍କ ପୁଅକୁ ଜୋର କରି ଅମ୍ମାଙ୍କ ପାଖରେ ରଖା ହୋଇଛି । ରାଓଙ୍କର ବାପା ଓ କିଛି ବନ୍ଧୁ ବାନ୍ଧବ ଭ୍ୟାନ ଭର୍ତ୍ତି ପୋଲିସ ନେଇ ଆସି ଆଶ୍ରମରେ ପହଂଚିଲେ । ରାଓ ନିର୍ଭିକତାର ସହ ପୋଲିସ ଅଫିସରଙ୍କୁ କହିଲେ ମୋ ନିଜର ରହିବା ସ୍ଥାନ ଏବଂ ମୋ ଜୀବନ ଯାପନର ସିଦ୍ଧାନ୍ତ କରିବା ଭଳି ମୋ ବୟସ ହୋଇସାରିଛି । ମୋର ଯେଉଁଠି ଇଚ୍ଛା ମୁଁ ସେଠାରେ ରହି ପାରିବି । ତାଙ୍କର କୌଣସି କଥାକୁ ଗୁରୁତ୍ୱ ନ ଦେଇ ପୋଲିସର ସାହାଯ୍ୟରେ ତାଙ୍କ ଆତ୍ମୀୟମାନେ ତ୍ରିଭେନ୍ଦ୍ରମର ଗୋଟିଏ ମାନସିକ ହସପିଟାଲରେ ତାଙ୍କୁ ଭର୍ତ୍ତି କରିବାକୁ ସ୍ଥିର କଲେ । ଫେରିଲା ବାଟରେ ସେମାନେ କ୍ୱିଲନରେ ମଧ୍ୟାହ୍ନ ଭୋଜନ ପାଇଁ ଅଟକିଲେ । ରାଓ ଖାଇବାକୁ ମନା କରି ଗାଡିରେ ବସି ରହିଲେ । ହଠାତ୍ ତାଙ୍କ ଭିତରୁ ଯେପରି କିଏ କହି ଉଠିଲା "ତୁ ଯଦି ଏଇନେ ଖସି ଯାଇ ପାରୁ, ତେବେ ବଂଚିଯିବୁ ନଚେତ୍ ତୁ ପୁରା ଧ୍ୱଂସ ହୋଇଯିବୁ ।"

ଠିକ୍ ସେଇ ମୁହୂର୍ତ୍ତରେ ଗୋଟିଏ ଅଟୋରିକ୍ସା ତାଙ୍କ ଆଗରେ ଆସି ଠିଆ ହେଲା, ମୁହୂର୍ତ୍ତେ ମାତ୍ର ନଭାବି ସେ ତା ଭିତରକୁ ଡେଇଁପଡି, ଡ୍ରାଇଭରକୁ ସ୍ଥାନର ନାଁ ବତାଇ ଶିଘ୍ର ପଳାଇବାକୁ କହିଲେ । ତାଙ୍କର ପକେଟରେ ଗୋଟିଏ ପଇସା ମଧ୍ୟ ନଥିଲା । ସେହି ସମୟରେ ଜଣେ ଆଶ୍ରମର ଅଧିବାସୀ କ୍ୱିଲନ୍‌ରେ ରହି ଦର୍ଶନ ଶାସ୍ତ୍ରରେ ପଢୁଥିଲେ । ରାଓ ତାଙ୍କୁ ସବୁ କଥା ଜଣାଇଲେ । ସେଦିନ ରାତିରେ କିଛି ଭକ୍ତଙ୍କ ସାହାଯ୍ୟରେ ସେ କେରଳ ଛାଡି ଚାଲିଯାଇ ବମ୍ବେର ଚିନ୍ମୟ ମିଶନରେ ରହିଲେ । ଆତ୍ମୀୟ ମାନେ ତାର ଅଭାସ ପାଇ ବମ୍ବେରେ ପୁଣି ତାଙ୍କୁ ଗିରଫ କରିବାକୁ ଚେଷ୍ଟା କଲେ । ନିଜର ଜୀବନ ରକ୍ଷା ଲାଗି ରାଓ ପୁଣି ହିମାଳୟକୁ ଚାଲିଗଲେ । ତାଙ୍କ ପାଖରେ ଗାଡି ଭଡା ପଇସା, ଖାଦ୍ୟ ଓ ଥଣ୍ଡାରୁ ବଂଚାଇବା ପାଇଁ ଗରମ ଲୁଗା କିଛି ନଥିଲା । କୌଣସି ମତେ ସେ ହିମାଳୟରେ ପହଂଚିଲେ ଏବଂ ଗ୍ରାମରୁ ଗ୍ରାମ ବୁଲିବାକୁ ଲାଗିଲେ । ଯୋଗୀ ପରି ବୁଲି ବୁଲି ତାଙ୍କର ଲୁଗାପଟା ଛିଣ୍ଡି ଟୁକୁରା ଟୁକୁରା ହୋଇ ଯାଇଥିଲା । ସେ ଭିକ ମାଗି ଖାଇ ଗଛମୂଳେ ବା ଗୁମ୍ଫା ଭିତରେ ବସି ଧ୍ୟାନ କରୁଥିଲେ । ଦିନ ପରେ ଦିନ, ମାସ ପରେ ମାସ ବିତିଗଲା । ଶେଷରେ ଅମ୍ମାଙ୍କ ପାଖରୁ ଚିଠି ଆସି ପହଂଚିଲା । ସେ ଖାଲି ଲେଖିଥିଲେ "ପୁଅ, ଫେରି ଆସ, ଆଉ କୌଣସି ଅସୁବିଧା ନାହିଁ" ।

ରାଓ ଅମ୍ମାଙ୍କର ଆଶ୍ରମକୁ ଫେରିଲେ । ଅମ୍ମା ତାଙ୍କୁ ତାପରେ ତାଙ୍କ ଅନୁତପ୍ତ ବାପା ମାଙ୍କୁ ଦେଖା କରିବାକୁ ପଠାଇଲେ । ସେମାନେ ଟିକିଏ କୋମଳ ହୋଇ ଯାଇଥିଲେ ଏବଂ ତାଙ୍କର ପୁଅକୁ ଫେରି ଆସିବାର ଦେଖି ଖୁସୀ ହେଲେ । ତଥାପି ସେମାନେ ତାକୁ ସଂସାରର ଲୋଭ ଦେଖାଇବାକୁ ଚେଷ୍ଟା କଲେ । ସେମାନେ ଯେତେବେଳେ ଦେଖିଲେ ଯେ ତାଙ୍କର କଠୋର ବିରୋଧୀ ବ୍ୟବହାରରେ ତାଙ୍କ ମନ ପରିବର୍ତ୍ତନ ହେଉ ନାହିଁ, ସେମାନେ ସ୍ନେହ ସହ ତାଙ୍କୁ ବଦଳାଇବାକୁ ଚେଷ୍ଟା କଲେ । କିନ୍ତୁ ତାଙ୍କର ସବୁ ଚେଷ୍ଟା ରାଓଙ୍କର ଗଭୀର ବୈରାଗ୍ୟର ନିଆଁରେ ଜଳି ଧୂଆଁ ହୋଇଗଲା । ୧୯୮୨ ମସିହା ଅଗଷ୍ଟ ୨୭ ତାରିଖରେ, ରାଓ ଆଶ୍ରମରେ ସବୁଦିନ ପାଇଁ ଯୋଗ ଦେଲେ ଓ ଶାନ୍ତିରେ ନିଜର ସାଧନା କରିବାକୁ ଲାଗିଲେ ।



ସୁବୀର (ଶକ୍ତି ପ୍ରସାଦ), ଅମ୍ମାଙ୍କର ଦୟା ଓ ଆଶୀର୍ବାଦ ଦ୍ୱାରା ଯେତେ ବିରୋଧର ସମ୍ମୁଖୀନ ହେଲେ ମଧ୍ୟ କିପରି ସଂସାର ତ୍ୟାଗ ରେ ସଫଳତା ଲାଭ କରାଯାଇପାରେ ତା ବର୍ଣ୍ଣନା କରିଛନ୍ତି ।

"୧୯୮୭ ମସିହାରେ ଶେଷ ଭାଗ ଆଡକୁ ନେତ୍ୟାମ୍ ତ୍ରିଭେନ୍ଦ୍ରମର ରାମକୃଷ୍ଣ ମଠରେ ରହୁଥିବା ସ୍ୱାମୀ ସ୍ୱର୍ଗତ ବିମଳାନନ୍ଦ ମତେ ଆମ୍ମାଙ୍କୁ ଦର୍ଶନ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କ ସହ ଦର୍ଶନର ପ୍ରଥମ ବର୍ଷ ସେ ମତେ ତାଙ୍କର ସଦଗୁରୁ ଶକ୍ତିକୁ ଅନୁଭବ କରିବା ପାଇଁ ଅନେକ ସୁଯୋଗ ଦେଇଥିଲେ । ମତେ ଗଭୀର ପ୍ରେମ ଓ ସମର୍ପଣ ଶିଖାଇବା ଲାଗି ଅନେକ ଐଶ୍ୱରୀକ ଅନୁଭୂତିରେ ଆଶୀର୍ବାଦ କରିଥିଲେ । ଦିନେ ମୁଁ ତାଙ୍କ ପାଖରୁ ଜ୍ଞାନଲାଭ କରିବା ପାଇଁ ଆଶ୍ରମରେ ଅଧିବାସୀ ହେବା ପାଇଁ ଇଚ୍ଛା ପ୍ରକାଶ କରିଥିଲି । ତାହା କରିବାକୁ ହେଲେ ମୋତେ ତ୍ରିଭେନ୍ଦ୍ରମର ଇଲେକ୍ଟ୍ରୋନିକ୍ ରିସର୍ଚ୍ଚ ଓ ଡେଭେଲପମେଂଟ ସେଂଟର, ପ୍ରୋଜେକ୍ଟ ଇଞ୍ଜିନିୟର ପଦବୀରୁ ଇସ୍ତଫା ଦେବାକୁ ପଡିବ । ଅମ୍ମା ସେଥିପାଇଁ ରାଜି ହେଲେ ଏବଂ ମୋତେ ଯେ ମୋର ମୁସଲମାନ ଗୋଷ୍ଠୀର ଆତ୍ମୀୟମାନଙ୍କ ଠାରୁ କଠିନ ପ୍ରତିକ୍ରିୟାର ସମ୍ମୁଖୀନ ହେବାକୁ ପଡିବ, ସେ ବିଷୟରେ ସାବଧାନ କରାଇ ଦେଲେ ।

"୧୯୮୫ ମେ ମାସ ୪ ତାରିଖରେ ମୁଁ ଆଶ୍ରମରେ ଯୋଗ ଦେଲି । ଅନେକ ବାଧାବିଘ୍ନର ସମ୍ମୁଖୀନ ହୋଇଥିଲି କିନ୍ତୁ ଅମ୍ମାଙ୍କର ଉପଦେଶ ଓ ଦୟା ଫଳରେ ସେ ଗୁଡିକ ପାରି ହୋଇଗଲି । ମେ ମାସ ୧୧ ତାରିଖରେ ମୋର ବାପା ଓ ତାଙ୍କର ବନ୍ଧୁମାନେ ଆଶ୍ରମରେ ପହଂଚି ମୋ ମା ଙ୍କର ଦେହ ଖରାପ ଯୋଗୁ ଘରକୁ ଯିବାକୁ ବାଧ୍ୟ କଲେ । ମୁଁ ସେମାନଙ୍କ ସହ ଆଶ୍ରମ ଛାଡି ଗଲି । ମୋ ବାପା ଓ ଅନ୍ୟମାନେ ଧରି ନେଇଥିଲେ ଯେ ନିଶ୍ଚିତ ରୂପେ ମୋ ମୁଣ୍ଡ ଖରାପ ଏବଂ ମାନସିକ ଚିକିତ୍ସାରେ ହିଁ ମୁଁ ଭଲ ହେବାର ସମ୍ଭାବନା ଅଛି । ମୁଁ ନିରୁପାୟ ହୋଇ ସେମାନଙ୍କର ସହ ଅନେକ ମନସ୍ତତ୍ତ୍ୱ ବିଶାରଦ ମାନଙ୍କ ପାଖକୁ ଗଲି । ଦୁର୍ଭାଗ୍ୟ ବଶତଃ ସେମାନେ ପ୍ରାଚୀନ ଆଶ୍ରମ ଜୀବନର ସଂସ୍କାର, ହୃଦୟ କନ୍ଦରରେ ଥିବା ଅନନ୍ତ ଆନନ୍ଦକୁ କେବେହେଲେ ଅନୁସନ୍ଧାନ କରି ଅନୁଭବ କରି ନାହାନ୍ତି, ତେଣୁ ସେମାନେ ସେକଥା ବୁଝି ପାରିଲେ ନାହିଁ ।

"ଷୋହଳ ତାରିଖ ଦିନ ମୁଁ ସେମାନଙ୍କର ହେଫାଜତରୁ ଖସି ଯାଇ ତ୍ରିଭେନ୍ଦ୍ରମର ଗୋଟିଏ ଆଶ୍ରମରେ ପନ୍ଦର ଦିନ କଟାଇଲି । ସେଠି ଲୋକଙ୍କର ଅମ୍ମାଙ୍କ ପ୍ରତି ଗଭୀର ଭକ୍ତି ଓ ଶ୍ରଦ୍ଧା ଥିଲା । ମୋର ବାପା ମା ଅମ୍ମାଙ୍କୁ ଆଶ୍ରମକୁ ଆସି ସାକ୍ଷାତ କରି କହିଲେ ଯେ ସେମାନେ ମୋତେ ଆଉ ବ୍ୟସ୍ତ କରିବେ ନାହିଁ । ମୁଁ ବଲ୍ଲିକାଓ୍ଵ କୁ ଫେରି ଆସିଲି ଓ ଅମ୍ମା ମତେ ଗୋପନରେ କହିଲେ ଯେ ସେମାନଙ୍କର ପ୍ରତିଶ୍ରୁତିକୁ ବିଶ୍ୱାସ କରି ହେଉ ନାହିଁ । ମୋ ବାପା ପୁଣି ଆମ ଆଶ୍ରମକୁ ଜୁନ୍ ୫ ତାରିଖରେ ଆସି, ମୋ ମାଙ୍କର ଦେହ ବହୁତ ଖରାପ, ସେ ହସପିଟାଲରେ ଅଛନ୍ତି କହି ତାଙ୍କ ସହ ଯିବା ପାଇଁ କହିଲେ । ମୁଁ ଅମ୍ମାଙ୍କୁ କହିଲାପରେ ସେ ମନ୍ତବ୍ୟ ଦେଲେ "ସେମାନେ ତୁମକୁ ଗୋଟିଏ ନିଭୃତ ଜାଗାକୁ ମାନସିକ ଚିକିତ୍ସା ପାଇଁ ନେଇଯିବାକୁ ଯୋଜନା କରିଛନ୍ତି" । ଯେହେତୁ ବାପା ମତେ ଛାଡି ଘରକୁ ଯିବାକୁ ଚାହୁଁ ନଥାନ୍ତି, ମୁଁ ଅମ୍ମାଙ୍କୁ ଆଶ୍ରମ ଛାଡି ଯିବା ପାଇଁ ଅନୁମତି ମାଗିଲି । ଆଶ୍ରମରେ କୌଣସି ଗଣ୍ଡଗୋଳ ହେଉ ବୋଲି ମୁଁ ଚାହୁଁ ନଥିଲି । ଆସିଲାବେଳେ ମୁଁ ଯେତେବେଳେ ତାଙ୍କ ପାଦତଳେ ପ୍ରଣାମ କଲି, ଅମ୍ମା ମୋ କାନରେ କହିଲେ "ତୁମେ ନିରାପଦରେ ରହିବ, ମୁଁ ତୁମ ପାଖେ ପାଖେ ଅଛି ।" ବାହାର ସଡକରେ ଗାଡି ମୋ ପାଇଁ ଅପେକ୍ଷା କରି ଠିଆ ହୋଇଥିଲା, ଓ ତା ଭିତରେ ଛଅ ଜଣ ଲୋକ ବସିଥିଲେ । ସାଙ୍ଗେ ସାଙ୍ଗେ ମୋତେ କହିଥିବା ଅନୁସାରେ ଗାଡି ଏଡାପାଲ ଆଡେ ନଯାଇ ବାଙ୍ଗାଲୋର ଆଡେ ଯିବାକୁ ଲାଗିଲା । ଆମେ ସେଦିନ ରାତି ମେଟୁରରେ ଗୋଟିଏ ଟୁରିଷ୍ଟ ବଙ୍ଗଳାରେ କଟାଇଲୁ । ମୋର ଚାରିପଟେ ସମସ୍ତେ ଜଗିଥିଲେ, ଯେପରି ଆଗଥର ପରି ଖସି ଯାଇ ନ ପାରେ । ମୁଁ ସେମାନଙ୍କ ପାଖରୁ ଗୋପନରେ କିଛି କାଗଜ ପତ୍ରର ସନ୍ଧାନ ପାଇଥିଲି, ସେଥିରେ ବ୍ରେନ୍ ଓ୍ଵାସିଙ୍ଗ, ଇଲେକ୍ଟ୍ରିକ୍ ଚିକିତ୍ସା ଇତ୍ୟାଦି ବିଷୟରେ ଲେଖାଥିଲା । ମୁଁ ସେ କାଗଜ ଗୁଡିକ ସାବଧାନରେ କେରଳ ହାଇକୋର୍ଟରେ ସାକ୍ଷୀ ପ୍ରମାଣ ହିସାବରେ ଲୁଚାଇ ରଖିଲି ।

"ଆମେ ବାଙ୍ଗାଲୋରର ସୁବୈୟ ସର୍କଲ ପାଖରେ ଗୋଟିଏ ବଖରା ନେଇ ରହିଲୁ, ମୁଁ ପଳାଇବାର କୌଣସି ପ୍ରୟାସ କଲି ନାହିଁ । ବାପା ଓ ଆଉ ଦୁଇଜଣ ହୋଟେଲ ଛାଡି ମୋର ହସପିଟାଲ ରହିବା ପାଇଁ ବନ୍ଦୋବସ୍ତ କରିବାକୁ ଗଲେ । ପଳାଇବାର କୌଣସି ସୁଯୋଗ ନ ଦେଖି ମୁଁ ବସି ଅମ୍ମାଙ୍କୁ କିଛି ସମୟ ପାଇଁ ଧ୍ୟାନ କଲି ଓ ଅମ୍ମାଙ୍କ ପାଖରୁ ଉତ୍ତର ପ୍ରାର୍ଥନା କରି ଅପେକ୍ଷା କରି ରହିଲି । ସାଙ୍ଗେ ସାଙ୍ଗେ

ମୋ ମନ ଭିତରେ ପଳାଇବାର ଉପାୟ ଆସି ଖଞ୍ଜି ହୋଇଗଲା ।

"ମୁଁ ବଖରା ବାହାରେ ଥିବା ଜଗୁଆଳୀ ମାନଙ୍କୁ ବାରଣ୍ଡାକୁ ଯାଇ ଗୋଟିଏ ପୁରୁଣା ବନ୍ଧୁଙ୍କୁ ଫୋନ୍ କରିବା ପାଇଁ ଅନୁମତି ମାଗିଲି । କାକୁତି ମିନତି ବି କଲି । ଶେଷରେ ସେମାନଙ୍କୁ ବଡ ପାଟିରେ ଧମକାଇ କହିଲି । ସେମାନେ ମେସିନ ପରି ଆସି ତାଲା ଖୋଲି ଦେଲେ । ବାହାରକୁ ଆସିଲା ପରେ ମୁଁ ଡେଇଁ ପଡି ଜୋରରେ କବାଟ କୁ ପେଲି ଦେଇ ସେମାନଙ୍କୁ ସବୁ ଭିତରେ ରଖି କବାଟ ବାହାରେ ତାଲା ଦେଇ ଦେଲି । ମୁଁ ମୁଖ୍ୟ ରାସ୍ତାକୁ ଗାଡିଟିଏ ଧରିବା ପାଇଁ ଦଉଡିଲି । ପାଖ ଦେଇ ଗୋଟିଏ ଅଟୋରିକ୍ସା ଗରାଖ ନେଇ ଯାଉଥିଲା । ମୋ ଆଗରେ ପଚାଶ ଗଜ ଗଲାପରେ ହଠାତ ରହିଗଲା । ତା ଡ୍ରାଇଭର ଗାଡିକୁ ଆଉଥରେ ଷ୍ଟାର୍ଟ କରିବାକୁ ଚେଷ୍ଟା କରୁଥିଲା । ଅମ୍ମାଙ୍କୁ ଧନ୍ୟବାଦ ଦେଇ ମୁଁ ଦଉଡି ଯାଇ ସେହି ଅଟୋ ଭିତରେ ବସି ପଡିଲି । ସାଙ୍ଗେ ସାଙ୍ଗେ ଗାଡି ଷ୍ଟାର୍ଟ ହୋଇ ଚାଲିବାକୁ ଆରମ୍ଭ କଲା । ମୁଁ ଗାଡିର ପଛ ଝରକାରୁ ମୋର ଜଗୁଆଳୀ ମାନେ ମୋତେ ପାଗଳଙ୍କ ପରି ଖୋଜୁଥିବାର ଦେଖିଲି । ମ୍ୟାଜେଷ୍ଟିକ ସର୍କଲରେ ଜଣେ ଟ୍ରାଭେଲ୍ ଏଜେଂଟ୍ (ଆଶ୍ରମ ଠାରୁ ଆଠ ଘଂଟା ଉତ୍ତରରେ) ଟୁରିଷ୍ଟ୍ ବସ୍‌ରେ ମୋର କାଲିକଟ ଯିବା ପାଇଁ ସେହି ଦିନ ରାତିରେ ବନ୍ଦୋବସ୍ତ କରିଦେଲେ । ମୁଁ ତାଙ୍କ ସୁରକ୍ଷା ପାଇଁ ମୋ ପ୍ରକୃତ ନାମ ଦେଇଥିଲି, ପରେ ଭାବିଲି ସେଇଟା ଉଚିତ ହେଲା ନାହିଁ । ତା ପରଦିନ ଅମ୍ମାଙ୍କର ଆଶ୍ରମରେ ପହଂଚି ଆଶ୍ଚର୍ଯ୍ୟ ହୋଇ ଦେଖିଲି ଯେ ଅମ୍ମା ମୁଁ ଆଶ୍ରମ ଛାଡିଲା ବେଳେ ଦେଇଥିବା ପଇସା, ମୋର ଫେରିବା ପାଇଁ ବସ ଭଡା ଲାଗି ଠିକ୍ ଅଂଟିଗଲା । ମୋତେ ଦେଖି ଅମ୍ମା କହିଲେ "ଭଲ ହେଲା, ଫେରି ଆସିଲୁ । କିନ୍ତୁ ବସ୍ ଲୋକଙ୍କୁ କାହିଁକି ନିଜ ନାମ କହିଦେଇଥିଲୁ !"

"ଦିନେ ସକାଳେ ଅମ୍ମା ମତେ ସାବଧାନ କରାଇ ଦେଇ କହିଲେ ଯେ ସେଦିନ କିଛି ଗୋଟେ ଗଣ୍ଡଗୋଳ ହେବାର ଅଛି, ବେଶୀ ଭାବପ୍ରବଣ ନ ହୋଇ ଆଶ୍ରମର ଶାନ୍ତି ରକ୍ଷା କରିବା ପାଇଁ ଉପଦେଶ ଦେଲେ । ମୋତେ କହିଲେ, ସେ ସାଧକ ମାନଙ୍କ ପାଇଁ ନିଜକୁ ଉତ୍ସର୍ଗ କରିଛନ୍ତି ଏବଂ ତାଙ୍କ ମଙ୍ଗଳ ପାଇଁ ଯେତେ ସଂକଟର ସମ୍ମୁଖୀନ ହେଲେ ମଧ୍ୟ ସେ ସେମାନଙ୍କୁ ରକ୍ଷା କରିବେ ।

"ସେଦିନ ଦିନ ୧୧ଟା ବେଳକୁ ମୋ ବାପା ବିରାଟ ଦଳ ବଳ ନେଇ ଆଶ୍ରମରେ ପହଂଚି ମୁଁ ତାଙ୍କ ସହିତ ଯିବାପାଇଁ ବାଧ୍ୟ କଲେ । ମୁଁ ଯେତେବେଳେ ନାହିଁ କଲି

ସେ ମତେ ବଳ ପ୍ରୟୋଗ କରି ନେବା ପାଇଁ ଧମକ ଦେଲେ । ଅମ୍ମା ପୁରା ଶାନ୍ତ ରହି ସେମାନଙ୍କୁ କହିଲେ "ସେ ଯଦି ଚାହେଁ ତେବେ ଆମେମାନେ ତାର ସୁରକ୍ଷା କରିବାକୁ ଋହୁଁ । ତାହା ଆମ ଆଶ୍ରମର ଧର୍ମ" । ଭିଡା ଓଟରା ପରି ବାତାବରଣ ହୋଇଗଲା । କାରଣ ଆଶ୍ରମ ଲୋକମାନେ ମଧ୍ୟ ଆସି ପହଂଚିଲେ । କିଛି ସ୍ଥାନୀୟ ଭକ୍ତ ମାନେବି ଆସି ପହଂଚିଲେ, ତେଣୁ ବାପାଙ୍କର ଦଳବଳ ଦୁଇ ସପ୍ତାହର ନୋଟିସ୍ ଦେଇ ଫେରିଗଲେ ।

"ସେଦିନ ଉପରବେଳା ତିନିଟା ବେଳେ ଅମ୍ମା ମତେ ସାଙ୍ଗେ ସାଙ୍ଗେ ଆଶ୍ରମ ଛାଡିବାକୁ ଆଦେଶ ଦେଲେ । ମୁଁ ସାଙ୍ଗେ ସାଙ୍ଗେ ଛାଡି ଚାଲିଗଲି । ମୁଁ ଛାଡିବାର କିଛି ମିନିଟ୍ ପରେ ହିଁ ମୋର ବାପା ଏବଂ ତାଙ୍କ ସାଙ୍ଗ କରୁଣାଗାପାଲିରୁ କିଛି ପୋଲିସ ନେଇ ଆଶ୍ରମ ବେନିୟମରେ ଲୋକ ରଖିଥିବା ବିଷୟରେ ଯାଂଚ କରିବା ଲାଗି ଆସି ପହଂଚିଲେ । ମୁଁ କିଛିଦିନ ବିଭିନ୍ନ ଅନୁଷ୍ଠାନ ଓ ବନ୍ଧୁ ମାନଙ୍କ ଘରେ ଲୁଚି କଟାଇଲି । ଅମ୍ମାଙ୍କ ପାଖରୁ ଅନୁମତି ନେଇ ମୁଁ କୋଚିନ ସ୍ଥିତ ଆର୍ଯ୍ୟ ସମାଜକୁ ଯାଇ ବୈଦିକ ମତ ଅନୁସାରେ ହିନ୍ଦୁ ଧର୍ମ ଗହଣ କଲି । ଏହି ଘଟଣାଟି ସଂପୂର୍ଣ୍ଣ ଭାବରେ ସରକାରୀ କାଗଜ ଗେଜେଟ ରେ ଲେଖା ହୋଇଛି ।

"କେରଳର ଗଭର୍ଣ୍ଣର ଓ ଇନିସ୍‌ପେକ୍ଟର ଜେନେରାଲ ମୋର କେସ୍‌ଟି ଶୁଣି କିଛି କାର୍ଯ୍ୟକାରୀ ପନ୍ଥା ଗ୍ରହଣ କରିଥିଲେ ଏବଂ ମୋର ପରିବାରକୁ ସାବଧାନ କରାଇ ଦେଇଥିଲେ । ସେମାନେ ମତେ ପ୍ରତିଶ୍ରୁତି ଦେଇଥିଲେ ଯେ ଆଶ୍ରମରେ ମୁଁ ରହିପାରିବି, ତେଣୁ ମୁଁ ଫେରି ଆସିଲି । ଗୋଟିଏ ମାସ ପରେ ଅମ୍ମା ଦେବୀଭାବ ସମୟରେ ମତେ ମନ୍ତ୍ର ଦୀକ୍ଷା ଦେଲେ । ମନ୍ତ୍ରଦୀକ୍ଷା ମୋର ସାଧନାକୁ ଖୁବ୍ ଶିଘ୍ରଗତିରେ ଆଗେଇ ନେଇଥିଲା ।

"ଦିନେ ବ୍ୟାପିନ୍ ସହରରେ ଗୋଟିଏ ମନ୍ଦିରରେ ଭଜନ କରିବାକୁ ଆଶ୍ରମର ଅଧିବାସୀ ମାନେ ଯାଇଥିଲେ । ଫେରିଲା ବାଟରେ ଆମେ କ୍ୱିଲନ୍‌ରେ ଥିବା ଶାଖା ଆଶ୍ରମରେ ଘଂଟାଟିଏ କଟାଇ ଆସିଲୁ । ଶିଷ୍ୟ ଭାବେ ମୋର ଅନୁଭୂତି ହେଲା, ସଦ୍‌ଗୁରୁ ଅମ୍ମା ପ୍ରଥମେ ନିଜ ବିଚାରରେ ଉଚିତ୍ କାମ କରିବାକୁ ଦିଅନ୍ତି । ଯଦି ଆମେ ତଥାପି ଭୁଲ କରୁ, ତେବେ ସେ ଆମକୁ ଉପଦେଶ ଦେଇ ଠିକ ବାଟକୁ ଆଣନ୍ତି ! ମୁଁ ମୋ ପରିବାର ସହ ଗଣ୍ଡଗୋଳ ଆଶା କରୁନଥିଲି । ମୋ ମନ ଭିତରେ ଗୋଟିଏ

ଅଦ୍ଭୁତ ଭାବ ସଂଚାରଣ ହେଲା । ମନ ଭିତରୁ କିଏ ଯେପରି କହିଲା କ୍ୱିଲନ୍‌ରେ ମୋର ରହିଯିବା ଉଚିତ୍ । ଏହି ଇଚ୍ଛାଟି ମନ ଭିତରେ ବଳବତୀ ହୋଇ ଉଠିଲା, ମୁଁ କିଛି ଠିକଣା କରିବା ଆଗରୁ ଅମ୍ମାଙ୍କ ମୁହଁକୁ ଆଦେଶ ପାଇଁ ଅନାଇଲି । ଅମ୍ମା କହିଲେ "ତୁ ଏଇଠି ରହ" । ଏପରି ଇଙ୍ଗିତରେ କହି ମତେ କ୍ୱିଲନ୍‌ରେ ଛାଡି ବ୍ୟାପିନ୍ କୁ ଯାତ୍ରା କଲେ ।

"ଦୁଇଘଂଟା ପରେ ଶ୍ରୀନିବାସ ଓ ଆଉଜଣେ ସାଧକ ଦଉଡି କ୍ୱିଲନ ଆଶ୍ରମକୁ ଆସିଲେ ଓ ମତେ ଜଲଦି ପଳେଇବାକୁ କହିଲେ । କ୍ୱିଲନ ଠାରୁ ତିରିଶି କିଲୋମିଟର ଉତରରେ କରୁଣାଗାପାଲୀ ଗ୍ରାମରେ ଆଶ୍ରମର ଗାଡିକୁ ଅଟକା ଯାଇଥିଲା । ପୋଲିସ ମୋର ଗିରଫର ଓ୍ୱାରେଂଟ୍ ନେଇ ମତେ ଖୋଜୁଥିଲେ । କ୍ୱିଲନର ଚିଫ୍ ଜୁଡିସିଆଲ ମାଜିଷ୍ଟ୍ରେଟ କୋର୍ଟ ପାଗଳାମୀ ଆକ୍ଟ ଅନୁସାରେ ଏଇ ଓ୍ୱାରେଂଟ୍ ବାହାର କରିଥିଲେ । ସେମାନେ ଆଶ୍ରମ ଗାଡି ଖୋଜି ମତେ ପାଇନଥିଲେ । ତାପର କିଛିଦିନ ଗୁପ୍ତ ଭାବରେ ଏଠି ସେଠି ରହିବାକୁ ଲାଗିଲି । ଏପରି ଅନେକ ଘଟଣାରେ ଠିକ୍ ସମୟରେ ଐଶ୍ୱରୀକ ସାହାଯ୍ୟ ଆସି ପହଂଚି ଯାଉଥିଲା ।

"ଏହି ସମୟରେ ସଂପୂର୍ଣ୍ଣ ଅନିର୍ଦ୍ଦିଷ୍ଟତା ଯୋଗୁଁ ମୁଁ କେରଳ ଛାଡି ଦେବି ବୋଲି ଭାବୁଥିଲି । କାରଣ ମୋ ନାଁରେ ସର୍ଚ୍ଚ ଓ୍ୱାରେଂଟ୍ ଲାଗୁ ହୋଇଥିଲା । ମୋର ବାପା ବାରମ୍ବାର ଅନେକ ଚାପ ପ୍ରୟୋଗ କରି କଚେରୀରୁ ଏହି ଓ୍ୱାରେଂଟ୍ ଜାରି କରିଥିଲେ । ମୁଁ ମଧ୍ୟ ଆମ୍ମା ଓ ଆଶ୍ରମ ପାଇଁ ଏପରି ଅସୁବିଧା ସୃଷ୍ଟି କରିଥିବାରୁ ନିଜକୁ ଭାରି ଦୋଷୀ ମନେ କରୁଥିଲି । ଠିକ୍ ସେହିଦିନ ଅମ୍ମା ମତେ ଖବର ପଠାଇଲେ ଚିନ୍ତା ନ କରିବା ପାଇଁ, ଓ କହିଲେ ଶିଘ୍ର ଏହି ସମସ୍ୟାର ସମାଧାନ ହୋଇଯିବ ।

"ଦୁଇଦିନ ପରେ ଦୈନିକ ମାଲାୟାଲାମ ଖବର କାଗଜ ମାତୃଭୂମିରେ ବାହାରିଥିଲା ଯେ ମୋର ବାପା, ମା କେରଳ ହାଇକୋର୍ଟରେ ଅମ୍ମାଙ୍କୁ ପ୍ରତିବାଦୀ କରି ହିବିଆସ କରପସ୍ ପିଟିସନ୍ ଦାଖଲ କରିଛନ୍ତି । ସେମାନଙ୍କର ପୁଅର ଗମ୍ଭୀର ମାନସିକ ରୋଗ ଲାଗି ବିଶେଷଜ୍ଞଙ୍କ ଦ୍ୱାରା ଚିକିତ୍ସିତ ହେଉଥିବା ଅବସ୍ଥାରେ ଅମ୍ମା ତାଙ୍କୁ ଜବରଦସ୍ତ ବେଆଇନ ଭାବରେ ଅଟକାଇ ରଖିଛନ୍ତି ବୋଲି ସେମାନେ ଦୋଷାରୋପ କରିଛନ୍ତି ।

"ଅମ୍ମାଙ୍କର ନିର୍ଦ୍ଦେଶରେ ମୁଁ ସାଙ୍ଗେ ସାଙ୍ଗେ କୋଚିନ ଚାଲିଗଲି । କେରଳର ହାଇକୋର୍ଟର ଜଣେ ଓକିଲ ଗୋବିନ୍ଦ ଭରତନ୍ ଦ୍ୱାରା ମୁଁ ଗୋଟିଏ ଶପଥ ପତ୍ରରେ

ସମସ୍ତ ସତ୍ୟ କଥା ଲେଖି ଦାଖଲ କଲି । ୧୯୮୭ ମସିହା ଅଗଷ୍ଟ ସତେଇଶି ତାରିଖରେ ମୁଁ କେରଳର ହାଇକୋର୍ଟରେ ପୋଲିସ ତତ୍ତ୍ୱାବଧାନ ଓ ସୁରକ୍ଷାରେ ହାଜର ହୋଇଥିଲି । ଦୀର୍ଘ ସମୟ ଧରି ସବୁ ଘଟଣାର ବିଶେଷ ବିବରଣୀ ପରେ ବିଚାରପତିବୃନ୍ଦ ମୋ ବାପାଙ୍କର ଦାଖଲ ନିବେଦନ ପତ୍ରକୁ ନାକଚ କରି ମୋ ସୁରକ୍ଷା ଦାୟିତ୍ୱର ଆଦେଶ ଦେଲେ । ସଭାପତିତ୍ୱ କରୁଥିବା ବିଚାରପତି ଗତ ଦୁଇବର୍ଷ ଧରି ମୋ ବିରୁଦ୍ଧରେ ସଂପୃକ୍ତ ଥିବା ଯେକୌଣସି ବ୍ୟକ୍ତିଙ୍କୁ କଠୋର ଚେତାବନୀ ଶୁଣାଇଲେ ।

"ମୁଁ ଅମ୍ମା ଓ ବ୍ରହ୍ମଚାରୀ ମାନଙ୍କ ସାଙ୍ଗରେ ଅନୁଷ୍ଠାନ ପାଇଁ ବମ୍ବେ ଯାଇଥିଲା ବେଳେ ଆମେ ଶୁଣିଲୁ ଯେ କେରଳର ହାଇକୋର୍ଟ ରାୟକୁ ଆପତ୍ତି କରି ଭାରତୀୟ ସୁପ୍ରିମ କୋର୍ଟରେ ନିବେଦନ ପତ୍ର ଦାଖଲ କରା ହୋଇଛି । ସେମାନେ ଜୋର୍ ଦେଇ ଦାବୀ କଲେ ଯେ ମୋର ମସ୍ତିଷ୍କ ବିକୃତି ଅଛି କି ନାହିଁ କେବଳ ଡାକ୍ତର ମାନଙ୍କ ଦ୍ୱାରା ଅଠେଇଶ ଦିନ ଧରି ପରୀକ୍ଷା କଲେ ହିଁ ଜଣା ପଡିବ । ଏହି ଦାବୀର କାଗଜ ପତ୍ର ଆଗରୁ ହାଇକୋର୍ଟର ବିଚାରପତି ମାନେ ଦେଖି ଓ ମୋର ପୂର୍ବତନ ଶପଥ ପତ୍ର ପଢି ମକଦ୍ଦମା ଖାରଜ କରିଦେଲେ । ସେମାନେ ମଧ୍ୟ ମୁଁ କାହିଁକି ହିନ୍ଦୁ ଧର୍ମ ଗ୍ରହଣ କରୁଛି ଓ ଅମ୍ମାଙ୍କୁ କାହିଁକି ମୋର ସଦ୍‌ଗୁରୁ ରୂପେ ସ୍ୱୀକାର କରିଚି ଇତ୍ୟାଦି ବିଷୟ ନେଇ ମତେ ଅନେକ ପ୍ରଶ୍ନ ତନ୍ନ ତନ୍ନ କରି ପଚାରିଥିଲେ ।

"ଅମ୍ମା ତାଙ୍କର ସହାୟତାର ପ୍ରତିଶ୍ରୁତି ଦେଇ ମତେ ଦିଲ୍ଲୀ ଯିବା ପାଇଁ ଆଦେଶ ଦେଲେ । ତାଙ୍କର କୃପାରୁ ଏହି ନିବେଦନଟି ପ୍ରଥମ ଶୁଣାଣୀ ଓ ଯୁକ୍ତିତର୍କ ବେଳେ ଖାରଜ ହୋଇଗଲା । ମୋତେ ଅଧିକା ଗଣ୍ଡଗୋଳ ଓ ବିପଦର ଝାମେଲାରୁ ରିହାତି ମିଳିଲା ।

"ଅମ୍ମା ଆମ ସମସ୍ତଙ୍କ ହୃଦୟରେ ପ୍ରବେଶକରି ଆମକୁ ଅନନ୍ତ ମହାପ୍ରଭୁଙ୍କୁ ହୃଦୟରେ ଧରି ରଖିବାରେ ସହାୟତା କରନ୍ତି । ଅମ୍ମାଙ୍କର ସୁଶୀତଳ ସ୍ନେହ ଓ କରୁଣାରେ ଆମ ସମସ୍ତଙ୍କୁ ସବୁ ବାଧାବିଘ୍ନ ଅତିକ୍ରମ କରି ଚରମ ଲକ୍ଷ୍ୟ ପ୍ରାପ୍ତିଲାଗି ସାଧନାରତ ହେବାକୁ ହେବ ।"



## ପରମ ପୂର୍ଣ୍ଣତାର ଆଧାର

## ଅମ୍ମା : ଐଶ୍ୱରୀକ ଶିକ୍ଷାଦାତ୍ରୀ

ସଂପୂର୍ଣ୍ଣ ମହାପୁରୁଷ କିଏ ସେ ? ଯଦି ଏହି ପ୍ରଶ୍ନ ଆଜି କେଉଁ ଆଧୁନିକ ଯୁବକଙ୍କୁ ପଚରା ଯାଏ ସେ ହୁଏତ କହିପାରେ ଆଦର୍ଶ ପୁରୁଷ ଦେଖିବାକୁ ସୁନ୍ଦର, ପ୍ରଚଣ୍ଡ ପ୍ରଭାବଶାଳୀ କୋଟିପତି, ନଚେତ୍ ସେ ହୁଏତ କହିପାରେ କୌଣସି ସୁଦର୍ଶନ ଚଳଚ୍ଚିତ୍ର ନାୟକ ବା ନାୟିକା କିମ୍ବା କୌଣସି କ୍ରିକେଟ ଖେଳାଳୀ । ଅତି ଦୁଃଖର କଥା ଯେ ଆଜିର ଯୁବସମାଜ ଦୁନିଆକୁ ସିନେମା, ରାଜନୀତି ତଥା ପ୍ରେମ ରୋମାଂଚ ଛଡା ଆଉ କିଛି ଭାବରେ କଳ୍ପନା କରି ପାରି ନାହାନ୍ତି । ସେମାନଙ୍କର ଜୀବନରେ ଏସବୁ ଅତ୍ୟନ୍ତ ପ୍ରଭାବଶାଳୀ ହୋଇ ପଡିଛି । କିନ୍ତୁ ଏ ସବୁ କଣ ଆମର ଜୀବନ ବା ଚରିତ୍ର ଗଠନରେ କିଛି ସାହାଯ୍ୟ କରେ ? ମଣିଷକୁ ସୁନ୍ଦର ଓ ସଂପୂର୍ଣ୍ଣ କରେ ? କେଉଁ କର୍ମ ମଣିଷକୁ ସୁମଧୁର ଓ ଆକର୍ଷଣୀୟ କରେ ? କେଉଁ ସବୁ ବିଭବ ମଣିଷକୁ ଅମର ଓ ଚିର ସ୍ମରଣୀୟ କରାଇ ଦିଏ ? ପୂର୍ବ ବର୍ଣ୍ଣିତ ବ୍ୟକ୍ତିମାନେ ତାହା ବାସ୍ତବରେ ହୋଇ ପାରନ୍ତି କି ? ବୁଦ୍ଧିମାନ୍ ବ୍ୟକ୍ତି କହିବେ "ନାଁ କଦାପି ନୁହେଁ !" ତେବେ ତାହା କଣ ? ଗୋଟିଏ ବାକ୍ୟରେ କହିବାକୁ ଗଲେ ମନର ସମସ୍ତ ଭଲଗୁଣ ମିଶି ଗୋଟିଏ ଅନନ୍ତ ଅକ୍ଷୟ ପୂଣ୍ୟ ହୋଇ ସେହି ବ୍ୟକ୍ତି ଭିତରେ ପ୍ରଦର୍ଶିତ ହୁଏ । ସାଧ୍ୱୀ ଅମ୍ମା ଅମୃତାନନ୍ଦମୟୀଙ୍କ ଠାରେ ଏଇ ସମସ୍ତ ଗୁଣାବଳୀ ତଥା ସୁନ୍ଦର ଅନାବିଳ ପ୍ରେମ ଓ ଆନନ୍ଦର ସମନ୍ୱୟତା କୁ ଅନୁଭବ କରି ହୁଏ । ଜୀବନର ବିଭିନ୍ନ ପଥରୁ ଆସୁଥିବା

ଲୋକେ ନିଜର ଜ୍ଞାନ ଓ ବୁଦ୍ଧି ଅନୁସାରେ ଅମ୍ମାଙ୍କ ବିଷୟରେ କହିଥାନ୍ତି । ଉଦାହରଣ ସ୍ୱରୂପ ଯଦି ଜଣେ ସଂସାରୀ ବ୍ୟକ୍ତିଙ୍କୁ ମାତା ଅମୃତାନନ୍ଦମୟୀ କିଏ ସେ ବୋଲି ପଚରାଯାଏ, ସେ ଉତ୍ତର ଦେବେ "ଅମ୍ମା ଜଣେ ଅଲୌକିକ ମହିଳା, ଯିଏକି ଅନେକ ଭୟଙ୍କର ରୋଗ କେବଳ ଛୁଇଁ ଦେଇ ଭଲ କରି ଦିଅନ୍ତି" । ସେ ମଧ୍ୟ କହିପାରନ୍ତି "ସେ ତୁମର ସାଂସାରିକ ସମସ୍ୟାମାନ ସୁଧାରି ତୁମର ମନସ୍କାମନା ପୂର୍ଣ୍ଣ କରିଦେବେ ।" ଯଦି ସେହି ପ୍ରଶ୍ନ ଅନ୍ୟଜଣେ ଲୋକଙ୍କୁ ପଚାରିବେ, ସେ ହୁଏତ ଉତ୍ତର ଦେବେ, "ସାଧ୍ୱୀ ଅମ୍ମା ବଡ ଅଦ୍ଭୁତ ଭାବ ସଂପୂର୍ଣ୍ଣା । ସେ ଅନେକ ମାନସିକ ଶକ୍ତି ପ୍ରଦାନ କରିପାରନ୍ତି । ସେ ସମସ୍ତ ମାନସିକ ଚିନ୍ତାଧାରା ପଠନରେ ଦକ୍ଷତା ହାସଲ କରିଛନ୍ତି । ତାଙ୍କ ପାଇଁ ପାଣିକୁ ପଂଚାମୃତ ଓ ଦୁଧରେ ପରିଣତ କରିଦେବା କିଛି ବଡ କଥା ନୁହଁ । ସମସ୍ତ ଅଷ୍ଟତାନ୍ତ୍ରିକ ଶକ୍ତିରେ ସେ ନିପୁଣା" । ସତ୍ୟର ସାଧକ ଏହି ପ୍ରଶ୍ନ ଉତ୍ତର ଦେବ, "ଅମ୍ମା ହେଲେ ସାଧନାର ଅନ୍ତିମ ଲକ୍ଷ୍ୟ । ସାଧକର ତାଙ୍କୁ ଅନୁଭବ କରିବାର ଲକ୍ଷ୍ୟ ରହିବା ଦରକାର । ସେ ସାଧକକୁ ସାହା ଭରସା, ଶକ୍ତି ଦେଇ ପ୍ରତିକ୍ଷଣ ପରିବର୍ତ୍ତନଶୀଳ ଏହି ସଂସାରର କାରାବାରରୁ ତରିବାରେ ସାହଯ୍ୟ କରନ୍ତି । ତାଙ୍କର ପ୍ରକୃତି ହିଁ "ବେଦ" । ପୃଥିବୀର ଅନ୍ୟାନ୍ୟ ଧର୍ମର ମୌଳିକ ନୀତି ସବୁକୁ ସେ ଉପଲବ୍ଧି ଓ ଦର୍ଶନ କରିଛନ୍ତି । ତୁମେ ତାଙ୍କର ପାଦ ପଦ୍ମରେ ଶରଣାଗତ ହେଲେ ତୁମେ ସାଧନାର ଲକ୍ଷ୍ୟ ସ୍ଥଳରେ ପହଂଚି ପାରିବ । ସେ ଜଣେ ସଂପୂର୍ଣ୍ଣ ଗୁରୁ ଓ ପରିପୂର୍ଣ୍ଣା ମାତା ।"

ଭକ୍ତି ଯୋଗର ଦୃଷ୍ଟି କୋଣରୁ ଦେଖିଲେ ଲକ୍ଷ୍ୟ କରାଯାଏ ସାଧ୍ୱୀ ଅମ୍ମା ହିଁ ଭକ୍ତି ଯୋଗର ଶ୍ରେଷ୍ଠ ଉଦାହାରଣ । ତାଙ୍କ ଭିତରେ ପରମ ଭକ୍ତିର ବିଭିନ୍ନ ଅଂଶ ପରିଦର୍ଶିତ ହୁଏ । ଯଦି ଜଣେ ଜ୍ଞାନ ଯୋଗର ମାର୍ଗରେ ଯିବାକୁ ଚାହଁ, ତେବେ ଅମ୍ମାଙ୍କୁ ନୀରିକ୍ଷଣ କଲେ ବୁଝି ପାରିବ ସେ ବ୍ରହ୍ମଙ୍କୁ କାୟମନୋବାକ୍ୟରେ ଧରି ରଖିଛନ୍ତି । ଯଦି କୌଣସି ବ୍ୟକ୍ତି କର୍ମ ଯୋଗର ମାର୍ଗରେ ବିଶ୍ୱାସ କରୁଥାନ୍ତି, ତେବେ ଅମ୍ମାଙ୍କୁ ଦେଖିଲେ ଜାଣିପାରିବେ ଯେ କର୍ମ ଯୋଗୀ ମାନଙ୍କ ଭିତରେ ସେ ହିଁ ଶ୍ରେଷ୍ଠା । ଏହିସବୁ ମତାମତ ସାଧାରଣ ମନୁଷ୍ୟର ସୀମିତ ବୋଧ ଶକ୍ତି ଓ ଅନୁଭୂତିରୁ ହିଁ ଦିଆ ହୋଇଛି । ତାଙ୍କ ସହ ଘନିଷ୍ଠ ଭାବରେ ଜଡିତ ହୋଇ, ମନ ଭିତରୁ ପୂର୍ବର ସଂସ୍କାର, ପୂର୍ବର ଧାରଣାକୁ ବାହାର କରିଦେଇ, ସତେଜ ଦୃଷ୍ଟିରେ ତାଙ୍କୁ ଅନୁଭବ କଲେ ଜାଣି ପାରିବେ ଯେ

ଅମ୍ମା ଏହିସବୁ ଯୋଗର (ଭକ୍ତି, ଜ୍ଞାନ, କର୍ମ) ପ୍ରତିମୂର୍ତ୍ତି ବା ସନ୍ନିବେଶ ।

ମାଲାୟାଲାମ ଭାଷାରେ ଗୋଟିଏ କଥା ଅଛି "ପୃଥିବୀ ପରି ଧୈର୍ଯ୍ୟ ଶୀଳତା" । ବସୁଧା ସବୁ କିଛି ନିଜ ଉପରେ ବହନ କରି ଅଛନ୍ତି । କିନ୍ତୁ ଲୋକେ ତାଙ୍କୁ ଗୋଇଠା ମାରନ୍ତି, ତାଙ୍କ ଉପରେ ଛେପ ପକାନ୍ତି, ହଳ କରନ୍ତି, ଖୋଳି ଗାତ କରନ୍ତି । ହଳ ଲଙ୍ଗଳ ତାଙ୍କର ଛାତି ଫୁଟାଇ ନାନା ଫସଲ କରନ୍ତି, ଆଉ ମଧ୍ୟ ତାଙ୍କ ଉପରେ ଶହ ଶହ ମହଲାର ଘର ତିଆରି କରନ୍ତି । ସେ ସବୁ ଧୈର୍ଯ୍ୟଧରି ସହନ କରନ୍ତି । କୌଣସି ପ୍ରତିବାଦ କରନ୍ତି ନାହିଁ ବରଂ ସମସ୍ତଙ୍କର ଯଥାର୍ଥ ସେବା ଓ ପୋଷଣ ହିଁ କରନ୍ତି । ଠିକ ସେହିପରି ଅମ୍ମା ତାଙ୍କର ପିଲାମାନଙ୍କର ଚରିତ୍ର ତିଆରି କରିବା ପାଇଁ ଅଗାଧ ଧୈର୍ଯ୍ୟସହ ଭକ୍ତମାନେ ପରିପକ୍ୱ ହେବାଯାଏ ଅପେକ୍ଷା କରି ପରେ ସେମାନଙ୍କୁ ଶୃଙ୍ଖଳିତ କରାନ୍ତି । ସେତେବେଳ ପର୍ଯ୍ୟନ୍ତ ସେମାନଙ୍କର ସବୁ ଭୁଲ କ୍ଷମା କରି ସେମାନଙ୍କୁ ଅନାବିଳ ସ୍ନେହ ଦେଇ ଥାଆନ୍ତି ।

ଯଦି ଜଣେ ପ୍ରାଚୀନ ଭାରତ ସାଧୁ ମହର୍ଷି ମାନଙ୍କର ଜୀବନାବଳୀକୁ ଅଧ୍ୟୟନ କରେ, ତେବେ ଜାଣିପାରିବ ସେମାନେ କିପରି ବିଭିନ୍ନ ପ୍ରଣାଳୀରେ ତାଙ୍କର ଶିଷ୍ୟ ମାନଙ୍କୁ ଜ୍ଞାନ ଦାନ କରୁଥିଲେ, ଏବଂ ଗୁରୁ ଶିଷ୍ୟଙ୍କର ସମ୍ପର୍କ କିପରି ହେବା ଉଚିତ୍ । ତାହା ପୃଥିବୀର ଅନ୍ୟଠାରେ ବିରଳ । ଅମ୍ମା କହନ୍ତି "ଆରମ୍ଭରେ ଜଣେ ସତ୍‌ଗୁରୁ ଶିଷ୍ୟକୁ ଅନାବିଳ ସ୍ନେହରେ ହିଁ ବାନ୍ଧି ରଖନ୍ତି । ଗୁରୁଙ୍କର ସ୍ନେହ ଦ୍ୱାରା ପ୍ରଭାବିତ ହୋଇ ଶିଷ୍ୟ ଉପଯୁକ୍ତ ହୋଇ ପାରିଲା ପରେ ଗୁରୁ ତାର ବାସନା ଓ ଅନ୍ୟାନ୍ୟକୁ ପ୍ରକୃତିକୁ ସୁଧାରିବାକୁ ଚେଷ୍ଟା କରିବେ । ଧୀରେ ଧୀରେ ଗୁରୁ ଅନୁଶାସନ ଓ ସ୍ନେହ ସହ ଅନୁଶାସନ ଶିଖାଇ ଶିଷ୍ୟକୁ ପରିବର୍ତ୍ତନ କରାଇ ଦେବେ । ପ୍ରକୃତ ଗୁରୁ ଶିଷ୍ୟ ସମ୍ବନ୍ଧରେ କିଏ ଶିଷ୍ୟ କିଏ ଗୁରୁ ଜାଣିବା କଷ୍ଟ, କାରଣ ଗୁରୁ ଶିଷ୍ୟ ଠାରୁ ବିନୟୀ ଓ ଶିଷ୍ୟ ଗୁରୁଙ୍କ ଠାରୁ ଆହୁରି ବିନୟୀ ହୋଇଥାଏ" । ପ୍ରଥମ ପ୍ରଥମେ ଶିଷ୍ୟକୁ ସ୍ନେହ ଦେଖାଇବା ସାଙ୍ଗେ ସାଙ୍ଗେ ଗୁରୁ ତାର ଇଚ୍ଛା, ଆକାଂକ୍ଷା ଅନୁସାରେ ନିଜକୁ ପରିଚାଳିତ କରି ଥାଆନ୍ତି, କିନ୍ତୁ ଯେତେବେଳେ ସେ ଶିଷ୍ୟକୁ ପରିପକ୍ୱ ଅବସ୍ଥାରେ ଦେଖନ୍ତି, ଧୀରେ ଧୀରେ ତାର ସାଧନାରେ ସଂଯମ, ଶୃଙ୍ଖଳା ଆଣିବାକୁ ଆଗେଇ ଯାଆନ୍ତି । ଥରେ କଠୋର ନିୟମାନୁବର୍ତ୍ତିତା ଆରମ୍ଭ ହେଲେ, ଗୁରୁ ଶିଷ୍ୟକୁ ପୁଅ ବା ଝିଅ ପରି ଦେଖୁଥିଲେ ମଧ୍ୟ, ସେ ଭାବଟି ଉପରେ ପ୍ରକାଶ କରିବେ ନାହିଁ । ତାଙ୍କର ପ୍ରଧାନ ଲକ୍ଷ୍ୟ ହେବ

ଶିଷ୍ୟଙ୍କୁ ନିଜର ନିର୍ମଳ ବ୍ରହ୍ମକୁ ଅନୁଭବ କରିବାରେ ସହାୟତା କରିବା । ଗୁରୁ ଆଉ ଗୋଟିଏ ଭାବରେ ନିଜର ସ୍ନେହ ପ୍ରଦର୍ଶିତ କରୁଥାନ୍ତି । ତାହାହିଁ ପ୍ରକୃତ ପ୍ରେମ, ଶିଷ୍ୟ ମାନଙ୍କୁ ହୀରାରେ ପରିଣତ କରିବା ।

ବେଳେବେଳେ ଅମ୍ମା ସନ୍ତାନ ମାନଙ୍କର ଦୋଷ, ଦୁର୍ବଳତା ଦେଖାଇ କହନ୍ତି "ଅମ୍ମା ହେଉଚି ଗୋଟିଏ ମାଲୁଣୀ, ବଗିଚା ସାରା ଅନେକ ରଙ୍ଗର ଫୁଲର ସମାରୋହ । ମୋତେ ସୁନ୍ଦର ଫୁଲର ଯତ୍ନ କରିବାକୁ ଭାର ଦିଆଯାଇ ନାହିଁ, ମତେ ପୋକ ଜୋକ ନଷ୍ଟ କରିଦେଉଥିବା ଫୁଲକୁ ଭଲ କରିବାର ଭାର ଦିଆଯାଇଛି । ସେ ପୋକ ଗୁଡ଼ିକୁ ବାହାର କରିବାକୁ ହେଲେ, ମତେ କିଛି ପାଖୁଡ଼ା, ପତ୍ର ଛିଣ୍ଡେଇ ଫିଙ୍ଗି ଦବାକୁ ହେବ, ଯାହାକି ଯନ୍ତ୍ରଣା ଦାୟକ, କିନ୍ତୁ ଗଛ ଓ ଫୁଲକୁ ବଂଚେଇବାକୁ ହେଲେ ତାହା ହିଁ ଏକମାତ୍ର ଉପାୟ । ଠିକ ସେହିପରି ଅମ୍ମା ପିଲାମାନଙ୍କର ଦୁର୍ବଳତା ଲାଗି କାମ କରିବ । ଏହା ଦୂର କରିବା ବଡ଼ କଷ୍ଟ ଦାୟକ, କିନ୍ତୁ ଏହା ତୁମର ଭଲ ପାଇଁ କରାଯାଇଥାଏ । ତୁମର ଭଲ ଗୁଣ ଗୁଡ଼ିକୁ ଦୃଷ୍ଟି ଦେବା ଦରକାର ନାହିଁ, କିନ୍ତୁ ଯଦି ତୁମର ଦୁର୍ବଳତା ଦୂର କରା ନ ହୁଏ ତେବେ ତୁମର ଭଲ ଗୁଣ ଗୁଡ଼ିକ ମଧ୍ୟ ତା ସାଙ୍ଗେ ସାଙ୍ଗେ ନଷ୍ଟ ହୋଇଯିବ । ପିଲାମାନେ ! ତୁମେ ଭାବୁଥିବ ଅମ୍ମା ତୁମ ଉପରେ ରାଗିଛି । ଜମାରୁ ନୁହଁ, ଅମ୍ମା ତୁମ ମାନଙ୍କୁ ସବୁଠୁ ବେଶୀ ଭଲପାଏ । ସେଥିପାଇଁ ସେ ଏପରି ପଦକ୍ଷେପ ନେଇଥାଏ । ଅମ୍ମା ତୁମମାନଙ୍କ ଠାରୁ ତୁମର ସାଧନାର ଉନ୍ନତି ଛଡ଼ା ଆଉ କିଛି ଆଶା କରେ ନାହିଁ ।"

କେବେହେଲେ ଅମ୍ମା ତାଙ୍କର ସିଂହାସନରେ ବସି ସମସ୍ତଙ୍କୁ ଆଦେଶ ଦେବାର କିଏ ଦେଖି ନାହାନ୍ତି । ସେ ଉପଦେଶ ଦିଅନ୍ତି ଏବଂ ନିଜେ କାମ କରି ଉଦାହରଣ ଦେଖାଇ ଦିଅନ୍ତି । ବିନମ୍ରତା ଓ ସାଦାସିଧା ଭାବ ତାଙ୍କର ମହନୀୟତାର ବିଶେଷତ୍ୱ । ଅମ୍ମା ଏହାର ଜ୍ୱଳନ୍ତ ଉଦାହରଣ । ସେ ସବୁଠୁ ନମ୍ର ଠାରୁ ବି ଆହୁରି ବିନମ୍ର, ସବୁଠୁ ଅମାୟିକ, ଆଜିଠାରୁ ମଧ୍ୟ ଆହୁରି ଅମାୟିକ । ଅମ୍ମା ନିଜ ବିଷୟରେ କୁହନ୍ତି "ମୁଁ ସଭିଙ୍କ ଦାସାନୁଦାସ । ମୋର ଏହି ଜୀବନ କେବଳ ଅନ୍ୟମାନଙ୍କ ପାଇଁ । ମୋର ପିଲା ମାନଙ୍କର ସୁଖ ହିଁ ମୋ ସ୍ୱାସ୍ଥ୍ୟ ଏବଂ ସଂପଦ" ।

ଅମ୍ମାଙ୍କର ତାଙ୍କ ପିଲାମାନଙ୍କର ଅହଂଭାବ ଓ ଦୁର୍ଗୁଣ ଦୂର କରିବାର ପ୍ରଣାଳୀ ଅତି ଚମତ୍କାର, ସେ ସବୁବେଳେ ସେସବୁ ବିରୁଦ୍ଧରେ ସଂଘର୍ଷ ଚଳାଇଥାନ୍ତି । ଅମ୍ମା

ନିଜେ ହିଁ ତାଙ୍କର ପିଲାମାନଙ୍କର ସାଧନାର ଉନ୍ନତି ଓ ମାନସିକ ବିକାଶ ପରୀକ୍ଷା କରିବା ପାଇଁ ରଣକ୍ଷେତ୍ରର ପରିସ୍ଥିତି ସୃଷ୍ଟି କରନ୍ତି । କୌଣସି ସନ୍ଦେହ ସୃଷ୍ଟି ନକରି ସେ ଅଜାଣତରେ ଶିଷ୍ୟକୁ ରଣକ୍ଷେତ୍ରକୁ ପଠାନ୍ତି । ମନ ଯେତେବେଳେ ପରିସ୍ଥିତିର ଗୁରୁତ୍ୱ ବୁଝିପାରେ, ମନର ଶତ୍ରୁ ବାହାରି ଆସି ସବୁ ଜ୍ଞାନ ପୂର୍ଣ୍ଣ ଚିନ୍ତାଧାରାକୁ ବିବ୍ରତ କରେ ଠିକ ଏହି ସମୟରେ ଅମ୍ମା ସୁବିଧା ଦେଖି ତାଙ୍କ ପିଲାମାଙ୍କର ଅହଂଭାବ ଦୂର କରନ୍ତି । ତାଙ୍କର ଶକ୍ତିମୟୀ ଶସ୍ତ୍ର ଠିକ ଜାଗାରେ ବାଣମାରେ ଓ ଧୀରେ ଧୀରେ ଦୁର୍ଗୁଣ ଗୁଡିକ ତାଙ୍କର ଦୟାରୁ ଦୁର୍ବଳ ହୋଇଯାଏ । ଏହାର ଗୋଟିଏ ଉଦାହରଣ ଦିଆଗଲା ।

ଅନେକ ବର୍ଷତଳେ ବ୍ରହ୍ମଚାରୀ ନିଲୁ ପୂର୍ବରୁ ରହୁଥିବା ତିରୁଭନ ମଲାଇରୁ ଗୋଟିଏ ଟାଇପ ରାଇଟର ନେଇ ଆସିଥିଲେ । ବାଲୁ ଟାଇପିଙ୍ଗ ଶିଖି ନଥିଲେ, ଖାଲି ମଜାରେ ଖଣ୍ଡେ କାଗଜ ନେଇ ଇଂରାଜୀରେ ଟାଇପ କରିଦେଲେ "ଅମ୍ମା ମତେ ତୁମର ଚାକର କର" । ଅମ୍ମା ଠିକ୍ ସେତେବେଳେ ପାଖରେ ବସି ନିଲୁ ସହ କଥା ହେଉଥିଲେ ଓ ବାଲୁଆଡେ ହଠାତ୍ ଅନାଇ କହିଲେ "ପୁଅ, ତୁ କଣ ଟାଇପ କରୁଛୁ ?" ବାଲୁ ତାପରେ ତାକୁ ଅନୁବାଦ କରି ମାଲାୟାଲାମରେ ଅମ୍ମାଙ୍କୁ କହିଲେ । ଅମ୍ମା ଆଉ କିଛି ନ କହି ନିଲୁ ସାଙ୍ଗରେ କଥା ଜାରୀ ରଖିଲେ । ଠିକ ପନ୍ଦର ମିନିଟ୍ ପରେ ଅମ୍ମା ନିଲୁକୁ କହିଲେ "ମୁଁ ବାଲୁକୁ ବିଦେଶକୁ ପଠଉଛି" । ଏହା ବାଲୁଙ୍କ ପାଇଁ ବଡ କ୍ଷୋଭଜନକ ହୋଇ ପଡିଲା, କାରଣ ଆଗରୁ ସେ ଦୁଇଟି କାମ ଛାଡିଛନ୍ତି କେବଳ ଅମ୍ମାଙ୍କ ପାଖରେ ସବୁଦିନ ପାଇଁ ରହିବା ଆଶାରେ । "ଅମ୍ମା ! ଆପଣ କଣ କହିଲେ ?" ବାଲୁ ବ୍ୟସ୍ତ ହୋଇ ପଚାରିଲେ ।

ଅମ୍ମା ଉତ୍ତର ଦେଲେ "ହଁ, ଆମର ଆଶ୍ରମ ଚଳାଇବା ପାଇଁ ଲୋକ ଦରକାର । ଧୀରେ ଧୀରେ ଆଶ୍ରମ ଅଧିବାସୀ ମାନଙ୍କର ସଂଖ୍ୟା ବଢି ଚାଲିଛି, ଆମର ସେମାନଙ୍କୁ ଚଳାଇବା ପାଇଁ କୌଣସି ରୋଜଗାର ନାହିଁ, ତେଣୁ ତୁମକୁ କାମଲାଗି ଯିବାକୁ ହିଁ ହେବ" ।

ବାଲୁ ପାଇଁ ଏତିକି ହିଁ ଯଥେଷ୍ଟ ଥିଲା । ତାଙ୍କର ଅନ୍ତରର୍ ଶତ୍ରୁ ମାନେ ଫଣା ଟେକି ଉତେଜିତ ହୋଇ ଉଠିଲେ । ସେ କହିଲେ "ନାଁ, ମୁଁ କାମକୁ ଯିବାକୁ ଚାହେଁ ନାହିଁ । ଏଠାକୁ ଯାଇ ପାରିବି ନାହିଁ । ମୁଁ ଏଠାରେ ଅମ୍ମାଙ୍କ ପାଖରେ ରହିବାକୁ ଆସିଥିଲି, ବାହାରେ କାମ କରି ପଇସା ରୋଜଗାର ପାଇଁ ନୁହଁ" । ସେ ରାଗରେ କମ୍ପିଲାଯାଏ

ଅମ୍ମା ତାଙ୍କୁ ବାଧ୍ୟ କରି ଚାଲିଲେ । ତାଙ୍କର ଦୁର୍ଗୁଣ ସବୁ ଯୁଦ୍ଧ କରିବାକୁ ତିଆରି ହୋଇଗଲେ ।

ହଠାତ୍ ଅମ୍ମା କୋମଳ ସ୍ୱରରେ କହିଲେ "ପୁଅ, ତୁ ଠିକ୍ କିଛି ସମୟ ତଳେ କଣ ଟାଇପ କରିଥିଲୁ ? ଯଦି ତୁ ଭଗବାନଙ୍କର ଦାସ ହେବାକୁ ଚାହୁଁ, ସବୁ କିଛି ତାଙ୍କ ପାଦତଳେ ସମର୍ପଣ କରିବାକୁ ହେବ । ଯଦି ମନଟି ନିର୍ମଳ ନୁହଁ, ତେବେ ଭଗବାନ ତୁମର ହୃଦୟରେ ରହିବେ ନାହିଁ । ଭଗବାନଙ୍କ ଚାକର ହେବା ପାଇଁ ହେଲେ ଜୀବନର ସମସ୍ତ ଭଲ, ମନ୍ଦ, ପୂଣ୍ୟ, ପାପ ଅନୁଭୂତି ସମାନ ଭାବରେ ଗ୍ରହଣ କରିବାକୁ ପଡିବ, ସବୁ ପ୍ରଭୁଙ୍କର ଇଚ୍ଛା ବୋଲି ଧରି ନେବାକୁ ହେବ, ପୁଅ ! ମୁଁ ତୋର ପଇସା ଚାହେଁ ନାହିଁ, ମୁଁ ଯେତେବେଳେ ତୋତେ ଭଗବାନଙ୍କ ପାଇଁ କାନ୍ଦିବାର ଦେଖେ, ମୋର ହୃଦୟ ତୋ ପାଇଁ ସ୍ନେହରେ ଭରି ଉଠେ" । ଶେଷ ବାକ୍ୟଟି କହିବା ସାଙ୍ଗେ ସାଙ୍ଗେ ସେ ଭାବପବଣ ହୋଇ ସମାଧୀସ୍ଥ ହେଲେ । ଆଖିରୁ ଝରଝର ହୋଇ ଲୁହ ବୋହିବାକୁ ଲାଗିଲା ଏବଂ ତାଙ୍କ ଦେହ ପୁରାପୁରି ସ୍ଥିର ହୋଇଗଲା । ଏପରି ଗୋଟିଏ ଘଂଟା ପରେ ସେ ଧୀରେ ଧୀରେ ବାହ୍ୟ ଜଗତକୁ ଫେରି ଆସିଲେ । ବାଲୁଙ୍କର ମନ ଅନୁତାପରେ ଭରି ଉଠିଲା । ସେ ପ୍ରାର୍ଥନା କଲେ "ମା, ମୋ ହୃଦୟକୁ ପବିତ୍ର କରିଦିଅ । ମତେ ତୁମ ହାତର କାର୍ଯ୍ୟ ସାଧକ କରିଦିଅ" । ଅମ୍ମା ତାଙ୍କୁ ସାନ୍ତ୍ୱନା ଦେଇ କହିଲେ "ପୁଅ, ଚିନ୍ତା କର ନାହିଁ, ତୁ ଏଇନେ ଅମ୍ମା ପାଖକୁ ଆସିଛୁ ଅମ୍ମାର ଦାୟିତ୍ୱ ହେଲା ତତେ ପୁରା ପୁରି ନିଖୁଣ କରି ଗଢିବା" । ଏହା ଶୁଣି ବାଲୁ ଶାନ୍ତି ଓ ଆନନ୍ଦ ଅନୁଭବ କଲେ ।

ଅମ୍ମା ଥରେ ଶିଷ୍ୟ ମାନଙ୍କୁ କହିଲେ "ପିଲାମାନେ, ଅମ୍ମା ଯଦି ସବୁବେଳେ ହସ ହସ ମୁହଁ ଦେଖାଏ, ତାହେଲେ ତୁମେମାନେ ସବୁବେଳେ ଖୁସୀ ହୁଅ, ଯଦି ଅମ୍ମା ତୁମର ଇଚ୍ଛା ବିରୁଦ୍ଧରେ କିଛି କହେ ତୁମେ ମାନେ ଭାବ ଯେ ଅମ୍ମା ତୁମକୁ ଭଲପାଏ ନାହିଁ । କିନ୍ତୁ ତାହା ସତ ନୁହଁ, ଅମ୍ମା ସବୁବେଳେ ତୁମମାନଙ୍କୁ ଶକ୍ତିଶାଳୀ କରାଇବାକୁ ଚେଷ୍ଟା କରୁଅଛି । ତୁମର ଐଶ୍ୱରୀକ ଶକ୍ତି ବଢାଇବାକୁ ହେଲେ ସବୁ ମାନସିକ ଦୁର୍ବଳତା ଦୂର ହୋଇଯିବା ଦରକାର । । ତାହା କରିବାକୁ ହେଲେ ସେ ଉପରେ ଉପରେ ରାଗ ଦେଖାଇବ । ବେଳେ ବେଳେ ତୁମମାନଙ୍କୁ ଶିକ୍ଷା ଦେବାପାଇଁ ତାହା ଜରୁରୀ" । ଗୋଟିଏ ଉଦାହରଣ ହେଲା, ଗାଈଟି ଖୁସୀରେ ନଡିଆ ଗଛର କଅଁଳିଆ

ପତ୍ର ଖାଇଯାଉଛି, ଯଦି ତାକୁ କୁହାଯାଏ "ଗାଈଲୋ, ଦୟାକରି କଅଁଳିଆ ପତ୍ର ଖାଅ ନାହିଁ, ଗଛଟି ମରିଯିବ । ଗାଈଟି ଗୋଟିଏ ଇଂଚ ମଧ୍ୟ ଘୁଂଚିବ ନାହିଁ । ଯଦି ତୁମେ ଗୋଟିଏ ଲମ୍ବା ବାଡି ନେଇ ତାକୁ ଦେଖେଇ ପାଟି କରିବ ଯା ଯା, ଦୂର ହ ! ଗାଈଟି ସାଙ୍ଗେ ସାଙ୍ଗେ ତାର ଦୁଃଷ୍ଟାମୀ ବନ୍ଦ କରିଦେବ । ଅମ୍ମାର ରାଗ ଠିକ ସେହିପରି । ପିଲାମାନେ, ଅମ୍ମାର ତୁମମାନଙ୍କ ପ୍ରତି ବିନ୍ଦୁ ମାତ୍ର ରାଗ ନାହିଁ, ସବୁବେଳେ ମନେ ରଖ ଅମ୍ମାର କୌଣସି ସ୍ୱାର୍ଥପର ଉଦ୍ଦେଶ୍ୟ ନାହିଁ, ଅମ୍ମା ଖାଲି ତୁମମାନଙ୍କର ଐଶ୍ୱରୀକ ସାଧନାର ଉନ୍ନତି ପାଇଁ ହି ଏହା କରି ଥାଏ । ଅମ୍ମା ଯଦି ସବୁବେଳେ ସ୍ନେହ ପ୍ରେମ ଦେଖାଉଥିବ, ତେବେ ତୁମେମାନେ କେବେହେଲେ ନିଜ ଭିତର ଆଡକୁ ଦୃଷ୍ଟି ଦେଇ ନିଜର ପ୍ରକୃତ ସତ୍ତାକୁ ଖୋଜିବ ନାହିଁ । ପିଲାମାନେ ! ସଂସାରୀ ଲୋକ ସବୁବେଳେ ନିଜର ସ୍ତ୍ରୀ, ପିଲାଙ୍କର କଥାହିଁ ବୁଝେ, କିନ୍ତୁ ପ୍ରକୃତ ସନ୍ୟାସୀକୁ ସାରା ପୃଥିବୀର ଭାର କାନ୍ଧରେ ବୋହିବାକୁ ପଡିବ । ସେଥିପାଇଁ ତୁମକୁ ଶକ୍ତି ସଂପନ୍ନ ହୋଇ ବଢିବାକୁ ପଡିବ" ।

ଥରେ ଦେବୀଭାବ ପରେ, ଅମ୍ମା ରାତି ଚାରିଟା ପରେ ବିଶ୍ରାମ ନେବାକୁ ଯାଉଥିଲେ । ସେ ତାଙ୍କର କୁଡିଆ ଭିତରରେ ପଶି ଦ୍ୱାର ବନ୍ଦ କରି ଶୋଇ ପଡୁଥିଲେ । ତାଙ୍କ କୁଡିଆ ଭିତରକୁ ଯାଇ ନିଦରେ ବ୍ୟାଘାତ ଯେପରି ନହୁଏ ଜଗିବା ପାଇଁ ଜଣେ ଆଶ୍ରମ ଅଧିବାସୀ ଅମ୍ମାଙ୍କ କୁଟୀରର ଦ୍ୱାର ଜଗି ଶୋଉଥିଲେ, ଠିକ୍ ସେତିକି ବେଳେ ଜଣେ ସ୍ତ୍ରୀ ଲୋକ ବସ୍ ଫେଲ ହୋଇ କ୍ୱିଲନ ଠାରୁ ପଇଁତିରିଶ କିଲୋମିଟର ଚାଲି ଚାଲି ଅମ୍ମାଙ୍କର ଦର୍ଶନ ପାଇଁ ଆସି ପହଂଚିଲେ । ଯେତେବେଳେ ସେ ଜାଣିଲେ ଯେ ଅମ୍ମା ଶୋଇବାକୁ ଗଲେଣି, ସେ ହତୋତ୍ସାହ ହୋଇ ପଡିଲେ, କିନ୍ତୁ ତଥାପି ଆଶାରେ ସେ ଅମ୍ମା, ଅମ୍ମା ବୋଲି କେଇ ଥର ଡାକି ପକାଇଲେ । ସେ ସ୍ତ୍ରୀ ଲୋକଙ୍କର ଡାକରା ଶୁଣି, ଅମ୍ମାଙ୍କ ଦୁଆର ଆଗରେ ଶୋଇଥିବା ଆଶ୍ରମବାସୀଟି ଉଠିପଡି ଅମ୍ମାଙ୍କର ନିଦ୍ରାରେ ବ୍ୟାଘାତ କରୁଥିବା ଯୋଗୁ ସେ ସ୍ତ୍ରୀଲୋକଙ୍କୁ ସେ ଚାଲିଯିବାକୁ ଆଦେଶ ଦେଲେ । ଠିକ୍ ସେଇ ମୁହୂର୍ତ୍ତରେ ଅମ୍ମା କଣ ହେଉଛି ବୋଲି ଜାଣିପାରି ଦ୍ୱାର ଖୋଲି ଉକ୍ତ ସ୍ତ୍ରୀ ଲୋକଙ୍କୁ ଦର୍ଶନ ଦେବା ପାଇଁ ଆସିଲେ । ସ୍ନେହରେ ପ୍ରଶ୍ନ ପଚାରି ସାରିବା ପରେ ଅମ୍ମା ତାକୁ ସାନ୍ତ୍ୱନା ଦେଇ ତାର ସମସ୍ୟାର ସମାଧାନ କରିବେ ବୋଲି କହିଲେ ।

ତାଙ୍କ ଦ୍ୱାରରେ ଶୋଇଥିବା ଲୋକଟିଙ୍କୁ ଅମ୍ମା ଗମ୍ଭୀର ସ୍ୱରରେ କହିଲେ, "ମୁଁ

ଏଠି ଭୋଗ ବିଳାସ ଉପଭୋଗ କରିବାକୁ ଆସିନାହିଁ, ସମସ୍ତଙ୍କ ସେବା କରିବାକୁ ଓ ଦୁଃଖ ଦୂର କରିବାକୁ ଆସିଛି । ସେମାନଙ୍କ ସୁଖ ହିଁ ମୋର ସୁଖ । ମୋର କାହାରି ସେବା ଦରକାର ନାହିଁ, ମୁଁ ଏଠି ସମସ୍ତଙ୍କର ସେବା କରିବାକୁ ହିଁ ଆସିଛି । ମୋର ପାଖକୁ ଶାନ୍ତି, ସହାୟତା ଖୋଜି ଆସୁଥିବା ଭକ୍ତ ମାନଙ୍କ ରାସ୍ତାରେ କେହି ହେଲେ ବାଧା ଦେବା ପାଇଁ ଅନୁମତି ଦେବି ନାହିଁ । ତୁମେ ଜାଣ ସେମାନେ କେତେ କଷ୍ଟ କରି, ଜୀବନର ସମାନ୍ୟ ଟିକିଏ ସଂଚିଥିବା ପାଣ୍ଠିକୁ ଖର୍ଚ୍ଚ କରି ତାଙ୍କର ହୃଦୟର ଭାର ହାଲୁକା କରିବା ପାଇଁ କେତେଦୂରରୁ ଆସିଛନ୍ତି ? ଆଉଥରେ ଯଦି ଏପରି ଅଭଦ୍ର ବ୍ୟବହାର କରି ମୋ ଉପରେ ନିୟମ କାନୁନ ଲାଗୁ କରିବାକୁ ଚେଷ୍ଟା କର ଯେ ମୁଁ କେଉଁ ନିର୍ଦ୍ଦିଷ୍ଟ ସମୟରେ ହିଁ ଭକ୍ତଙ୍କୁ ଦେଖା କରି ପାରିବି, ତେବେ ମୁଁ ଏହି ସଂସ୍ଥାକୁ ଭାଙ୍ଗି ଦେବି । ଯଦି ଆମ ସଂସ୍ଥାର ମୂଳ ଲକ୍ଷ୍ୟ ଦୁଃଖୀ, ନିଷ୍ପେଶିତ ଲୋକ ମାନଙ୍କର ସେବା ନହୁଏ ତେବେ ମୋର ଏପରି ସଂସ୍ଥା ଦରକାର ନାହିଁ । ଆମର ମୂଳ ଲକ୍ଷ୍ୟ ଖାଲି ସେବା ହେବା ଉଚିତ" । ଏହା କହି ସେ ତାଙ୍କ କୁଡିଆ ଆଗରେ ଆଶ୍ରମବାସୀ ଜଗି ଶୋଇବାର ପ୍ରଥାକୁ ବନ୍ଦ କରିଦେଲେ ।

ଆଉଥରେ ଜଣେ ରୋଗୀ ସ୍ତ୍ରୀ ଲୋକ ଅମ୍ମାଙ୍କ ପାଖକୁ ଉପଦେଶ ପାଇଁ ଅଶ୍ରମକୁ ଆସି ତାଙ୍କ ଲୁଗା ଉପରେ ବାନ୍ତି କରି ପକାଇଲେ । ଜଣେ ଆଶ୍ରମ ଅଧିବାସୀ ଝିଅ, ଯେକି ଅମ୍ମାଙ୍କର ସବୁ କଥାବୁଝାବୁଝି କରୁଥିଲେ, ସେହି ମଇଳା ଲୁଗାଟିକୁ ଗୋଟିଏ କାଠିରେ ଉଠାଇ ଧୋବଣୀକୁ ଦେବାକୁ ଯାଉଥିଲେ । ଏହା ଦେଖି ଅମ୍ମା ସେ ଝିଅକୁ ଗାଳି ଦେଲେ ଏବଂ କହିଲେ "ତୁମେ ଯଦି ପରମାତ୍ମାଙ୍କୁ ସମସ୍ତଙ୍କ ଭିତରେ ଦେଖି ପାରୁ ନାହଁ, ବା ସମସ୍ତଙ୍କୁ ସମାନ ଭାବରେ ସେବା କରି ପାରୁ ନାହଁ ତେବେ ଏତେ ବର୍ଷ ଧରି ତୁମେ ଯେଉଁ ତପସ୍ୟା ଓ ସେବା କରୁଛ ତାହାର ମୂଲ୍ୟ କଅଣ ? ମୁଁ ଓ ସେ ସ୍ତ୍ରୀ ଲୋକ ଭିତରେ କଣ କିଛି ତଫାତ୍ ଅଛି ? ଏହା କହି ଅମ୍ମା ସେ ଲୁଗାକୁ ନିଜେ ନେଇ ସଫା କଲେ ଓ କିଛିଦିନ ପାଇଁ ସେ ଝିଅଟିକୁ ତାଙ୍କର ପାଖରେ ରହି ସେବା କରିବାକୁ ମନା କରିଦେଲେ ।

ଅମ୍ମାଙ୍କର ଉପସ୍ଥିତି ହିଁ କେବଳ ଭକ୍ତ ମାନଙ୍କ ମଧ୍ୟରେ ଉତ୍ସାହ ସୃଷ୍ଟି କରେ । ସେ ସେମାନଙ୍କୁ ଉତ୍ସାହିତ କରି ଯେ କୌଣସି କାମ, ଯେ କୌଣସି ସମୟରେ କରିବାକୁ ବଳ ଯୋଗେଇ ଥାଆନ୍ତି । ଉଦାହରଣ ସ୍ୱରୂପ, ଯଦି ଆଶ୍ରମରେ କିଛି କାମ

ଥାଏ, ଯଥା - ବାଲି, ଇଟା, ପଥର, ଚୁନ କାମରେ କାରିଗରଙ୍କୁ ସାହାଯ୍ୟ କରିବା ଇତ୍ୟାଦି । ଆଶ୍ରମବାସୀମାନେ ଏଣେ ତେଣେ ଦୌଡି ସମସ୍ତଙ୍କୁ ସାହାଯ୍ୟ କରିବା ପାଇଁ ଏକାଠି କରନ୍ତି । ବେଳେ ବେଳେ ଭୋର ତିନିଟା, ଚାରିଟା ବେଳେ ଭାବ ଦର୍ଶନ ସରିଲା ପରେ, ସମସ୍ତେ ଠିକ୍ ଶୋଇବା ପାଇଁ ଯିବାକୁ ତିଆରି ହେଉଥିବେ, ହଠାତ୍ ଅମ୍ମା ଆସି କାମ ହେବା ସ୍ଥାନରେ ହାଜର ହୋଇ, ପ୍ରଥମେ କାମ ଆରମ୍ଭ କରନ୍ତି । ଯଦିଓ ସେ ପୂର୍ବ ଦିନ ସନ୍ଧ୍ୟା ଛଅଟାରୁ ରାତି ଚାରିଟା ଯାଏ ଗୋଟିଏ ଜାଗାରେ ବସିଥାନ୍ତି, ତଥାପି ଆନନ୍ଦରେ ଆଗ୍ରହର ସହ କାମ ଆରମ୍ଭ କରି ଦିଅନ୍ତି । ସାଙ୍ଗେ ସାଙ୍ଗେ ଚାରିଆଡେ କୋଳାହଳ ପଡିଯାଏ ଯେ ଅମ୍ମା ଇଟା ଉଠାଉଛନ୍ତି, ପାଣି ବୋହୁଛନ୍ତି, କିମ୍ବା ଅନ୍ୟ କିଛି କାର୍ଯ୍ୟ କରୁଛନ୍ତି । ଚତୁର୍ଦ୍ଦିଗରୁ ଭକ୍ତ ମାନେ ଦଉଡି ଆସି ହାଜର ହୁଅନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଯେଉଁ କାମ ସାରିବା ପାଇଁ ଛଅ, ସାତ ଘଂଟା ଲାଗିଥାନ୍ତା, ସେ କାମ ମାତ୍ର ଘଂଟାଏ, ଦୁଇଘଂଟା ରେ ଶେଷ ହୋଇଯାଏ ।

ଭକ୍ତ ମାନଙ୍କୁ ଶ୍ରମର କ୍ଳାନ୍ତି ଭୁଲିଯିବା ପାଇଁ, ଅମ୍ମା ସେମାନଙ୍କୁ ହସାନ୍ତି ଓ ମଜା କଥା କହନ୍ତି । ଏପରିକି କାମ ପାଖରେ ଟିକେ ନିଆଁ ଜଳେଇ କିଛି ଗରମ ପିଇବା ଜିନିଷ ତିଆରି କରିବେ, ନଚେତ୍ ଚିନାବାଦାମ ପୋଡିବେ । ଏ ସବୁ ସେ କରନ୍ତି କାମ କରୁଥିବା ଲୋକଙ୍କ ପାଇଁ । ତାପରେ ନିଜେ ସେଗୁଡିକ ଭକ୍ତ ମାନଙ୍କ ଭିତରେ ବାଂଟନ୍ତି । କାମ ମଝି ମଝିରେ ଅମ୍ମା ଭକ୍ତ ମାନଙ୍କୁ କହନ୍ତି, ଯେ କୌଣସି କାମରେ ବ୍ୟସ୍ତ ଥାଅନା କାହିଁକି ସବୁବେଳେ ମନ୍ତ୍ର ଜପ ବା ଭଜନ ଗାଇବାକୁ ଚେଷ୍ଟା କର । ଯେ କୌଣସି କାମ ପ୍ରଭୁଙ୍କର ନାମ ସ୍ମରଣ କଲେ ତାହା ପ୍ରକୃତ ସୁକର୍ମ ହୋଇଯାଏ ଆଉ ତାହା କର୍ମ ଯୋଗ ହୋଇଯାଏ । ତା ନହେଲେ ସେହି କାମ ଭୋଗ ହୋଇଯାଏ (ଯାହାର ଅର୍ଥ ହେଲା ନିଜର ଉପଭୋଗ ପାଇଁ କାର୍ଯ୍ୟ କରିବା) ।

ଯେତେବେଳେ ବୃନ୍ଦାବନରେ ଗୋପୀମାନେ ଦୁଧ, ଦହି, ଲହୁଣୀ ଇତ୍ୟାଦି ବିକ୍ରି କରିବାକୁ ଯାଉଥିଲେ ସେମାନେ ପାଟି କରି ଡାକୁଥିଲେ "କୃଷ୍ଣ, ମାଧବ, ଯାଦବ, କେଶବ.... । ରୋଷେଇ ଘରେ ସେମାନେ ପ୍ରତ୍ୟେକଟି ମସଲାରେ ଓ ଅନ୍ୟାନ୍ୟ ଜିନିଷରେ କୃଷ୍ଣଙ୍କର ବିଭିନ୍ନ ନାମ ଲେଖୁଥିଲେ । ସେମାନେ ଘରେ ଅଳସୁଆ ହୋଇ ବସୁ ନଥିଲେ କିନ୍ତୁ ସବୁବେଳେ କୃଷ୍ଣଙ୍କର ରୂପକୁ ହୃଦୟରେ ରଖି ତାଙ୍କର ମଙ୍ଗଳମୟ ନାମକୁ ଓଠରେ ଜପୁଥିଲେ । ପିଲାମାନେ! ସେଇମାନଙ୍କ ପରି ହେବାକୁ ଚେଷ୍ଟା

କର ।"

ଆସ୍ତିକ, ନାସ୍ତିକ, ତର୍କବାଦୀ, ଯେତେ ରକମର ଲୋକ ପ୍ରଶ୍ନ ପଚାରିଲେ ମଧ୍ୟ ଅମ୍ମା ଧୀର ଶାନ୍ତ ଭାବରେ ସ୍ନେହ ସହ ସେମାନଙ୍କର ପ୍ରଶ୍ନର ଉତର ଦିଅନ୍ତି । ସେମାନଙ୍କୁ ମନରେ କଷ୍ଟ ଦିଅନ୍ତି ନାହିଁ କିମ୍ବା ସୋମନଙ୍କୁ ପରିହାସ କରନ୍ତି ନାହିଁ । ଉଦାହରଣ ହେଲା - ଦିନେ ଗୋଟିଏ ଯୁବକ ଆଶ୍ରମକୁ ଆସି ଅମ୍ମାଙ୍କୁ କହିଲେ "ମୋର ଐଶ୍ୱରୀକ ଦର୍ଶନ ଶାସ୍ତ୍ର କିମ୍ବା ଯୋଗୀ ମାନଙ୍କ ଉପରେ କୌଣସି ବିଶ୍ୱାସ ନାହିଁ । ମାନବ ସେବା ବେଶୀ ଦରକାର ନୁହଁ କି ? ଅସଂଖ୍ୟ ଦୁଃଖୀ ଦରିଦ୍ର ଲୋକ ଭୋକରେ ଛଟପଟ ହେଉଛନ୍ତି । ଏହି ଯୋଗୀ ମାନେ ସେମାନଙ୍କ ପାଇଁ କଣ କରୁଛନ୍ତି ? ସେମାନେ ଖାଲି ଗୋଟିଏ ଜାଗାରେ ବସି କିଛି ନ କରି ନିଜର ସମୟ ନଷ୍ଟ କରୁ ନାହାନ୍ତି ?"

ଅମ୍ମା ଶାନ୍ତ ଭାବେ ଉତ୍ତର ଦେଲେ "ପୁଅ ! ତୁମେ ଯାହା କହୁଚ ତାହା ଠିକ୍ । ଦୁନିଆରେ ସେବା କରିବା ନିହାତି ଦରକାର । ପ୍ରକୃତ ସାଧକର ଜୀବନ ସେଥିପାଇଁ ହିଁ ସମର୍ପିତ ହେବା ଉଚିତ । ଅମ୍ମା ତୁମ ସହ ସମ୍ପୂର୍ଣ୍ଣ ଏକମତ । କିନ୍ତୁ ପ୍ରକୃତ ସେବା କଣ ? ପ୍ରକୃତ ସେବା ହେଲା କିଛି ଆଶା ନ କରି ସାହାଯ୍ୟ କରିବା । କିଏ ତାହା କରୁଛି ? ଯଦି କିଏ ଗୋଟିଏ ଗରିବ ପରିବାରକୁ ସାହଯ୍ୟ କରିବାକୁ ଚ ହେଁ ତା ଭିତରେ କିଛି ଗୋଟିଏ ସ୍ୱାର୍ଥପର ଭାବ ଛପି ରହିଛି । ସମସ୍ତେ ନିଜର ନା ଓ ଯଶ ଅର୍ଜନ କରିବାରେ ବ୍ୟସ୍ତ । ଅମ୍ମା ଜାଣେ ଯେ ନିହାତି ଗରିବ ଲୋକଙ୍କୁ ଧ୍ୟାତ୍ମିକ ଉପଦେଶ ଦେଲେ ତାର ପେଟ ପୁରିବ ନାହିଁ । ଆମ ମନରେ ଏହିପରି ଲୋକଙ୍କ ପ୍ରତି କରୁଣା ଓ ପ୍ରେମ ରହିବା କଥା । ପ୍ରକୃତ କରୁଣା ଓ ପ୍ରେମ କେବଳ ଆଧ୍ୟାତ୍ମିକ ସାଧନା ଫଳରେ ହିଁ ଲାଭ ହୁଏ । ଆମର ଜୀବନରେ ଉଚ୍ଚସ୍ତର ର ଆଦର୍ଶ ରହିବା ଉଚିତ । ଆମେ ସବୁ ସେଇ ଆଦର୍ଶକୁ ଧରି ରଖିବା ଲାଗି ସବୁ କିଛି ତ୍ୟାଗ କରିବାକୁ ପ୍ରସ୍ତୁତ ଥିବା ଦରକାର । ତାହା ହିଁ ପ୍ରକୃତ ଆଧ୍ୟାତ୍ମ । ଖାଲି ସମସ୍ତଙ୍କୁ ଖାଇବାକୁ ଦେଇ ଆମେ ସବୁ ସମସ୍ୟାର ସମାଧାନ କରିପାରିବା ନାହିଁ । ପୁଣିଥରେ ସେମାନଙ୍କର ଖାଦ୍ୟ ଦରକାର ହେବ । ସବୁଠାରୁ ଭଲ ଉପାୟ ହେଲା ସେମାନଙ୍କୁ ଖାଦ୍ୟ ଦେଇ ସେହି ସମୟରେ ମନ ଭିତରର ଉନ୍ନତି ହେବାର ଇଚ୍ଛା ଜାଗୃତ କରାଅ । ଏହା ଆଧ୍ୟାତ୍ମିକ ଶିକ୍ଷା ଦ୍ୱାରା ହିଁ ସମ୍ଭବ ହୋଇପାରେ । ଏହି ପରି ଶିକ୍ଷା ପାଇଲେ ଜଣେ ଜୀବନରେ ଯେକୌଣସି ଅବସ୍ଥାରେ ଭୋକିଲା ପେଟରେ ମଧ୍ୟ ସୁଖୀ ଓ ଶାନ୍ତ

ରହିବାରେ ସକ୍ଷମ ହୋଇ ପାରିବ । ବାସ୍ତବରେ ଆଧ୍ୟାତ୍ମିକତା ହିଁ ଆମକୁ ପୃଥିବୀରେ ସଂପୂର୍ଣ୍ଣ ସୁନ୍ଦର ଜୀବନ ଯାପନ କରିବାଲାଗି ଉପଯୁକ୍ତ ଶିକ୍ଷା ଦେଇଥାଏ । ମନ ଶାନ୍ତ ଓ ଧୀରଥିଲେ ଥାଏ ତେବେ ଭୟାବହ ନର୍କ ମଧ୍ୟ ଆନନ୍ଦର ସ୍ଥାନ ହୋଇ ଉଠିବ, ଯଦି ମନ ବିଚଳିତ ଥାଏ ତେବେ ସ୍ୱର୍ଗ ମଧ୍ୟ ଯନ୍ତ୍ରଣା ଦାୟକ ହୋଇଯିବ । ମନୁଷ୍ୟ ଗୁରୁ ମାନଙ୍କ ପାଖରୁ ଓ ଆଧ୍ୟାତ୍ମରୁ ଶାନ୍ତି ପାଇଥାଏ ଯାହାବିନା ବଂଚିବା ହିଁ ଅସମ୍ଭବ । ବାପା ମାଙ୍କର ଗୁଣ୍ଡା ବଦମାସ ପୁଅ ଟିଏ ବନ୍ଧୁ ବାନ୍ଧବଙ୍କ ଦ୍ୱାରା ଘୃଣିତ ହେଲେ ମଧ୍ୟ କହିପାରେ "ଅମ୍ମା ମତେ ସବୁଠୁ ବେଶୀ ଭଲ ପାଏ ।" ଅମ୍ମା ତାଙ୍କ ଭକ୍ତ ମାନଙ୍କ ହୃଦୟରେ ଏହିପରି ଭାବ ଜାଗ୍ରତ କରି ଥାଆନ୍ତି । ଗୋଟିଏ ଦୁର୍ବୃତ ପିଲା ବିଷୟରେ ଅମ୍ମା କହନ୍ତି "କେଡେ ଭଲ ପିଲାଟିଏ, ସେ ଭାରି ଅକପଟୀ ସରଳ" । ସେମାନଙ୍କ ଖରାପ ଗୁଣକୁ ଦୃଷ୍ଟି ... ଇ, ସେ ସେମାନଙ୍କର ଅଳ୍ପ କିଛି ଭଲ ଗୁଣ ବିଷୟରେ ଅନେକ ପ୍ରଶଂସା କରି ..ହି ଥାନ୍ତି ।

ଆମର ନିଜ.. ଅନୁଭୂତିରୁ ଆମେ ଜାଣିପାରୁ ଯେ ଅମ୍ମା ଐଶ୍ୱରୀକ ଶକ୍ତିରେ ଭରପୁର । ଯଦିଓ ଅ... ତାଙ୍କର ଭକ୍ତ ମାନଙ୍କର ପାର୍ଥିବ ଓ ଐଶ୍ୱରୀକ ଇଚ୍ଛାକୁ ପରିପୂର୍ଣ୍ଣ କରନ୍ତି, ତଥାପି ସେ ଅସଂପୃକ୍ତ ରହି ପୂର୍ଣ୍ଣ ନିଷ୍କଳଙ୍କ ବ୍ରହ୍ମ ସ୍ୱରୂପିଣୀ ହୋଇ ରହିଥାନ୍ତି । ନିଜର ଭକ୍ତି, ଶ୍ରଦ୍ଧା ଜଣାଇବାକୁ ହେଲେ ଭକ୍ତ ଟିଏ କହେ "ହେ ମା, ତୁମେ ହିଁ ମୋ ପାଇଁ କରୁଣାର ଆଧାର । ତୁମରି ଦୟା ପାଇଁ ହିଁ ମୋର ଏତେ ସୁନ୍ଦର ଧ୍ୟାନ ହେଉଚି ଓ ମନ ଭିତରେ ଶାନ୍ତି ବିରାଜୁଛି" । ଆଉ କିଏ ହୁଏତ କହେ "ହେ ମା ! ତୁମରି ଆଶୀର୍ବାଦରୁ ମୋ ପରିବାର ର ସବୁ ସମସ୍ୟାର ସମାଧାନ ହୋଇ ଯାଇଛି ଏବଂ ସାରା ଜୀବନର ଅନେକ ଇଚ୍ଛା ପରିପୂର୍ଣ୍ଣ ହୋଇଛି" । ଭକ୍ତର ଏହି ପ୍ରାର୍ଥନା ଶୁଣି ଅମ୍ମା ମୁକ୍ତ ଭାବେ ହସି ହସି ଉତ୍ତର ଦିଅନ୍ତି "ନମଃ ଶିବାୟ, ଅମ୍ମା କିଏ ଯେ ସମସ୍ତଙ୍କୁ ଆଶୀର୍ବାଦ ଦେବା ପାଇଁ ? ସେ ତ ଗୋଟିଏ ପାଗଳୀ ଝିଅ, ଯିଏ ଖାଲି ଏଣେ ତେଣେ ବୁଲୁଛି, କାରଣ ତାକୁ ପାଗଳଖାନାରେ ପୁରାଇବାକୁ କିଏ ନାହାନ୍ତି । ମୁଁ କିଛି ବି କରୁ ନାହିଁ । ଭଗବାନ ହିଁ ସବୁ କରି କରାଇ ଦେଉଛନ୍ତି" ।

ଅମ୍ମାଙ୍କ ପାଖକୁ ଦର୍ଶନ ପାଇଁ ଆସୁଥିବା ଲୋକଙ୍କ ଭିତରେ ଅନେକ ରକମର ତଫାତ ଅଛି । କେତେଜଣ "କୁଣ୍ଡଳିନୀ ଯୋଗ" ବିଷୟରେ ପ୍ରଶ୍ନ ପଚାରିବେ କିପରି ସର୍ପ ଜାଗ୍ରତ ହେବ । ଆଉ କେତେକ "ନିର୍ବିକଳ୍ପ ସମାଧି" ଦେଇ ନିଜକୁ ବ୍ରହ୍ମ

ଭିତରେ ଲୀନ କରିବାର ପ୍ରଣାଳୀ ବିଷୟରେ ପ୍ରଶ୍ନ କରିବେ । ପରେ ଲୋକଟି ହୁଏତ ନିଜ ଦେହ ଖରାପ ବିଷୟରେ ପଚାରି ପାରେ । ଆଉ କେତେକ ବାପା ମା ଆସି କାନ୍ଦି କହିବେ ତାଙ୍କ ପୁଅ କୁସଙ୍ଗରେ ପଡି ଦୁଷ୍କର୍ମ ରତ, ଅମ୍ମା କୃପାକରି ତାଙ୍କୁ ଉଦ୍ଧାର କରନ୍ତୁ । କେତେକ ଯୁବକ, ଯୁବତୀ ଆସି ଅଭିଯୋଗ କରିବେ, ସେମାନେ ଅନେକ ଦିନ ଧରି ପାଠ ଶେଷ କରିଛନ୍ତି, ତଥାପି ଏଯାଏ ଗୋଟିଏ ଚାକିରୀ ପାଇ ନାହାନ୍ତି । ସେମାନେ କହନ୍ତି, "ଅମ୍ମା କୃପାକରି ଆମକୁ ଚାକିରୀ ଯୋଗାଡ କରିଦିଅ" । ସ୍ୱାମୀ ମାନେ ଆସି ଅଭିଯୋଗ କରିବେ ତାଙ୍କର ସ୍ତ୍ରୀ ମାନଙ୍କର ନିଷ୍ଠା ନାହିଁ । ସ୍ତ୍ରୀ ମାନେ ଆସି ଅଭିଯୋଗ କ ିବେ ତାଙ୍କ ସ୍ୱାମୀ ମାନେ ତାଙ୍କୁ ଭଲ ପାଉ ନାହାନ୍ତି । କେତେଜଣ ତାଙ୍କର ପଡୋଶୀକୁ ସ୍ତି ଦେବା ପାଇଁ ଅମ୍ମାଙ୍କୁ ପ୍ରାର୍ଥନା କରିବେ, କିମ୍ବା ତାଙ୍କୁ କହିବେ ତାଙ୍କର ଗାଇ ବେଶୀ ର ଦେଉ ନାହିଁ ବା ତାଙ୍କର ନଡିଆ ଗଛରେ ବେଶୀ ଫଳ ଫଳୁ ନାହିଁ । କେତେକ ତାଙ୍କର ଅସାଧ୍ୟ ରୋଗକୁ ଆରୋଗ୍ୟ କରିଦେବା ପାଇଁ ଅମ୍ମାଙ୍କର ଆଶୀର୍ବାଦ ଚାହାନ୍ତି, ଆଉ କେତେକ ବାପା ମାଙ୍କର ମନ ବିଚଳିତ କାରଣ ତାଙ୍କ ପୁଅମାନେ ସଂସାର ଛାଡି ସନ୍ୟାସ ନେବାର ଇଚ୍ଛା ପୋଷଣ କରୁଛନ୍ତି । କିଛି ଲୋକ ଅମ୍ମାଙ୍କ ଦର୍ଶନ ପାଇଲାପରେ, ତାଙ୍କର ତତ୍ତ୍ୱାବଧାନରେ ଥାଇ ସାଧନାରେ ଆଗେଇବାକୁ ଚେଷ୍ଟା କରନ୍ତି । ଏହିପରି ପୃଥିବୀର ବିଭିନ୍ନ କୋଣରୁ ଅସଂଖ୍ୟ ଲୋକ ମାନଙ୍କର ଆଶୀର୍ବାଦ ଭିକ୍ଷା କରିବାକୁ ଆସନ୍ତି । ଅମ୍ମା କାହାକୁ ନିରାଶ କରନ୍ତି ନାହିଁ । ସମସ୍ତଙ୍କୁ ସମାନ ବ୍ୟବହାର ମିଳେ, ସମାନ ସ୍ନେହ, ଶ୍ରଦ୍ଧା ମିଳେ ଓ ସମସ୍ତଙ୍କୁ ସମାନ ଭାବରେ ତାଙ୍କ ମନର ପରିପକ୍ୱତା ଓ ପରିବେଶ ଅନୁସାରେ ଉପଦେଶ ଦିଆଯାଏ । ସେ ଖାଲି ସେମାନଙ୍କର ଦୂରାବସ୍ଥା ବିଷୟରେ ଶୁଣନ୍ତି ତାହା ନୁହେଁ, ସେମାନଙ୍କ ମନର ସବୁ ଇଚ୍ଛା ପୂରଣ କରିବା ପାଇଁ ବି ଆଶୀର୍ବାଦ ଦିଅନ୍ତି ।

ପ୍ରତିଦିନ ସକାଳ ନଅଟା ବେଳେ ଅମ୍ମା ଭକ୍ତ ମାନଙ୍କୁ ଦେଖିବା ପାଇଁ ଆସନ୍ତି । ଅମ୍ମା କହନ୍ତି "ମୁଁ ତୁମ ପାଖରୁ କିଛି ଚାହେଁ ନାହିଁ । ଖାଲି ତୁମର ଦୁଃଖର ବୋଝ ଚାହେଁ । ଅମ୍ମା ଏଇଠି ତାକୁ କାନ୍ଧରେ ବୋହିବାକୁ ବସି ରହିଛି" । ସମସ୍ତେ ଦର୍ଶନ ପାଇ ସାରି ସାନ୍ତ୍ୱନା ପାଇଲା ଯାଏ ସେ ସେଇଠି ବସି ରହନ୍ତି । ପ୍ରାୟ ସବୁଦିନ ଅପରାହ୍ନ ଦୁଇଟା ବା ତିନିଟା ଯାଏ ଦର୍ଶନ ଦିଅନ୍ତି । ନିଜର ବଖରାକୁ ଫେରି ଅମ୍ମା ଚିଠି ପଢନ୍ତି କିମ୍ବା ଅନ୍ତେବାସୀ ଶିଷ୍ୟ ମାନଙ୍କୁ ପରାମର୍ଶ ଦିଅନ୍ତି । ସେ ଆଶ୍ରମର

ସମସ୍ତ ଆବଶ୍ୟକୀୟ ଦେଖାଚାହାଁ ଭାର ନିଜେ ନେଇ ପରାମର୍ଶ ଦେଇଥାନ୍ତି । ଏପରିକି ଖାଇଲା ବେଳେ ସେ କାହାକୁ ଉପଦେଶ ଦେଉଥିବେ ଅଥବା କାହାକୁ ଚିଠି ପଢି ଶୁଣେଇବାକୁ କହୁଥିବେ ।

ଅନେକ ସମୟରେ ଡେରିରେ ଆସି ପହଂଚି ଥିବା ଦର୍ଶନାଭିଳାଷୀ ଭକ୍ତଙ୍କୁ ବା ଭକ୍ତର ପରିବାରଙ୍କୁ ଅମ୍ମା ଦର୍ଶନ ଦିଅନ୍ତି । ଯଦି ସେଦିନ ଭାବଦର୍ଶନର ଦିନ ହୋଇଥାଏ ଅମ୍ମା ପ୍ରାୟ ସନ୍ଧ୍ୟା ପାଂଚଟା ବେଳକୁ ଭଜନ ଗାଇବା ପାଇଁ ଆସି ପହଂଚି ଯାଆନ୍ତି । ଭଜନ ସରିଲାପରେ ଭାବଦର୍ଶନ ଆରମ୍ଭ ହୁଏ, ଏବଂ ସରିବା ବେଳକୁ ପ୍ରାୟ ରାତି ଚାରିଟା ହେଇଯାଏ । ସେତେବେଳ ଯାଏ ଅମ୍ମା ମନ୍ଦିରରେ ବସି ଭକ୍ତ ମାନଙ୍କୁ ଗୋଟିକ ପରେ ଗୋଟିଏ ଦର୍ଶନ ଦେଇ ସେମାନଙ୍କର ଐଶ୍ୱରୀକ ବା ସାଂସାରିକ ଅସୁବିଧା ବିଷୟରେ ଶୁଣନ୍ତି । ସେ କେବଳ ସେମାନଙ୍କର ସମସ୍ୟା ବିଷୟରେ ଶୁଣନ୍ତି ନାହିଁ, କେବଳ ଟିକିଏ ଚାହିଁ ଦେଇ, ଛୁଇଁ ଦେଇ ଅଥବା ସଂକଳ୍ପ କରି ସେମାନଙ୍କର ଦୁଃଖ ଦୂର କରନ୍ତି । ପୂଣ୍ୟମୟୀ ମାତା ଅମୃତାନନ୍ଦମୟୀ ଭାରତର ଜଣେ ଅନନ୍ୟା ମହାତ୍ମା । ଦେବୀ ମାତା ଆଦି ପରାଶକ୍ତି, ଶକ୍ତିମୟୀଙ୍କର ଭାବକୁ ନେଇ, ସେ ଅନବରତ ତାଙ୍କର ପ୍ରତିଟି ନିଶ୍ୱାସରେ ଭଗବାନଙ୍କର ସୃଜନର ସେବା କରି ଚାଲିଛନ୍ତି । ଭାରତର ଆଧ୍ୟାତ୍ମିକ ଇତିହାସରେ ଏପରି ଅପରିସୀମ କରୁଣା ଓ ଆଶୀର୍ବାଦ ପ୍ରଦାନ କରୁଥିବାର ଅତୁଳନୀୟ ଉଦାହରଣ କେଉଁଠି ଦେଖିବାକୁ ମିଳେ ନାହିଁ । ତାଙ୍କର ଜୀବନ ଏକ ଉଜ୍ଜ୍ୱଳ ତାରକା ହୋଇ ଅଗଣିତ ବ୍ରହ୍ମାନ୍ୱେଷୀ ଓ ସାଧକ ମାନଙ୍କୁ ପଥ ପ୍ରଦର୍ଶନ କରୁ ।

ଓଁ ଶାନ୍ତି

ଓଁ ଶ୍ରୀ ଗୁରୁଭ୍ୟୋ ନମଃ ।

*Biography-Odiya*

ଶ୍ରୀ ଶ୍ରୀ ମାତା ଅମୃତାନନ୍ଦମୟୀ ଏପରି ଜଣେ ମହାତ୍ମା ଯାହାଙ୍କୁ ଯେ କେହି ଦେଖା କରିପାରେ, କଥାବାର୍ତ୍ତା କରିପାରେ ଓ ତାଙ୍କ ସାନ୍ନିଧ୍ୟରେ ଈଶ୍ୱରଙ୍କ ଉପସ୍ଥିତି ଅନୁଭବ କରିପାରେ । ସେ ଅତ୍ୟନ୍ତ ବିନୟୀ ଅଥଚ ଧରିତ୍ରୀ ପରି ଦୃଢ଼ । ସେ ଅତି ସରଳ ଓ ସାଦାସିଧା, ତଥାପି ପୂର୍ଣ୍ଣିମାର ଚନ୍ଦ୍ର ପରି ଲାବଣ୍ୟମୟୀ । ସେ ପ୍ରେମ, ସତ୍ୟ, ବୈରାଗ୍ୟ ଓ ଆତ୍ମତ୍ୟାଗର ମୂର୍ତ୍ତିମତୀ ରୂପ । ସେ କେବଳ ଶିକ୍ଷା ଦିଅନ୍ତି ନାହିଁ, ନିଜେ କର୍ମ କରନ୍ତି । ସେ କିଛି ଗ୍ରହଣ ନକରି ସବୁକିଛି ସମର୍ପଣ କରନ୍ତି । ସେ ଫୁଲ ପରି କୋମଳ କିନ୍ତୁ ହୀରା ପରି କଠିନ । ସେ ଜଣେ ମହାନ ଗୁରୁ ତଥା ମହାନ ମାତୃମୂର୍ତ୍ତି । ଏହାହିଁ ମାତା ଅମୃତାନନ୍ଦମୟୀଙ୍କର ପରିଚୟ ।



Mata Amritanandamayi Mission Trust
Amritapuri P.O., Kollam Dist., Kerala, India 690 525
Website: www.amritapuri.org